# ସ୍ୱପ୍ନ

ଗୋବିନ୍ଦଚରଣ ଦାସ



କନ୍ଦୁରୀଚରଣଦାସ

# ସ୍ପନ୍ଦନ

[୫ ରହସ୍ୟୋପନ୍ୟାସର ଏକତ୍ରିକା]

ପ୍ରକାଶକ :



କଲ୍ୟାଣୀନଗର

କଟକ-୭୫୩୦୧୩, ଓଡ଼ିଶା

ପ୍ରଥମ ସଂସ୍କରଣ : ୨୦୧୨

ଦ୍ୱିତୀୟ ସଂସ୍କରଣ ୨୦୧୪

ମୁଦ୍ରଣ :

ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍

କଲ୍ୟାଣୀ ନଗର, କଟକ-୭୫୩୦୧୩, ଓଡ଼ିଶା

ମୂଲ୍ୟ : ₹ ୩୫୦/-

.......................................................

SPANDANA

[an anthology of 5 mistery novels]

by **Kanduri Charana Das**

Published by

**K A H A N I**

Kalyani Nagar, Cuttack-753013, Odisha

First edition : 2012

Second edition 2014

Price: ₹ 350/-

**ISBN 978-93-81756-62-1**






## କ୍ରମ










## ଶୂନ୍ୟକୁହା ଘଡ଼ି

...ହ୍ୟାଲୋ । ରଣଜିତ୍ ବାବୁ ?

ହଁ, ମୁଁ ରଣଜିତ୍, ତୁମେ ?

...ନୀହାରବାଳା । ହଁ ଶୁଣନ୍ତୁ । ମୁଁ ଇନ୍ଦ୍ରଭୁବନରୁ କହୁଛି । ଆପଣ କାଳ ବିଳମ୍ବ ନ କରି ତୁରନ୍ତ ଆସନ୍ତୁ । ସୁଯୋଗ ସମୟ ଉପସ୍ଥିତ ପ୍ରାୟ । ଏ ଆଡ଼େ ସମସ୍ତ ଆୟୋଜନ ହୋଇସାରିଲାଣି । ସେ ମଧ୍ୟ ପ୍ରଧାନ ଅତିଥି ରୂପେ ନିମନ୍ତ୍ରିତ ହୋଇ ଆସିଛନ୍ତି । ଏ ସୁଯୋଗ ହରାଇବାର ନୁହେଁ । ଥରେ ହରାଇଲେ ଦ୍ୱିତୀୟଥର ଯୁଟିବା ଅସମ୍ଭବ । ମନେ ରହିଲା ?

...ହଁ ମନେ ରହିଲା । ମୁଁ ସଙ୍ଗେସଙ୍ଗେ ଯାଉଛି । ତୁମେ ତାଙ୍କରି ବସିବା ସ୍ଥାନ ନିକଟରେ ମୋ ପାଇଁ ଜାଗା ରଖିଥିବ । ଖୁବ୍ ସାବଧାନ ।

: ଆପଣ ମୋ ପାଇଁ ନିଶ୍ଚିନ୍ତ ରୁହନ୍ତୁ । କିନ୍ତୁ ଛଦ୍ମବେଶ ଆଡ଼େ ଟିକେ ସୁନଜର ଦେବେ । ଯେପରି ନିଖୁଣ ହୁଏ । ପେସଓ୍ୱାରୀ ମୁସଲମାନ ହେଲେ ଚଳିବ । ମୁଁ ଆପଣଙ୍କୁ ମୋର ବନ୍ଧୁ ବୋଲି ପରିଚୟ ଦିଆଇବି । ବୁଝିଲେ ?

...ହେଉ ରିସିଭରଟା ଏଥର ରଖି ଦିଅନ୍ତୁ ।

ଇନ୍ଦ୍ରଭୁବନ କଟକ ସହରର ଏକ ପ୍ରଥମ ଶ୍ରେଣୀର ହୋଟେଲ । ଆଧୁନିକ ସାଜସଜ୍ଜାରେ ସମସ୍ତ ହୋଟେଲକୁ ଟପି ଯାଇଛି । ସହରର ଧନୀ ମାନୀମାନଙ୍କର ସେ ଏକ ମିଳନପୀଠ କହିଲେ ଚଳେ । ବାହାରର ଗଲା ଆଇଲା ଧନୀ ବ୍ୟକ୍ତିମାନେ ମଧ୍ୟ ଇନ୍ଦ୍ରଭୁବନରେ ରାତ୍ରି ଯାପନ ତଥା ବିଶ୍ରାମ ଆଦି କରିବାପାଇଁ ସୁବିଧା ମଣନ୍ତି । ବର୍ଷ ଦୁଇଟା ଭିତରେ ଇନ୍ଦ୍ରଭୁବନର ଖ୍ୟାତି ବଢ଼ିବା ସଙ୍ଗେସଙ୍ଗେ ସାଜସଜ୍ଜାର ପରିପାଟୀରେ ଓ ଲୋକଙ୍କ ଗହଳିରେ ଭରିଉଠିଲାଣି ।

ଆଜି ଇନ୍ଦ୍ରଭୁବନରେ ଦ୍ୱିତୀୟ ବାର୍ଷିକୋତ୍ସବ । ତେଣୁ ବିଶେଷ ରୂପେ ଆୟୋଜନ କରାଯାଇଛି ନୃତ୍ୟଗୀତର । ପ୍ରଧାନ ଅତିଥି ରୂପେ ନିମନ୍ତ୍ରିତ ହୋଇ ଆସିଛନ୍ତି କଟକର ବର୍ତ୍ତମାନ ଧନକୁବେର ନନ୍ଦଲାଲବାବୁ । ଆହୁରି ଆସିଛନ୍ତି କଟକର ସରକାରୀ ବେସରକାରୀ ବହୁ ମାନ୍ୟଗଣ୍ୟ ବ୍ୟକ୍ତିମାନେ । ନୃତ୍ୟଗୀତକାରୀମାନଙ୍କ ମଧ୍ୟରୁ କୁମାରୀ ନୀହାରବାଳାଙ୍କ ନାମ ଉଲ୍ଲେଖଯୋଗ୍ୟ । ଅଧୁନା ଉତ୍କଳର ଭବିଷ୍ୟତ ରତ୍ନ ବୋଲି ଅନେକେ ତାଙ୍କୁ କହନ୍ତି । ସନ୍ଧ୍ୟା ଛ'ଟାରୁ ନୃତ୍ୟଗୀତର ପ୍ରୋଗ୍ରାମ ଅଛି । ଇନ୍ଦ୍ରଭୁବନ ଲୋକଗହଳିରେ କମ୍ପି ଉଠୁଛି । ପ୍ରଧାନ ଅତିଥି ସମେତ ପ୍ରାୟ ପ୍ରତ୍ୟେକ ନିମନ୍ତ୍ରିତ ଭଦ୍ରବ୍ୟକ୍ତି ନିଜନିଜ ସ୍ଥାନ ଅଧିକାର କରିସାରିଲେଣି ।

ଦିଆଲ ଘଡ଼ିରେ ସାଢ଼େ ପାଞ୍ଚଟା ବାଜିଲା ।

ସେତେବେଳଯାଏ ନନ୍ଦଲାଲବାବୁଙ୍କ ସହିତ କୁମାରୀ ନୀହାରବାଳାଙ୍କ ଖୁସି ଗପ ତୁଟି ନ ଥାଏ ।

ହଠାତ୍ ଜଣେ ପେସଓ୍ୟାରୀ ମୁସଲମାନଙ୍କ ଆବିର୍ଭାବରେ ନୀହାରବାଳା ଚେଆର ଛାଡ଼ି ଆଗେଇଗଲେ । ମୁହଁରେ ତାଙ୍କର ଖୁସି ଝରିପଡୁଥିଲା । ସେ ସ୍ୱାଗତ କରି ଆଣି ପେସଓ୍ୟାରୀ ଜଣଙ୍କୁ ନିଜ ଅଧିକୃତ ଚେଆରଟିରେ ବସାଇ ନନ୍ଦଲାଲବାବୁଙ୍କ ସହିତ ପରିଚୟ କରାଇ ଦେବାକୁ ଯାଇ କହିଲେ  ଯାଙ୍କ ନାମ ମିଃ ହୋସେନ । ଏ ହେଉଛନ୍ତି ମୋର ଜଣେ ପେସଓ୍ୟାରୀ ବନ୍ଧୁ । ମୁଁ ଯେତେବେଳେ ପେସ୍ୱଓ୍ୟାର ଭ୍ରମଣରେ ଯାଇଥିଲି, ଏ ମହାଶୟ ମୋତେ ଖୁବ୍ ସାହାଯ୍ୟ କରିଥିଲେ । ମୁଁ ଫେରି ଆସିଲାବେଳେ ଆମ ଏଆଡ଼େ ଥରେ ବୁଲି ଆସିବା ପାଇଁ ଅନୁରୋଧ ଜଣାଇଥିଲି । ସେ ରାଜି ହୋଇଥିଲେ । ଦୀର୍ଘ ଛ'ମାସ ଅତିବାହିତ ହେବା ପରେ ସେ କାଲି ରାତ୍ରିରେ ଆମ ଏଠାକୁ ଆସିଛନ୍ତି ।

ନନ୍ଦଲାଲବାବୁଙ୍କୁ ମିଃ ହୋସେନଙ୍କ ସଙ୍ଗରେ ପରିଚିତ କରାଇ ଦେବାକୁ ଯାଇ ନୀହାରବାଳା କହିଲେ  ଯାଙ୍କ ନାମ ନନ୍ଦଲାଲ ମହାନ୍ତି । ଆମ ଓଡ଼ିଶାର ଜଣେ ବିଖ୍ୟାତ ବ୍ୟବସାୟୀ ! ଗୋଟେ ଯୋଡ଼େ ମିଲ୍ ସ୍ଥାପନର ପରିକଳ୍ପନା କରୁଛନ୍ତି । ନନ୍ଦଲାଲବାବୁ ବଡ଼ ସତ୍ ଓ ମେଳାପୀ ଲୋକ ।

ମିଃ ହୋସେନ ନନ୍ଦଲାଲବାବୁଙ୍କ ସହିତ କରମର୍ଦ୍ଦନ କଲେ । ଜଣେ ମହତ୍ ଲୋକର ପରିଚୟ ପାଇଥିବାରୁ ବଡ଼ ଆପ୍ୟାୟିତ ହୋଇ ନୀହାରବାଳାଙ୍କୁ ଧନ୍ୟବାଦ ଜଣାଇଲେ ।

ନୀହାରବାଳା ହାତଘଡ଼ିକୁ ଚାହିଁ ଦେଖିଲେ, ଛ'ଟା ବାଜିବାକୁ ମାତ୍ର ପନ୍ଦର ମିନିଟ୍ ବାକି ଅଛି । କହିଲେ ମୁଁ ତେବେ ଆସୁଛି ନନ୍ଦଲାଲ ବାବୁ ! ଆଉ ଅଳ୍ପ ସମୟ ରହିଲା । ମୋତେ ପୁଣି ଷ୍ଟେଜ୍‌ରେ ଆପିଅର ହେବାକୁ ହେବ ।

ନନ୍ଦଲାଲବାବୁ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ । ନୀହାରବାଳା ମିଃ ହୋସେନଙ୍କ ଆଡ଼େ ଟିକିଏ କଣେଇ ଚାହିଁ ମୁରୁକି ହସି ଚାଲିଗଲେ । ମିଃ ହୋସେନ ଦଣ୍ଡେ ନୀହାରବାଳାଙ୍କ ଯିବା ପଥକୁ ଅନାଇ ରହିଲେ । ସେଆଡୁ ଆଖି ଲେଉଟାଇ ଆଣି ନନ୍ଦଲାଲବାବୁଙ୍କୁ କହିଲେ ଦେଖୁଛି, ଆପଣଙ୍କ ଓଡ଼ିଶାରେ ବ୍ୟବସାୟ କରିବା ନିମିତ୍ତ ଖୁବ୍ ପ୍ରଶସ୍ତ କ୍ଷେତ୍ର ଅଛି । ଗାଡ଼ିରେ ଆସିଲାବେଳେ ଦେଖିଲି ବହୁତ ଜମି ଅକାମିକା ହୋଇ ପଡ଼ି ରହିଛି । ପାହାଡ଼ ପର୍ବତ ସଂଖ୍ୟା ଅଗଣନ । ସେଗୁଡ଼ାକ କାଟି, ଅକାମିକା ଜାଗାମାନଙ୍କରେ ବିଭିନ୍ନ କଳକାରଖାନା ସ୍ଥାପନ କଲେ ମନ୍ଦ ହୁଅନ୍ତା ନାହିଁ ।

ନନ୍ଦଲାଲବାବୁ ଟିକିଏ ଉତ୍ସାହିତ ହେଲା ପରି ହୋଇ କହିଲେ, : ଠିକ୍ ଆପଣ ମୋ ପ୍ରାଣର କଥା କହିଛନ୍ତି ମିଃ ହୋସେନ ! ମୁଁ ଯେତେବେଳେ ଖୁବ୍ ଛୋଟ ଥିଲି, ଓଡ଼ିଶାର ଏହିସବୁ ଅନାବାଦୀ ଜାଗାମାନ ଦେଖି ମୋ ପ୍ରାଣରେ ଆପଣଙ୍କ ପରି ଗୋଟାଏ ସ୍ପନ୍ଦନ ଖେଳୁଥିଲା । ମନେମନେ ଠିକ୍ ଏଇଆ କଳ୍ପନା କରୁଥିଲି, ଆପଣ ଆଜି ଯାହା କହୁଛନ୍ତି । କିନ୍ତୁ ମୁଁ ଗୋଟାଏ ଲୋକ, ଧନୀ ହେଲେ ବି କେତେ ବା ମୋର ପୁଞ୍ଜି ? ସାରା ଓଡ଼ିଶାରେ କଳକାରଖାନା ବସାଇବାର ଶକ୍ତି ମୋର କାହିଁ ? ଓଡ଼ିଶା ସରକାର ତ କାନକୁ ନେଲେ ନାହିଁ । କହିଲେ—ଟଙ୍କା ନାହିଁ । ଛାଡ଼ନ୍ତୁ ସେ ସବୁ । କେବଳ ଆଲୋଚନା କରି କିଛି ଲାଭ ନାହିଁ ।

ମିଃ ହୋସେନ ଉତ୍ସାହ ସହକାରେ ନନ୍ଦଲାଲବାବୁଙ୍କର ସବୁ କଥା ଶୁଣୁଥିଲେ । ସଙ୍ଗେସଙ୍ଗେ ଇନ୍ଦ୍ରଭୁବନରେ ଅନ୍ଧକାରର ଛାଇ ମାଡ଼ିଗଲା । ନୃତ୍ୟ ଆରମ୍ଭ ହୋଇଛି । ସମସ୍ତେ ଏକ ଲୟରେ ସେଇ ଆଡ଼କୁ ଅନାଇ ରହିଲେ । ମିଃ ହୋସେନ ଓ ନନ୍ଦଲାଲବାବୁଙ୍କ କଥାରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ମିଃ ହୋସେନଙ୍କ ମୁହଁରେ ଟିକିଏ ବିରକ୍ତିର ଭାବ ଖେଳିଗଲା ।

ପ୍ରଥମ ନୃତ୍ୟ ଶେଷ ହେଲା ।

ପୁଣି ଘରେ ଆଲୋକର ପ୍ଲାବନ । ମିଃ ହୋସେନ ବାଁ ହାତର ଅସ୍ତିନ୍‌ଟା ଟେକିଦେଇ ଲଜ୍ଜିତ ହେଲାପରି କହିଲେ : ଆଃ... ଘଡ଼ିଟା ଡ୍ରୟାରରେ ଛାଡ଼ି ଆସିଲି । ଆଚ୍ଛା ନନ୍ଦଲାଲବାବୁ ! କେତେଟା ବାଜିଲାଣି କହି ପାରିବେ ?

ନନ୍ଦଲାଲବାବୁ ବାଁ ହାତରେ ଅସ୍ତିନ୍‌ଟା ଉପରକୁ ଟେକିଦେଲେ । ମିଃ ହୋସେନଙ୍କ

ଦୃଷ୍ଟି ସେଇଆଡ଼େ ରହିଥାଏ । ଏକ ଉଜ୍ଜ୍ୱଳ ଘଡ଼ି ନନ୍ଦଲାଲବାବୁଙ୍କ ହାତରେ ଝଲି ଦିଶିଲା । ସେ ସହଜ ସରଳ ଗଳାରେ କହିଲେ ସାତଟା ଦ'ଶ ।

ମିଃ ହୋସେନ ଅନ୍ୟ ପ୍ରସଙ୍ଗ ଦାଡ଼ିବାକୁ ଯାଉଥିଲେ, ପୁଣି ଘରର ବତିଗୁଡ଼ିକ ଲିଭିଗଲା । ଆଖି ଆଗରେ ଗୋଟିଏ ମନୋରମ ଦୃଶ୍ୟ ଉଜ୍ଜୀବିତ ହୋଇଉଠିଲା । ସମସ୍ତଙ୍କ ମନ ଛନ୍ଦି ହୋଇଗଲା ସେଇ ଦୃଶ୍ୟଟିରେ ।

ମିଃ ହୋସେନ ସେଇ ଅନ୍ଧକାର ଭିତରେ କ'ଣ ଟିକିଏ ପକେଟରୁ ବାହାର କରି ନନ୍ଦଲାଲବାବୁଙ୍କ ନାକ ପାଖରେ ମୁହୂର୍ତ୍ତକ ପାଇଁ ଧରି ରଖିଲେ । ଅଳ୍ପ ସମୟ ପରେ ସେ ନନ୍ଦଲାଲବାବୁଙ୍କ ବାମ ହସ୍ତରୁ ରିଷ୍ଟ୍‌ୱାଚ୍‌ଟି ଫିଟାଇ ଆଣିଲେ । ନନ୍ଦଲାଲବାବୁଙ୍କର ଆଉ ହଲଚଲ ହେବାର ଶକ୍ତି ନ ଥିଲା । ଆଉ ଗୋଟାଏ ଅସ୍ପଷ୍ଟ ଛାୟାମୂର୍ତ୍ତି ସେଇ ଅନ୍ଧକାର ଭିତରେ ଆଗେଇ ଆସି ମିଃ ହୋସେନଙ୍କ ହାତରୁ ସେ ଘଡ଼ିଟି ନେଇନେଲା ଏବଂ ଅନ୍ୟ ଏକ ପଦାର୍ଥ ହୋସେନଙ୍କ ହାତକୁ ବଢ଼ାଇ ଦେଇଗଲା । ସେତେବେଳେ ପର୍ଯ୍ୟନ୍ତ ନୃତ୍ୟ ଶେଷ ହୋଇ ନ ଥିଲା । ତେଣୁ ଘରର ବତିଗୁଡ଼ିକ ସେ ପର୍ଯ୍ୟନ୍ତ ଆଖି ବୁଜିଥିଲେ । ସମସ୍ତେ ନୃତ୍ୟ ଭିତରେ ନିଜ ନିଜକୁ ହଜାଇ ଦେଇଥିଲେ । ସେତେବେଳେ ମିଃ ହୋସେନ ଅଥବା ଛାୟାମୂର୍ତ୍ତି ଆଡ଼କୁ କାହାରି ଲକ୍ଷ୍ୟ ନ ଥିଲା ।

ହଠାତ୍ ବତି ଜଳି ଉଠିଲାବେଳକୁ ମିଃ ହୋସେନ ଚେୟାର ଉପରୁ ଡେଇଁ ପଡ଼ିଲେ । ସାପଟାଏ କହି ସେ ଖଣ୍ଡେଦୂର ଘୁଞ୍ଚିଗଲେ । ସମସ୍ତେ ଅବାକ୍ ହୋଇ ଦେଖିଲେ ବିଷଧର ସର୍ପଟାଏ ନନ୍ଦଲାଲବାବୁଙ୍କ ଗୋଡ଼ ପାଖରୁ ନାଟ୍ୟମଣ୍ଡପ ଆଡ଼କୁ ଆଗେଇ ଯାଉଛି । ଦର୍ଶକମାନେ ଅସ୍ତବ୍ୟସ୍ତ ହୋଇ ନିଜନିଜ ଜାଗା ଛାଡ଼ି ଧାଁ'ଦଉଡ଼ ଆରମ୍ଭ କରିଦେଲେ । ଘରଟା କୋଳାହଳରେ ପୂରି ଉଠିଲା । ଇନ୍ଦ୍ରଭୁବନର ମ୍ୟାନେଜର ହଠାତ୍ ସାପଟାର ଆବିର୍ଭାବରେ ବଡ଼ ବ୍ୟସ୍ତ ହୋଇପଡ଼ିଲେ । ଦରବାନ ରାମଲଗନ ତା'ର ମୂଳିଆ ଠେଙ୍ଗା ଉଠାଇ ସାପଟାର ଜୀବନଲୀଳା ସାଙ୍ଗ କରାଇଦେଲା । ପୁଣି ଘରେ ପୂର୍ବାବସ୍ଥା ଫେରି ଆସୁଥିଲା । ସମସ୍ତେ ନିଜ ନିଜର ସ୍ଥାନ ଅଧିକାର କରିବାକୁ ଯାଉଥିଲେ । କିନ୍ତୁ ନନ୍ଦଲାଲବାବୁଙ୍କର ହଲଚଲ ନ ହେବାର ଦେଖି ମିଃ ହୋସେନ ଆତଙ୍କ ମଣିଲେ । ସେ ହୋଟେଲ ମ୍ୟାନେଜରଙ୍କ ଦୃଷ୍ଟି ସେଆଡ଼କୁ ଆକର୍ଷିତ କରାଇଲେ । ମ୍ୟାନେଜର ପରୀକ୍ଷା କରି ଦେଖିଲେ ନନ୍ଦଲାଲବାବୁଙ୍କ ଚେତନାଶକ୍ତି ଲୋପ ପାଇଛି । ମୁହୂର୍ତ୍ତକରେ ଇନ୍ଦ୍ରଭୁବନ ସାରା ଚାଞ୍ଚଲ୍ୟର ଲହରୀ ଖେଳିଗଲା ।

ନନ୍ଦଲାଲବାବୁଙ୍କୁ ସର୍ପ ଦଂଶିଛି !

ବଡ଼ ବଡ଼ ଡାକ୍ତରମାନେ ଛୁଟି ଆସିଲେ । ଇନ୍ଦ୍ରଭୁବନର ଦ୍ୱିତୀୟ ବାର୍ଷିକୋତ୍ସବ ସେତିକିରୁ ବନ୍ଦ ରହିଲା । ନିମନ୍ତ୍ରିତ ଅତିଥିମାନେ ଦୁଃଖମନରେ ବାହୁଡ଼ି ଗଲେ । ନନ୍ଦଲାଲବାବୁଙ୍କୁ ସଙ୍ଗେସଙ୍ଗେ ହସ୍‌ପିଟାଲ ପଠାଇ ଦିଆଗଲା । ଇନ୍ଦ୍ରଭୁବନ ମ୍ୟାନେଜର

ମୁଣ୍ଡରେ ହାତ ଦେଇ ବସିପଡ଼ିଲେ । ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ସେ ଆତଙ୍କ ମଣିଲେ । ଯଦି ନନ୍ଦଲାଲବାବୁଙ୍କର କିଛି ହାନିଲାଭ ହୋଇଯାଏ, ତେବେ...?

ତେଣିକି ସେ ଆଉ ଭାବିପାରିଲେ ନାହିଁ । ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ, କଳ୍ପିତ ଦୁନିଆ, ସବୁ ତାଆସଘରପରି ଚୁରମାର ହୋଇଗଲା । ନନ୍ଦଲାଲବାବୁ ଯଦି ଆରୋଗ୍ୟ ନ ଲଭନ୍ତି, ତେବେ କଳଙ୍କ ଲେପିହୋଇଯିବ ଇନ୍ଦ୍ରଭୁବନ ନାମରେ । କେହି ଆଉ ପଦାର୍ପଣ କରିବେ ନାହିଁ ଇନ୍ଦ୍ରଭୁବନରେ । ମ୍ୟାନେଜରଙ୍କର ଆଖିରେ ଦୁଇବିନ୍ଦୁ ଲୁହ ଜକେଇ ଆସିଲା ।

କୁମାରୀ ନୀହାରବାଳା ଦୁଃଖରେ ମ୍ୟାନେଜରଙ୍କ ଠାରୁ ବିଦାୟ ନେଲେ । ମିଃ ହୋସେନଙ୍କ ମନ ମଧ୍ୟ ଦୁଃଖରେ ଭରିଉଠିଲା । ଏତେବଡ଼ ଆନନ୍ଦ ଉତ୍ସବରେ କି ଅଘଟଣ ନ ଘଟିଲା ଭଲା !

ନୀହାରବାଳା ଓ ମିଃ ହୋସେନ ଖଣ୍ଡେ ଘୋଡ଼ାଗାଡ଼ିରେ ଉଠିଲେ । ଗାଡ଼ି ନେଇ ଚାଲିଲା । ହୋସେନ ଦୀର୍ଘ ନିଃଶ୍ୱାସଟିଏ ତ୍ୟାଗ କରି ନୀହାରବାଳାଙ୍କ ମୁହଁକୁ ଅନାଇ କହିଲେ ତୁମକୁ ଅଶେଷ ଧନ୍ୟବାଦ ।

ନୀହାରବାଳାଙ୍କ ମୁହଁରେ ହସ ଫୁଟି ଉଠିଲା । ସେ ଭ୍ରୂକୁଞ୍ଚନ କରି କହିଲେ ଆପଣଙ୍କୁ ଅଜସ୍ର ଧନ୍ୟବାଦ ।

ଦୁହେଁ ଏକାସଙ୍ଗରେ ହସି ଉଠିଲେ ।

ଗାଡ଼ି ଆଗେଇଥାଏ । ଘୋଡ଼ାଟାପୁରୁ ପ୍ରତୀତ ହେଉଥାଏ ଗାଡ଼ି ଖୁବ୍ ବେଗରେ ଧାଇଁଛି । ନୀହାରବାଳା ଥରେ ରାଜପଥର ଦୁଇପାର୍ଶ୍ୱକୁ ଅନାଇ କହିଲେ ଆଜିର ଅଭିନୟଟା ଆପଣଙ୍କର ବଡ଼ ଚିତ୍ତାକର୍ଷକ ହୋଇଛି ମିଃ ହୋସେନ !

ମିଃ ହୋସେନ ମୁଖଭଙ୍ଗୀ ବଦଳାଇ କହିଲେ : ତୁମେ ତ ବେଶ୍ ନୀହାର ! ଏବେ ବି ମୋତେ ମିଃ ହୋସେନ ସମ୍ବୋଧନ କରୁଛ ।

ନୀହାରବାଳା କହିଲେ : ଅନ୍ତତଃ ପୋଷାକଟା ଦିହରେ ଥିବାଯାଏ ଆପଣ ମିଃ ହୋସେନ ହୋଇ ରହିଥାନ୍ତୁ ! ନ ହେଲେ କାହାରି ମନରେ ସନ୍ଦେହ ଜାଗିପାରେ ।

ମିଃ ହୋସେନ କଥାର ସୁଅ ବଦଳାଇଲେ : ସେଇ ଘଡ଼ିଟି ଆଣ ତ ନୀହାର ! କ'ଣ ଏପରି ରହସ୍ୟ ଲୁଚିରହିଛି ତା' ପଛରେ, ଅନୁସନ୍ଧାନ କରି ଦେଖିବା । ମନ ବଡ଼ ଉଦ୍‌ଗ୍ରୀବ ହୋଇଉଠିଲାଣି ।

ନୀହାରବାଳା ଉତ୍ତର ଦେଲେ ଆଗ ଘରକୁ ଚାଲନ୍ତୁ । ରାସ୍ତାମଝିରେ ଏଇ ଅନ୍ଧାର ଆଲୁଅ ଭିତରେ କ'ଣ ବା ଆପଣ ଦେଖିବେ ? ତା'ଛଡ଼ା ହାନିଲାଭ ଅଛି ।

ମିଃ ହୋସେନ କହିଲେ ତା' ସତ, ତଥାପି ଜିନିଷଟା ଥରେ ମୋ ହାତକୁ ଦିଅ ତ !

ନୀହାରବାଳାଙ୍କ ମୁଖ ହଠାତ୍ ବିବର୍ଣ୍ଣ ହୋଇଉଠିଲା । ସେ ଘଡ଼ି ଖୋଜିବାକୁ ଯାଇ ଭ୍ୟାନିଟି ବ୍ୟାଗ ଅଣ୍ଡାଳି ବସିଲେ । କିନ୍ତୁ ଇନ୍ଦ୍ରଭୁବନରୁ ସେ ତାହା ଆଣି ନାହାନ୍ତି ! ଭୁଲ, ଅକଥନୀୟ ଭୁଲ ! କି ଉତ୍ତର ଦେବେ ସେ କିଛି ଚିନ୍ତା କରିପାରିଲେ ନାହିଁ ।

ମିଃ ହୋସେନ ନୀହାରବାଳାଙ୍କ ହାବଭାବରୁ ସବୁ ଠଉରେଇ ନେଲେ । ବିରକ୍ତିର ଛବି ଫୁଟି ଦିଶିଲା ତାଙ୍କ ମୁଖମଣ୍ଡଳରେ । ସେ କହିଲେ ତୁମେ କ'ଣ କଲ ନୀହାର ! ଏଡ଼େ ଚତୁରୀ ହୋଇ ମଧ୍ୟ କର୍ତ୍ତବ୍ୟ ଭୁଲି ବସିଲ ? ବ୍ୟାଗ୍‌ଟି ଯଦି କାହାରି ହାତରେ ପଡ଼େ, ତହିଁରୁ ସେ ଆମ ସଂଘର ବ୍ୟାଚ ଆବିଷ୍କାର କରିବ ଏବଂ ତା' ସଙ୍ଗେସଙ୍ଗେ ଆବିଷ୍କାର କରିବ ରିଷ୍ଟୱାଚଟିକୁ । ସବୁ ଫସର ଫାଟିଯିବ । କଳ୍ପନା ଧୂଆଁ ହୋଇ ଉଡ଼ିଯିବ । ଏଇସବୁ ଟିକିନିଖି ଭୁଲ୍ ଯୋଗୁଁ ମଣିଷକୁ ସାରାଜୀବନ ପସ୍ତେଇବାକୁ ପଡ଼ିଥାଏ ।

ନୀହାରବାଳାଙ୍କ ମୁହଁରେ ଭାଷା ନ ଥିଲା । ସେ ଗାଡ଼ୋଆନକୁ ଅଟକାଇ ପୁଣି ଇନ୍ଦ୍ରଭୁବନକୁ ଲେଉଟିବାକୁ କହିଲେ । ମିଃ ହୋସେନ ଗାଡ଼ିରୁ ଓହ୍ଲାଇ ଲକ୍ଷ୍ୟସ୍ଥାନକୁ ଚାଲିଲେ । ନୀହାରବାଳାଙ୍କୁ କହିଲେ, ଯେପରି ଶୀଘ୍ର ଲେଉଟି ଆସ । ମୁଁ ତୁମର ପଥ ଚାହିଁ ବସିଥିବି ।

ଗାଡ଼ି ଯେତେବେଳେ ଇନ୍ଦ୍ରଭୁବନରେ ଲାଗିଲା, ସେତେବେଳକୁ ପୋଲିସ ଇନିସ୍ପେକ୍ଟର ସଦଳବଳେ ସେଠାରେ ପହଞ୍ଚି ହୋଟେଲ ମ୍ୟାନେଜରଙ୍କଠାରୁ ନାନା ପ୍ରକାର କୈଫିୟତ ତଲବ କରୁଥିଲେ । ମ୍ୟାନେଜର ଶଂକିତ ଚିତ୍ତରେ ଇନିସ୍ପେକ୍ଟରଙ୍କୁ ଯଥାଯଥ ଉତ୍ତର ପଦାନ କରୁଥିଲେ ।

ପୁରୁଖା ଗୁଇନ୍ଦା ଅମରବାବୁ କେତେକ ତଥ୍ୟ ଅନୁସନ୍ଧାନ ପରେ ଇନିସ୍ପେକ୍ଟରଙ୍କ ପାଖରେ ପହଞ୍ଚି କହିଲେ : ଆପଣ ବୁଝିପାରୁ ନାହାନ୍ତି ପ୍ରଫୁଲ୍ଲବାବୁ । ନନ୍ଦଲାଲବାବୁଙ୍କ ସର୍ପଦଂଶନ ମୂଳରେ ଅନ୍ୟ କିଛି ରହସ୍ୟ ଲୁଚି ରହିଥିଲା ପରି ଜଣାପଡ଼ୁଛି ।

ପ୍ରଫୁଲ୍ଲବାବୁ ଆବାକାବା ହୋଇ ଅମରବାବୁଙ୍କ ମୁହଁକୁ ଅନାଇ କହିଲେ କ'ଣ କହୁଛନ୍ତି ଅମରବାବୁ ! ସର୍ପଦଂଶନ ମୂଳରେ ପୁଣି ରହସ୍ୟ ଲୁଚିପାରେ । ଅସମ୍ଭବ ।

ଅମରବାବୁ ଟିକିଏ ହସିଲେ, କହିଲେ ଏ ଯୁଗରେ ସବୁ ଅସମ୍ଭବ ସମ୍ଭବ ହେଉଛି ପ୍ରଫୁଲ୍ଲବାବୁ ! ଖାଲି ନନ୍ଦଲାଲବାବୁଙ୍କର ଟିକିଏ ଚେତା ଫେରୁ, ତା'ପରେ ସବୁ ରହସ୍ୟ ପଦାରେ ପଡ଼ିଯିବ । ସେତେବେଳେ ଆପଣ ବୁଝିପାରିବେ, ଯୁଗ କେତେଦୂର ଆଗେଇ ଗଲାଣି ଆଉ ଆପଣ କେତେ ପଛରେ ପଡ଼ି ରହିଛନ୍ତି ।

ପ୍ରଫୁଲ୍ଲବାବୁ ଟିକିଏ ଖୁସ୍‌ମେଜାଜ୍‌ର ଲୋକ । ତାଙ୍କ ସହିତ ପ୍ରାୟ ସମସ୍ତେ ଥଟ୍ଟା ପରିହାସ ହୁଅନ୍ତି । ତେଣୁ ସେ ଅମରବାବୁଙ୍କ କଥାର ଶେଷ ପଦକ ଉପରେ ବିଶେଷ ଗୁରୁତ୍ୱ ନ ଦେଇ ଟିକିଏ ହସିଦେଲେ । ପଚାରିଲେ : ଡାକ୍ତର କ'ଣ ରିପୋର୍ଟ ଦେଲେ ।

ଅମରବାବୁ କହିଲେ  ଡାକ୍ତରଙ୍କର ସନ୍ଦେହ ଯେ ଏହା ସର୍ପଦଂଶନର ଲକ୍ଷଣ ନୁହେଁ । ତା'ଛଡ଼ା ସେ ନନ୍ଦଲାଲବାବୁଙ୍କ ଶରୀର ଗୋଟାକରୁ ସର୍ପଦଂଶନର କୌଣସି କ୍ଷତ ଆବିଷ୍କାର କରିପାରି ନାହାନ୍ତି, ଅଥବା ବିଷର ସନ୍ଧାନ ପାଉ ନାହାନ୍ତି ।

ପ୍ରଫୁଲ୍ଲବାବୁ ମଉନ ରହିଲେ । ତାଙ୍କର ତଦନ୍ତ ରିପୋର୍ଟ ଲେଖା ସରିଗଲା । କହିଲେ  ତେବେ ଯିବା ଚାଲନ୍ତୁ ନନ୍ଦଲାଲବାବୁଙ୍କ ପାଖକୁ, ହୁଏତ ଯା ଭିତରେ ତାଙ୍କର ହୋସ୍ ଫେରିଆସିଥିବ ।

ଅମରବାବୁ କହିଲେ  ମୁଁ କିନ୍ତୁ ଅନ୍ୟ କାମରେ ଆସିଛି । ସେ ମଲାସାପଟା ଆଡ଼େ ଡାକ୍ତରବାବୁ ଚାହିଁଛନ୍ତି । ହୋଟେଲ ମ୍ୟାନେଜରଙ୍କ ଆଡ଼େ ଚାହିଁ କହିଲେ, ସେ ମଲା ସାପଟା ଅଣେଇ ଦିଅନ୍ତୁ ତ !

ହୋଟେଲ ମ୍ୟାନେଜର ଦରବାନକୁ ଡାକି ଡାକି ଆଗେଇ ଗଲେ । ସେତିକିବେଳେ ହୋଟେଲର ପାର୍ଶ୍ୱକକ୍ଷରୁ ନୀହାରବାଳା ବାହାରି ଧୀର ପଦକ୍ଷେପରେ ଆଗେଇ ଗଲେ । ଯେପରି ସେ କିଛି ଜାଣନ୍ତି ନାହିଁ ।

ଅମରବାବୁ ନୀହାରବାଳାଙ୍କ ଉପରୁ ଆଖି ଫେରାଇ ଆଣିଲା ବେଳକୁ ହୋଟେଲ ମ୍ୟାନେଜର ଆଗରେ ଛିଡ଼ା ହୋଇଛନ୍ତି । ପଚାରିଲେ : ଏ ଭଦ୍ରମହିଳା ଜଣକ କିଏ ?

ମ୍ୟାନେଜର କହିଲେ  ତାଙ୍କ ନାମ ନୀହାରବାଳା, ସେ ଜଣେ ସୁଗାୟିକା । ଆମର ଏ ଉତ୍ସବରେ ଯୋଗଦାନ କରିବା ପାଇଁ ଆମେ ତାଙ୍କୁ ନିମନ୍ତ୍ରଣ କରିଥିଲୁ । ସେ ଏଇ କଟକରେ କେଉଁଠି ତାଙ୍କର ଜଣେ ବନ୍ଧୁଙ୍କ ଘରେ ଅଛନ୍ତି ।

ନୀହାରବାଳା ଏଥର ଟ୍ୟାକ୍ସି ଖଣ୍ଡେ ଧରିବାକୁ ବାଧ୍ୟ ହେଲେ । କାରଣ ସମୟ ଗଡ଼ି ଯାଉଥିଲା ।

ଟ୍ୟାକ୍ସି ନିର୍ଦ୍ଦିଷ୍ଟ ସ୍ଥାନରେ ନୀହାରବାଳାଙ୍କୁ ପହୁଞ୍ଚାଇ ଦେଲା । ନୀହାରବାଳା କବାଟରେ ହାତ ମାରିଲେ, କବାଟ ଧୀରେ ଧୀରେ ଖୋଲିଗଲା । ଦ୍ୱାରରକ୍ଷୀ ନୀହାରବାଳାଙ୍କ ହସ୍ତରୁ ସଂଘର ସଙ୍କେତ ଦେଖି ବାଟ ଛାଡ଼ିଦେଲା ।

ରଣଜିତ୍‌ବାବୁ ଛଦ୍ମ ଆବରଣରୁ ମୁକୁଳି ସବୁଦିନିଆ ପୋଷାକରେ ନୀହାରବାଳାଙ୍କ ପଥ ଚାହିଁ ବସିଥିଲେ । ନୀହାରବାଳାଙ୍କ ମୁହଁରେ ହସ ଦେଖି ତାଙ୍କ ପିଣ୍ଡରେ ପ୍ରାଣ ପଶିଲା ।

ନୀହାରବାଳା କହିଲେ  ଧନ୍ୟ କହିବି ଆପଣଙ୍କୁ । କାହିଁ ନିଶଦାଢ଼ୀଯୁକ୍ତ ପେସଓ୍ୱାରୀ ମୁସଲମାନ ମିଃ ହୋସେନ, ଆଉ କାହିଁ ନିଶଦାଢ଼ୀବିହୀନ ରଣଜିତ୍ ବାବୁ ! ସତେ ଆପଣଙ୍କ ଛଦ୍ମବେଶ ସଜ୍ଜାରେ କି ଯେ ଗଭୀର ଜ୍ଞାନ ଅଛି, ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ।

ରଣଜିତ୍‌ବାବୁ କହିଲେ  ସେ ସବୁ ବାଜେ କଥା ପରେ । ଆଗ କୁହ ତମ

ଭ୍ୟାନିଟି ବ୍ୟାଗଟିକୁ ନିରାପଦରେ ଉଦ୍ଧାର କରିଛ ତ ? ସେଠି ଆଉ କୌଣସି ନିଆଁ ଧୂଆଁ ଉଠି ନାହିଁ ତ ।

ନୀହାରବାଳା କହିଲେ ବ୍ୟାଗଟି ନିରାପଦରେ ଉଦ୍ଧାର କରିଛି ସତ, ମାତ୍ର ଘଟଣାଟାକୁ ସେମାନେ ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି । ବର୍ତ୍ତମାନ ପୋଲିସ ଇନିସ୍ପେକ୍ଟର ଓ ଗୁଇନ୍ଦା ଅମର ବାବୁ ସେଇ ସମ୍ବନ୍ଧରେ କଥାବାର୍ତ୍ତା ହେଉଥିଲେ । ଅମରବାବୁଙ୍କର ସନ୍ଦେହ ଯେ ଯା ପଛପଟରେ ଏକ ଗୁପ୍ତ ଷଡ଼ଯନ୍ତ୍ର ହୋଇଛି । ନନ୍ଦଲାଲବାବୁଙ୍କୁ ସର୍ପ ଦଂଶିବାର କୌଣସି ପ୍ରମାଣ ଡାକ୍ତର ପାଇ ନାହାନ୍ତି । ସେ ମଲାସାପଟାକୁ ହୋଟେଲରୁ ମଗେଇ ନେଇଛନ୍ତି ।

ରଣଜିତ୍‌ବାବୁ ଟିକିଏ ଶଙ୍କିଗଲେ । ତାଙ୍କ ଆଖି ଆଗରେ ନିରାଶାର ଝଞ୍ଜା ବଉଦ ଭାସିଗଲା । ସେ ଡାହାଣ ହାତର ବୁଢ଼ା ଆଙ୍ଗୁଠିଟାକୁ ଦାନ୍ତରେ କାମୁଡ଼ି କହିଲେ ଅତି ଚାଲାଖ ହେବା ମଧ୍ୟ ମହାବିପଦ । ଏଇ ଟିକକ ଭୁଲରେ ହୁଏତ ଆମର ସମସ୍ତ ଫନ୍ଦି ପାଣିଫୋଟକା ପରି ମିଳେଇଯିବ ।

ନୀହାରବାଳାଙ୍କ ମୁହଁରେ ନିରାଶାର ଚିହ୍ନ ଦେଖାଦେଲା । ସେ ପଚାରିଲେ : ଆମର ଆଉ ଭୁଲ ରହିଲା କେଉଁଠି ।

ରଣଜିତ୍‌ବାବୁ ନୀହାରବାଳାଙ୍କର ପ୍ରଶ୍ନର କୌଣସି ଉତ୍ତର ନ ଦେଇ ଡାକିଲେ ରକ୍ତମେଘ ! ରକ୍ତଦୂତ !

ଦୁଇଜଣ ଭୀଷଣକାୟ ଛଦ୍ମ ଆବରଣଧାରୀ ଯୁବକ ଆସି ରଣଜିତ୍‌ବାବୁଙ୍କ ଆଗରେ ଛିଡ଼ା ହେଲେ । ରଣଜିତ୍‌ବାବୁ ସେମାନଙ୍କୁ କହିଲେ, ତୁମେ ଦୁହେଁ ଯାଅ, ଗୁଇନ୍ଦା ଅମରବାବୁଙ୍କ ଲୋକ ସେ ମଲାସାପଟା ଡାକ୍ତରଙ୍କଠାରୁ ଘେନି ଯାଉଛି । ବୋଧହୁଏ ପହଞ୍ଚି ସାରି ନଥିବ । ମଝି ପଥରୁ ଯେପରି ହେଉ ତା ଠାରୁ ସେ ସାପଟାକୁ ଛଡ଼େଇ ଆଣିବାକୁ ହେବ ।

ରକ୍ତମେଘ ଓ ରକ୍ତଦୂତ ଦୁହେଁ ତୀରବେଗରେ ଘରୁ ବାହାରି ଗଲେ । ନୀହାରବାଳା ପଚାରିଲେ : କ'ଣ ଏମିତି ସେମାନେ ମଲାସାପଟାରୁ ପାଇ ଥାଆନ୍ତେ ? ଆପଣ ବରଂ ସେମାନଙ୍କ ସନ୍ଦେହ ଆହୁରି ବଢ଼ାଇ ଦେଉଛନ୍ତି ମଲା ସାପଟାକୁ ଛଡ଼େଇ ଆଣି ।

ରଣଜିତ୍‌ବାବୁ କହିଲେ ତୁମେ ବୁଝିନାହଁ ନୀହାର, ସେ ସାପଟା ଡାକ୍ତରଙ୍କ ହାତରେ ପଡ଼ିଲେ ସେ ପରୀକ୍ଷା କରି ଦେଖିବେ ଯେ ସାପର ବିଷଦାନ୍ତ ଯୋଡ଼ିକ ଝଡ଼ା ହୋଇଛି । ସେଥିରୁ ସ୍ପଷ୍ଟ ବୁଝାପଡ଼ିବ, ସାପଟାକୁ ନାମକୁ ମାତ୍ର ସେଠାରେ ଛଡ଼ା ଯାଇଥିଲା । ସେଇଠୁ ଗୁଇନ୍ଦା ବିଭାଗ ତଲାସ କରିବ ସାପଟା କେମିତି କେଉଁଠୁ ଅଣାଯାଇଥିଲା । ସାପୁଆ କେଳାଙ୍କ ପାଖରେ ସେମାନେ ଯାଇ ପହଞ୍ଚିବେ । ସାପୁଆ କେଳା ସାପଟାକୁ ଚିହ୍ନିବ, ସେ ଆମ ଘର ଠିକଣା ତାଙ୍କୁ ବତାଇ ଦେବ । ଫଳରେ ସବୁ ରହସ୍ୟ ପଦାରେ ପଡ଼ିଯିବ ଓ ଆମ ଉଦ୍ଦେଶ୍ୟ ସାଧନ ହୋଇପାରିବ ନାହିଁ ।

ନୀହାରବାଳା ଆଉ କ'ଣ କହିବାକୁ ଯାଉଥିଲେ । ହଠାତ୍ ଘରର ସତର୍କ ଘଣ୍ଟିଟା ବାଜିଉଠିଲା । ସେ ପାର୍ଶ୍ୱକୋଠରିରେ ଆତ୍ମଗୋପନ କଲେ । ରଣଜିତ୍‌ବାବୁ ଟେବୁଲ ଲ୍ୟାମ୍ପଟା ଜାଳି ବନ୍ୟା ବିପନ୍ନକାରୀମାନଙ୍କ ପାଇଁ ଆଦାୟ କରିଥିବା ମୁଣ୍ଡା ଚେକଗୁଡ଼ାକ ହିସାବ କରିବସିଲେ ।

ଅମରବାବୁ ଭିତରକୁ ଆସୁ, ଆସୁ କହିଲେ ବୁଝିଲନା ରଣଜିତ୍‌ବାବୁ ! ଆଜି ଇନ୍ଦ୍ରଭୁବନରେ ଏକ ଅଭୂତପୂର୍ବ ଘଟଣା ଘଟିଯାଇଛି । ଯାହା ଶୁଣିଲେ ଆପଣ ହତଭମ୍ଭ ହୋଇ ବସି ରହିବେ ।

ରଣଜିତ୍‌ବାବୁ ମୁଣ୍ଡା ଚେକଗୁଡ଼ାକ ଉପରୁ ଆଖି ଉଠାଇ ଶଙ୍କିତ ନୟନରେ ପଚାରିଲେ କ'ଣ ହୋଇଛି ?

ଅମରବାବୁ ଜଳନ୍ତା ସିଗାରେଟରେ ଆଉ ଟାଣେ ମାରି କହିଲେ : ଆଜିକାଲିର ଲୋକେ ଏଡ଼େ ଚତୁର ହୋଇଉଠିଲେଣି ଯେ ଆଉ କୁହନ୍ତୁ ନାହିଁ । ଏକ ସମୟରେ ଆମେ ଗୁଇନ୍ଦା ବିଭାଗଟା ଭାବୁଥିଲୁ, ଆମେହିଁ ଦୁନିଆରେ ସବୁଠୁଁ ବେଶୀ ଚତୁର । କିନ୍ତୁ ଚକ ଘୂରିଗଲାଣି, ଆଜିକାଲି ଦୁନିଆରେ ଏପରି ଚତୁର ଲୋକଙ୍କର ଜନ୍ମ ହେଲାଣି, ଯେଉଁମାନେ କି ଆମ ଆଖିରେ ଧୂଳି ପକାଇଦେଇ ଚମ୍ପଟ ଛୁ ମାରୁଛନ୍ତି ।

ରଣଜିତ୍‌ବାବୁ କାନ ଛିଡ଼ା କରି, ଆଖିରେ ଚଞ୍ଚଳତାର ଭାବ ଫୁଟାଇ ଅମରବାବୁଙ୍କ କଥା ଶୁଣୁଥିଲେ ।

ଅମରବାବୁ ହଠାତ୍ କଥାର ଖିଅ ମୋଡ଼ି ପଚାରି ବସିଲେ : ଆଚ୍ଛା ରଣଜିତ୍‌ବାବୁ । ଆପଣ କୁମାରୀ ନୀହାରବାଳାଙ୍କୁ ଚିହ୍ନିଛନ୍ତି ?

ରଣଜିତ୍‌ବାବୁ ସନ୍ଦିଗ୍ଧ ନୟନରେ ଅମରବାବୁଙ୍କୁ ଚାହିଁ କହିଲେ କୁମାରୀ ନୀହାରବାଳା ? ସେ କେଉଁଠି ଥାଆନ୍ତି ? ତାଙ୍କ ଘର କେଉଁଠି ।

ଅମରବାବୁ କହିଲେ ଇନ୍ଦ୍ରଭୁବନର ମ୍ୟାନେଜରଙ୍କ ଠାରୁ ଶୁଣିଲି ସେ କୁଆଡ଼େ ଜଣେ ଭଲ ଗାୟିକା । ଏଇ କଟକର କେଉଁଠି ତାଙ୍କର ଜଣେ ବନ୍ଧୁଙ୍କ ଘରେ ଅଛନ୍ତି । ତାଙ୍କୁ ମୁଁ ଏଇ ଆଠଟାରେ ଇନ୍ଦ୍ରଭୁବନରେ ଭେଟିଥିଲି, କିନ୍ତୁ ଦୁଃଖର କଥା ସେ ଚାଲିଗଲେ । ତାଙ୍କୁ କେତୋଟି ପ୍ରଶ୍ନ ପଚାରିବାର ଥିଲା । ପରେ ସେ ସବୁ ଭାବିଲି ଯେ, ସେତେବେଳକୁ ନୀହାରବାଳା ନଥିଲେ ।

ରଣଜିତ୍‌ବାବୁ କହିଲେ : ମୁଁ ତାଙ୍କୁ ଚିହ୍ନି ନାହିଁ । ଅଥବା ତାଙ୍କ ନାମ ମଧ୍ୟ ଶୁଣିନାହିଁ । ହଁ ଅମରବାବୁ ! ଇନ୍ଦ୍ରଭୁବନରେ କି ଅଭୂତପୂର୍ବ ଘଟଣା ଘଟିଛି କହିଲେ ନାହିଁ ତ !

ଅମରବାବୁ କହିଲେ ନନ୍ଦଲାଲବାବୁଙ୍କୁ ଜାଣିଥିବେ । ଇନ୍ଦ୍ରଭୁବନର ଦ୍ୱିତୀୟ ବାର୍ଷିକ ଅଧିବେଶନ ନିମିତ୍ତ ସେ ସେଠାକୁ ପ୍ରଧାନ ଅତିଥି ରୂପେ ନିମନ୍ତ୍ରିତ ହୋଇ ଯାଇଥିଲେ । ତାଙ୍କୁ ବେହୋସ କରାହୋଇଛି । ସାପକାମୁଡ଼ାର ଛଳନା ମଧ୍ୟ କରାଯାଇଛି । ଆମୋଦାଗାର ଭିତରେ ଯେ ଏପରି ଗୋଟାଏ କୁଚକ୍ର ରଚନା କରାଯାଇଥିଲା, ବିଶ୍ୱାସ କରିହେବ ନାହିଁ ରଣଜିତ୍‌ବାବୁ !

ହୋଟେଲ ମ୍ୟାନେଜର କହୁଛନ୍ତି, ନନ୍ଦଲାଲବାବୁଙ୍କ ନିକଟରେ ଜଣେ ପେସୱ୍ୱାରୀ ମୁସଲମାନ ବସିଥିଲେ । ସେ କୁଆଡ଼େ ନୀହାରବାଳାଙ୍କ ବନ୍ଧୁ । ମୋର କାହିଁକି ତାଙ୍କୁ ହିଁ ସନ୍ଦେହ ହେଉଛି । ନୀହାରବାଳାଙ୍କ ଠିକଣା ଆପଣଙ୍କ ଠାରୁ ମିଳିବ ବୋଲି ମୁଁ ଆଶା କରିଥିଲି । କାରଣ ଆପଣଙ୍କ ସଙ୍ଘ ସହିତ ବହୁ ନୃତ୍ୟ-ଗୀତକାରିଣୀମାନଙ୍କର ସମ୍ବନ୍ଧ । ଦେଶର ବିପନ୍ନମାନଙ୍କ ସାହାଯ୍ୟ କଳ୍ପେ ଆପଣଙ୍କ ସଙ୍ଘ ପ୍ରାୟ ମଝିରେ ମଝିରେ ଭେରାଇଟି ସୋ'ମାନ ଦେଖାଇ ଥାଆନ୍ତି । ତେଣୁ ମୋର ଧାରଣା ଜନ୍ମିଥିଲା ଆପଣ ବୋଧହୁଏ ନୀହାରବାଳାଙ୍କ ଠିକଣା ଜାଣିଥିବେ ।

ରଣଜିତ୍‌ବାବୁ ମୁହଁରେ କୃତ୍ରିମ ବିଷାଦ ଫୁଟାଇ କହିଲେ  ମୁଁ ବଡ଼ ଦୁଃଖିତ ଅମରବାବୁ, ଆପଣଙ୍କୁ କୌଣସି ସାହାଯ୍ୟ କରିପାରିଲି ନାହିଁ ।

: ମୋର କ'ଣ ସନ୍ଦେହ ଜାଣନ୍ତି ରଣଜିତ୍‌ବାବୁ ! ସହରରେ ଯେଉଁ ନବାଗତ ଡକାୟତ ଦଳଟି ପ୍ରବେଶ କରିଛନ୍ତି, ମୋର ଧାରଣା ଏଇ ଅଘଟଣ ସେଇମାନଙ୍କ ଦ୍ୱାରା ଘଟିଛି । ଆପଣ ବୋଧହୁଏ ଖବର କାଗଜରୁ ପଢୁଥିବେ ମାସ ଗୋଟାକ ଭିତରେ ସହରରୁ ପ୍ରାୟ ପାଞ୍ଚଲକ୍ଷ ପର୍ଯ୍ୟନ୍ତ ଟଙ୍କାର ସମ୍ପତ୍ତି ପବନ ସହିତ ମିଶିଗଲାଣି । ଚୋର କିଏ, ଧନ ଯାଉଛି କେଉଁଆଡ଼େ, ତାର ଗନ୍ଧ ବାସନା ମିଳୁ ନାହିଁ । ତା'ଛଡ଼ା ତିନି ଚାରୋଟି କୁମାରୀଙ୍କର ହରଣଚାଲ ସମ୍ବାଦ ମଧ୍ୟ ତା' ସହିତ ଜଡ଼ିତ । ମୋର ଅନୁମାନ ନନ୍ଦଲାଲବାବୁଙ୍କ ଘଟଣା ସହିତ ସେଇମାନେ ସଂପୃକ୍ତ । ତେବେ ବୁଝି ହେଉ ନାହିଁ ନନ୍ଦଲାଲବାବୁଙ୍କର ଅନ୍ୟ କୌଣସି ଅନିଷ୍ଟ ନ କରି କେବଳ କାହିଁକି ତାଙ୍କୁ ବେହୋସ କରାଯାଇଥିଲା । ଯା' ହେଉ ମୁଁ ଆଜି ଯାଉଛି । ରାତି ଅନେକ ହେଲାଣି । ଆଉ ଦଶଟା ସୁଦ୍ଧା ନନ୍ଦଲାଲବାବୁଙ୍କର ଚେତା ଫେରିଆସିବ ବୋଲି ଡାକ୍ତରବାବୁ କହୁଥିଲେ, ଦଶଟା ଦଶ ହେଲାଣି । ଆଉ କୋଡ଼ିଏ ମିନିଟ୍ ପରେ ସମସ୍ତ ରହସ୍ୟ ପଦାରେ ପଡ଼ିଯିବ ।

ଅମରବାବୁ ଉଠିଲେ, ଯିବା ପୂର୍ବରୁ କହିଗଲେ  ହଁ ରଣଜିତ୍‌ବାବୁ ! ଯଦି ନୀହାରବାଳାଙ୍କର କୌଣସି ଖବର ପାଆନ୍ତି, ତେବେ ଆପଣ ମୋତେ ସେଇଟା ଟେଲିଫୋନ ଜରିଆରେ ଜଣାଇ ଦେବେ । ମୋର ବିଶେଷ ଅନୁରୋଧ ରହିଲା ।

ଅମରବାବୁ ଚାଲିଗଲେ । ପାଖ ଘରୁ ହସି ହସି ବାହାରି ଆସିଲେ ନୀହାରବାଳା  ସବୁ ଶୁଣିଛି ରଣଜିତ୍‌ବାବୁ ! ନିହାତି ବୋକା ଏ ଅମରବାବୁ ଜଣକ । ମୋତେ ହାତମୁଠାରେ ପାଇ ଛାଡ଼ିଦେଇ ପୁଣି ଆସିଛନ୍ତି ମୋ ସନ୍ଧାନରେ । ଖୁବ୍ ଗୁଇନ୍ଦାଗିରି କରିଆସେ ତ ଅମରବାବୁଙ୍କୁ ।

ରଣଜିତ୍‌ବାବୁ କହିଲେ  ତୁମେ ତାଙ୍କୁ ଏଡ଼େ ବୋକା ବୁଝନାହିଁ ନୀହାର ! ସେ ଜଣେ ବଡ଼ ଚତୁର ଗୁଇନ୍ଦା ! ଆଉ ବଡ଼ ଜିଦ୍‌ଖୋର ମଧ୍ୟ । ଯେଉଁ କେସ୍ ପଛରେ ସେ ଲାଗିଥିବେ, ଭୋକଶୋଷ ଭୁଲି ସେ ତାର ରହସ୍ୟ ଉଦ୍‌ଘାଟନ କରିବେ, ତେବେ ଯାଇଁ ଛାଡ଼ିବେ ।

ରକ୍ତମେଘ ଓ ରକ୍ତଦୂତ କବାଟ ଆଢ଼େଇ ଭିତରକୁ ପଶିଲେ । ଦିହିଁଙ୍କ ମୁହଁରେ ପ୍ରଫୁଲ୍ଲତା ଫୁଟି ଦିଶୁଥିଲା ।

ରକ୍ତଦୂତ କହିଲା : ବେଶୀ କିଛି କଷ୍ଟ ସ୍ୱୀକାର କରିବାକୁ ପଡ଼ି ନାହିଁ ରଣଜିତ୍‌ବାବୁ ! ପୋଲିସ ଇନିସ୍‌ପେକ୍ଟରଙ୍କ ସଙ୍ଗରେ ହୋଟେଲର ଦରବାନଟା ସାପଟାକୁ ବାଡ଼ି ଖଣ୍ଡକରେ ଓହଳେଇ ନେଉଥିଲା । ମୁଁ ଜିପ୍ ଗାଡ଼ିଟା ତା'ରି ଉପରକୁ ମଡ଼ାଇ ଦେଲା ଭଳି ଚଳେଇ ନେଲି, ସେ ଟିକେ ଆଗକୁ ଦଉଡ଼ି ଗଲା । ସାପଟା ତା' ବାଡ଼ିରୁ ତଳକୁ ଗଳିପଡ଼ିଲା । ମୁଁ ସେ ସାପଟା ଉପରେ ଜିପ ମଡ଼ାଇ ଦେଲି, ସାପଟା ରାସ୍ତା ସଙ୍ଗରେ ମିହିନ୍ ହୋଇ ମିଶି ଯାଇଛି, କେହି ବୁଝିପାରି ନାହାନ୍ତି ଯେ ଏଇଭଳି ଗୋଟାଏ ଜାଣ ଭିଆଇବା ପାଇଁ ଦୁଇଜଣ ଲୋକ ପ୍ରସ୍ତୁତ ହୋଇ-ଆସିଥିଲେ ।

ରଣଜିତ୍‌ବାବୁ ଖୁସି ହେଲେ : ଭଲ ହୋଇଛି । ଆମକୁ ସେମାନଙ୍କର ସନ୍ଦେହ କରିବାର ମଧ୍ୟ କିଛି ରହିଲା ନାହିଁ ।

ରକ୍ତମେଘ ଓ ରକ୍ତଦୂତ ଆପଣା ଆପଣା କାର୍ଯ୍ୟରେ ବାହାରି ଗଲେ । ରଣଜିତ୍‌ବାବୁ ଟେବୁଲ ଡ୍ରୟାର ଭିତରୁ ଖଣ୍ଡେ ଖାତା ବାହାର କରି, ଟେବୁଲ ଉପରେ ପକାଇ ନୀହାରବାଳାଙ୍କୁ କହିଲେ, ଏଥର ବସ, ନିଜର କାମ କରିବା ।

ନୀହାରବାଳା ମୁହଁରେ ହସ ଫୁଟାଇ ରଣଜିତ୍‌ବାବୁଙ୍କ ସାମନା ଚେଆର ଉପରେ ବସିଲେ ।

ରଣଜିତ୍‌ବାବୁ କହିଲେ ଏଇ ଦେଖ ମାସକ ଭିତରେ ପାଞ୍ଚଲକ୍ଷ ଟଙ୍କାର ଜହରତ୍ ଲୁଟ୍ ହୋଇସାରିଲାଣି ।

୭ ତାରିଖ ଦିନ ମଦନଲାଲଙ୍କ ଗିନି ହାଉସରୁ ତିନିଲକ୍ଷ ଟଙ୍କାର ଜହରତ୍ ଗାଏବ ହୋଇଛି ।

୧୯ ତାରିଖରେ ମହମ୍ମଦ ରସୁଲ୍ଲାଙ୍କୁ ହତ୍ୟା କରାଯାଇ ତାଙ୍କ ଘରୁ ପ୍ରାୟ ଏକଲକ୍ଷ ଟଙ୍କାର ଗହଣା ଗାଣ୍ଠି ଓ ନଗଦ ଟଙ୍କା ଅପସାରଣ କରାଯାଇଛି ।

୨୨ ତାରିଖ ଦିନ ବିନୋଦବାବୁଙ୍କ ସୁନ୍ଦରୀ କନ୍ୟାକୁ ହରଣଚାଲ କରାଯାଇଛି ଓ ସେଇଦିନ ରାତି ତିନିଟାରେ ଶିବଶଙ୍କର ଜୁୟେଲାରୀ ଭଣ୍ଡାରରୁ ତିନିଲକ୍ଷ ଟଙ୍କାର ଜହରତ୍ ହାତ ପଇଠ କରାହୋଇଛି ।

୨୭ ଓ ୨୮ ତାରିଖ୍ ଦିନ ଗାର୍ଲସ କଲେଜ ହଷ୍ଟେଲରୁ ଦୁଇଜଣ ସୁନ୍ଦରୀ ରମଣୀଙ୍କୁ ଅପହରଣ କରାଯାଇଛି ।

ଏଥିପାଇଁ ଜାଣତ ସାରା ଓଡ଼ିଶା ଖଣ୍ଡଟାରେ କିପରି ଗୋଟାଏ ଚାଞ୍ଚଲ୍ୟର ଲହରୀ ଖେଳି ବୁଲୁଛି । ପୋଲିସ ବିଭାଗ ଓ ଗୁଇନ୍ଦା ବିଭାଗ ଓଡ଼ିଶାରେ ଭଲ କାମ କରୁଛନ୍ତି ବୋଲି ଯେଉଁ ସୁନାମ ଟିକକ ଅର୍ଜନ କରିଥିଲେ, ସେଥିରେ କାଳି ବୋଳା ସରିଲାଣି । ଏ ଦୁଇଟିଯାକ ବିଭାଗର ଅଫିସରମାନେ ନାକେଦମ୍ ହୋଇସାରିଲେଣି । ଆତତାୟୀମାନଙ୍କର ଧରାଛୁଆଁ ପର୍ଯ୍ୟନ୍ତ ମିଳୁ ନାହିଁ ।

ନୀହାରବାଳା ହସିଲେ । କହିଲେ ମୁଁ ଆପଣଙ୍କୁ ପୂର୍ବରୁ କହୁ ନଥିଲି ନା ? ଏମିତିଆ ବୋକା ଗୁଇନ୍ଦା ବିଭାଗ ଦ୍ୱାରା ଶାଗ ପର୍ଯ୍ୟନ୍ତ ସିଝିବ ନାହିଁ ।

ରଣଜିତ୍‌ବାବୁ କହିଲେ ଶାଗ ସିଝୁ ନ ସିଝୁ ସେ କଥା ଚିନ୍ତା କରିବାର କୌଣସି ଆବଶ୍ୟକତା ଆମର ନାହିଁ । ତେବେ ଆମ ଦେଶରେ ଏ ଯେଉଁ କଳାମେଘ ଖଣ୍ଡିକ ଉଠାଇଛି, ଏହା ବଡ଼ ଭୟଙ୍କରୀ । ଯେ କୌଣସି ପ୍ରକାରେ ଦେଶକୁ ଏ ପ୍ରବଳ ଅତ୍ୟାଚାରରୁ ରକ୍ଷା କରିବାକୁ ହେବ । ମୋର ବିଶ୍ୱାସ ଅଳ୍ପଦିନ ମଧ୍ୟରେ ଆକାଶରୁ କଳାମେଘ ଖଣ୍ଡିକ ଅପସରି ଯାଇପାରେ । ତେଣୁ ଆମକୁ ଖୁବ୍ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।

ନୀହାରବାଳା କହିଲେ ମେଘ ବର୍ଷଣର ପୂର୍ବାଭାସରୁ ଜଣାଯାଉଛି, ଆମେ ତ ବର୍ତ୍ତମାନ ପୋଲିସର ସନ୍ଦେହ ଚକ୍ଷୁରେ ପଡ଼ିଲେଣି । କିଏ କହିପାରେ କେଉଁଦିନ ସେମାନେ ଆମ ହାତରେ କଡ଼ି ପକାଇ ଜେଲ୍‌ଖାନାକୁ ପଠାଇ ନ ଦେବେ !! ଆଚ୍ଛା ସେକଥା ବର୍ତ୍ତମାନ ଛାଡ଼ନ୍ତୁ । କୁହନ୍ତୁ ତ ଘଡ଼ି ଭିତରୁ କୌଣସି ସାଙ୍କେତିକ ଆଭାସ ପାଇଲେ ?

ରଣଜିତ୍‌ବାବୁ କହିଲେ ଏପାଖ ସେପାଖ କରି ବହୁତ ଦେଖାଦେଖି କଲି । ଘଡ଼ି ପଛପଟର ଢାଙ୍କଣା କାଢ଼ି ମଧ୍ୟ ଦେଖିଲି, ମାତ୍ର ସେପରି କୌଣସି ସନ୍ଦେହୀ ଚିହ୍ନ ତ ଦେଖିଲି ନାହିଁ ।

ନୀହାରବାଳା ଘଡ଼ିଟି ଦେଖିବା ପାଇଁ ଆଗ୍ରହ ପ୍ରକାଶ କଲେ । ରଣଜିତ୍‌ବାବୁ ଲୁହା ବାକ୍‌ସରୁ ଘଡ଼ିଟି ବାହାର କରି ତା ପଛପଟ ଢାଙ୍କୁଣୀଟି ଛୁରିରେ କାଢ଼ିଦେବା ମାତ୍ରେ, ଘଡ଼ି ଭିତରୁ କିଏ କହିବାର ଶୁଣାଗଲା ...ହାଲୋ...ହାଲୋ...କାଳନେମି ? ..କାଳନେମି ??

ରଣଜିତ୍‌ବାବୁ ଇତଃସ୍ତତ ହୋଇପଡ଼ିଲେ । ତାଙ୍କୁ ଜଣାଗଲା, ଏ ଯେପରି କୁହୁକ ବିଦ୍ୟା । ନିମିଷେ ନୀରବ ରହି ଜବାବ ଦେଲେ, ହଁ ମୁଁ କାଳନେମି । ତୁମେ ?...

ମୁଁ କୃଷ୍ଣଛାୟା । ହଁ ବ୍ୟାପାର କ'ଣ କୁହ ତ ! ମଝିରେ ଦୁଇଦିନ ଢୁଳେଇ ପଡ଼ିଥିଲ ନା କ'ଣ ? ଯଥା ସମୟରେ ମୁଁ **ଡାକିଲେ ମଧ୍ୟ** ତୁମେ ଜବାବ ଦେଉ ନ ଥିଲ ? କାରଣ କ'ଣ ?

ରଣଜିତ୍‌ବାବୁ ଦଣ୍ଡେ ନୀରବ ରହିଲେ । ଦୁଇଟି ଦିନ ତା'ହେଲେ ଏ ଯନ୍ତ୍ରଟି ବ୍ୟବହାର ହୋଇନାହିଁ । କି ଜବାବ ଦେବେ... ।

ହାଲୋ... ହାଲୋ... କାଳନେମି ! ମଉନ ରହିଲ ଯେ !

ରଣଜିତ୍‌ବାବୁ କିଛି ଭାବି ନ ପାରି ଚଟାପଟ କହି ପକାଇଲେ, ବୁଝିଲନା କୃଷ୍ଣଛାୟା ! ଶୁଣିଲେ ତୁମେ ହସିବ । ସେଦିନ ଶୋଇଲାବେଳେ ଘଡ଼ିଟି ମୁଣ୍ଡତଳେ ରଖି ଶୋଇଥିଲି । ସକାଳୁ ଉଠିଲା ସମୟରେ ଆଉ ନେଇ ନ ଥିଲି । ଚାକରଟି

ପଲଙ୍କରୁ ଚାଦର ଉଠାଇ ନେଲାବେଳେ ଘଡ଼ିଟି ତା' ଭିତରେ ଭୁଲ୍‌ରେ ରହି ଯାଇଥିଲା । ସେ ଦୁଇଦିନ ଯେତେ ଖୋଜିଛି କହିବାର ନୁହେଁ । ଆଜି ସେଇ ଚାଦରଟି ଧୋବାଘରକୁ ଦେଲାବେଳେ ଘଡ଼ିଟି ଚାଦରରୁ ବାହାରିଲା ।

ଏତେ ଅସାବଧାନତା ସହ କାମ କଲେ ଚଳିବ ନା, ଆମ କାମଗୁଡ଼ିକ ଯେ ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ, ଏହା ଭାବୁଛଟି ?

ବେଶୀ କହି ଆଉ ଲଜ୍ଜା ଦିଅନା ।

: ହଁ ଶୁଣ କାଳନେମି ! ମୁଁ ବଙ୍ଗୋପସାଗର ଉପକୂଳରୁ କହୁଛି । ଆଜି ଯେଉଁ ଯୁବତୀଟିକୁ ପଠାଇ ଦେବାର ଥିଲା, ପଠାହୋଇ ପାରିନାହିଁ । ସେମାନଙ୍କର ଜାହାଜ ଏ ପର୍ଯ୍ୟନ୍ତ ଆସିନାହିଁ । ତୁମେ କୃତକାର୍ଯ୍ୟ ହୋଇଛ ତ ?

ପୁଣି ସେଇ ଗୋଲକଧନ୍ଦା । କେଉଁ ଯୁବତୀ କଥା ପଚାରୁଛି କୃଷ୍ଣଛାୟା ? ରଣଜିତ୍‌ବାବୁ ଭାବିପାରିଲେ ନାହିଁ । ଘଡ଼ି ଭିତରକୁ ପୁଣି ଶୁଭିଲା : ...ହାଲୋ ...ହାଲୋ କାଳନେମି ! ଶୁଭୁଛି ? ତୁମେ କୃତକାର୍ଯ୍ୟ ହୋଇନାହଁ ? ନାଟ୍ୟ ମଣ୍ଡପରୁ ନୀହାରବାଳାକୁ...

ରଣଜିତ୍‌ବାବୁଙ୍କ ମୁହଁ କଳା ପଡ଼ିଗଲା । ସେ କଥାଟାକୁ ବୋଧହୁଏ ହୃଦୟଙ୍ଗମ କରିନେଲେ । ଜବାବ ଦେଲେ : ଅଳ୍ପ ଟିକକରେ ସବୁ ବିଗିଡ଼ି ଯାଇଛି । ନୀହାରବାଳା ହାତମୁଠାରୁ ଖସିଯାଇଛି ।

· କି ଦୁଃଖ ସମ୍ବାଦ ଶୁଣାଉଛ କାଳନେମି ! କିନ୍ତୁ ମୁଁ ଯେ ତାଙ୍କୁ କଥା ଦେଇଛି ଦୁଇଦିନ ଭିତରେ ଦେବାକୁ । ଅଗ୍ରୀମ ସେ ଦଶହଜାର ଟଙ୍କା ପଠେଇ ଦେଇଛନ୍ତି । କଥା ରଖି ନ ପାରିଲେ...

...ଆହା ! ଦୁଃଖ କରିବାର କୌଣସି କାରଣ ନାହିଁ । ଆମର କଥା ଯାହା କାମ ସେଇଆ । ଆମ କଥାର ତ କେବେ ଖିଲାଫ ହୋଇ ନ ଥାଏ । ମୁଁ ଅନ୍ୟ ଉପାୟରେ ତା'ର ସମସ୍ତ ସୁବନ୍ଦୋବସ୍ତ କରୁଛି । ଆଜି ରାତିକ ଭିତରେ, ନତୁବା କାଲି ରାତି ଭିତରେ ନିଶ୍ଚୟ ସଫଳତା ଅର୍ଜନ କରିବି ।

ହଁ ଦେଖ । ଶେଷ ପର୍ଯ୍ୟନ୍ତ ଯେପରି କଥାର ଖିଲାଫ ନ ହୁଏ । ଜାଣ ତ, ଏ ଜଣେ ନୂଆ ଗ୍ରାହକ । ମସ୍ତବଡ଼ ଧନୀ । ତାଙ୍କଠାରୁ ଭବିଷ୍ୟତରେ ମୋଟା ଅଙ୍କ ଆଶା କରାଯାଏ । ବିଦେଶକୁ ସେ ବିଶେଷ ଭାବରେ ରପ୍ତାନି କରନ୍ତି । ସୁନ୍ଦରୀ ଯୁବତୀମାନଙ୍କ ପାଇଁ ଅକୁଣ୍ଠିତ ଚିତ୍ତରେ ଧନ ବ୍ୟୟ କରିପାରନ୍ତି ।

: ବେଶ୍, ତୁମେ ନିଶ୍ଚିନ୍ତ ରୁହ । ମୋ କାମ ମୁଁ ନିଶ୍ଚୟ ତୁଲେଇବି ।

ହଁ, ଆଜି ତ ସେ ଯୁବତୀକୁ ପଠାଇ ପାରିନାହଁ, ନା ? ତାଙ୍କୁ କେଉଁଠି ରଖିଛ ?

ସେ ଆମ ଅକ୍ତ୍ୟାରରେ । ହଲଚଲ ହେବାର ଶକ୍ତି ତା'ର ନାହିଁ ।

ତା'ହେଲେ ମୁଁ ନିଶ୍ଚିନ୍ତ ରହିଲି ।...

ଘଡ଼ି ନୀରବ ରହିଲା ।

ରଣଜିତ୍‌ବାବୁ ନୀହାରବାଳାଙ୍କ ମୁଖମଣ୍ଡଳକୁ ଚାହିଁଲେ । ରକ୍ତ ଶୁଖି ଯାଇଛି ତାଙ୍କ ମୁହଁରୁ । ରଣଜିତ୍‌ବାବୁ ଚାହିଁଥିଲେ ଆଉ ଭାବୁଥିଲେ ଆକାଶ ପାତାଳ । ହଠାତ୍ ତାଙ୍କ ଭାବନା ଥମିଗଲା । ସେ ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ ଶୁଣିଲ ନୀହାର ! ତମ ବିରୁଦ୍ଧରେ ଚକ୍ରାନ୍ତ ରଚନା କରାଯାଇଥିଲା । ହୁଏତ ଆମେ ସେମାନଙ୍କ ଚକ୍ରାନ୍ତଜାଲକୁ ଛିନ୍ନ କରି ନ ଥିଲେ, ତୁମେ ଆଜି ଆତତାୟୀମାନଙ୍କ ଶିକାର ହୋଇଥାଆନ୍ତ । କିନ୍ତୁ ଭଗବାନ ଯାହା କରନ୍ତି ମଙ୍ଗଳ ପାଇଁ ।

ନୀହାରବାଳାଙ୍କ ନାକରୁ ଖରନିଃଶ୍ୱାସ ବାହାରୁ ଥିଲା । ସେ ନିଜକୁ ଆପଣା ଅକ୍ତିୟାରକୁ ଆଣି କହିଲେ କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଛି ରଣଜିତ୍‌ବାବୁ, ଏ ଘଡ଼ିର କୌଶଳ ଦେଖି । ଏଡ଼େ ଟିକେ ବୋଲି ବସ୍ତୁ । ତହିଁରେ ପୁଣି...

ରଣଜିତ୍‌ବାବୁ ହସି ଉଠିଲେ ଏ ଯୁଗରେ ଆଶ୍ଚର୍ଯ୍ୟ ପଦାର୍ଥ କିଛି ନାହିଁ ନୀହାର । ବିଜ୍ଞାନ ଯେପରି ଭାବରେ ଆଗେଇ ଚାଲିଛି, ସେଥିରେ କୌଣସି କଥା ମଣିଷ ଅକ୍ତିୟାରର ବାହାରେ ବୋଲି କହିହେବ ନାହିଁ । ଏଡ଼େ ଟିକେ ଘଡ଼ିରେ ଯେ ଶୂନ୍ୟକୁହା ଯନ୍ତ୍ର ଖଞ୍ଜା ହୋଇ ଖବର ସରବରାହ କରାଯାଉଛି, ଏଥିରେ ମଧ୍ୟ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତେବେ ଆମର ଲାଭ ଭିତରେ ଏତିକି ହୋଇଛି, ଆମ ଓଡ଼ିଶା ଭିତରେ ଯେ ଗୋଟାଏ ଦୁର୍ଦ୍ଧାନ୍ତ, ପରାକ୍ରମଶାଳୀ ଆତତାୟୀ ଦଳ ଉତ୍ପାତ ଆରମ୍ଭ କରିଛନ୍ତି, ତା'ର ଖବର ଆମେ ଏ ଘଡ଼ିରୂପୀ ଶୂନ୍ୟକୁହା ଯନ୍ତ୍ରରୁ ଜାଣିପାରିଛନ୍ତି । ତା'ଛଡ଼ା ତୁମ ଚତୁଃପାର୍ଶ୍ୱରେ ବିପଦର ମାୟାଜାଲ ବିସ୍ତାର କରାହୋଇଛି । କେଉଁ ମୁହୂର୍ତ୍ତରେ ଯେ ତୁମେ ଛନ୍ଦିହୋଇ ପଡ଼ିବ, କହି ହେଉନି ।

ରଣଜିତ୍‌ବାବୁଙ୍କ ଶେଷ କଥା କେଇ ପଦରେ ଯଦିଓ ନୀହାରବାଳାଙ୍କ ଅନ୍ତର ଶୀତେଇ ଉଠିଲା ତଥାପି ସେ ମୁହଁରେ ଗମ୍ଭୀରତା ଫୁଟେଇ କହିଲେ ବିପଦ ସଙ୍ଗରେ ଲଢ଼ିବା ପାଇଁ ଆମେ ସେଦିନ ପ୍ରତିଜ୍ଞାବଦ୍ଧ ହୋଇ ଯେତେବେଳେ ଘରୁ ବାହାରି ଆସିଛନ୍ତି, ଏଇ ମୁହୂର୍ତ୍ତରେ ପଛକୁ ପାଦ ଫେରାଇଲେ ଆଉ ଚଳିବ ନା ! ସେ ଯା' ହେଉ ଆପଣ ଶୀଘ୍ର କାର୍ଯ୍ୟସୂଚୀ ରଚନା କରନ୍ତୁ ! ବିଳମ୍ବରେ ବିପଦର ପାଚିରି ଆମ ମୁଣ୍ଡ ଉପରେ ଭାଙ୍ଗି ପଡ଼ିପାରେ ।

ରଣଜିତ୍‌ବାବୁ ମୁହୂର୍ତ୍ତେ ଚିନ୍ତାକରି କହିଲେ ବେଶ୍ ! ତେବେ ବର୍ତ୍ତମାନ ତୁମର ପ୍ରଥମ କର୍ତ୍ତବ୍ୟ ହେବ ଆତ୍ମଗୋପନ । କାରଣ ଯେତେବେଳେ ନନ୍ଦଲାଲବାବୁ ଚେତା ପାଇବେ, ସେ ପ୍ରଥମେ ତାଙ୍କ ଘଡ଼ି ଖୋଜିବେ । ନ ପାଇଲେ ବିଚଳିତ ହୋଇପଡ଼ିବେ । ଗୁଇନ୍ଦା ବିଭାଗର ଲୋକେ ଏ ପର୍ଯ୍ୟନ୍ତ ଜାଣି ନାହାନ୍ତି ଯେ, ନନ୍ଦଲାଲବାବୁଙ୍କୁ କାହିଁକି ବେହୋସ କରାଯାଇଥିଲା । ସେମାନେ ଯେତେବେଳେ ବୁଝିବେ ଯେ ଘଡ଼ିଟିର ଅପସାରଣ ପାଇଁ ଏତେ କାଣ୍ଡ ଘଟିଛି, ତହୁଁ ସେମାନେ ଘଡ଼ିର ଅନୁସନ୍ଧାନରେ ବାହାରିବେ । ନନ୍ଦଲାଲବାବୁଙ୍କ ପାଖରେ ବସିଥିବା ପେସଓ୍ୱାରୀ

ଯୁବକ ମିଃ ହୋସେନଙ୍କ ପ୍ରତି ନିଶ୍ଚୟ ସନ୍ଦେହ ହେବ । ସେ ସେଇକଥା ଗୁଇନ୍ଦା ଆଗରେ ବ୍ୟକ୍ତ କରିବେ ଏବଂ ତା' ସଙ୍ଗେସଙ୍ଗେ କହିବେ ଯେ ପେସଓ୍ୱାରୀ ଯୁବକ ମିଃ ହୋସେନ ନୀହାରବାଳାଙ୍କର ଜଣେ ବନ୍ଧୁ । ସହଜେ ତ ସେମାନେ ଅଳ୍ପ ଅଳ୍ପ ସନ୍ଦେହ କରୁଛନ୍ତି । ଆହୁରି ସେମାନଙ୍କ ସନ୍ଦେହ ବଢ଼ିଯିବ । ତୁମକୁ ଖୋଜି ବାହାର କରିବା କାର୍ଯ୍ୟରେ ଲାଗିପଡ଼ିବେ । ତୁମେ ନିଶ୍ଚୟ ଗୁଇନ୍ଦାଙ୍କ ହାତରେ ଧରାପଡ଼ିବ । ପରିଶେଷରେ ହୁଏତ ସେମାନେ ତମ ମୁହଁରୁ ସବୁ ଖବର କୌଶଳକ୍ରମେ ଆଦାୟ କରିନେବେ । ସେଇଠୁ ଆମ ଉଦ୍ଦେଶ୍ୟ ସାଧନର ସୁଗମ ପଥ ପାଣିଫୋଟକା ପରି ମିଳେଇଯିବ । ଆମେ ହତାଶ ହେବା ।

ତା'ପରେ ଦ୍ୱିତୀୟ କଥା, ତୁମକୁ କାଳନେମି କୌଣସି ସୌଦାଗର ନିକଟରେ ବିକ୍ରି କରିଦେବା ପାଇଁ ଅଗ୍ରୀମ ଦଶହଜାର ଟଙ୍କା ଆଣିସାରିଛି । ସେମାନଙ୍କର ଚର ସୁବିଧା ଉଣ୍ଡି ତୁମକୁ ଝାଂପି ନେବା ଫିକରରେ ଘୂରି ବୁଲୁଥିବେ । ସୁବିଧା ପାଇଲେ ସେମାନେ ମଧ୍ୟ ତୁମକୁ ଘେନି ଯାଇପାରନ୍ତି । ବିପଦର ଘନ ଅନ୍ଧକାର ତୁମ ଚତୁଃପାର୍ଶ୍ୱରେ । ତା' ଭିତରେ ଆମ ବିଜୟ ଅଭିଯାନର ଦୁର୍ଦ୍ଦମନୀୟ ଆକାଂକ୍ଷା । ତେଣୁ ମୋ ମତରେ ତୁମେ କିଛିଦିନ ପାଇଁ ଆତ୍ମଗୋପନ କର । କେଉଁ ପାଣି କେଉଁ ଆଡ଼କୁ ବହିଯାଉଛି ଦେଖାଯାଉ, ତା'ପରେ ହୁଏତ...

ନୀହାରବାଳାଙ୍କ ମୁହଁରେ ଅଭିମାନର ଚିହ୍ନ ଫୁଟିଉଠିଲା । ସେ ରଣଜିତ୍‌ବାବୁଙ୍କ କଥା ଶେଷ ହେବାକୁ ନ ଦେଇ କହିଲେ : ମୁଁ ପଙ୍ଗୁ ସାଜି ଘରର ଅନ୍ଧାରୀ କୋଣରେ ସଢ଼ି ପାରିବି ନାହିଁ ରଣଜିତ୍‌ବାବୁ ! ମୁଁ ଆପଣଙ୍କ କଥାରେ ରାଜି ହେଉଛି, କିନ୍ତୁ ଗୋଟାଏ ସର୍ତ୍ତରେ ! ଆପଣ ଏପରି ଏକ କୌଶଳ ଉଦ୍ଭାବନ କରନ୍ତୁ, ଯା ଫଳରେ ମୁଁ ବାହାରେ ବିଚରଣ କରିପାରୁଥିବି ଏବଂ ତା' ସଙ୍ଗେସଙ୍ଗେ ମଧ୍ୟ ଆତ୍ମଗୋପନ କରିପାରିବି ।

ରଣଜିତ୍‌ବାବୁ ଗୋଲକଧନ୍ଦାରେ ପଡ଼ିଗଲେ । କୌଶଳୀ ମନ ତାଙ୍କର କେତେ ଫନ୍ଦି ଚିନ୍ତି ପକାଇଲା । କେତେକ ସମୟ ପରେ ସେ ଭ୍ରୂକୁଞ୍ଚନ କରି କହିଲେ : ଆଚ୍ଛା ନୀହାର ! ତୁମେ ହିନ୍ଦୀ କହିପାର ?

ନୀହାରବାଳା ମୁହଁରେ ସରସତା ଫୁଟାଇ କହିଲେ  ହଁ, ମୁଁ ଯେତେବେଳେ କଲିକତାରେ ବାପାଙ୍କ ପାଖରେ ଥିଲି, ସେତେବେଳେ ଆମର ପଡ଼ୋଶୀ ଥିଲେ ଏକ ଶିଖ୍ ପରିବାର । ସେମାନଙ୍କ ସହିତ ହିନ୍ଦୀ କହିବାରେ କିପରି ଗୋଟାଏ ପଞ୍ଜାବୀ ମିଶା ହିନ୍ଦୀ ମୋର ଅଭ୍ୟାସ ହୋଇଯାଇଛି । ତେବେ ଖାଣ୍ଟି ହିନ୍ଦୀ ମୁଁ କହିପାରେ ନାହିଁ ।

ରଣଜିତ୍‌ବାବୁ ଯେପରି ଆଲୋକ ପାଇଲେ । ତାଙ୍କ ମୁହଁରେ ହସ ଫୁଟିଉଠିଲା । ସେ କହିଲେ : ତା'ହେଲେ ଭଲ ହୋଇଛି, ତୁମପାଇଁ ଦୁଶ୍ଚିନ୍ତାରୁ ମତେ ରକ୍ଷା ମିଳିଲା । ଆଚ୍ଛା, ନୀହାର ! ତୁମର ଯେତେବେଳେ ଶିଖ୍ ପରିବାରଙ୍କ ସହିତ ଘନିଷ୍ଠତା ଥିଲା,

ତା ହେଲେ ତୁମେ ତ ସେମାନଙ୍କ ଚାଲିଚଳନ, ଭାବଭଙ୍ଗୀ ବେଶ୍ ଅନୁକରଣ କରିପାରିବ ?

ନୀହାରବାଳା କହିଲେ ଅବଶ୍ୟ କେତେଟା ପାରିବି । କିନ୍ତୁ ବର୍ତ୍ତମାନ ଯେ ପ୍ରସଙ୍ଗ କାହିଁକି ?

ରଣଜିତ୍‌ବାବୁ କ'ଣ କହିବାକୁ ଯାଉଥିଲେ । ହଠାତ୍ ପୁଣି ସତର୍କ ଘଣ୍ଟି ବାଜି ଉଠିଲା । ରଣଜିତ୍‌ବାବୁ ଘଡ଼ିଟାକୁ ମେଜ ଉପରୁ ଉଠାଇ ନେଇ ଡ୍ରୟାରରେ ବନ୍ଦ କଲେ । ନୀହାରବାଳା ଚଞ୍ଚଳ ପଦକ୍ଷେପରେ ସେଠାରୁ ଅପସରି ଗଲେ । ବନ୍ୟାବିପନ୍ନ ପାଣ୍ଠିର ମୁଣ୍ଡା ଚେକଗୁଡ଼ାକ ମେଜ ଉପରେ ଖେଳା ହୋଇପଡ଼ିଥିଲା । ରଣଜିତ୍ ବାବୁ ଫାଉଣ୍ଟେନଟା ଡାହାଣ ହାତରେ ଧରି, ମେଜ ଉପରେ ମୁଣ୍ଡ ରଖି ଶୋଇପଡ଼ିବାର ବାହାନା କଲେ । କ୍ରମଶଃ ଚାରି ଛ'ଟା ବୁଟ୍ ଯୋତାର ଭାରୀ ଶବ୍ଦ ଆଗକୁ ଆଗେଇ ଆସିଲା । ରଣଜିତ୍‌ବାବୁ କିଛି ନ ଜାଣିଥିବାର ଓ ନ ଶୁଣିବାର ବାହାନା କରି ଶୋଇରହିଲେ ।

ରଣଜିତ୍‌ବାବୁ ! ରଣଜିତ୍‌ବାବୁ !!

ଆଗନ୍ତୁକମାନଙ୍କ ଡାକରାରେ ରଣଜିତ୍‌ବାବୁ ଅଳସ ନୟନରେ ମୁଣ୍ଡଟେକି ଅନାଇଲେ । ହଠାତ୍ ଯେପରି, ସେ ଆଗନ୍ତୁକମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି । ନିଦ୍ରାଳୁ ଆଖି ଯୋଡ଼ିକରୁ ନିଦ ଦୂରକୁ ଘୁଞ୍ଚାଇ ଦେବାର ଚେଷ୍ଟା କରୁ କରୁ କହିଲେ, ଆପଣମାନେ—ଏପରି ଅସମୟରେ ଯେ ! ରାତି ଏଗାରଟା ବାଜିବାକୁ ଯାଉଛି, ବ୍ୟାପାର କ'ଣ ?

ରଣଜିତ୍‌ବାବୁ ଚାକର ଟୋକା ବଇଁଶିଆକୁ ଦୁଇ ତିନିଟା ଚେଆର ଆଣିବାକୁ ଡାକ ପକାଇଲେ ।

ବଇଁଶିଆ ନିଦମଳମଳ ଆଖିରେ ତିନିଖଣ୍ଡ ଚେଆର ଆଣି ଦେଇଗଲା । ପୋଲିସ ଇନିସ୍ପେକ୍ଟର ପ୍ରଫୁଲ୍ଲବାବୁ, ଗୁଇନ୍ଦା ଅମରବାବୁ, ଇନ୍ଦ୍ରଭୁବନ ମ୍ୟାନେଜର ପ୍ରହରାଜବାବୁ ଓ ନନ୍ଦଲାଲ ବାବୁ ମେଜ ଚାରିପାଖରେ ଚେଆର ଉପରେ ଉପବେଶନ କଲେ । ରଣଜିତ୍‌ବାବୁ ତରବରରେ ପାଖ ବାଥରୁମରୁ ମୁହଁଟା ଧୋଇ ପକାଇ ଆସି କହିଲେ, ହଠାତ୍ ଅସମୟରେ ମୁଁ କାହିଁକି ମନେପଡ଼ିଲି ଆପଣମାନଙ୍କର ?

ଅମରବାବୁ ଆରମ୍ଭ କଲେ ଯେଉଁ ଘଟଣା ମୁଁ ଆପଣଙ୍କ ଆଗରେ ଦୁଇ ଘଣ୍ଟା ପୂର୍ବରୁ କହୁଥିଲି, ସେଇ ସମ୍ବନ୍ଧରେ କେତେକ ତଥ୍ୟ ସଂଗ୍ରହ କରିବାକୁ ଆପଣଙ୍କଠାକୁ ଆସିଛି । ନନ୍ଦଲାଲବାବୁ କହୁଛନ୍ତି ଯେ ଇନ୍ଦ୍ରଭୁବନରେ ତାଙ୍କ ପାଖକୁ ଯେଉଁ ପେସୱାରୀ ମୁସଲମାନ ଜଣକ ବସିଥିଲେ, ତାଙ୍କର ସନ୍ଦେହ ସେ ନୃତ୍ୟ ଦେଖିବାରେ ମୁଗ୍ଧ ଥିବା ସମୟରେ ସେଇ ପେସୱାରୀ ତାଙ୍କ ନାକ ପାଖରେ କୌଣସି ଏକ ରାସାୟନିକ ପଦାର୍ଥ ଖୋଲି ଧରିଛନ୍ତି । ପ୍ରଥମେ ନନ୍ଦଲାଲବାବୁ କିଛି ବୁଝିପାରିଲେ ନାହିଁ, କିନ୍ତୁ ଯେତେବେଳେ ସେ ଗୋଟାଏ ଉତ୍କଟ ଗନ୍ଧ ବାରିଲେ,

ସେତେବେଳକୁ ତାଙ୍କ ସ୍ମରଣ ଶକ୍ତି ଲିଭି ଆସୁଥିଲା । ସେ ନିଶ୍ଚେଷ୍ଟ ହୋଇ ଚେଆର ଉପରେ ବସି ରହିଲେ । ସେଇ ଅବସରରେ ତାଙ୍କ ହାତରୁ ମୂଲ୍ୟବାନ ଘଡ଼ିଟି ଅପସାରଣ କରାହୋଇଛି ।

ମିଃ ହୋସେନ ନୀହାରବାଳାଙ୍କର ଚିହ୍ନାଲୋକ ବୋଲି ମୁଁ ଆଗରୁ କହିଥିଲି । ସାରା ସହରଟାର ପ୍ରଧାନ ପ୍ରଧାନ ସଙ୍ଗୀତ ଅନୁଷ୍ଠାନମାନଙ୍କରୁ ଖବର ନେଇ ଜାଣିଲୁ ଯେ, କେହି ତାଙ୍କୁ ଚିହ୍ନନ୍ତି ନାହିଁ । ହୋଟେଲ ମ୍ୟାନେଜର ପ୍ରହରାଜବାବୁ କହୁଛନ୍ତି ଆପଣଙ୍କ ପାଖକୁ ସେ ଯେତେବେଳେ ଓଡ଼ିଶାର ବିଶିଷ୍ଟ ସଙ୍ଗୀତଶିଳ୍ପୀମାନଙ୍କ ନାମ ତାଲିକା ନେବାକୁ ଆସିଥିଲେ, ଆପଣ ବହୁ ଭାବିଚିନ୍ତି ତାଙ୍କୁ ଗୋଟିଏ ତାଲିକା ଦେଇଥିଲେ । ଏଇ ଦେଖନ୍ତୁ, ସେଇଟିକୁ ମଧ୍ୟ ଆମେ ସଙ୍ଗରେ ଆଣିଛୁ ।

ଅମରବାବୁ ଖଣ୍ଡିଏ ଭାଙ୍ଗକରା କାଗଜ ରଣଜିତ୍‌ବାବୁଙ୍କ ଆଡ଼କୁ ବଢ଼ାଇ ଦେଇ କହିଲେ, ସେଇ ତାଲିକାରେ ନୀହାରବାଳାଙ୍କ ନାମ ଆପଣ ପ୍ରଥମେ ଉଲ୍ଲେଖ କରିଛନ୍ତି । ତେଣୁ ଆପଣ ନିଶ୍ଚୟ ତାଙ୍କୁ ଭଲ ଭାବରେ ଚିହ୍ନିଥିବେ ।

ରଣଜିତ୍‌ବାବୁ ତାଲିକା ଖଣ୍ଡିକୁ ନିଜ ହାତରେ ନେଇ ଦେଖିଲେ, ପ୍ରକୃତରେ ତାହା ତାଙ୍କରି ହାତଲେଖା ଓ ସେ ସେଖଣ୍ଡିକୁ ପ୍ରହରାଜବାବୁଙ୍କୁ ଦେଇଥିଲେ । ତହିଁରେ ନୀହାରବାଳାଙ୍କ ନାମ ଓ ମିଥ୍ୟା ଠିକଣାର ଉଲ୍ଲେଖ ଅଛି ।

ରଣଜିତ୍‌ବାବୁ ଅମର ବାବୁଙ୍କୁ କୌଣସି ଉତ୍ତର ନ ଦେଇ ଚେଆରରୁ ଉଠିଯାଇ ଆଲମିରାରୁ ଖଣ୍ଡିଏ ଫାଇଲ କାଢ଼ି ଆଣିଲେ । ତହିଁରେ ଛ'ମାସ ତଳେ 'ନବୀନ ଥିଏଟର୍ସ' ରଙ୍ଗମଞ୍ଚରେ ଦେଖାଇଥିବା ଅଭିନୟଟିର ଶିଳ୍ପୀମାନଙ୍କର ନାମ ଠିକଣା ଲେଖାଥିଲା । ତହିଁରୁ ମଧ୍ୟ ନୀହାରବାଳାଙ୍କ ନାମ ସେ ପାଇଲେ, ମୁହୂର୍ତ୍ତେ ଚିନ୍ତାକରି କହିଲେ : ବୁଝିଲେ ଅମରବାବୁ ! ମୁଁ ଆପଣଙ୍କ ସହିତ କୌଣସି ମିଥ୍ୟା ବ୍ୟବହାର କରି ନାହିଁ । ଦୁଇଘଣ୍ଟା ପୂର୍ବରୁ ଆପଣ ମୋତେ ନୀହାରବାଳାଙ୍କ କଥା ପଚାରିଥିଲେ, ମୁଁ ଚିହ୍ନିନି ବୋଲି ମନା କରିଥିଲି । ବର୍ତ୍ତମାନ ଆପଣ ଯେଉଁ ପ୍ରମାଣ ଘେନି ଆସିଛନ୍ତି, ତାହା ପ୍ରକୃତରେ ଅକାଟ୍ୟ । କିନ୍ତୁ ତଥାପି ମୁଁ କହୁଛି, ନୀହାରବାଳାଙ୍କ ସହିତ ମୋର କୌଣସି ଆଳାପ ନାହିଁ । ଏହି ଫାଇଲ ଖଣ୍ଡିକ ଦେଖିଲେ ଆପଣ ସକଳ କଥା ହୃଦୟଙ୍ଗମ କରିପାରିବେ । ନୀହାରବାଳା ଜଣେ ନବୀନା ଶିଳ୍ପୀ । ଏଇ ଦେଖନ୍ତୁ ଫାଇଲ ତାଲିକାରେ ତାଙ୍କ ନାମ ଠିକଣା ଅଛି । କେଉଁଠୁ ଓ କେଉଁ ସୂତ୍ରରୁ ସେ ସେଥର ଆମ ଭେରାଇଟି ସୋ'ରେ ଯୋଗ ଦେଇଥିଲେ, ସେ ସମ୍ବନ୍ଧରେ କୌଣସି ବିଶେଷ ବିବରଣୀ ମୋ ପାଖରେ ନାହିଁ । ମୋର ଗୋଟାଏ ଲକ୍ଷଣ କ'ଣ ଜାଣନ୍ତି ଅମର ବାବୁ ! ମୁଁ ନୂଆ ନୂଆ ଶିଳ୍ପୀମାନଙ୍କୁ ବିଶେଷ ଉତ୍ସାହ ଦେଇ ସେମାନଙ୍କୁ ଉନ୍ନତି ଦିଗରେ ଆଗେଇ ନେବା ନିମିତ୍ତ ଯଥାସାଧ୍ୟ ଚେଷ୍ଟା କରିଥାଏ । ତେଣୁ ଯେ ଯେଉଁ ସମୟରେ ମୋତେ ସଙ୍ଗୀତଶିଳ୍ପୀ ବା ନୃତ୍ୟଶିଳ୍ପୀମାନଙ୍କର ଠିକଣା ମାଗି ଥାଆନ୍ତି, ମୁଁ ତାଲିକା ଘାଣ୍ଟି ପ୍ରତିଥର ନୂଆ ନୂଆ ଶିଳ୍ପୀମାନଙ୍କର ନାମ ଠିକଣା

ସେମାନଙ୍କୁ ଦେଇଥାଏ ! ସେମାନଙ୍କୁ ଭଲକରି ନ ଚିହ୍ନିଥିଲେ ମଧ୍ୟ ବିଖ୍ୟାତ ଶିଳ୍ପୀ ବୋଲି କହିଥାଏ । ଏଇଟା ମୋର ବଦଭ୍ୟାସ କି ସଦଭ୍ୟାସ କହିପାରିବି ନାହିଁ । ଠିକ୍ ଏହାହିଁ ଘଟିଛି କୁମାରୀ ନୀହାରବାଳାଙ୍କ ସମ୍ବନ୍ଧରେ । ତେବେ ତାଙ୍କ ଘର ଠିକଣା ତ ଅଛି । ଆପଣ ଅନୁସନ୍ଧାନ କଲେ ଘରୁ ପାଇପାରିବେ । ସେ ତ ଆଉ ପବନ ସଙ୍ଗେ କେବେ ମିଶି ଯାଇନାହାନ୍ତି ।

ଅମରବାବୁ ମୁଣ୍ଡରେ ହାତ ଚଳାଉ ଚଳାଉ କେତେ କ'ଣ ଭାବି ଯାଉଥିଲେ । କହିଲେ ତା' ଠିକ୍ ଯେ ! ତେବେ ସେ'ତ ଆଉ କାଲି ରାତିରେ କଟକ ଛାଡ଼ି ଚାଲିଯାଇ ନାହାନ୍ତି । ସମୟ ଗଡ଼ିଗଲେ ହୁଏତ ସେ ପେସଓ୍ୱାରୀ ଭଦ୍ରଲୋକ ଜଣକ ହାତଛଡ଼ା ହୋଇଯାଇପାରନ୍ତି ।

ଘରେ ନୀରବତାର ରାଜତ୍ୱ ବିସ୍ତାର କରିଥିଲା । ସମସ୍ତେ ନିଜ ନିଜ ଚିନ୍ତାରେ ମଜ୍ଜିଗଲେ । ରଣଜିତ୍‌ବାବୁ ମୁଣ୍ଡିଚେକ ଗୁଡ଼ାକ ଟେବୁଲର ଗୋଟାଏ ପାଖକୁ ସଜାଇବାରେ ଲାଗିଲେ ।

ନନ୍ଦଲାଲବାବୁ ସେ ପ୍ରସଙ୍ଗରେ ପୂର୍ଣ୍ଣଚ୍ଛେଦ ପକାଇବାକୁ ଯାଇ କହିଲେ : ଆଚ୍ଛା ରଣଜିତ୍‌ବାବୁ ! ଆପଣଙ୍କର ବୋଧହୁଏ ବହୁ ନୃତ୍ୟ ଗୀତ ଜାଣିଥିବା ମହିଳାଙ୍କ ସହିତ ପରିଚୟ ଥିବ ?

ରଣଜିତ୍‌ବାବୁ ଅଧରରେ ସ୍ମିତହାସ୍ୟ ଫୁଟାଇ କହିଲେ, ଅବଶ୍ୟ କେତେକ ଅଛନ୍ତି ।

ନନ୍ଦଲାଲବାବୁ କହିଲେ ମୁଁ ଦୁଇ ମାସ ହେବ ଏକ ନୃତ୍ୟ ଓ ସଙ୍ଗୀତ ବିଦ୍ୟାଳୟ ଖୋଲିଚି । ସେ ସମ୍ବନ୍ଧରେ ଖବର କାଗଜରୁ ବୋଧହୁଏ ଜାଣିଥିବେ । ଓଡ଼ିଶୀ ନୃତ୍ୟକଳାର ପ୍ରସାର ପାଇଁ ଭାରତର ବିଭିନ୍ନ ସ୍ଥାନରୁ ମହିଳା ଅଣାଇ ଶିକ୍ଷା ଦେବାର ପରିକଳ୍ପନା କରୁଛି ଏବଂ ଓଡ଼ିଶାରୁ ମହିଳାମାନଙ୍କୁ ବିଦେଶ ପଠାଇ ଶିକ୍ଷାଦେବାର ଆକାଂକ୍ଷା ମଧ୍ୟ ମୋର ଅଛି । ଯଦି ପାରନ୍ତି ଆପଣ ବି କିଛି ଶିକ୍ଷାର୍ଥିନୀ ଯୋଗାଡ଼ କରାଇ ଦିଅନ୍ତୁ ନା ! ଆପଣ ତ ଜାଣନ୍ତି ଓଡ଼ିଶା ଭଳି ଏକ ଅନୁନ୍ନତ ପ୍ରଦେଶ ଆଡ଼କୁ କାହାରି ହେଲେ ଆଖି ନାହିଁ । ଆମେ ଯଦି ଆମ ନିଜ ଗୋଡ଼ରେ ଛିଡ଼ା ନ ହେବା, ତେବେ କିଏ ଆମକୁ ଛିଡ଼ା କରାଇବ ?

ରଣଜିତ୍‌ବାବୁ କହିଲେ : ହଁ ମୁଁ ଆପଣଙ୍କ ନୂତନ ଉଦ୍ୟମ 'ବାର୍ତ୍ତା' ଖବରକାଗଜ ଜରିଆରେ ପାଇଥିଲି । ବିଭିନ୍ନ କାଗଜମାନଙ୍କ ମନ୍ତବ୍ୟ ମଧ୍ୟ ମନଯୋଗ ସହକାରେ ପାଠ କରିଥିଲି । ବାସ୍ତବିକ ଆପଣଙ୍କର ଏ ଉଦ୍ୟମ ଯେ ପ୍ରଶଂସନୀୟ, ଏହା ଶତ୍ରୁ ମଧ୍ୟ ସ୍ୱୀକାର କରିବ । ହଁ, ଗତକାଲି ଗୋଟିଏ ଅସହାୟା ଶିଖିବାଳିକା ମୋ ନିକଟକୁ ସାହାଯ୍ୟ ନିମିତ୍ତ ଆସିଥିଲା । ବିଚାରୀ ବଡ଼ ଅକଳରେ ପଡ଼ିଚି, ନୃତ୍ୟ ଗୀତ ଶିଖିବା ଲାଳସା ତା'ର ଅଦମନୀୟ । ମୁଁ ଭାବିଥିଲି ଆପଣଙ୍କ ନିକଟକୁ ପଠାଇ ଦେବାପାଇଁ । ସୁଯୋଗ ଯେ ଆପଣଙ୍କ ସହିତ ଦୈବକ୍ରମେ ଭେଟ ହୋଇଗଲା ଓ

ଆପଣ ମଧ୍ୟ ଠିକ୍ ସେଇ ପ୍ରସଙ୍ଗ ଉଠାଇଲେ । କହିବେ ଯଦି ତା' ହାତରେ ଚିଠି ଖଣ୍ଡେ ଲେଖି ଆପଣଙ୍କ ପାଖକୁ ପଠାଇ ଦେବି ।

ନନ୍ଦଲାଲବାବୁ ଉତ୍ସାହିତ ହେଲାପରି କହିଲେ  ବେଶ୍, ଆପଣ ତାକୁ ମୋ ନିକଟକୁ ପଠାଇ ଦିଅନ୍ତୁ । ମୁଁ ତା'ର ସମସ୍ତ ସୁବ୍ୟବସ୍ଥା କରାଇ ଦେବି ।

ଅମରବାବୁ କହିଲେ  ସେ ପ୍ରସଙ୍ଗ କ୍ଷଣକାଳ ପାଇଁ ବନ୍ଦ କରନ୍ତୁ । ବର୍ତ୍ତମାନ ସମସ୍ୟାର ସମାଧାନ କିପରି ହେବ ସେ ଚିନ୍ତା କରୁଛନ୍ତି ଟି ?

ନନ୍ଦଲାଲବାବୁ ମୁହଁରେ ଖାମଖିୟାଲି ଭାବ ଫୁଟାଇ କହିଲେ,  ସେ ଚିନ୍ତା ଆଉ କ'ଣ କରିବି ଅମର ବାବୁ । ଟଙ୍କା ତିନିଶହର ଘଡ଼ିଟାଏ ପାଇଁ ଏତେ ମୁଣ୍ଡବ୍ୟଥା କରି କ'ଣ ମିଳିବ ? ମୁଁ ଆରୋଗ୍ୟ ଲଭିଛି, ଏହାହିଁ ଯଥେଷ୍ଟ । ଚାଲନ୍ତୁ ଫେରିଯିବା ।

ଅମରବାବୁ ପ୍ରତିବାଦ କଲେ : ଆପଣ ବୁଝିପାରୁ ନାହାନ୍ତି ନନ୍ଦଲାଲ ବାବୁ । ଆପଣଙ୍କ ସରଳ ମନ ଅଛି ଠଅର କରିପାରୁ ନାହିଁ । କିନ୍ତୁ ମୋର ଯେପରି ମନେ ହେଉଛି ଏଇ ଘଡ଼ିଟି ଆଢୁଆଳରେ ଆପଣଙ୍କ ବିରୁଦ୍ଧରେ ଏକ ଶକ୍ତ ଷଡ଼ଯନ୍ତ୍ର କରାଯାଉଛି । ଯା' ଫଳରେ...

ହଠାତ୍ ଆଉ ଏକ ବିସ୍ମୟକର ଘଟଣା ଘଟିଲା । ନନ୍ଦଲାଲବାବୁ ତାଙ୍କ ପକେଟରୁ ରୁମାଲଟା ପଦାକୁ ବାହାର କରୁ କରୁ ଖଣ୍ଡିଏ ନୀଳବର୍ଣ୍ଣର କାଗଜ ତଳେ ଖସିପଡ଼ିଲା । ସେଇଟିକୁ ଅମର ବାବୁ ତଳୁ ଗୋଟାଇ ଆଣି ଦେଖିଲେ, ତାହା ନନ୍ଦଲାଲବାବୁଙ୍କ ନାମାଙ୍କିତ ଖଣ୍ଡିଏ ପତ୍ର । ଖୋଲି ପଢ଼ିଲେ, ତହିଁରେ କେବଳ ଲେଖା ଅଛି, ''ସାଧୁ ! ସାବଧାନ !!''

କେହି କିଛି ବୁଝିପାରିଲେ ନାହିଁ । ସମସ୍ତେ ମୁହଁ ଚୁହାଁଚୁହିଁ ହେଲେ । ଏ ପୁଣି କି ନୂତନ ରହସ୍ୟ ?

ଅମରବାବୁ କହିଲେ  ଆପଣ ଯାହା କୁହନ୍ତୁ ନନ୍ଦଲାଲବାବୁ !! ମୋର ବିଶ୍ୱାସ ଆପଣଙ୍କ ପଛେ ପଛେ ସେଇ ଦୁର୍ଦ୍ଧାନ୍ତ ଦଳ ଲାଗି ପଡ଼ିଲେଣି । ତା'ଛଡ଼ା ମୋର ଅନୁମାନ ମିଃ ହୋସେନ ନୀହାରବାଳା ଦେବୀ ସେଇ ଦଳଭୁକ୍ତ । ତେଣୁ ଆମର ପ୍ରଥମ କର୍ତ୍ତବ୍ୟ ହେଉଛି ସେ ଦୁହିଁଙ୍କୁ ଖୋଜି ବାହାର କରିବା । ତା'ପରେ ଅନ୍ୟକଥା ।

ପୋଲିସ ଇନିସ୍ପେକ୍ଟର ପ୍ରଫୁଲ୍ଲବାବୁ ଚେୟାର ଛାଡ଼ିଲେ ! ତା'ପରେ ପରେ ଅମରବାବୁ, ନନ୍ଦଲାଲବାବୁ ଓ ପ୍ରହରାଜବାବୁ ମଧ୍ୟ ଚେଆର ଛାଡ଼ି ଉଠିଲେ । ରଣଜିତ୍‌ବାବୁ ସେମାନଙ୍କୁ ଫାଟକଯାଏ ଯାଇ ବାଟୋଇ ଦେଇ ଆସିବା ପୂର୍ବରୁ ଦରଦମିଶା ସ୍ୱରରେ କହିଲେ : ଆପଣମାନେ କ୍ଷମା କରିବେ । ମୁଁ ଆପଣମାନଙ୍କର କୌଣସି ଦରକାରରେ ଆସିପାରିଲି ନାହିଁ ।

ଅପେକ୍ଷାମାଣ ଗାଡ଼ିରେ ଚାରିହେଁ ଉଠିଲେ । ରଣଜିତ୍‌ବାବୁ ମୁହଁ ଉପରେ

ଏକ କୃତ୍ରିମ ହସ ଫୁଟାଇ ଘର ଭିତରକୁ ପଶି ଆସିଲେ । ନୀହାରବାଳା ହସର ଉଚ୍ଛୁଳା ସୁଅ ଛୁଟାଇ ରଣଜିତ୍‌ବାବୁଙ୍କୁ ସ୍ୱାଗତ ଜଣାଇଲେ ।

ରଣଜିତ୍‌ବାବୁ କହିଲେ  ତୁମକୁ ହିଁ କେନ୍ଦ୍ର କରି ଘଟଣା ଘନେଇ ଆସିଲାଣି । ରହସ୍ୟ ସମୁଦ୍ର ଭିତରକୁ ଗୋଡ଼ ବଢ଼େଇଛନ୍ତି ଯେତେବେଳେ, ଟିକେ ମଜା ନ ଉଠାଇଲେ ବି ଆନନ୍ଦ ଆସିବ ନାହିଁ ।

ନୀହାରବାଳା ଅଳସ ଚାହାଣିରେ ଚାହିଁ ପଚାରିଲେ  ଅର୍ଥାତ୍ ?

ରଣଜିତ୍‌ବାବୁ କହିଲେ  ମୁଁ ଯାହା କହୁଛି ତୁମେ ସ୍ଥିର ଚିତ୍ତରେ ବସି ଶୁଣ ।

ରକ୍ତମେଘ ? ରକ୍ତଦୂତ ??

ଯୁବକ ଦି'ଜଣ ଆସି ରଣଜିତ୍‌ବାବୁଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ରଣଜିତ୍‌ବାବୁ କହିଲେ  ଏଇ ମୁହୂର୍ତ୍ତରେ ଆମର କାର୍ଯ୍ୟସୂଚୀ କ'ଣ ମନଦେଇ ଶୁଣ ।

ସମସ୍ତେ ରଣଜିତ୍‌ବାବୁଙ୍କ ସମ୍ମୁଖ ଚେଆରରେ ବସି ତାଙ୍କର ପରାମର୍ଶ ଶୁଣିବାକୁ ଲାଗିଲେ ।

## ନୀହାରବାଳାଙ୍କୁ କିଏ ହରିଲା ?

ପୋଲିସ ଅଫିସର ପ୍ରଭୃତିଙ୍କୁ ବିଦାୟ ଦେଇ ପ୍ରହରାଜବାବୁ ଯେତେବେଳେ ଯାଇ ଇନ୍ଦ୍ରଭୁବନରେ ପହଞ୍ଚିଲେ, ସେତେବେଳକୁ ରାତି ସାଢ଼େ ବାରଟା । ମନ ତାଙ୍କର ବିଷାଦବୋଳା । କାହିଁରେ ମନ ଲାଗୁ ନଥାଏ । ଶ୍ରାନ୍ତ ଓ କ୍ଲାନ୍ତ ଦେହଟାକୁ ସେ ବିଛଣା ଉପରେ ଲଦି ଦେବାକୁ ଯାଉଛନ୍ତି, ଚାକର ଆସି ଖବର ଦେଲା ନୀହାରବାଳା ଡାକୁଛନ୍ତି ।

ପ୍ରହରାଜବାବୁ ହାଁକରି ଚାକର ଆଡ଼କୁ ଅନାଇ ରହିଲେ ଆରେ ସପନ ଫପନ ଦେଖୁ ନାହୁଁ ତ ?

ଚାକରଟି ବିନିୟମିଶା ସ୍ୱରରେ ଉତ୍ତର ଦେଲା : ନାହିଁ ଆଜ୍ଞା, ମୁଁ ତ ଏ'ଯାକେ ଶୋଇ ନାହିଁ, ସପନ ଦେଖିଲି କିପରି ?

ପ୍ରହରାଜବାବୁ ଟିକିଏ ବିରକ୍ତମିଶା ସ୍ୱରରେ କହିଲେ ତାଙ୍କୁ ଡାକି ଆଣେ ଏଠାକୁ ।

ଚାକରଟି ନୀରବରେ ଚାଲିଗଲା ।

ପ୍ରହରାଜବାବୁଙ୍କ ମୁଣ୍ଡରେ ଭାବନା ଭୂତ ଚାପି ବସିଲା । ଭଲ ଲୀଳା ତ ଲାଗିଛି ଏ । କି ଉତ୍ସବ କଲା ମଣିଷ ଯେ, ଧନ୍ଦିହୋଇ ମଲାଣି ଆସି ।

ନୀହାରବାଳା ପ୍ରହରାଜବାବୁଙ୍କ ସାମନାକୁ ଆଗେଇ ଆସି କହିଲେ, ଆଜି ରାତିଟା ମୁଁ ହୋଟେଲରେ ରହିବି, ଟିକେ ବ୍ୟବସ୍ଥା କରିଦିଅନ୍ତୁ ।

ପ୍ରହରାଜବାବୁ ମନର ସକଳ ଭାବ ଗୋପନ ରଖି ପଚାରିଲେ, କାହିଁକି ? ଆପଣ କ'ଣ ବନ୍ଧୁଙ୍କ ଘରକୁ ଗଲେ ନାହିଁକି ?

ନୀହାରବାଳା କହିଲେ : ମୋର ସେ ଯେଉଁ ପେସୱାରୀ ବନ୍ଧୁ ମିଃ ହୋସେନଙ୍କୁ ଆପଣ ଦେଖି ନଥିଲେ, ମୁଁ ଏବଂ ସେ ଏଠାରୁ ଯାଇ ଲାଷ୍ଟ ସୋ' ସିନେମାକୁ ଯାଇଥିଲୁ । ବାରଟା ବାଜି ଗଲାଣି ଆଉ ବନ୍ଧୁଙ୍କ ଘରକୁ ଯିବାଟା ସମୀଚୀନ ମଣୁ ନାହିଁ । ମୁଁ ଏଇଆଡ଼େ ରହିଲିଣି ଭାବି ସେମାନେ ଶୋଇ ସାରିବେଣି ।

ପ୍ରହରାଜବାବୁ ପଚାରିଲେ ଆପଣଙ୍କର ସେ ପେସୱାରୀ ବନ୍ଧୁ ଜଣକ କେଉଁଠି ରହିଲେ ?

ନୀହାରବାଳା ଉତ୍ତର ଦେଲେ ସେ ଯେଉଁ ହୋଟେଲରେ ଅଛନ୍ତି ସେଇ ହୋଟେଲକୁ ଗଲେ ।

ପ୍ରହରାଜବାବୁ ନୀହାରବାଳାଙ୍କୁ ରାତ୍ରି ଯାପନ ନିମିତ୍ତ ଗୋଟିଏ ପ୍ରକୋଷ୍ଠରେ ସୁବନ୍ଦୋବସ୍ତ କରାଇଦେଲେ ।

ଫେରିଆସି ସଙ୍ଗେ ସଙ୍ଗେ ଟେଲିଫୋନ ଉଠାଇ ଅମରବାବୁଙ୍କୁ ଖବର ଦେଲେ ନୀହାରବାଳା ଫେରି ଆସିଛନ୍ତି । ସେ ତାଙ୍କ ପେସୱାରୀ ବନ୍ଧୁଙ୍କ ସଙ୍ଗରେ ସିନେମା ଦେଖି ଯାଇଥିଲେ । ବର୍ତ୍ତମାନ ହୋଟେଲରେ ଅଛନ୍ତି ।

ଅମରବାବୁ ଉତ୍ତର ଦେଲେ  ମୁଁ ସଙ୍ଗେ ସଙ୍ଗେ ଯାଉଛି । ଖୁବ୍ ସୁବିଧା ହେବ ତାଙ୍କ ସଙ୍ଗରେ ଦେଖାହେଲେ । ହୁଏତ ସମସ୍ତ ରହସ୍ୟ ଉଦ୍‌ଘାଟିତ ହୋଇପାରିବ ଦଣ୍ଡକେ ।

କୋଡ଼ିଏ ମିନିଟ୍ ପରେ । କାର୍ ଖଣ୍ଡେ ଆସି ଇନ୍ଦ୍ରଭୁବନ ଫାଟକ ପାଖରେ ଲାଗିଲା । ପ୍ରହରାଜବାବୁ ତଳକୁ ଓହ୍ଲାଇ ଆସିଲେ ।

ଅମରବାବୁ କହିଲେ  ବଡ଼ ରହସ୍ୟଜଡ଼ିତ ଘଟଣା ଏ ପ୍ରହରାଜବାବୁ ! କିଛି ବୁଝି ହେଉ ନାହିଁ । ନୀହାରବାଳା ଫେରି ଆସିଛନ୍ତି । ତାଙ୍କ ପେସଓ୍ୱାରୀ ବନ୍ଧୁ ମିଃ ହୋସେନ ହୋଟେଲରେ ଅଛନ୍ତି । ଏଥିରୁ ଅନୁମିତ ହେଉଛି ଆମ ସନ୍ଦେହ ନିରର୍ଥକ । ଅର୍ଥାତ ସେମାନେ ନିର୍ଦ୍ଦୋଷ । କାରଣ ଦୋଷୀ କେବେ ଥରେ ହାତମୁଠାରୁ ଖସିଯାଇ ପୁଣି ଜାଣିଶୁଣି ବିପଦ ମଝିକୁ ଧାଇଁ ଆସେନା । ଆଗେ ନୀହାରବାଳାଙ୍କ ସହିତ ଦେଖାହେଉ, ତା'ପରେ ଯେଉଁ କଥା ।

ସେ ଧୀରେଧୀରେ ନୀହାରବାଳାଙ୍କ ପ୍ରକୋଷ୍ଠର ଦରଜା ଖୋଲିଲେ । ନୀହାରବାଳା ସେତେବେଳକୁ ତନ୍ମୟ ଚିତ୍ତରେ ଖଣ୍ଡେ ଚିଠି ଲେଖୁ ଥାଆନ୍ତି । ପ୍ରହରାଜବାବୁ ଓ ଅମର ବାବୁଙ୍କୁ ଦେଖି ସେ ଟିକିଏ ବିଚଳିତ ହୋଇପଡ଼ିଲେ । ପ୍ରହରାଜବାବୁ କହିଲେ  ଆପଣ କିଛି ମନେକରିବେ ନାହିଁ, ନୀହାରବାଳା ! ଅସମୟରେ ଆପଣଙ୍କୁ ବିରକ୍ତ କରିବାକୁ ପଡ଼ିଲା । ଏ ହେଉଛନ୍ତି ଅମର ବାବୁ । ଗୁଇନ୍ଦା । ଆପଣଙ୍କ ସହିତ କେତେକ ପରାମର୍ଶ କରିବାକୁ ଆସିଛନ୍ତି ।

ନୀହାରବାଳା ପ୍ରହରାଜଙ୍କ ଉପରୁ ଦୃଷ୍ଟି ଫେରାଇ ଆଣି ଅମରବାବୁଙ୍କ ଉପରେ ନିବଦ୍ଧ କଲେ । ମୁରୁକି ହସି କହିଲେ  କ'ଣ ପରାମର୍ଶ ଲୋଡ଼ିବାର ଅଛି, ବିନା ଆପତ୍ତିରେ ଲୋଡ଼ି ପାରନ୍ତି ।

ଅମରବାବୁ କହିଲେ : ନାଇଁ ସେପରି କିଛି ନୁହେଁ । ତେବେ ମୋର କେତୋଟି ପ୍ରଶ୍ନର ଉତ୍ତର ମୁଁ ଆପଣଙ୍କଠାରୁ ଚାହୁଁଚି । ଆଶା କରେ ମନରେ କିଛି ନ ଭାବି...

ନୀହାରବାଳା ଅମରବାବୁଙ୍କ ପାଟିରୁ କଥା ଛଡ଼େଇ ନେଇ କହିଲେ  ନାଇଁ ମନରେ ଭାବିବି କ'ଣ ! ଆପଣ କାଳ ବିଳମ୍ବ ନ କରି ପଚାରନ୍ତୁ ।

ଅମରବାବୁ ପଚାରିଲେ  ଆଚ୍ଛା ! ଆପଣଙ୍କ ସେ ପେସଓ୍ୱାରୀ ବନ୍ଧୁଜଣକ କେତେଦିନ ହେବ କଟକରେ ଅଛନ୍ତି ।

କାଲି ତ ମୋଟେ ଆସିଲେ ।

କି ଉଦ୍ଦେଶ୍ୟରେ ?

ଏମିତି ବୁଲିବାକୁ ।

କେତେ ଦିନ ଆଉ ରହିବେ ?

କହୁଥିଲେ ତ କାଲି ପୁରୀ ଯିବେ ବୋଲି ।

ତାଙ୍କ ସହିତ ମୋର ଆଳାପ କରାଇ ଦେଇପାରିବେ ? ପେସୱାର ଆଡ଼େ ଟିକେ ବୁଲି ଯିବାକୁ ଭାବୁଛି । ହୁଏତ ତାଙ୍କ ଜରିଆରେ ଅନେକଟା ସୁବିଧା ହୋଇପାରନ୍ତା ।

ନିଶ୍ଚୟ ! ନିଶ୍ଚୟ !! ସେ ଯେତେବେଳେ ପେସୱାରର ଲୋକ, ଆପଣଙ୍କୁ ତାଙ୍କ ମୂଳକରେ ଅନେକଟା ସହାୟତା କରିପାରିବେ । ମୁଁ ତାଙ୍କୁ କାଲି କହିବି । ଆପଣ ସକାଳେ ଆସନ୍ତୁ । ଏଇଠି ଚା' ପର୍ବଟା ଶେଷ କରିବା । ତାଙ୍କର ମଧ୍ୟ ସାତଟାରେ ଏଠାକୁ ଆସିବାର ଅଛି । ଏଇଠି କଥାବାର୍ତ୍ତା ହେବ ।

ବେଶ୍ ! ବେଶ୍ । ସେଇଆ ସବୁଠାରୁ ଭଲହେବ । ମୁଁ ତେବେ ଆଜି ଆସୁଛି । କ୍ଷମା କରିବେ । ଅସମୟରେ ଆପଣଙ୍କୁ ବଡ଼ ବିରକ୍ତ କଲି ।

ନୀହାରବାଳା ମୁଖମଣ୍ଡଳରେ ହସ ଖଣ୍ଡେ ଫୁଟାଇ କହିଲେ, ନାଇଁ ନାଇଁ, ସେମିତି କିଛି ବିରକ୍ତ ମୁଁ ବୋଧ କରି ନାହିଁ । ଆପଣ ତେବେ ଆସନ୍ତୁ । ନମସ୍କାର ।

ନମସ୍କାର ।

ନୀହାରବାଳା ଶୁଣିଲେ ମଟର ଖଣ୍ଡେ ହୋଟେଲ ପାଖରୁ ଛାଡ଼ି ଚାଲିଗଲା । ସେ ନିଶ୍ଚିନ୍ତରେ ଗୋଟାଏ ନିଃଶ୍ୱାସ ପକାଇ ଚିଠି ଲେଖାରେ ମନନିବେଶ କଲେ ।

ହୋଟେଲ ଘଡ଼ିରେ ରାତି ଦୁଇଟା ବାଜିଲା ।

ଚାରିଆଡ଼େ ନିଶୂନ୍ । ପ୍ରହରାଜବାବୁ ଦିନଯାକର କ୍ଳାନ୍ତି ଯୋଗୁଁ ଘୁମେଇ ପଡ଼ିଥିଲେ । ହଠାତ୍ ପିସ୍ତଲର ଆବାଜ ଶୁଣାଗଲା । ଝରକାର କାଚଗୁଡ଼ାକ ଝଣ୍‌ଝଣ୍ ହୋଇ ଝରି ପଡ଼ିବାର ଆବାଜ ହେଲା । ପ୍ରହରାଜ ବାବୁ ତନ୍ଦ୍ରାଜଡ଼ିତ ନୟନରେ ବତି ସୁଇଚରେ ହାତ ଦେଲେ । ଘରସାରା ଆଲୋକର ପ୍ଲାବନ ଖେଳିଗଲା । କିନ୍ତୁ କିଏ କାହିଁ କେଉଁଠି ? ପିସ୍ତଲର ଆବାଜ ଆସିଲା କେଉଁଆଡୁ ? ପ୍ରହରାଜବାବୁ ବିଛଣାରେ ବସି କାନ ଡେରିଲେ । ସ୍ୱପ୍ନ ଦେଖୁ ନାହାନ୍ତି ତ ଆଉ !!

ମୁହୂର୍ତ୍ତକ ପରେ । ନୀହାରବାଳାଙ୍କ ଶୟନକକ୍ଷ ଆଡୁ ଏକ କରୁଣ ସ୍ୱର ଭାସିଆସିଲା । ପ୍ରହରାଜବାବୁ ଆଗପଛ ନ ବିଚାରି ସେଇଆଡ଼କୁ ଧାଇଁଗଲେ । ଘୋର ଅନ୍ଧକାର । ସୁଇଚରେ ହାତ ମାରିଲେ । ଘରେ କେହି ନାହିଁ । ଗୋଟାଏ କଳାଛାୟା ଝରକା ଡେଇଁ ବାହାରକୁ ପଳାଇ ଯାଉଛି । ପ୍ରହରାଜ ବାବୁ ଚିହିଁକି ପଡ଼ିଲେ । ଘରର ଆସବାବପତ୍ର ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିରହିଛି । ସେ ଭୟରେ ଦରଜା ବନ୍ଦକରି ଚିତ୍କାର କରିଉଠିଲେ । ହୋଟେଲର ଚାକରବାକରମାନେ ଜମା ହୋଇପଡ଼ିଲେ । କିନ୍ତୁ ନୀହାରବାଳା ନାହାନ୍ତି । ବଡ଼ ବିଷମ ସମସ୍ୟା । ପ୍ରହରାଜ ବାବୁ କିଛି ସ୍ଥିର କରିପାରିଲେ ନାହିଁ ।

...ରାତି ପାହିଲା ।

ଅମରବାବୁ ଆସିଲେ ଓ ଘର ଖୋଲି ଦେଖିଲେ । ତାଙ୍କ ମନରେ ବିଷାଦର କାଳିମା ବୋଳି ହୋଇଗଲା । ସେ ଆଶାର ଯେଉଁ କ୍ଷୀଣ ଆଲୋକ ଟିକକ

ଦେଖିଥିଲେ, ସେତକ କାଲି ରାତିର ଝଡ଼ରେ ଲିଭିଯାଇଛି । ଘରର ଆସବାବପତ୍ରର ରଙ୍ଗଢଙ୍ଗରୁ ବୁଝିଲେ, ବହୁ ଧ୍ୱସ୍ତାଧ୍ୱସ୍ତି ପରେ ସଇତାନଗଣ ନୀହାରବାଳାଙ୍କୁ ହରଣଚାଳ କରି ନେଇଛନ୍ତି । ପରୀକ୍ଷା କରି ଦେଖିଲେ, ଗୋଟିଏ ଭ୍ୟାନିଟି ବ୍ୟାଗ ପଲଙ୍କ ତଳକୁ ଛିଟିକି ପଡ଼ିଥିବାର ତାଙ୍କ ଦୃଷ୍ଟିଗୋଚର ହେଲା । ଚିଠି ଖଣ୍ଡିଏ ପଲଙ୍କର ଗୋଟାଏ ପାର୍ଶ୍ୱକୁ ପଡ଼ିଛି । ଅମରବାବୁ ଗୋଟି ଗୋଟି କରି ସବୁ ପରୀକ୍ଷା କଲେ । ଚିଠି ଖଣ୍ଡିକ ଦେଖିଲେ, ତାହା ନନ୍ଦଲାଲବାବୁଙ୍କ ନାମାଙ୍କିତ । ଅମରବାବୁ ପଢ଼ିଲେ ।

ପ୍ରିୟ ନନ୍ଦଲାଲବାବୁ !

କାଲିର ଘଟିଥିବା ଅଘଟଣ ପାଇଁ ମୁଁ ବିଶେଷ ଦୁଃଖିତ । ଶୁଣିଲି ମୋର ବନ୍ଧୁ ମିଃ ହୋସେନଙ୍କୁ ଆପଣ ସନ୍ଦେହ କରୁଛନ୍ତି । ସେଇ ଆପଣଙ୍କର ସର୍ବନାଶ କରିବାକୁ ବସିଥିଲେ ବୋଲି ମୁଣ୍ଡରେ ଏକ ମନ୍ଦ ଫନ୍ଦି ପଶିଛି । କିନ୍ତୁ ମୋର ଅନୁରୋଧ ସେ ଭ୍ରାନ୍ତ ଧାରଣା ବଦଳାନ୍ତୁ । କାରଣ ସେ ଜଣେ ପ୍ରବାସୀ । ଦେଶ ଭ୍ରମଣ ତାଙ୍କର ଉଦ୍ଦେଶ୍ୟ । ସେ କାହିଁକି ଏସବୁ ଅସତ୍ କାର୍ଯ୍ୟରେ ହାତ ଦିଅନ୍ତେ । ତାଙ୍କର ବା ଅଭାବ କେଉଁ କଥାରେ ? ମୁଁ ସ୍ୱଚକ୍ଷୁରେ ଦେଖିଆସିଛି ତାଙ୍କ ବାପା ଜଣେ କୋଟିପତି । ମିଃ ହୋସେନଙ୍କର ବା ଅଭାବ କ'ଣ ଅଛି ଯେ, ସେ ଏପରି କୁକର୍ମରେ ହସ୍ତକ୍ଷେପ କରିବେ ? ଆଶା କରେ ମୋର ଏ କଥା କେଇପଦ ଆପଣଙ୍କ ମନରେ ଯଥେଷ୍ଟ ପ୍ରଭାବ ପକାଇବ । ନମସ୍କାର ।

ଆପଣଙ୍କର—ନୀହାରବାଳା

ଅମରବାବୁ ଚିଠି ଖଣ୍ଡିକ ପଢ଼ିସାରି ପ୍ରହରାଜବାବୁଙ୍କ ମୁହଁକୁ ଅନାଇଲେ । କିନ୍ତୁ ପ୍ରହରାଜବାବୁ ମଉନ ରହିଲେ । ଅମରବାବୁ କହିଲେ : ଘଟଣାଟି ତ ବେଳକୁ ବେଳ ବଳେଇ ପଡୁଛି । ନୀହାରବାଳାଙ୍କ ହରଣଚାଳ ପଛପଟରେ ଏକ ଗୋପନ ଉଦ୍ଦେଶ୍ୟ ଲୁଚି ରହିଲା ପରି ମନେହେଉଛି ?

ପ୍ରହରାଜବାବୁ କହିଲେ ମୁଁ ଏଥିରୁ ବିନ୍ଦୁବିସର୍ଗ କିଛି ବୁଝିପାରୁ ନାହିଁ ଅମରବାବୁ ! ମୋତେ ସବୁ ଭୌତିକ କାଣ୍ଡ ଭଳି ଅନୁମିତ ହେଉଛି । ଆପଣ ତୁରନ୍ତ ଯାର ଗୋଟାଏ ମୀମାଂସା କରିବାର ଉପାୟ ଉଦ୍ଭାବନ କରନ୍ତୁ ।

ଅମରବାବୁ ଦଣ୍ଡେ ନୀରବ ରହି କହିଲେ ।

ନୀହାରବାଳାଙ୍କ ହରଣଚାଲ ବୃତ୍ତାନ୍ତ ମୋ ମନରେ ବଡ଼ ସନ୍ଦେହ ଉଦ୍ରେକ କରୁଛି ପ୍ରହରାଜବାବୁ ! ତା'ଛଡ଼ା ତାଙ୍କ ଲିଖିତ ପତ୍ର ଖଣ୍ଡିକ ଆହୁରି ରହସ୍ୟମୟ । ଆଖି ଆଗରେ ସବୁ ଅନ୍ଧକାରମୟ ଦେଖାଯାଉଛି । ଯା'ହେଉ ଯେତେ ଶୀଘ୍ର ହୁଏ ଏ ନାଟକର ଯବନିକା ପତନ କରାଇବାକୁ ପଡ଼ିବ ।

ପ୍ରହରାଜବାବୁ କହିଲେ : ଆପଣ ସେକଥା ଜାଣନ୍ତି ଅମରବାବୁ ! ମୋ ଅନ୍ତରାତ୍ମା ଖାଲି

ଗୋଟିପଣେ କମୁଛି । କାରଣ ଏଇ ଇନ୍ଦ୍ରଭୁବନରେ ଯୋଡ଼ା ଯୋଡ଼ା ଅଘଟଣ ଘଟିଗଲାଣି । ଲୋକଙ୍କର ଆସ୍ଥା ଏଥିରୁ ତୁଟି ଯାଇପାରେ । ତା ଛଡ଼ା କେତେବେଳେ କୋଉ କଥା ।

ଅମରବାବୁ ସାନ୍ତ୍ୱନା ଦେଇ କହିଲେ : ଆପଣ ଭୟ କରନ୍ତୁ ନାହିଁ ପ୍ରହରାଜବାବୁ ! ଆପଣଙ୍କର କୌଣସି ଅମଙ୍ଗଳ ଘଟିବ ନାହିଁ ।

ଅମରବାବୁ ଶେଷ ଥରକ ପାଇଁ ନୀହାରବାଳାଙ୍କ କକ୍ଷ ଅନୁସନ୍ଧାନ କରିବସିଲେ । ଭ୍ୟାନିଟି ବ୍ୟାଗ୍‌ଟିକୁ ସେ ଖୋଲି ଦେଖିଲେ । ଯାଦୁ ସାତୁ ଦି' ଚାରିଖଣ୍ଡ କାଗଜପତ୍ର ତହିଁରେ ପଡ଼ି ରହିଛି । ତନ୍ନତନ୍ନ କରି ବ୍ୟାଗଟିକୁ ପରୀକ୍ଷା କଲେ । ବ୍ୟାଗର ଅପର ଏକ ପ୍ରକୋଷ୍ଠରୁ ହାତ ପୂରାଇ ସେ ଖଣ୍ଡେ ଫଟୋ ଆବିଷ୍କାର କଲେ ଏବଂ ତା' ଭିତରୁ ନାଲି ରଙ୍ଗର ଗୋଟିଏ ବ୍ୟାଚ୍ ମଧ୍ୟ ମିଳିଲା । ବ୍ୟାଚ୍‌ଟିରେ ଲେଖାଥିଲା 'ରକ୍ତଦାୟୀ ସଂଘ ।'

ଅମରବାବୁଙ୍କ ମୁଣ୍ଡ ଗୋଳମାଳିଆ ହୋଇଗଲା । ସେ ପ୍ରହରାଜବାବୁଙ୍କୁ ପଚାରିଲେ : ଆଚ୍ଛା, ଆପଣ କହୁଛନ୍ତି, ଗୋଟାଏ କଳାଛାୟା ଝରକା ଡେଇଁ ପଳାଇ ଯିବାର ଆପଣ ଦେଖିଛନ୍ତି । କିନ୍ତୁ କହି ପାରିବେ କି ସେଇ ଛାୟାଟା କୌଣସି ସ୍ତ୍ରୀର, ନା ପୁରୁଷର ?

ପ୍ରହରାଜବାବୁ କିଛିକ୍ଷଣ ଚିନ୍ତା କଲେ । କହିଲେ : ଠିକ୍ କହିପାରୁନି ଅମରବାବୁ । କାରଣ ଘରର ଆଲୋକମାନ ଲିଭିଯାଇଥିବାରୁ ଛାୟାମୂର୍ତ୍ତି ଅସ୍ପଷ୍ଟ ଥିଲା । ତେଣୁ ସ୍ତ୍ରୀ କି ପୁରୁଷ ଠଅର କରି ହେଲାନି ।

ଅମରବାବୁ ପଚାରିଲେ  ଏଇ ଯେଉଁ ଭ୍ୟାନିଟି ବ୍ୟାଗଟି ଦେଖୁଛନ୍ତି, ଏହାକୁ ଯା ପୂର୍ବରୁ କେବେ ଦେଖିଥିଲେ ?

ପ୍ରହରାଜବାବୁ ଭ୍ୟାନିଟି ବ୍ୟାଗଟିକୁ ଏପାଖ ସେପାଖ କରି ଦେଖି କହିଲେ ଏହା ନୀହାରବାଳାଙ୍କ ଭ୍ୟାନିଟି ବ୍ୟାଗ ପରି ମନେହେଉଛି । ଯେତେ ଦୂର ସମ୍ଭବ ଏଇଟା ତାଙ୍କର ।

ଅମରବାବୁ କହିଲେ : ମୁଁ ବି ସନ୍ଦେହ କରୁଥିଲି । କାରଣ ନୀହାରବାଳା ଯେତେବେଳେ ଏ ବଖରାରେ ଥିଲେ, ଏ ନିଶ୍ଚୟ ତାଙ୍କରି ବ୍ୟାଗ ହୋଇଥିବ । ମାତ୍ର ପୁଣି ସନ୍ଦେହ ଉଦ୍ରେକ ହେଉଛି ଏହା ଭିତରର କେତେକ ବିପଦ ସଙ୍କୁଳ ବସ୍ତୁ ଦେଖି । ନୀହାରବାଳାଙ୍କ ବ୍ୟାଗ ଭିତରକୁ ଏଗୁଡ଼ିକ ଆସିଲା କିପରି ? ଯଦିଓ ନୀହାରବାଳା ଆମ କଳ୍ପିତ ସଇତାନ ଦଳର ଜଣେ ହୁଅନ୍ତି, ତେବେ ତାଙ୍କୁ ହରଣଚାଳ କଲା କିଏ ? କି ଉଦ୍ଦେଶ୍ୟରେ ?

ପ୍ରହରାଜବାବୁ କେବଳ ଜଳଜଳ କରି ଅମର ବାବୁଙ୍କ ମୁହଁକୁ ଅନାଇଥିଲେ ।

ଅମରବାବୁ ଭ୍ୟାନିଟି ବ୍ୟାଗ ସମେତ ସମସ୍ତ ଜିନିଷପତ୍ର ହାତରେ ଧରି, ଇନ୍ଦ୍ରଭୁବନରୁ ପଦାକୁ ବାହାରି ପଡ଼ିଲେ । ଗଲାବେଳେ ପ୍ରହରାଜବାବୁଙ୍କୁ କହିଗଲେ : ଆପଣ ନୀହାରବାଳା ଥିବା ଘରଟିକି ଚାବି ପକାଇ ବନ୍ଦ କରାନ୍ତୁ । କେହି ଯେପରି ସାଧାରଣ ଲୋକ ସେ ଘରକୁ ଯାତାୟତ କରି ନ ପାରନ୍ତି । ମୋର ଅନ୍ୟ ନିର୍ଦ୍ଦେଶ ନ ପାଇବାଯାଏ ସେ ଘରଟିକୁ ଖୋଲିବେ ନାହିଁ ।

ପ୍ରହରାଜବାବୁ ସମ୍ମତି ଜ୍ଞାପନ କଲେ ।

ଅମରବାବୁଙ୍କ ଗାଡ଼ି ଇନ୍ଦ୍ରଭୁବନ ଦୁଆର ଛାଡ଼ିଲା ।

## ରକ୍ତଦାୟୀଙ୍କ ସଂଘ

ନନ୍ଦଲାଲବାବୁ ତାଙ୍କ ଡ୍ରଇଂ ରୁମ୍‌ରେ ଗୋଟିଏ ଇଜି ଚେୟାର ଉପରେ ଅଳସ ଅଙ୍ଗଲତାକୁ ଲଦିଦେଇ ନିବିଷ୍ଟ ଚିତ୍ତରେ ଚିନ୍ତା କରୁଛନ୍ତି । ଗୋଟିଏ ଶିଖ୍ ତରୁଣୀ ଧୀର ପାଦଚାଳନାରେ ଡ୍ରଇଂ ରୁମ୍ ଦୁଆରେ ଦଣ୍ଡାୟମାନ ହେଲା । ନନ୍ଦଲାଲବାବୁ ଆଖି ଖୋଲିଲେ । ଶିଖ୍ ତରୁଣୀଟିଏ ଖଣ୍ଡିଏ ଚିଠି ନନ୍ଦଲାଲବାବୁଙ୍କ ହାତକୁ ବଢ଼ାଇ ଦେଲା । ସେ ପଢ଼ିଲେ—

ମାନନୀୟ ନନ୍ଦଲାଲବାବୁ !

କାଲି ମୁଁ ଆପଣଙ୍କୁ ଯେଉଁ ଶିଖ୍ ତରୁଣୀଙ୍କ କଥା କହିଥିଲି, ସେ ଏଇ ପତ୍ରବାହିକା । ଆଶା କରେ, ଆପଣ ୟାଙ୍କର ସବୁ ସୁବନ୍ଦୋବସ୍ତ କରାଇ ଦେବେ ।

ଆପଣଙ୍କର—ରଣଜିତ୍

ନନ୍ଦଲାଲବାବୁ ଚିଠିଟି ପଢ଼ିସାରି ଶିଖ୍ ତରୁଣୀଟି ଉପରକୁ ଆଖି ପକାଇଲେ । ତରୁଣୀ ଆଖିଯୋଡ଼ିକ ତଳକୁ ନୁଆଇଁ ନେଲା ।

ସେ ପଚାରିଲେ  ତୁମ ନାମ ?

ଶିଖ୍ ତରୁଣୀଟି କମ୍ପିତ କଣ୍ଠରେ ଉତ୍ତର ଦେଲା  ମାୟାବନ୍ତୀ ।

ନନ୍ଦଲାଲବାବୁ କଲିଂବେଲର ବୋତାମ ଟିପିଲେ । ଚାକର ଆସି ଅଭିବାଦନ କଲା । ନନ୍ଦଲାଲବାବୁ କହିଲେ  ୟାଙ୍କ ପାଇଁ ପାର୍ଶ୍ୱ ଘରର ଦୋତାଲାରେ ଗୋଟିଏ ପ୍ରକୋଷ୍ଠ ଖାଲି କରାଇ ଦିଅ ଏବଂ ରହିବାର ବନ୍ଦୋବସ୍ତ କରାଇ ଦିଅ ।

ନନ୍ଦଲାଲବାବୁ ଶିଖ୍ ତରୁଣୀଟି ଆଡୁ ଆଖି ଫେରାଇଲେ । ଆଗରେ ଅମରବାବୁ ଦଣ୍ଡାୟମାନ । ନନ୍ଦଲାଲବାବୁ ଅମର ବାବୁଙ୍କୁ ବସିବା ପାଇଁ ଚେଆର ଦେଖାଇ କହିଲେ : ତା'ପରେ ଖବର କ'ଣ ଅମରବାବୁ ? ନୀହାରବାଳାଙ୍କର କୌଣସି ସନ୍ଧାନ ମିଳିଲା ?

ଅମରବାବୁ ଟିକିଏ ନୀରବ ରହି କହିଲେ  ହଁ ମିଳିଥିଲା, କିନ୍ତୁ ସେ ପୁଣି ହରଣଚାଳ ହୋଇଛନ୍ତି ।

ସେ ହରଣଚାଳ ହୋଇଛନ୍ତି ?

ନନ୍ଦଲାଲବାବୁ ଶକ୍ତ ଆଘାତ ପାଇଲେ ଯେପରି । ଘଡ଼ିଏ ମଉନ ରହି କହିଲେ, ଆପଣ ଠିକ୍ ଜାଣନ୍ତି ସେ ହରଣଚାଳ ହୋଇଛନ୍ତି ?

ଅମରବାବୁ ଚେଆରରେ ସଳାଡ଼ି ହୋଇ ବସୁ ବସୁ କହିଲେ  କାଲି ରାତି ବାରଟାରେ ସେ ଇନ୍ଦ୍ରଭୁବନକୁ ଫେରିଥିଲେ । ପ୍ରହରାଜବାବୁଙ୍କ ଟେଲିଫୋନ୍ ଉତ୍ତରା

ପାଇ ମୁଁ ସେଠାକୁ ଯାଇଥିଲି । ନୀହାରବାଳାଙ୍କ ସହିତ ମଧ୍ୟ କେତେକ ବାର୍ତ୍ତାଳାପ ହେଲା । ପୁଣି ସକାଳୁ ଖବର ପାଇଲି ନୀହାରବାଳା ଆତତାୟୀମାନଙ୍କର ଶିକାର ହୋଇଛନ୍ତି ।

ନନ୍ଦଲାଲବାବୁ ସ୍ୱସ୍ତିର ନିଃଶ୍ୱାସଟିଏ ବି ପକାଇ ପାରୁ ନଥିଲେ । ବିଚଳିତ ସ୍ୱରରେ କହିଲେ : ବଡ଼ ଅସୁବିଧା ହେଲା ଅମରବାବୁ, ହୁଏତ ଆଉ ଆତତାୟୀମାନଙ୍କର କୌଣସି ସନ୍ଧାନ ମିଳିପାରିବ ନାହିଁ । କିନ୍ତୁ ମୋର ସର୍ବନାଶ ହେବ, ମୁଁ ସର୍ବସ୍ୱାନ୍ତ ହୋଇଯିବି ।

ଅମରବାବୁ ନନ୍ଦଲାଲବାବୁଙ୍କଠାରେ ହଠାତ୍ ଏପରି ଅସ୍ୱାଭାବିକ ପରିବର୍ତ୍ତନର କାରଣ କିଛି ବୁଝିପାରିଲେ ନାହିଁ । ଚକିତ ନୟନରେ ନନ୍ଦଲାଲଙ୍କ ଆଡ଼େ ଚାହିଁ ପଚାରିଲେ ଏ କ'ଣ କହୁଛନ୍ତି ଆପଣ ? ଆପଣଙ୍କ ଭଳି ଧୈର୍ଯ୍ୟସମ୍ପନ୍ନ ବ୍ୟକ୍ତିଙ୍କ ତୁଣ୍ଡରେ ଏପରି ଭାଷା ଶୋଭା ପାଏନା । ଆମେ ଆପଣଙ୍କ କରେ କରେ ଅଛୁଁ । କିଏ ଆପଣଙ୍କର କି ସର୍ବନାଶ ଘଟାଇବ ?

ଟିକିଏ ରହି ପକେଟରୁ ଖଣ୍ଡେ କାଗଜ ବାହାରକରି ନନ୍ଦଲାଲ ବାବୁଙ୍କ ହାତକୁ ବଢ଼ାଇ ଦେଉ ଦେଉ କହିଲେ, ଏଇ ନିଅନ୍ତୁ ଆପଣଙ୍କ ନାମାଙ୍କିତ ପତ୍ର । ନୀହାରବାଳାଙ୍କ କକ୍ଷରୁ ମିଳିଛି ।

ନନ୍ଦଲାଲବାବୁ କମ୍ପିତ ହସ୍ତରେ ପତ୍ର ପାଠ କଲେ । ତାଙ୍କ ମୁଖଭଙ୍ଗୀ ବଦଳି ଗଲା । ସେ ଭାବବିହ୍ୱଳ ହୋଇଉଠିଲେ ।

ଅମରବାବୁ ଲକ୍ଷ୍ୟ କରୁଥିଲେ । ନନ୍ଦଲାଲବାବୁଙ୍କ ଭାବନା ଭାଙ୍ଗିବାକୁ ଯାଇ କହିଲେ ଆଚ୍ଛା ନନ୍ଦଲାଲବାବୁ ! ଏ ସଂଘଟି କଟକ ସହରରେ କେଉଁଠି ଅଛି କହିପାରିବେ ?

ଅମରବାବୁ ନୀହାରବାଳାଙ୍କ ଭ୍ୟାନିଟି ବ୍ୟାଗରୁ ପାଇଥିବା ବ୍ୟାଚ୍‌ଟି ନନ୍ଦଲାଲବାବୁଙ୍କ ହାତକୁ ବଢ଼ାଇ ଦେଲେ ।

ନନ୍ଦଲାଲବାବୁ ବ୍ୟାଚ୍‌ଟି ଉପରେ ଆଖି ବୁଲାଇ ଆଣି କହିଲେ, : ରକ୍ତଦାୟୀ ସଂଘ ? ନାଁ ତ ମୋର ମନେପଡୁନି । ମୁଁ ତ ଏ ସଂଘକୁ କେବେ ଚାନ୍ଦା ଦେଇଥିଲା ପରି ମନେ ହେଉନି । କିନ୍ତୁ ସଂଘ ସହିତ ବର୍ତ୍ତମାନ ରହସ୍ୟର ସମ୍ପର୍କ କ'ଣ ?

ଅମରବାବୁ ଟିକିଏ ହସିଲେ । କହିଲେ ନିରବିଚ୍ଛିନ୍ନ ସମ୍ପର୍କ । ଏ ବ୍ୟାଚ୍‌ଟି ନୀହାରବାଳାଙ୍କ ଭ୍ୟାନିଟି ବ୍ୟାଗରୁ ମିଳିଛି, ଆହୁରି ମିଳିଛି ଖଣ୍ଡିଏ ଫଟୋ ।

ନନ୍ଦଲାଲବାବୁ ଚିହିଙ୍କି ପଡ଼ିଲେ । ଫଟୋ ? କାହାର ଫଟୋ ?

ଅମରବାବୁ ପକେଟରୁ ଫଟୋ ଖଣ୍ଡିକ କାଢ଼ି ନନ୍ଦଲାଲବାବୁଙ୍କୁ ଦେଖାଇଲେ । ନନ୍ଦଲାଲବାବୁ ଦଣ୍ଡେ ସ୍ଥିର ନୟନରେ ଚାହିଁ କହିଲେ, ଏ ତ ରଣଜିତ୍‌ବାବୁଙ୍କର, ବଡ଼ ଜଟିଳ ସମସ୍ୟା ତ ଅମର ବାବୁ ? ମୋ ଭାବନା ଯେ ସବୁ ଗୋଳମାଳିଆ ହୋଇଯାଉଛି ।

ଅମରବାବୁ କହିଲେ ଆପଣ ସ୍ଥିର ରୁହନ୍ତୁ । ନିଜର ବ୍ୟବସାୟ ଯେପରି ସୁଚାରୁ ରୂପେ ଚଳେ ତତ୍ପ୍ରତି ଯତ୍ନବାନ ହୁଅନ୍ତୁ । ଏସବୁ କଥାରେ ମୁଣ୍ଡ ପୂରାଇ ଅଯଥାରେ ଧନ୍ଦି ହୁଅନ୍ତୁ ନାହିଁ । ଆମେ ଯାର ଭାର ନେଉଛୁ, ପ୍ରତିକାର କରିବୁ ଆମେ ।

ନନ୍ଦଲାଲବାବୁ ନିବିଷ୍ଟ ଚିତ୍ତରେ ଚିନ୍ତା କରୁଥିଲେ । ଅମରବାବୁଙ୍କ କଥା ଶେଷ ହେବା ଉତ୍ତାରୁ କହିଲେ ହଁ, ସେ ଠିକ୍ କଥା ଅମରବାବୁ । ମୋର ଏଥିରେ ମୁଣ୍ଡ ଖେଳେଇବାର କୌଣସି ଆବଶ୍ୟକତା ନାହିଁ, କିମ୍ବା ମୁଁ ଏଥିରେ କୃତକାର୍ଯ୍ୟ ହୋଇପାରିବି ନାହିଁ । ତେବେ ଡର ହେଉଛି ମୋ ଉପରେ କେବେ ଯଦି ଷଡ଼ଯନ୍ତ୍ର କରନ୍ତି ? ଆପଣ ଯାଆନ୍ତୁ । ଟଙ୍କା ଖର୍ଚ୍ଚ ପାଇଁ ଚିନ୍ତା କରିବେ ନାହିଁ । ଆତତାୟୀ ଦଳଙ୍କୁ ଯେତେ ଶୀଘ୍ର ପାରନ୍ତି କାବୁ କରିବାକୁ ଯତ୍ନବାନ ହେବେ ।

ଅମରବାବୁ ଉଠିଲେ । ନିରାଶାର ଘନ ଅନ୍ଧକାର ତାଙ୍କ ଆଖି ଆଗରେ ଘୋଟି ଯାଇଥିଲା । ସେ ଭାବିଥିଲେ ହୁଏତ ରକ୍ତଦାୟୀ ସଂଘର କୌଣସି ଗୋଟାଏ ଠିକଣା ପାଇବେ ନନ୍ଦଲାଲ ବାବୁଙ୍କ ଠାରୁ । ମାତ୍ର ସେଥିରୁ ନିରାଶ ହେବାକୁ ପଡ଼ିଲା । ସେ ଧୀର ପଦକ୍ଷେପରେ ପଦାକୁ ବାହାରି ଗଲେ ।

## ଭୂତକୋଠିରେ ଚକ୍ରାନ୍ତ

କଟକ ସହର ଛାଡ଼ି ଦେଢ଼ ମାଇଲ ଗଲେ ସେ କୋଠାଟି । ଏକ ଜଙ୍ଗଲିଆ ଜାଗାରେ । କେବେକାର ଜୀର୍ଣ୍ଣ କୋଠା । ଏକ ସମୟରେ ସେ ଏକ ଧନୀ ମାରୁଆଡ଼ୀର ଥିଲା । ମାତ୍ର ବର୍ତ୍ତମାନ ସେଥିରେ କେହି ବସବାସ କରୁ ନ ଥିବାରୁ କାଳକ୍ରମେ ତାହା ଭାଙ୍ଗି ରୁଜି ଗଲାଣି ।

ଲୋକେ ତାକୁ କହନ୍ତି ଭୂତକୋଠି । ପ୍ରବାଦ ଅଛି, ସେ କୋଠିରେ ଭୂତମାନେ ବାସ କରନ୍ତି । ଏପରି କି ଜୀଅନ୍ତା ମଣିଷ ପାଇଲେ ସଙ୍ଗେ ସଙ୍ଗେ ତା' ବେକ ମୋଡ଼ି ରକ୍ତ ଶୋଷି ନିଅନ୍ତି । ତେଣୁ ଦିନବେଳେ ସୁଦ୍ଧା କାହାରି ପାଦ ଭୁଲ୍‌ରେ ସେଆଡ଼େ ପଡ଼େ ନାହିଁ ।

ଦିନ ପ୍ରାୟ ଦଶଟା ହେବ । ଭୂତକୋଠିର ଗୋଟିଏ ନିରୋଳା ପ୍ରକୋଷ୍ଠରେ ଟେଲିଫୋନ ବାଜି ଉଠିଲା ! ଏକ ଛଦ୍ମ ଆବରଣଧାରୀ ଯୁବକ ରିସିଭର ଉଠାଇଲେ ହାଲୋ ?

ଅପର ପ୍ରାନ୍ତରରୁ ଶୁଣାଗଲା ହାଲୋ ! କାଳନେମି ?

ହଁ, ମୁଁ କାଳନେମି । ତୁମେ ?

ମୁଁ କୃଷ୍ଣଛାୟା । ହଁ ଦେଖ, ନୀହାରବାଳାର ଖବର କ'ଣ ହେଲା ? କାଲି ସେ ନିଶ୍ଚୟ ଆସିବ ତ ? ତାକୁ ଯେ କୌଣସି ପ୍ରକାରେ ହେଉ ଆଣି ଦେବାକୁ ହେବ । ପାଞ୍ଚଖଣ୍ଡଯାକ ଆଲ୍‌ବମ୍‌ରୁ ବାଛି ବାଛି ସେ ନୀହାରବାଳା ଛବିକୁ ହିଁ ପସନ୍ଦ କରିଛି ।

କିନ୍ତୁ କୃଷ୍ଣଛାୟା ! ବର୍ତ୍ତମାନ ସେ ସଂପୂର୍ଣ୍ଣ ମୋ ଅକ୍ତ୍ୟାରର ବାହାରେ । ୟା' ଭିତରେ ବହୁ ଘଟଣା ଘଟିଗଲାଣି । ମୋର ମନେ ହେଉଛି, ଆମ ପଛ ପଟରେ ଏକ ଶକ୍ତ ଦଳ ଲାଗି ପଡ଼ିଛନ୍ତି । ମୁଁ ପଦେ ପଦେ ଆମର ଅମଙ୍ଗଳ ଦେଖିଆସୁଛି । ମୋର ଶୂନ୍ୟକୁହା ଘଡ଼ିଟି ହାତଛଡ଼ା ହୋଇଯାଇଛି । ନୀହାରବାଳା ହରଣଚାଳ ହୋଇଛି ।

କ'ଣ କହୁଛ କାଳନେମି ? କିନ୍ତୁ ମୁଁ ଯେ କାଲି ରାତିରେ ଶୂନ୍ୟକୁହା ଘଡ଼ି ଜରିଆରେ ତୁମ ସହିତ କଥାବାର୍ତ୍ତା କରିଛି ?

ମୋ ସହିତ କଥାବାର୍ତ୍ତା କରିଛ ? ନା ନା, କାଲି ରାତିରେ ମୋ ପାଖରେ ଘଡ଼ି ନ ଥିଲା । ମୁଁ ଆଦୌ ତୁମ ସହିତ ସେ ଘଡ଼ି ସାହାଯ୍ୟରେ ବାର୍ତ୍ତାଳାପ କରିନାହିଁ ।

ବଡ଼ ଆଚମ୍ବିତ କଥା ତ ! ତେବେ ବର୍ତ୍ତମାନ କ୍ଷେତ୍ରରେ ଉପାୟ ! ସେ ମହାଜନ ଯେ ଅଗ୍ରୀମ ଦଶହଜାର ଟଙ୍କା ଦେଇଯାଇଛି । କ'ଣ କରାଯିବ ?

ମୁଁ ବି ସେଇକଥା ଚିନ୍ତା କରୁଛି କୃଷ୍ଣଛାୟା । ମୁଣ୍ଡଟା ମୋର ବିଗିଡ଼ି ଗଲାଣି ! କେଉଁ ଅଦୃଶ୍ୟ ଶକ୍ତି ଆମ ପିଛା ଧରିଛି, ସେ କଥା ବୁଝିବାର ଯୁ' ନାହିଁ। ଏଣେ ନୀହାରବାଳା ଅଜ୍ଞାତ ସ୍ଥଳୀରେ । ତେଣେ ପୋଲିସ୍ ଓ ଗୁଇନ୍ଦାମାନଙ୍କର ଘଡ଼ିଘଡ଼ି ଧାଁ ଦଉଡ଼ । କେତେବେଳେ କେଉଁ କଥା, ମୁଁ ବଡ଼ ଚିନ୍ତିତ ହୋଇପଡ଼ିଛି କୃଷ୍ଣଛାୟା ।

କିନ୍ତୁ କାଳନେମି ! ଆଉ ଗୋଟାଏ ଉପାୟ କରିପାରିବ ? ପାଞ୍ଚ ନମ୍ବର ଆଲବମ୍ ଖେଳାଇ ଦେଖିବ, ସେଥିରେ ଥିବା ସତେଇଶି ନମ୍ବର ଫଟୋଟି ତିନି ନମ୍ବର ଆଲବମ୍‌ର ପଇଁଚାଳିଶ ନମ୍ବର ନୀହାରବାଳା ଫଟୋ ସହିତ ବହୁ ପରିମାଣରେ ମିଳି ଯାଉଛି । ଯଦି ସୁବିଧା ହୁଏ ସେୟାକୁ ହିଁ ବ୍ୟବସ୍ଥା କର । ଆଗ କାମଟା ଆମର ମେଣ୍ଟି ଯାଉ, ତା'ପରେ କେଉଁ ଅଦୃଶ୍ୟ ଶକ୍ତି ଆମ ପଛରେ ଗୋଡ଼ାଇଛି ଦେଖିବା । ଆଗ କାମ ଆଗ ବଢ଼େଇବା ବୁଦ୍ଧିମାନର କର୍ତ୍ତବ୍ୟ ।

ତୁମେ ଠିକ୍ କହିଛ କୃଷ୍ଣଛାୟା ? ତିନି ନମ୍ବର ଆଲବମ୍‌ର ପଇଁଚାଳିଶି ନମ୍ବର ଫଟୋ ସହିତ ପାଞ୍ଚ ନମ୍ବର ଆଲବମ୍‌ର ସତେଇଶି ନମ୍ବର ଫଟୋ ମିଳିଯାଉଛି ? ସେ ତରଫରୁ ଆପତ୍ତି ଉଠିବା ଭଳି କୌଣସି ଆଶଙ୍କା ନାହିଁ ତ ?

ନା ନା, କାଳନେମି ! ଚଳେଇ ନେବି । ସେ ଫଟୋଟାକୁ ପାଞ୍ଚ ନମ୍ବର ଆଲବମ୍‌ରୁ କାଢ଼ି ତିନି ନମ୍ବର ଆଲବମ୍‌ରେ ଲଗାଇ ଦେବି । ତା'ପରେ ଆଉ ସନ୍ଦେହର ବିଶେଷ କୌଣସି କାରଣ ନଥିବ । କିନ୍ତୁ ମନେ ରଖିଥିବ, ଯେପରି ଆମେ ଶେଷ ପର୍ଯ୍ୟନ୍ତ ଅପଦସ୍ତ ନ ହୁଅନ୍ତି !

ମନେ ରହିଲା । ଏଥର ଆଉ ଭୁଲ୍ ହେବାର ନୁହେଁ । ଆଚ୍ଛା, ବର୍ତ୍ତମାନ କେଉଁଠୁ କଥା କହୁଛ ?

ବଙ୍ଗୋପସାଗର ଉପକୂଳର ଚାରି ନମ୍ବର କେନ୍ଦ୍ରରୁ । ଗତକାଲି ଜାହାଜ ଆସିଲା ନାହିଁ । ଏମାନଙ୍କୁ ସ୍ଥାନାନ୍ତରିତ କରିପାରିଲି ନାହିଁ । ଆଜି ଆସିବାର ଖୁବ୍ ସମ୍ଭାବନା ।

ହେଉ ତେବେ, ବର୍ତ୍ତମାନ ଡୁପ୍ଲିକେଟ୍ ଆଲବମ୍ ଖେଳେଇ ପାଞ୍ଚ ନମ୍ବର ଆଲବମ୍‌ର ସତେଇଶି ନମ୍ବର ଫଟୋଟିର ନାମ ଠିକଣା ସଂଗ୍ରହ କରୁଛି । ଆଜି ରାତାରାତ୍ ନିଶ୍ଚୟ ବ୍ୟବସ୍ଥା କରା ହେବ । ତୁମେ ନିଶ୍ଚିନ୍ତ ରୁହ ।

ଆଚ୍ଛା ନମସ୍କାର ।

ନମସ୍କାର !

## ଅଦୃଶ୍ୟ ହତ୍ୟାକାରୀ କିଏ ?

ସନ୍ଧ୍ୟା ସାତଟା । ଅମରବାବୁଙ୍କ କାର୍ ଆସି ଇନ୍ଦ୍ରଭୁବନ ଦରଜା ମୁହଁରେ ଲାଗିଲା । ପ୍ରହରାଜ ବାବୁ ଅମର ବାବୁଙ୍କୁ ଅଭିବାଦାନାନ୍ତେ ଭିତରକୁ ନେଇଗଲେ ।

ଅମରବାବୁ ପଚାରିଲେ, ଆଉ କେହି ନୀହାରବାଳାଙ୍କ କକ୍ଷ ଖୋଲାଖୋଲି କରିଥିଲେ କି ?

ପ୍ରହରାଜବାବୁ କହିଲେ ନା ଅମର ବାବୁ, ଚାବି ମୁଁ ମୋ ନିଜ ପାଖରେ ରଖିଛି । ଆଉ କାହାରିକୁ ଦେଇନାହିଁ । ଏଇ ଆପଣ ନିଅନ୍ତୁ ।

ଅମରବାବୁ ପ୍ରହରାଜବାବୁଙ୍କ ହାତରୁ ଚାବିଟି ନେଉ ନେଉ କହିଲେ ବୁଝିଲେ ପ୍ରହରାଜବାବୁ ! ମୁଁ ଆଜି ଏଇ ଘର ପଲଙ୍କ ତଳେ ଶୋଇବି । ମୋର ସନ୍ଦେହ ହେଉଛି, ଯେଉଁମାନେ କାଲି ଏ ଭ୍ୟାନିଟି ବ୍ୟାଗ୍‌ଟି ଏଠାରେ ପକାଇ ଦେଇ ଯାଇଛନ୍ତି, ସେମାନେ ଯାର ଉଦ୍ଧାର ନିମିତ୍ତ ନିଶ୍ଚୟ ଆସିବେ । ଏ ବ୍ୟାଗ୍‌ଟି ଭିତରେ ଅନେକ ଗୋପନ ତଥ୍ୟ ଲୁଚି ରହିଛି କିନା । ସେମାନେ ଭୟ କରୁଥିବେ, ଏହା ଯଦି ପୋଲିସ ବା ଗୁଇନ୍ଦା କାହାରି ହାତରେ ପଡ଼େ, ତେବେ ସର୍ବନାଶ ।

ପ୍ରହରାଜବାବୁ କହିଲେ ହେଉ, ଆପଣଙ୍କ ଇଚ୍ଛା !

ତାହାହିଁ ହେଲା । କ୍ରମଶଃ ରାତ୍ରି ବଢ଼ିବାକୁ ଲାଗିଲା । ଦିଆଲ ଘଡ଼ିରେ ବାରଟା ବାଜିଲା । ହୋଟେଲର କାର୍ଯ୍ୟକ୍ରମ ଶେଷ ହୋଇଆସିଲା । କର୍ମଚାରୀମାନେ ନିଜ ନିଜର କର୍ତ୍ତବ୍ୟ ସମାପନ କରି ଅବଶ ଦେହଟିମାନଙ୍କୁ ବିଛଣା ଉପରେ ଲୋଟାଇ ଦେଲେ ।

ଅମରବାବୁ ପଲଙ୍କ ତଳେ ଶୋଇ ଥାଆନ୍ତି, ସତେ ଯେମିତି କାହାର ପ୍ରତୀକ୍ଷାରେ ସେ ବସିଛନ୍ତି । କେଉଁଠି ଟିକିଏ ଖଡ୍ କରି ଶବ୍ଦ ହେଲେ, ତାଙ୍କ ଆଙ୍ଗୁଳି ପିସ୍ତଲର ଘୋଡ଼ିଆ ଉପରକୁ ଉଠି ଯାଉଥାଏ । କାନ ଛିଡ଼ାକରି ଅପେକ୍ଷା କରନ୍ତି ।

ରାତ୍ରିର ଗଭୀରତା କ୍ରମେ ବଢ଼ିଲା । ଘଡ଼ିରେ ଦୁଇଟା ବାଜିବାର ଶବ୍ଦ ହେଲା । ଅମରବାବୁଙ୍କ ଆଖି ଝାଉଁଳି ପଡ଼ିଲା । ସେ ଆଖି ବୁଜିଦେଲେ । ବାହାର ଦୁନିଆ ଠାରୁ ତାଙ୍କର ସମ୍ପର୍କ ତୁଟିଗଲା ।

କାହାର ଗୋଟାଏ ଶବ୍ଦରେ ହଠାତ୍ ତାଙ୍କ ନିଦ ଭାଙ୍ଗିଗଲା । ସେ ଅନୁଭବ କଲେ ସତେ ଯେପରି କିଏ ଜଣେ ଘରର ଚତୁଃପାର୍ଶ୍ୱରେ ବିଚରଣ କରୁଚି । ପିସ୍ତଲଟା ବାଗେଇ ଧରି ସେ ସତର୍କତାର ସହିତ ଲକ୍ଷ୍ୟ କଲେ । ପୁସି ବିଲେଇଟା ମ୍ୟାଉଁ ମ୍ୟାଉଁ ହେଲା । ଅମରବାବୁ ମନେ ମନେ ହସିଉଠିଲେ । କିନ୍ତୁ ପର ମୁହୂର୍ତ୍ତରେ ସେ ଅନୁଭବ

କଲେ, କିଏ ଯେପରି ଜଣେ ଝରକା ବାଟଦେଇ ପଦାକୁ ଓହ୍ଲାଇ ଯାଉଛି । ସେ ସତର୍କତା ସହ ପଲଙ୍କ ତଳୁ ବାହାରିଲେ । ଗୋଟାଏ ଛାୟାମୂର୍ତ୍ତି ଝରକା ଉପରୁ ପଦାକୁ କୁଦି ପଡ଼ିଲା । ପିସ୍ତଲ ମୁହଁ ଗର୍ଜି ଉଠିଲା । ମୁହୂର୍ତ୍ତକେ ସବୁ ଶୁନ୍‌ଶାନ୍ । ତା'ପରେ ସେ ଶୁଣିଲେ ଖଣ୍ଡେ ଦୂରରୁ କାହାର ଏକ ଆର୍ତ୍ତ ଚିତ୍କାର ଭାସି ଆସୁଛି । ସେ ଝରକା ପାଖକୁ ଆଗେଇ ଗଲେ । ଛାୟାମୂର୍ତ୍ତିଟି ସେତେବେଳକୁ ଅନ୍ଧକାର ଗହ୍ୱରରେ ବିଲୀନ ହୋଇ ସାରିଥିଲା । ମାତ୍ର ଦୂରର ସେହି ଆର୍ତ୍ତଚିତ୍କାର କ୍ରମେ ଘନେଇ ଆସୁଥିଲା ।

ପିସ୍ତଲ ଆବାଜ ଶୁଣି ପ୍ରହରାଜବାବୁ ଓ ହୋଟେଲର ଅନ୍ୟାନ୍ୟ କର୍ମଚାରୀମାନେ ଜାଗି ଉଠିଲେ । ପ୍ରହରାଜବାବୁ ସେ କକ୍ଷଟିର ବାହାର ପଟରୁ ତାଲା ଖୋଲି ଘରର ବତି ସୁଇଚ ବୋର୍ଡରେ ହାତ ମାରିଲେ । ଆଲୋକ ଲହରୀ ଭିତରେ ଦେଖିଲେ, ଅମରବାବୁ ଝରକା ପାର୍ଶ୍ୱରେ ସ୍ଥାଣୁ ଭଳି ଛିଡ଼ା ହୋଇଛନ୍ତି । ତାଙ୍କ ଦକ୍ଷିଣ ହସ୍ତସ୍ଥିତ ପିସ୍ତଲ ମୁହଁରୁ ଧୂମ ନିର୍ଗତ ହେଉଛି ।

ହଠାତ୍ ଘରେ ଆଲୋକ ଜଳି ଉଠିବାର ଦେଖି ଅମରବାବୁ ଚମକି ପଛକୁ ଚାହିଁଲେ । ପ୍ରହରାଜବାବୁ ମୁହଁରେ ବିରାଟ ପ୍ରଶ୍ନବାଚକ ଚିହ୍ନ ଆଙ୍କି କମ୍ପିତ ପଦ ଯୋଡ଼ିକ ଆଗକୁ ବଢ଼ାଉଛନ୍ତି । ଅମରବାବୁ ଲଜ୍ଜିତ ସ୍ୱରରେ କହିଲେ : ଆପଣଙ୍କ ପୁସି ବିରାଡ଼ିଟା ସବୁ ବିଗାଡ଼ି ଦେଇଛି ।

ପ୍ରହରାଜବାବୁ କିଛି ବୁଝି ନପାରି ବଲବଲ କରି ଅମରବାବୁଙ୍କ ମୁହଁକୁ ଅନାଇ ରହିଲେ । ଅମରବାବୁ ପାହୁଣ୍ଡେ ପଛକୁ ଘୁଞ୍ଚିଛନ୍ତି କି ନାହିଁ, ଦୂରରୁ ତିନି ଚାରି ରାଉଣ୍ଡ ଗୁଳି ଚଳିବାର ଆବାଜ ଓ ସଙ୍ଗେ ସଙ୍ଗେ ଗୋଟାଏ ଆତୁର କଣ୍ଠସ୍ୱର ଶୁଣି ଚିହିଁକି ପଡ଼ିଲେ । ଯେଉଁଆଡୁ ଗୁଳି ଚାଳନାର ଆବାଜ ଶୁଣାଯାଉଥିଲା, ସେଇଆଡ଼କୁ ସେ ତାଙ୍କର ଚିରଚଞ୍ଚଳ ପାଦଯୋଡ଼ିକୁ ଦଉଡ଼ାଇ ଦେଲେ ।

ପାଞ୍ଚ ସାତଟା କୋଠା ପାର ହୋଇଯାଇ ସେ ଅବସରପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ୍ ପୁଳିନବିହାରୀ ରାୟଙ୍କ ବାସଭବନ ଭିତରକୁ ପଶିଲେ । ତାଙ୍କ ଘରର ଦରଜାଗୁଡ଼ାକ ମୁକୁଳା ପଡ଼ିଥିଲା । ସେ ପକେଟରୁ ଟର୍ଚ୍ଚ କାଢ଼ି ଧୀରେଧୀରେ ଆଗେଇ ଗଲେ । ଦୋ' ମହଲା ଉପରୁ କାହାର କରୁଣ ବିଳାପ ଭାସିଆସୁଥିଲା । ସେ ସୋପାନଶ୍ରେଣୀ ଅତିକ୍ରମ କରି ସିଧାସଳଖେ ଦୋ' ମହଲା ଉପରକୁ ଉଠିଗଲେ । ତାଙ୍କ ଆଖି ସ୍ଥିର ରହିଗଲା । ପୁଳିନବାବୁ ଚିତ୍‌କାତ ହୋଇ ବାରଣ୍ଡା ଉପରେ ପଡ଼ିଛନ୍ତି । ରକ୍ତର ସୁଅ ଛୁଟି ଯାଉଛି । ତାଙ୍କର ଏକମାତ୍ର ବିଶ୍ୱାସୀ ଭୃତ୍ୟ ସତିଆ ବସି ରୋଦନ କରୁଛି । ସେ ଅମରବାବୁଙ୍କୁ ଦେଖି ଭୟରେ ଚିତ୍କାର କରି ଉଠିଲା ।

ଅମରବାବୁ ସାନ୍ତ୍ୱନା ଦେଇ କହିଲେ : ମୁଁ ପୋଲିସ ଲୋକ । ମୋତେ ଭୟକର ନାହିଁ । ବାବୁଙ୍କୁ ତୁମର କିଏ ହତ୍ୟା କରିଛି ?

ସତିଆର ଧୈର୍ଯ୍ୟବନ୍ଧ ଏକାଥରକେ ଭାଙ୍ଗିଗଲା । ସେ ଆହୁରି ଜୋରରେ

କାନ୍ଦି ଉଠିଲା । ଅମରବାବୁ ତାକୁ ସାନ୍ତ୍ୱନା ଦେଲେ । ବହୁତ ସମୟ ପରେ ସେ ଥରିଲା ଗଳାରେ କହିଲା ମୁଁ କହିପାରିବି ନାହିଁ ଆଜ୍ଞା ! ତଳେ ମୋ ବସାଘରଟିରେ ଶୋଇଥିଲି । ଗୁଳି ଚଳିବାର ଆବାଜ ଶୁଣି ମୋ ନିଦ ଚାଉଁକିନା ଭାଙ୍ଗିଗଲା । ଦେଖିଲି ଦୁଇ ଚାରିଜଣ କଳାମୁହାଁ ମଣିଷ ବାବୁଙ୍କର ଏକମାତ୍ର ସନ୍ତାନ ଆରତୀ ଦେବୀଙ୍କ ହାତ ପାଦ ବାନ୍ଧି ଟେକି ନେଇ ଯାଉଛନ୍ତି । ମୋତେ ଦେଖି ଜଣେ ଲୋକ ଜାବୁଡ଼ି ଧରିଲା । ମୁଁ ହତଜ୍ଞାନ ହୋଇ ପଡ଼ିଗଲି । ସେମାନେ ମୋତେ ଦୂରକୁ ଫିଙ୍ଗିଦେଇ ଆରତୀ ଦେବୀଙ୍କୁ ଘେନି ଅନ୍ତର୍ଦ୍ଧାନ ହୋଇଗଲେ । ମୁଁ ସେମାନଙ୍କର କିଛି କରିପାରିଲି ନାହିଁ ଆଜ୍ଞା ! ଖାଲି ରହିଗଲି ଆଖିରୁ ଲୁହ ଗଡ଼ାଇ ଲୁଗା ତିନ୍ତେଇବା ପାଇଁ ।

ଅମରବାବୁ ଚିହିଁକି ପଡ଼ିଲେ: କ'ଣ କହୁଛୁ ସତିଆ । ପୁଲିନବାବୁଙ୍କ କନ୍ୟାକୁ ଦୁର୍ବୃତ୍ତମାନେ ବଳାତ୍କାର କରି ନେଇ ଯାଇଛନ୍ତି ?

ସତିଆ ଆଉ ଜବାବ ଦେଲା ଭଳି ଅବସ୍ଥାରେ ନଥିଲା । ସେ ଲୋଟିପଡ଼ିଲା ପୁଲିନବାବୁଙ୍କ ଉପରେ । ସତିଆର କରୁଣ ବିଳାପ ଅମରବାବୁଙ୍କ ଆଖିରୁ ଲୋତକ ନିଗିଡ଼ାଇ ଆଣିଲା । ସେ ସ୍ଥିର ହୋଇ ରହି ନପାରି ଘରର ଚତୁଃପାର୍ଶ୍ୱରେ ଅନୁସନ୍ଧାନ କରିବାକୁ ଲାଗିଲେ ।

ପୁଲିନବାବୁଙ୍କ ଶୟନକକ୍ଷ ସେ ପାଖକୁ ଆରତୀ ଦେବୀଙ୍କ ଶୟନ କକ୍ଷ । ଆରତୀଦେବୀଙ୍କ କକ୍ଷର ଜିନିଷପତ୍ର ଯାଡ଼େସାଡ଼େ ଛିନଛତର ହୋଇପଡ଼ିଛି । ପଲଙ୍କ ଉପରେ ଧ୍ୱସ୍ତାଧ୍ୱସ୍ତିର ଚିହ୍ନ । କାଚ କେଇପଟ ଭାଙ୍ଗି ଚୁନା ହୋଇ ପଲଂକ ତଳେ ପଡ଼ିଛି ।

ଅମରବାବୁ ବୁଝିଲେ, ଆରତୀ ଦେବୀ ଦୁର୍ବୃତ୍ତମାନଂକ କବଳରୁ ନିଜକୁ ବଞ୍ଚାଇବା ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ସେଇ ସମୟରେ ସେ ବୋଧହୁଏ ଖୁବ୍ ଜୋର୍‌ରେ ଚିତ୍କାର କରିଥିଲେ । ଝିଅର ଚିତ୍କାରରେ ପୁଲିନବାବୁଙ୍କ ନିଦ ଭାଜିଯାଇଛି ଏବଂ ସେ ଝିଅକୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଛନ୍ତି । ହୁଏତ ସେତିକିବେଳେ ଦୁର୍ବୃତ୍ତମାନେ ପୁଲିନବାବୁଙ୍କ ଉପରକୁ ଗୁଳି ଚଳାଇଛନ୍ତି । ଅମରବାବୁଙ୍କ ମୁଣ୍ଡ ବୁଲେଇ ଦେଲା । ବେଳୁବେଳ ଘଟଣାଟା ଜଟିଳରୁ ଜଟିଳତର ହୋଇଉଠୁଛି ଯେ !

ସେ ଖୁବ୍ ଦକ୍ଷତାର ସହିତ ଘରଟିକୁ ତଲାସ କଲେ । ମାତ୍ର କେଶାଗ୍ର ପରିମିତ କୌଣସି ସୂତ୍ର ଆବିଷ୍କାର କରିପାରିଲେ ନାହିଁ, ଯା ସାହାଯ୍ୟରେ ସଇତାନମାନଙ୍କର ସନ୍ଧାନ ନିଆଯାଇପାରିବ । ଅମରବାବୁଙ୍କର ବାରମ୍ବାର ପରାଜୟ ତାଙ୍କୁ ବଡ଼ ବିବ୍ରତ କରିପକାଇ ଥିଲା । ସେ ନିଜକୁ ଶତ ଧିକ୍‌କାର କଲେ, କିନ୍ତୁ କ'ଣ ହେବ । ଚଢ଼େଇ ଯେ ପଞ୍ଜୁରିରୁ ଉଡ଼ିଯାଇ ସାରିଲାଣି ।

ପୁଲିନବାବୁଙ୍କ ଶୟନ କକ୍ଷରେ ଟେଲିଫୋନଟିଏ ଥିଲା । ସେ ପରୀକ୍ଷା କରି ଦେଖିଲେ ଚଳନ୍ତ ଅବସ୍ଥାରେ ଅଛି । ତତ୍‌କ୍ଷଣାତ୍ ଥାନାକୁ ଟେଲିଫୋନ କରି ପ୍ରଫୁଲ୍ଲବାବୁଙ୍କୁ

ସମସ୍ତ ଘଟଣା ଜଣାଇଲେ । ପ୍ରଫୁଲ୍ଲବାବୁ ସଦଳବଳେ ଆସୁଛନ୍ତି କହି ଟେଲିଫୋନରୁ ଅମରବାବୁଙ୍କ ଠାରୁ ବିଦାୟ ନେଲେ ।

ପ୍ରାୟ ପନ୍ଦର ମିନିଟ ପରେ ପ୍ରଫୁଲ୍ଲବାବୁ ଘଟଣାସ୍ଥଳୀରେ ପହଞ୍ଚି ଅଭୂତପୂର୍ବ କାଣ୍ଡ ଦେଖି ବିସ୍ମିତ ହେଲେ । ତାଙ୍କ ଦଳଙ୍କ ତୁଣ୍ଡ କହିଲା : କ'ଣ ଆଉ କରାଯାଇପାରେ ଅମରବାବୁ ! ଖୁଣ ଏବଂ ହରଣଚାଳର ମାତ୍ରା ଏତେ ବେଶୀ ବଢ଼ିଗଲାଣି ଯେ, ଦେଶରେ ଯେମିତି ଅରାଜକତା ସୃଷ୍ଟି ହେଲା ଭଳି ମନେହେଉଛି । ଜନସାଧାରଣ ଆପଦ ମଣିଲେଣି । ଏଥିକୁ ଉପାୟ କ'ଣ ?

ଅମରବାବୁ ଉପାୟ ଚିନ୍ତା କରୁଥିଲେ । ପ୍ରଫୁଲ୍ଲବାବୁଙ୍କ କଥାର ଉତ୍ତର ଦେବାକୁ ଯାଇ କହିଲେ ହଁ, ଉପାୟ କ'ଣ ! ପଞ୍ଚାକ୍ଷରୀ ମନ୍ତ୍ର । ଏମିତି ଆମେ ଜପୁଥିବା ଦିବସ ଶର୍ବରୀ ଆଉ ସେମାନେ ଆଗେଇ ଚାଲିଥିବେ ଆପଣା ଉଦ୍ଦେଶ୍ୟ ସାଧନରେ ।

ପୁଣି ହଠାତ୍ ରାତ୍ରିର ନିସ୍ତବ୍ଧତା ଭଙ୍ଗ କରି ଗୋଟାଏ ପିସ୍ତଲର ଆବାଜ ହେଲା । ଦୁହେଁ ଚେଇଁ ଉଠିଲା ପରି କାନ ଛିଡ଼ା କଲେ । ବହୁତ ଦୂରରେ ଆବାଜ ହେଲାପରି ମନେହେଲା । ପର ମୁହୂର୍ତ୍ତରେ ସବୁ ଶୂନଶାନ । ଅମରବାବୁ ପ୍ରଫୁଲ୍ଲବାବୁଙ୍କ ମୁହଁକୁ ଓ ପ୍ରଫୁଲ୍ଲବାବୁ ଅମରବାବୁଙ୍କ ମୁହଁକୁ ଅନାଇ ରହିଲେ । କାହାରି ତୁଣ୍ଡରେ ଭାଷା ନ ଥିଲା । ପୁଣି କେଉଁଠି ଦୁର୍ବୃତ୍ତମାନଙ୍କର ନୂତନ ଅଭିଯାନ ସୁରୁ ହେଲାଣି । ଦୁହିଁଙ୍କ ଅନ୍ତରରେ ଏହି ଗୋଟାଏ ଭାବ ଗଜେଇ ଉଠିଥିଲା ।

ଅମରବାବୁ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ ଆଚ୍ଛା ପ୍ରଫୁଲ୍ଲବାବୁ ! ଆପଣ ଶବ ପାଖରେ ଥାଆନ୍ତୁ ତ, ମୁଁ ଟିକିଏ ବାହାରୁ ଆସୁଛି ।

ସେ କ୍ଷିପ୍ର ପଦଚାଳନାରେ ଆଗେଇ ଗଲେ ।

ପ୍ରଫୁଲ୍ଲବାବୁ କେବଳ ତାଙ୍କ ଯିବା ପଥକୁ ଅନେଇ ରହିଲେ, ସତେ ଯେପରି ସେ ଦାରୁଟିଏ ପାଲଟି ଯାଇଛନ୍ତି । ତାଙ୍କ ଦୃଷ୍ଟି ଶକ୍ତି ଧୀରେ ଧୀରେ ଥମି ଆସିଲା ।

## ଛାୟାର ମାୟା

ସେଇଦିନ ରାତି ତିନିଟା । ରଣଜିତ୍‌ବାବୁ ତାଙ୍କର ଛଦ୍ମ ଆବରଣଗୁଡ଼ିକ ଖୋଲି ନିଜର ଚଳନ୍ତି ପୋଷାକ ପିନ୍ଧୁଥିଲେ । ହଠାତ୍ ଘରର ସତର୍କ ଘଣ୍ଟି ବାଜି ଉଠିଲା । ଘରେ ଜଳୁଥିବା ବତିଗୁଡ଼ିକ ଲିଭେଇ ଦେଇ ଚାଦର ଖଣ୍ଡେ ଦେହରେ ପକାଇ ସେ ବିଛଣା ଉପରେ ଶୋଇପଡ଼ିଲେ ।

ଅମରବାବୁ ଦରଜାରେ କରାଘାତ କଲାରୁ ଦ୍ୱାରରକ୍ଷୀ କବାଟ ଖୋଲିଦେଲା । ସେ ରଣଜିତ୍‌ବାବୁଙ୍କ ଶୟନକକ୍ଷ ନିକଟରେ ପହଞ୍ଚି ବତି ସୁଇଚରେ ହାତ ମାରିଲେ । ଅମରବାବୁଙ୍କ ଆହ୍ୱାନ କ୍ରମେ ରଣଜିତ୍‌ବାବୁ ନିଦମଳମଳ ଆଖିରେ ବିଛଣାରୁ ଉଠି ବିସ୍ମୟ ବିସ୍ଫାରିତ ନୟନରେ ଚାହିଁ ପଚାରିଲେ   ଆପଣ ଏତେ ରାତିରେ ଅମର ବାବୁ ?

ଅମରବାବୁ ଲକ୍ଷ୍ୟ କରି ଦେଖିଲେ ରଣଜିତ୍‌ବାବୁଙ୍କ ଆଖି ଲାଲବର୍ଣ୍ଣ ଦିଶୁଛି । ନାକରୁ ଖରଶ୍ୱାସ ବାହାରୁଛି । ସେ ବୁଝିପାରିଲେ ରଣଜିତ୍‌ବାବୁ ହୁଏତ ତାଙ୍କ ସହିତ ଖେଳୁଛନ୍ତି । ଶୋଇବାର କୌଣସି ଲକ୍ଷଣ ଫୁଟି ନାହିଁ ରଣଜିତ୍‌ବାବୁଙ୍କ ମୁହଁରେ, ଅଥଚ ସେ ଶୋଇଥିବାର ଅଭିନୟ ନିଖୁଣ ଭାବରେ କରିବାକୁ ଚେଷ୍ଟା କରୁଛନ୍ତି । କାରଣ କ'ଣ ? ତେବେ କ'ଣ... ମନର ସମସ୍ତ ଭାବ ଗୋପନ ରଖି ଅମରବାବୁ ପଚାରିଲେ : ଆଚ୍ଛା ରଣଜିତ୍‌ବାବୁ ! ଦୁଇଘଣ୍ଟା ପୂର୍ବରୁ ଆପଣ କେଉଁଆଡ଼େ ଯାଉଥିଲେ କି ?

ରଣଜିତ୍‌ବାବୁ ଟିକିଏ ଇତସ୍ତତଃ ହୋଇ କହିଲେ   ମୁଁ !! ମୋ କଥା ପଚାରୁଛନ୍ତି ?? ହଁ, ଜଣେ ବନ୍ଧୁଙ୍କ ଘରେ ନିମନ୍ତ୍ରଣ ଥିଲା ଯେ ସେଇଠାକୁ ଯାଇଥିଲି, ଏଇ ଘଣ୍ଟାଏ ହେବ ଫେରିଛି । କାହିଁକି ? ତେବେ ଆପଣ କ'ଣ ମୋତେ ପୂର୍ବରୁ ଖୋଜିବାକୁ ଆସିଥିଲେ ?

ଅମରବାବୁ ରଣଜିତ୍‌ବାବୁଙ୍କ କୌଣସି ପ୍ରଶ୍ନର ଉତ୍ତର ନ ଦେଇ ପଚାରିଲେ : ଆଚ୍ଛା, ଆପଣ ସହରର କୌଣସି ଦୁର୍ଘଟଣା ସମ୍ବାଦ ପାଇଛନ୍ତି କି ?

ରଣଜିତ୍‌ବାବୁ ଅମରବାବୁଙ୍କ ମୁହଁକୁ ହାଁ କରି ଅନାଇ ରହିଲେ । ଅସ୍ପଷ୍ଟ ଭାଷାରେ ତାଙ୍କ ତୁଣ୍ଡରୁ ବାହାରି ଆସିଲା   ଦୁର୍ଘଟଣା ?

ଅମରବାବୁ ଦୃଢ଼ କଣ୍ଠରେ କହିଲେ : ହଁ ଦୁର୍ଘଟଣା । ଆପଣ ଯଦି ଦୁଇଘଣ୍ଟା ପୂର୍ବେ ଶୋଇ ନଥିଲେ ବୋଲି କହୁଛନ୍ତି, ତେବେ ପିସ୍ତଲର ଆବାଜ ନିଶ୍ଚୟ ଶୁଣିଥିବେ ?

ରଣଜିତ୍‌ବାବୁ ଟିକିଏ ଚିନ୍ତା କରି କହିଲେ : ହଁ, ସେମିତି କ'ଣ ଗୋଟାଏ ଦି'ଟା ଆୱାଜ ମୋ କାନରେ ବାଜିଥିଲା । ତେବେ ମୁଁ ସେ ଆଡ଼କୁ ଏତେଟା ଲକ୍ଷ୍ୟ କରିନି । କାହିଁକି, ଯା ଭିତରେ ସହରରେ କୌଣସି ଦୁର୍ଘଟଣା ଘଟି ଯାଇଛି ନା କ'ଣ ?

ଅମରବାବୁ ମଉନ ରହିଲେ । ହଠାତ୍ ତାଙ୍କ ଦୃଷ୍ଟି ଆକର୍ଷଣ କଲା ଗୋଟାଏ ଦୃଶ୍ୟ ପ୍ରତି । ସେ ଦେଖିଲେ ବାହାରପଟ ବାରଣ୍ଡାରେ କାଚ ଝରକା ପାଖ ଦେଇ ଗୋଟାଏ ଛାୟାମୂର୍ତ୍ତି ଆଗେଇ ଯାଉଛି । ସେ ତତ୍‌କ୍ଷଣାତ୍ ଉଠିପଡ଼ି ତା'ରି ଆଡ଼କୁ ଆଗେଇ ଗଲେ । ରଣଜିତ୍‌ବାବୁ ମଧ୍ୟ ଅମରବାବୁଙ୍କ ଅଲକ୍ଷ୍ୟରେ ତାଙ୍କ ପଛେ ପଛେ ଚାଲିଲେ । ମୂର୍ତ୍ତିଟି ରଣଜିତ୍‌ବାବୁଙ୍କ ବାରଣ୍ଡାରୁ ଓହ୍ଲାଇ ଧୀରେଧୀରେ ଗୋଟିଏ ଗଳି ରାସ୍ତା ଭିତରେ ପଶିଲା । ଅମରବାବୁ ଖୁବ୍ ସତର୍କତା ଅବଲମ୍ବନ କରି ଖଣ୍ଡେ ଦୂର ଛଡ଼ାରେ ସେଇ ଛାୟାମୂର୍ତ୍ତିଟି ପଛେ ପଛେ ଆଗେଇ ଥାଆନ୍ତି । ମୂର୍ତ୍ତିଟି ଏଗଳି ସେଗଳି ହୋଇ ଗୋଟିଏ ଭଙ୍ଗାକୋଠା ଭିତରକୁ ପଶିଲା । ଅମରବାବୁ ଧୀରେ ଛାୟାମୂର୍ତ୍ତିଟିକୁ ଅନୁସରଣ କଲେ । ମାତ୍ର ଭଙ୍ଗାକୋଠି ଭିତରେ ସେ ଛାୟାମୂର୍ତ୍ତିଟି ଯେ କେଉଁଆଡ଼େ ଉଭେଇ ଗଲା ଅମରବାବୁ ତା' ଚିହ୍ନବର୍ଣ୍ଣ ସୁଦ୍ଧା ଦେଖିବାକୁ ପାଇଲେ ନାହିଁ ।

ସେ କୋଠାଟାର ତଳ ଉପର ସବୁଆଡ଼େ ଖୋଜିଲେ, ମାତ୍ର କୋଠାଟା ନିଶୂନ ଜଣାଗଲା । କେହି ଲୋକ ସେଠାରେ ବାସ କରିଲା ଭଳି ଅବସ୍ଥା ସେ କୋଠାର ନ ଥିଲା । ସେପରି କୌଣସି ଆଖିରୋଚକ ଅସବାବପତ୍ର ମଧ୍ୟ ସେ କୋଠା ଭିତରୁ ଦେଖିବାକୁ ପାଇଲେ ନାହିଁ । ଟର୍ଚ୍ଚ ଜଳାଇ ପ୍ରତ୍ୟେକଟି ସ୍ଥାନ ଅସ୍ଥାନ ଅନୁସନ୍ଧାନ କରି ଦେଖିଲେ । ମାତ୍ର ଛାୟାମୂର୍ତ୍ତିଟି କୁଆଡ଼େ ମିଳେଇ ଯାଇଛି ।

ସେ ନିଜକୁ ବଡ଼ ତୁଚ୍ଛ ମନେକଲେ । ବାରମ୍ବାର ଦୁର୍ବୃତ୍ତମାନଙ୍କ ନିକଟରେ ପରାଜୟ ସ୍ୱୀକାର ତାଙ୍କ ଆତ୍ମାକୁ ବଡ଼ ବାଧିଲା । ଭଙ୍ଗାକୋଠାଟା ଯେମିତି ତାଙ୍କୁ ଉପହାସ କରୁଛି । ସେ ଯେଉଁ ସନ୍ଦେହ ମନୋଭାବ ନେଇ ରଣଜିତ୍‌ବାବୁଙ୍କ ପାଖକୁ ଯାଇଥିଲେ, ତାଙ୍କ ସନ୍ଦେହ ରଣଜିତ୍‌ବାବୁଙ୍କ ପ୍ରତି ଟିକିଏ କୋହଳ ହୋଇଆସିଲା । ସେ ଭଙ୍ଗାକୋଠାରୁ ପଦାକୁ ବାହାରି ଆସିଲେ । ଏହି ସମୟରେ କାହାର ଅଟ୍ଟହାସ୍ୟ ତାଙ୍କ କର୍ଣ୍ଣକୁହରରେ ପ୍ରବେଶ କଲା । ସଙ୍ଗେସଙ୍ଗେ ସେ ଗୋଟାଏ ମଟର ଷ୍ଟାର୍ଟ ହେବାର ଶବ୍ଦ ଶୁଣିଲେ । କୋଠାର ପଛ ପଟରୁ ଖଣ୍ଡିଏ ମଟର ଉଲ୍‌କା ବେଗରେ ଛୁଟିଗଲା ଭଳି ସେ ଅନୁଭବ କଲେ । ପାଦ ଯୋଡ଼ିକ ତାଙ୍କର ଲେଉଟି ଆସିଲା କୋଠାର ପଛ ପଟକୁ । ସେଠାରେ ଯାହା ଦେଖିଲେ ତାଙ୍କ ଦିହ ଶୀତେଇ ଉଠିଲା ।

ଫୁଲାଏ ରକ୍ତ ଏକାଠି ଜମି ଯାଇଛି । ଗୋଟାଏ ବ୍ଲାଉଜ ରକ୍ତ ଜୁଡୁବୁଡୁ ହୋଇ ଅଳ୍ପ ଦୂରରେ ପଡ଼ିଛି । ସୁନାମୁଦିଟିଏ ଖଣ୍ଡେ ଦୂରରେ ଝଟକୁଚି । ଅମରବାବୁ ଟର୍ଚ୍ଚ ନିଭେଇ ଦେଲେ । ଭାବନା ତାଙ୍କର ଗୋଳମାଳିଆ ହେଇଗଲା । ଏଠାରେ ପୁଣି କାହାକୁ ଖୁଣ୍ କରାଯାଇ ନାହିଁ ତ ? ଆଉ କ'ଣ ପୁଲିନବାବୁଙ୍କ ଝିଅ ଆରତୀଦେବୀଙ୍କର ଜୀବନଲୀଳା ଏହିଠାରେ ସାଙ୍ଗ କରାଯାଇଛି ? କିଏ ଜାଣେ ! ଅମରବାବୁଙ୍କ

ସନ୍ଦେହୀ ମନ ସନ୍ଦେହ ଦୋଳାରେ ଦୋଳି ଖେଳିଲା । ସେ ସୁନା ଆଙ୍ଗୁଠି ଓ ବ୍ଲାଉଜ ଗୋଟେଇ ଆଣିଲେ । ଆଉ କିଛି ନୂତନ ତଥ୍ୟ ଆବିଷ୍କାର କରିବା ମାନସରେ ସେ ଟର୍ଚ୍ଚ ଆଲୁଅ ଆଉ ଟିକିଏ ଦୂରକୁ ପକାଇଲେ, ଦେଖିଲେ ଗୋଟିଏ ପାଣିଧାର ଆଗକୁ ଲମ୍ବି ଯାଇଛି । ସେ ଟର୍ଚ୍ଚ ଜଳାଇ ଜଳାଇ ପାଣିଧାରକୁ ଅନୁସରଣ କରି କରି ଆଗକୁ ବଢ଼ିଲେ । ପାଣିଧାରଟି ଆହୁରି ଆଗକୁ ଆଗକୁ ଲମ୍ବି ଯାଇଥିଲା । ଅମରବାବୁ ଭାବିଲେ, ବୋଧହୁଏ କ୍ଷଣକ ପୂର୍ବରୁ ଏଠାରେ ଯେଉଁ ମଟର ଛାଡ଼ିଲା, ତାରି ପାଣିଟାଙ୍କି ଅଥବା ପେଟ୍ରୋଲ ଟାଙ୍କି କୌଣସି ପ୍ରକାରେ ଲିକ୍ କରୁଛି । ଯା' ଫଳରେ ମଟରଟି ଚାଲିଯାଉଥିବା ସଙ୍ଗେ ସଙ୍ଗେ ପାଣିଗାର ରାସ୍ତାରେ ପଡ଼ି ପଡ଼ି ଯାଇଛି । ତାଙ୍କ ମଳିନ ମୁଖମଣ୍ଡଳରେ କ୍ଷୀଣ ହାସ୍ୟରେଖାଟିଏ ଫୁଟିଉଠିଲା । ଯା' ହେଉ ଏତେବେଳେକେ ତଥ୍ୟଭଳି ଗୋଟିଏ ତଥ୍ୟ ମିଳିଛି । ସେ ଟର୍ଚ୍ଚ ଜାଳି ଜାଳି ସେଇ ପାଣିଧାରର ଅନୁସରଣ କଲେ । ଦୁଇ ତିନିଟା ଗଳିରାସ୍ତା ଅତିକ୍ରମ କରି ଅମରବାବୁ ସଦର ରାସ୍ତା ଉପରେ ଯାଇ ପହଞ୍ଚିଲେ । ପାଣିଧାର ସେମିତି ପଡ଼ିଥାଏ । ଅମରବାବୁ ଆଗକୁ ଆଗକୁ ବଢୁଥାଆନ୍ତି । ଯେତେବେଳେ ସେ ଯାଇ ପାଣିଧାରର ଶେଷ ସୀମାରେ ପହଞ୍ଚିଲେ ସେତେବେଳକୁ ଭୋର ପାଞ୍ଚଟା ।

ସେ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ନନ୍ଦଲାଲବାବୁଙ୍କ ଗ୍ୟାରେଜ ପାଖରେ ପାଣିଧାର ବନ୍ଦ ହୋଇଛି । ସେ ପକେଟରୁ ଚାବି ନେଞ୍ଚାଏ କାଢ଼ି ଗ୍ୟାରେଜର ତାଲା ଖୋଲିଲେ, ଦେଖିଲେ ମଟର ଖଣ୍ଡିକରୁ ଗରମ ଉଠୁଛି । ସେ ନିଶ୍ଚିନ୍ତ ହେଲେ ଯେ, ଏହି ମଟର ଖଣ୍ଡିକ ନିଶ୍ଚୟ ସେ ଭଙ୍ଗାକୋଠା ପାଖକୁ ଯାଇଥିଲା ଓ ସେଠାରୁ ଆସି ଏଠାରେ ରହିଛି । ଅମରବାବୁ ଖୁବ୍ ସନ୍ତର୍ପଣରେ ପରୀକ୍ଷା କାର୍ଯ୍ୟ ସମାପନ କରି ସଡ଼କ ଉପରକୁ ବାହାରି ଆସିଲେ । ନନ୍ଦଲାଲବାବୁଙ୍କ ଚାକର ଦାଣ୍ଡ ଦରଜା ଖୋଲିଲା । ଅମରବାବୁ ପୁଣି ଆଗେଇ ଆସି ଚାକରକୁ ପଚାରିଲେ : ନନ୍ଦଲାଲବାବୁ ଉଠିଲେଣି ?

ଚାକର ଉତ୍ତର ଦେଲା  ବାବୁ ସାତଟାରେ ଉଠନ୍ତି । ବର୍ତ୍ତମାନ ତାଙ୍କ ସହିତ ଦେଖା ହୋଇପାରିବ ନାହିଁ ।

ଅମରବାବୁ ଫେରିଆସିଲେ । ତାଙ୍କ ମନ ଆନନ୍ଦ ଓ ନିରାନନ୍ଦ ମଝିରେ ପଡ଼ି ଚକଟି ମକ୍ଟି ହେଉଥିଲା । ସେ ସଇତାନର ସନ୍ଧାନ ପାଇଛନ୍ତି ଭାବି ଯେତିକି ଆନନ୍ଦ ପ୍ରକାଶ କରୁଥିଲେ, ପୁଣି ନନ୍ଦଲାଲବାବୁଙ୍କ ମୁହଁ ଆଖି ଆଗରେ ନାଚି ଉଠିବାରୁ ସେ ସେତିକି ନିରାଶ ହୋଇପଡ଼ିଥିଲେ । ନନ୍ଦଲାଲବାବୁଙ୍କ ପରି ଧନସମ୍ପନ୍ନ, ମାନ ମର୍ଯ୍ୟାଦାପୂର୍ଣ୍ଣ ବ୍ୟକ୍ତିଙ୍କ ପକ୍ଷରେ ଏ କୁକାର୍ଯ୍ୟ ଅସମ୍ଭବ । ତେବେ ଗାଡ଼ି ଯେ ତାଙ୍କରି ? ମନ ଭିତରେ ତାଙ୍କର ସୁଆଲ ଜବାବ ହେଉଥିଲା । ପୁଣି ଭାବିଲେ, ହୁଏତ ଏପରି ହୋଇପାରେ ଦୁର୍ବୃତ୍ତମାନେ ତାଙ୍କ ଗ୍ୟାରେଜରୁ ଗାଡ଼ି କାଢ଼ିନେଇ ଆପଣା ଉଦ୍ଦେଶ୍ୟ ସାଧନ ପରେ ପୁଣି ଯଥା ସ୍ଥାନରେ ରଖିଦେଇ ଯାଇଛନ୍ତି ।

ଏହିଭଳି ସନ୍ଦେହ ଭିତର ଦେଇ ଅମରବାବୁ ଆଗକୁ ବଢୁଥିଲେ । ମାତ୍ର ଭାବନାର କ୍ଷୁଦ୍ର କ୍ଷୁଦ୍ର କଣିକା ତାଙ୍କ ମୁଣ୍ଡରେ ଏପରି ବସାବାନ୍ଧି ଯାଇଥିଲା ଯେ ସେ ଲକ୍ଷ୍ୟ କରିପାରି ନଥିଲେ ଆଉ ଜଣେ ଲୋକ ତାଙ୍କ ପଛେପଛେ ଥାଇ ତାଙ୍କର ସମସ୍ତ କାର୍ଯ୍ୟକଳାପ ଲକ୍ଷ୍ୟ କରିବା ସଙ୍ଗେସଙ୍ଗେ ନନ୍ଦଲାଲବାବୁଙ୍କ ଗ୍ୟାରେଜ ପର୍ଯ୍ୟନ୍ତ ଆଗେଇ ଯାଇ ପୁଣି ଫେରିଆସିଛି ।

ଅମରବାବୁ ଆପଣା ଚିନ୍ତାରେ ନିମଗ୍ନ ଥାଇ ପୁଳିନବାବୁଙ୍କ ବାସଭବନରେ ଉପସ୍ଥିତ ହେଲେ । ପ୍ରଫୁଲ୍ଲବାବୁଙ୍କର ତଦନ୍ତ ରିପୋର୍ଟ ଲେଖା ସରିଥିଲା । ସେ ଅମରବାବୁଙ୍କୁ ଫେରିଆସିବାର ଦେଖି ଆନନ୍ଦରେ କୁରୁଳି ଉଠି ପଚାରିଲେ  କିଛି ସନ୍ଧାନ ମିଳିଲା ଅମରବାବୁ ?

ଅମରବାବୁ ଚିନ୍ତାନ୍ୱିତ ମୁଣ୍ଡଟାକୁ ଦୁଇ ହାତରେ ଚାପିଧରି ଗୋଟିଏ ଚୌକି ଉପରେ ବସିପଡ଼ିଲେ । ସେ ପ୍ରଫୁଲ୍ଲବାବୁଙ୍କ କଥାରେ କୌଣସି ଉତ୍ତର ନ ଦେଇ ସତିଆକୁ ପାଖକୁ ଡାକିଲେ । ପକେଟରୁ ସୁନାମୁଦିଟି ବାହାର କରି କହିଲେ  ଏ ମୁଦିଟି ତୁମେ ଚିହ୍ନିପାରୁଛ ବୁଢ଼ା ।

ପୁଳିନବାବୁଙ୍କ ବୃଦ୍ଧ ଚାକର ସତିଆ ମୁଦିଟି ଦେଖିବା ମାତ୍ରେ ଚିତ୍କାର କରି ଉଠିଲା  ଏ ତ ଆଜ୍ଞା ଆରତୀଦେବୀଙ୍କ ମୁଦି, ଆପଣ କେଉଁଠୁ ପାଇଲେ ?

ଅମରବାବୁ ପଚାରିଲେ : ତୁମେ ଠିକ୍ ଜାଣ ଏଇଟା ଆରତୀଦେବୀଙ୍କ ମୁଦି ?

ସତିଆ ବିକଳ ସ୍ୱରରେ କହିଲା  ମୋର କାଳକ କଟିଗଲାଣି ବାବୁଙ୍କ ଘରେ । ମୁଁ ଆଉ କିଏ କାହାର ଜିନିଷ ଚିହ୍ନି ନାହିଁ ନା ?

ଅମରବାବୁ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇଲେ । ପ୍ରଫୁଲ୍ଲବାବୁଙ୍କ ଆଡ଼େ ଚାହିଁ କହିଲେ  ଚାଲନ୍ତୁ ତେବେ, ଥାନାକୁ ଫେରିଯିବା । ସେହିଠାରେ ସମସ୍ତ କଥା ମୁଁ ଆପଣଙ୍କୁ କହିବି ।

ପ୍ରଫୁଲ୍ଲବାବୁ ଜଣେ ଦୁଇଜଣ କନେଷ୍ଟବଲ ପୁଳିନବାବୁଙ୍କ ମୃତଦେହ ପାଖରେ ଜଗାଇ ଦେଇ ଥାନା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ବାଟରେ ଅମରବାବୁ କେବଳ ଏତିକି କହିଲେ : ମୋର ଅନୁମାନ, ଆରତୀଦେବୀ ମୃତା । ବେଲୁବେଳ ଘଟଣା ବଡ଼ ଜଟିଳ ହୋଇପଡୁଛି ପ୍ରଫୁଲ୍ଲବାବୁ । ଖୁବ ସତର୍କତା ଅବଲମ୍ବନ କରି ଆମଙ୍କୁ କାର୍ଯ୍ୟରେ ଅଗ୍ରସର ହେବାକୁ ପଡ଼ିବ ।

ଗାଡ଼ି ଥାନା ଦୁଆରେ ଅଟକି ଯିବାକ୍ଷଣି ଗୋଟିଏ କନେଷ୍ଟବଲ ଅମରବାବୁଙ୍କୁ ଅଭିବାଦନ ଜଣାଇ କହିଲା : ଆପଣଙ୍କର ଟେଲିଫୋନ ଆସିଛି ଆଜ୍ଞା । ଟିକିଏ ଶୀଘ୍ର ଆସନ୍ତୁ ।

ଅମରବାବୁ ଗାଡ଼ିରୁ କୁଦି ପଡ଼ି ଟେଲିଫୋନ ଯନ୍ତ୍ର ପାଖରେ ଉପସ୍ଥିତ ହୋଇ ବାର୍ତ୍ତାବହ କଳଟିକୁ କାନରେ ଦେଲେ ।

ହାଲୋ ? କିଏ ସେ ଆପଣ ?

ମୁଁ ନନ୍ଦଲାଲ ।

ଓଃ ନନ୍ଦଲାଲବାବୁ । ଆପଣ ! ଖବର କ'ଣ ?

ଖବର ଆଉ କହି ଲାଭ ନାହିଁ ଅମରବାବୁ । ମୁଁ ବୁଝୁଛି ଆପଣମାନଙ୍କ କାର୍ଯ୍ୟକଳାପ ଦିନୁଦିନ ବଡ଼ ଶିଥିଳ ହୋଇପଡୁଛି । ଆପଣମାନଙ୍କର ଉଦାସୀନତା ଖୁବ୍ ବେଶୀ ବଢ଼ିଯାଉଛି । ଫଳରେ ଦେଶସାରା ଅରାଜକତା ସୃଷ୍ଟି ହେଲାଣି ।

କ'ଣ ଘଟଣା କ'ଣ ।

ଘଟଣା କହି କିଛି ଲାଭ ନାହିଁ । ଆପଣ କ'ଣ କୌଣସି ପ୍ରତିକାର କରିପାରିବେ ?

: ମୁଁ ବଡ଼ ଲଜ୍ଜିତ ନନ୍ଦଲାଲବାବୁ ! ଦିନ ପରେ ଦିନ ସହରରେ ନାନା ଅଘଟନ ଘଟି ଚାଲିଛି । ବହୁ ସତର୍କତା ଅବଲମ୍ବନ ସତ୍ତ୍ୱେ ଅଘଟନକାରୀମାନଙ୍କର କୌଣସି ଚିହ୍ନ ମିଳୁ ନାହିଁ । ଆଚ୍ଛା କୁହନ୍ତୁ ତ ଆପଣଙ୍କ ଘରଠି କୌଣସି ନୂଆ ରହସ୍ୟ ଆରମ୍ଭ ହୋଇଛି ନା କ'ଣ ?

ନନ୍ଦଲାଲବାବୁ ଟିକିଏ ଚଢ଼ା ଗଳାରେ କହିଲେ ନୂଆ ରହସ୍ୟ ପୁରୁଣା ରହସ୍ୟରୁ ମୁଁ କିଛି ବୁଝେନା ଅମର ବାବୁ ! ତେବେ କାଲି ରାତିରେ ମୋ ଗ୍ୟାରେଜରୁ ମଟର ଖଣ୍ଡିକ ବାହାରି ଯାଇ ସାରା ରାତି ବାହାରେ ବୁଲିଚି, ଅଥଚ ମୁଁ ତା'ର ଟେର ପାଇନି । କାଲି ଏକ ଦୈବ ଦୁର୍ଘଟଣାବଶତଃ ମୋ ବାଁ ହାତଟା ଟିକିଏ ଜଖମ ହୋଇ ଯାଇଥିବାରୁ ମୁଁ ଆଉ ସନ୍ଧ୍ୟା ପରେ କୁଆଡ଼େ ନ ଯାଇ ଘରେ ଶୋଇରହିଥିଲି । ଫଳରେ ମଟର ଗ୍ୟାରେଜରେ ବନ୍ଦ ହୋଇଥିଲା । ଆଜି ସକାଳେ ଡ୍ରାଇଭର ଆସି ଦେଖେ ତ ଟୋପାଏ କରି ପେଟ୍ରୋଲ ନାହିଁ ଓ ମଟରରୁ ତାତି ଉଠୁଛି, ଅଥଚ ଗ୍ୟାରେଜର ଚାବି ପୂର୍ବପରି ବନ୍ଦ ଅଛି । କୁହନ୍ତୁ ତ ଏପରି ଯେଉଁଠି କାରସାଦି, ସେଠି ମଣିଷ ଘରକରି ରହିବ କିପରି ?

ଅମରବାବୁଙ୍କ ତୁଣ୍ଡ ଖୋଲିଲା ନାହିଁ । ସେ କ'ଣ କହିବେ ନ କହିବେ ହୋଇ ଜବାବ ଦେଲେ : ଆପଣ ଧୈର୍ଯ୍ୟ ହରାନ୍ତୁ ନାହିଁ ନନ୍ଦଲାଲବାବୁ ! ମୁଁ ଅଳ୍ପ ଦିନ ମଧ୍ୟରେ ଦୁର୍ବୃତ୍ତମାନଙ୍କୁ ଖୋଜି ବାହାର କରିବା ନିମିତ୍ତ ଖୁବ୍ ଚତୁରତାର ସହ ଫାନ୍ଦ ପାତୁଛି ।

ନନ୍ଦଲାଲବାବୁ ହସିଲେ । କହିଲେ ଆପଣ ଫାନ୍ଦ ପାତୁ ପାତୁ ଆମର ଯେପରି ସର୍ବନାଶ ହୋଇ ନ ବସେ । ତା'ପରେ ଶବ୍ଦବାହୀ ଯନ୍ତ୍ରଟାକୁ ସେ ଯଥା ସ୍ଥାନରେ ରଖିଦେଲେ ।

ଅମରବାବୁ ପ୍ରଫୁଲ୍ଲବାବୁଙ୍କ ଆଡ଼େ ଚାହିଁ କହିଲେ : ମୁଁ ଯାହା ଭାବିଥିଲି ଠିକ୍ ସେଇଆ ଘଟିଛି । ନନ୍ଦଲାଲବାବୁଙ୍କ ଗାଡ଼ି ଗ୍ୟାରେଜରୁ ବାହାରି ରାତିସାରା ସହରର ଅନ୍ଦିକନ୍ଦି ପରିଭ୍ରମଣ କରିଛି । ଆଚ୍ଛା କୁହନ୍ତୁ ତ ପ୍ରଫୁଲ୍ଲବାବୁ ! ପ୍ରକୃତରେ ଯଦି ଦିନ ପରେ ଦିନ ଏହିପରି ଅସ୍ୱାଭାବିକ ଘଟଣାମାନ ଘଟି ଚାଲେ, ତେବେ ଲୋକମାନେ ଆମ ଉପରୁ ଆସ୍ଥା ହରାଇ ନ ବସିବେ ବା କାହିଁକି ?

ପ୍ରଫୁଲ୍ଲବାବୁ ଚିନ୍ତା କରୁଥିଲେ ପୁଳିନବାବୁଙ୍କ କଥା । ପଞ୍ଚଷଠି ବର୍ଷର ବୃଦ୍ଧ, ସରଳମନା । ମେଳାପୀ । ବାଳକଙ୍କ ପରି ସବୁବେଳେ ମୁହଁରେ ହସ ଲାଖି ରହିଥାଏ । ଦୂରରୁ ଦେଖିଲେ, 'ଆସ ଆସ' କହି ଦୁଇହାତ ବଢ଼ାଇ ପାଛୋଟି ନେବାକୁ ଧାଇଁ ଆସନ୍ତି । ଆଃ... କି ସୁନ୍ଦର ଲୋକ ପୁଳିନବାବୁ ! ମଣିଷ ହିସାବରେ ହୀରା ଖଣ୍ଡେ । ସେ କାହାର କି ଦୋଷ କଲେ ଯେ ତାଙ୍କୁ ହତ୍ୟା କରାଗଲା ? ପ୍ରକୃତରେ କାମିନୀ କାଞ୍ଚନ ବଡ଼ ବିପଦଜନକ ପଦାର୍ଥ । ଏ ପଦାର୍ଥ ଯୋଡ଼ିକ ଯାହା ପାଖରେ ଅଛି, ଆଜିକାଲି ଯୁଗରେ ତାର ପଦେ ପଦେ ବିପଦ । ଯଦି ପୁଳିନବାବୁଙ୍କ କନ୍ୟା ଆରତୀ ନଥାନ୍ତା, ତେବେ ଏତେ ଶୀଘ୍ର ଗୋଟିଏ ଆଦର୍ଶ ମାନବଙ୍କୁ ବୋଧହୁଏ ଆମେ ହରାଇ ନଥାନ୍ତୁ ।

ଅମରବାବୁଙ୍କ କଥାରେ ପ୍ରଫୁଲ୍ଲବାବୁଙ୍କ ଚିନ୍ତାର ଖିଅ ଛିଡ଼ିଗଲା । ସେ କହିଲେ ତା ତ ସତ ଅମର ବାବୁ । ତେବେ ସଇତାନମାନେ ଆମ ହାତମୁଠା ଯାଏ ନ ଆସିବା ପର୍ଯ୍ୟନ୍ତ ଆମର ତ କୌଣସି ଉପାୟ ନାହିଁ । ଆମେ ପୋଲିସ ବା ଗୁଇନ୍ଦା ହେଲେ ବୋଲି ଯେ ସାପକୁ ଗାତ ଭିତରୁ ଟାଣି ଆଣିବା, ୟାର କୌଣସି ମାନେ ହୁଏନା । ଆମେ ଆମ କର୍ତ୍ତବ୍ୟ କରି ଚାଲିଥାଇଁ । ବଦମାସଗୁଡ଼ାକ ଯଦି ଧରା ନ ପଡ଼ନ୍ତି, ସେଥିପାଇଁ କ'ଣ ଆମେ ଦାୟୀ ହେବା ?

ଅମରବାବୁ କହିଲେ : ବୁଝିଲେନା ପ୍ରଫୁଲ୍ଲବାବୁ ! ଆପଣ କଥାଗୁଡ଼ିକ ଯେତେ ସହଜରେ କହିଗଲେ, ପ୍ରକୃତରେ ଦେଖିବାକୁ ଗଲେ ଆପଣଙ୍କ ଦାୟିତ୍ୱଟା ସେତେ ହାଲ୍‌କା ନୁହେଁ । ଆପଣ ହେଉଛନ୍ତି ଦେଶର ଶାନ୍ତିରକ୍ଷକ, କଥାଟାକୁ ଯଦି ଆହୁରି ଟିକେ ତଳେଇ କରି ଓଜନ କରି ଦେଖନ୍ତି, ତେବେ ବୁଝିପାରିବେ ପ୍ରକୃତରେ ଦେଶ ପ୍ରତି ଆପଣଙ୍କର କର୍ତ୍ତବ୍ୟ କ'ଣ ।

## ସର୍ପ ଗହ୍ୱରରେ ଅମରବାବୁ

ସେଇଦିନ ରାତି ସାଢ଼େ ଆଠଟା ।

ଅମର ବାବୁ ପୋଲିସ ହେଡ କ୍ୱାଟର୍ସରୁ ଫେରୁଥାଆନ୍ତି ଆପଣା ମଟର ସାଇକେଲଟିରେ । ମନର ସରସତା ମଉଳି ପଡ଼ିଛି । ଆନମନା ହୋଇ ମଟର ସାଇକେଲଟି ଚଲେଇଛନ୍ତି । ଉପର ଡିପାର୍ଟମେଣ୍ଟମାନଙ୍କର ତାଗଦା ଉପରେ ତାଗଦା । ଯେମିତି ଇଚ୍ଛା ସେମିତି ଏଇ ସପ୍ତାହକ ମଧ୍ୟରେ ସଇତାନମାନଙ୍କୁ କରକବଳିତ କରିବାକୁ ହେବ । କିନ୍ତୁ କିପରି ? ରହସ୍ୟର ଯେ କୂଳ କିନାରା ମିଳୁ ନାହିଁ । ଅମରବାବୁ ତାଙ୍କର ସମସ୍ତ ଜୀବନକାଳ ଭିତରେ କେବେ ଏପରି ଅଘଟଣର ସମ୍ମୁଖୀନ ହୋଇ ନ ଥିଲେ । ଭାବନାର ସୁଅ ତାଙ୍କର ମଟର ସାଇକେଲ ଗତିଠାରୁ ଆହୁରି ବଢ଼ିଯାଇଛି ।

ରାସ୍ତାର ଏକ କ୍ରସିଂ । ହଠାତ୍ ତାଙ୍କ ଆଖି ପଡ଼ିଲା ଗୋଟାଏ ବାଦାମୀ ରଙ୍ଗର ମଟର ଗାଡ଼ି ଉପରେ । ଆଗେ ଆଗେ ଧାଇଁଛି । ଗାଡ଼ିଟା ଯେମିତି ଅମରବାବୁଙ୍କର ଚିହ୍ନା ଚିହ୍ନା । ନମ୍ବରକୁ ଚାହିଁଲେ । ବତି ଜଳୁନି । ଟର୍ଚ୍ଚ ପକାଇଲେ । ତାଙ୍କ ଅନୁମାନ ଠିକ୍ । ନନ୍ଦଲାଲବାବୁଙ୍କ ମଟର ଏଇଟା । କିନ୍ତୁ ମଟର ଭିତରେ ଏକ ରହସ୍ୟଜଡ଼ିତ ଆରୋହୀ । ଅମରବାବୁଙ୍କ ମନ ସରସତାରେ ପୂରି ଉଠିଲା । ଆଜି ବି ନନ୍ଦଲାଲବାବୁଙ୍କ ଗ୍ୟାରେଜର ଗାଡ଼ି ଅପସାରଣ କରାଯାଇଛି ।

ମଟର କଟକ ସହର ଛାଡ଼ି ଆଗେଇ ଗଲା । ଚାଳିଶ ମାଇଲ ସ୍ପିଡରେ ଧାଇଁଛି । ଅମରବାବୁଙ୍କ ମଟର ସାଇକେଲ ଠିକ୍ ଶହେ ହାତ ତଫାତ୍‌ରେ ଛୁଟିଛି ।

ଆଗରେ ଗଛଲତା, ଉହାଡ଼ିଆ, ଅନ୍ଧାର । ମଟର ଅଟକିଗଲା । ଅମରବାବୁ ମଟର ସାଇକେଲ ଥମେଇ ଦେଲେ । ଗୋଟାଏ ବୁଦା ଉହାଡ଼ରେ ସାଇକେଲ ରଖିଦେଇ ଆଗକୁ ଆଗେଇଗଲେ । ଅନ୍ଧାର ଆଖି ସହୁନି । ତଥାପି ଆଗେଇଲେ । ମଟର ଆରୋହୀକୁ ଅନୁସରଣ କରିବା ଅମରବାବୁଙ୍କ ଉଦ୍ଦେଶ୍ୟ । ଦୂରରେ କ୍ଷୀଣ ଆଲୋକଶିଖାଟିଏ ଦିଶୁଥିଲା । ଅମର ବାବୁ ପହଞ୍ଚିଲେ ଗୋଟାଏ ଭଙ୍ଗାକୋଠା ନିକଟରେ । କାହାରି ଗୋଳଚହଳ ନାହିଁ । ଆଲୁଅଟା ବି ଲିଭିଗଲାଣି ।

କୋଠାଟାର ଚାରିପାଖରେ ଭଙ୍ଗା ଇଟାର ସ୍ତୂପ । ଗୋଡ଼କୁ ଲାଗୁଛି । ଅମରବାବୁ ସେଇ ଅନ୍ଧକାର ଭିତରେ ଗୋଟିଏ ଛୋଟ ପଥ ଆବିଷ୍କାର କଲେ । ଏଇ

କୋଠାଟା ନିଶ୍ଚୟ ରହସ୍ୟମୟ ! ଟୋଟାଭରା ପିସ୍ତଲଟା ଡାହାଣ ହାତମୁଠାରେ ଶକ୍ତକରି ଧରି ଥାଆନ୍ତି । କ୍ରମଶଃ ଭିତରକୁ ପଶିଲେ । କ୍ଷୀଣ ଆଲୋକଶିଖାଟିଏ ଆଖିକୁ ଦିଶିଲା । ଧୀର ଧୀର କଥା କାନରେ ବାଜିଲା । ତା'ପରେ ଦୁଇଟି ଅସ୍ପଷ୍ଟ ମୂର୍ତ୍ତି ଗୋଟିଏ ଭଙ୍ଗା ଟେବୁଲର ଦୁଇ ପାଖରେ ଘେରି ବସିଛନ୍ତି । ଯେମିତି ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଚାଲିଛି । ଅମରବାବୁ ଅଳ୍ପ ଦୂରରେ ଛିଡ଼ାହୋଇ ସେମାନଙ୍କ କଥାବାର୍ତ୍ତା ଶୁଣିଲେ ।

ପ୍ରଥମ ଲୋକଟି କହିଲା   ଆପଣ ସୁସ୍ଥତା ଅନୁଭବ କରୁଛନ୍ତି ତ ?

ଦ୍ୱିତୀୟ ଲୋକଟି ଉତ୍ତର ଦେଲା   ମୋ ପାଇଁ ଚିନ୍ତା କର ନାହିଁ । ମୁଁ ବେଶ ସୁସ୍ଥ ଅଛି । ମୋ ପ୍ରତି ଭଗବାନ ସତତ ସଦୟ ଅଛନ୍ତି । ତା' ନ ହୋଇଥିଲେ ଗୁଳିଚୋଟ ମୋ ଛାତିରୁ ଖସି ବାହୁରେ ଲାଗି ନଥାନ୍ତା । ଆଚ୍ଛା, ସେ କଥାବାର୍ତ୍ତା ପରେ । କୁହ ତ, କାଲିର ଘଟଣା କ'ଣ ହେଲା ? ରଣଜିତ୍ ଘରେ ଥିଲା ତ ?

ପ୍ରଥମ ଲୋକଟି ଉତ୍ତର ଦେଲା   ମୁଁ ଯେତେବେଳେ ଯାଇ ରଣଜିତ୍ ଘରେ ପହଞ୍ଚିଲି, ଦେଖିଲି ସେତେବେଳେ ଅମରବାବୁ ତା' ସହିତ କ'ଣ ପରାମର୍ଶ କରୁଛନ୍ତି । ରଣଜିତ୍ ମଧ୍ୟ ନିଦରୁ ଉଠିଲା ଭଳି ମନେ ହେଉଥିଲା ! ତେଣୁ ମୋର ଅନୁମାନ ସେ ବୋଧହୁଏ କାଲି ରାତିରେ କୁଆଡ଼େ ଯାଇନାହିଁ !

ଦ୍ୱିତୀୟ ଲୋକଟି କହିଲା ମୁଁ ତ ବଡ଼ ଆଶ୍ଚର୍ଯ୍ୟ ହେଉଛି । କାହାର ଗୁଳିଚୋଟ ମୋ ବାହୁ ବିଦ୍ଧ କଲା ?

ହଠାତ୍ ଗୋଟାଏ ଆର୍ତ୍ତ ଚିତ୍କାର ଶୁଣି ସେ ଦୁହେଁ ଚମକି ପଡ଼ିଲେ । ଗୋଟାଏ ସବଳକାୟ ଲୋକ ରକ୍ତଜୁଡୁବୁଡୁ ଛୁରିକା ଧରି ସେ ଦିହିଁଙ୍କ ପାଖରେ ପହଞ୍ଚିଲା ।

ଦ୍ୱିତୀୟ ଲୋକଟି ପଚାରିଲା   ଘଟଣା କ'ଣ ?

ସେହି ସବଳକାୟ ଲୋକଟି ଉତ୍ତର ଦେଲା   ସେଇ ଗୁଇନ୍ଦା ଅମରବାବୁ ହୋ । ଏଇଠି ଲୁଚି ଲୁଚି ଆମର ସମସ୍ତ ଗୋପନ ପରାମର୍ଶ ଶୁଣୁଥିଲା । ବାଗରେ ପଡ଼ିଲା, ଛାଡ଼ି ଦିଅନ୍ତି କିଆଁ ? ଦେଲି ଛୁରି ଭୁକେଇ !

ଦ୍ୱିତୀୟ ଲୋକଟି ପ୍ରଥମ ଲୋକଆଡ଼େ ଚାହିଁ କହିଲା : ଏବେ ଉପାୟ କ'ଣ କୁହ ତ । ସେ ତ ସରକାରୀ ଲୋକଟାକୁ ଖୁଣ୍‌କରି ସାରିଲାଣି । ବଡ଼ ଜଟିଳ ପରିସ୍ଥିତି ହେଲା । ହୁଏତ ଏଇ ଅବସ୍ଥାଟାକୁ ଆମେ ସମ୍ଭାଳି ନେଇ ନ ପାରିଲେ, ପରିଣାମ ବଡ଼ ବିଷମ ଆକାର ଧାରଣ କରିବ ।

ପ୍ରଥମ ଲୋକଟି କହିଲା : ଏକ ପ୍ରକାର ମଙ୍ଗଳ ମଧ୍ୟ ହୋଇଛି । ଅମରବାବୁ ଯଦି ଆମର ଗୁପ୍ତ ପରାମର୍ଶଯାକ ଶୁଣି ସାରିବା ପରେ ଏଠାରୁ ଖସି ଚାଲିଯାଇ ଥାଆନ୍ତା, ତେବେ ସେତେବେଳ୍‌ଲେ ଆମର ଅବସ୍ଥା କ'ଣ ନ ହୋଇ ଥାଆନ୍ତା କହିଲ ଭଲା ?

ଦ୍ୱିତୀୟ ଲୋକଟି କହିଲା   ହଁ ତା' ମଧ୍ୟ ଠିକ୍ । ତେବେ ବର୍ତ୍ତମାନ କ'ଣ

କରାଯାଇପାରେ । ଅମରବାବୁର ଏ ମୃତଶରୀରଟା ତ ପୁଣି କେଉଁଠି ଲୁଚେଇ ରଖିବାକୁ ହେବ । ଆଖପାଖରେ ଫୋପାଡ଼ିଲେ ବିପଦ । କୌଣସି ସୂତ୍ରରେ ଯଦି ପୋଲିସର ନଜର ପଡ଼ିଯାଏ, ବା ଗୁଇନ୍ଦା ଜାଣିପାରନ୍ତି, ତେବେ ସର୍ବନାଶ ।

ପ୍ରଥମ ଲୋକଟି କହିଲା : ଏଇ କୋଠିର ଦୋତାଲାର ଗୋଟିଏ କୋଠରିରେ ରଖି ଦିଆଯାଇ ଥାଉ । ଗୋଟାଏ ଗାଡ଼ି ମଗେଇ ଗାଡ଼ିରେ ଭରିନେଇ ମହାନଦୀରେ ଫୋପାଡ଼ି ଦେଇଆସିଲେ କାମ ଫତେ ହେବ ।

ଦ୍ୱିତୀୟ ବ୍ୟକ୍ତି ସେ ସବଳକାୟ ଲୋକଟିକୁ ସେଇ ଆଦେଶ ଦେଲେ । ଆଉ ସାବଧାନ କରାଇଦେଲେ : ଖୁବ୍ ହୁସିୟାର ! ସରକାର ଘରର ଲୋକଟି । କେହି ଯେପରି ଏହାର ଗନ୍ଧ ପର୍ଯ୍ୟନ୍ତ ନ ପାଆନ୍ତି ।

ସେ ସବଳକାୟ ଲୋକଟି ଆଦେଶ ପାଳନ କରିବାକୁ ସେଠାରୁ ଅପସରି ଗଲା ।

ଦ୍ୱିତୀୟ ଲୋକଟି କହିଲା  ହଁ, ଆଜି ତ ନିଶ୍ଚୟ ସମୁଦ୍ର ଉପକୂଳକୁ ଯିବାକୁ ହେବ । ତା' ନ ହେଲେ ଯେ ଚଳିବ ନାହିଁ ।

ପ୍ରଥମ ଲୋକଟି ଉତ୍ତର ଦେଲା  ଆପଣ ଯଦି ଆଦେଶ ଦିଅନ୍ତି, ତେବେ ମୁଁ ଯିବାକୁ ସର୍ବଦା ପ୍ରସ୍ତୁତ ଅଛି ।

ଦ୍ୱିତୀୟ ଲୋକଟି ଚିନ୍ତା କରି କହିଲା : ଆଜି ଦୁହେଁଯାକ ଯିବା । ଯେ କୌଣସି ପ୍ରକାରେ ମାଲଟାକୁ ନେଇ ଆଜି ଭିତରେ ପହଞ୍ଚାଇ ଦେଇ ଆସିବାକୁ ହେବ । ପାଖରେ ରହିଲେ ମଧ୍ୟ ବିପଦ । ଯଥା ସମୟରେ ସରବରାହ କରି ନ ପାରିଲେ ମଧ୍ୟ ବ୍ୟବସାୟୀଙ୍କ ପାଖରେ ଅବିଶ୍ୱାସୀ ।

ପ୍ରଥମ ଲୋକଟି କହିଲା  ହଁ ତା' ସତ ନୁହେଁ ତ ଆଉ କ'ଣ ? ତେବେ ବର୍ତ୍ତମାନ ଆପଣ ବିଶ୍ରାମ କରିବେ ଯାଆନ୍ତୁ, ମୋତେ ତ ପୁଣି ସମସ୍ତ କାର୍ଯ୍ୟ ତୁକେଇବାକୁ ପଡ଼ିବ !

## ଅର୍ଥର ମୋହ

ସେଇଦିନ ପ୍ରାୟ ରାତି ଦଶଟା ହେବ ।

ଡି.ଏସ୍.ପି. ଓ ପ୍ରଫୁଲ୍ଲବାବୁ ସଦର ଥାନାରେ ବସି ଥାଆନ୍ତି । ଡି.ଏସ୍.ପି. କହିଲେ ଏ ସବୁତ ବଡ଼ ଅଦ୍ଭୁତ କଥା ପ୍ରଫୁଲ୍ଲବାବୁ । ମୁଁ ମୋର ସାରା ଜୀବନ ଭିତରେ ଏପରି ଅରାଜକତା କେବେ ଦେଖି ନ ଥିଲି । ରୋଜ ରୋଜ ଶହ ଶହ ଚିଠି ମୋ ପାଖକୁ ଆସୁଛି ପୋଲିସ୍ ଡିପାର୍ଟମେଣ୍ଟର ଅକ୍ଷମତା ଦର୍ଶାଇ । ଓଡ଼ିଶାର ପୋଲିସ୍ ଡିପାର୍ଟମେଣ୍ଟ ସବୁଠାରୁ ଭଲ କାମ କରୁଥିଲା ବୋଲି ଆମେ ଦିନେ ଯେଉଁ ଗର୍ବ କରୁଥିଲେ, ତାହା କ୍ରମଶଃ ମଉଳି ପଡ଼ିଲାଣି । ଏପରି ପରିସ୍ଥିତିରେ ଆପଣମାନେ ଟିକେ ସଜାଗ ହେବା ଏକାନ୍ତ ବାଞ୍ଛନୀୟ ।

ପ୍ରଫୁଲ୍ଲବାବୁ ଆପଣା ମସ୍ତକରେ ଆଙ୍ଗୁଳି ସଞ୍ଚାଳନ କରୁଥିଲେ । କହିଲେ କିନ୍ତୁ ମୁଁ ନାଚାର ଆଜ୍ଞା । ଯେତେ ପ୍ରକାର କୌଶଳ ଅବଲମ୍ବନ କରୁଛି, ସେଥିରେ କୌଣସି ଫଳ ଫଳି ନାହିଁ । ମୁଁ ଆଶ୍ଚର୍ଯ୍ୟ ହେଉଛି ଯେ, କିଏ ଏହି ସଇତାନ ଏବଂ କାହାର ଏ କାରସାଦି ?

ଡି.ଏସ୍.ପି. କହିଲେ ସେ ସବୁ କିଛି ମୁଁ ଶୁଣିବିନି ପ୍ରଫୁଲ୍ଲ ବାବୁ । ଆପଣ ବୁଦ୍ଧିମତ୍ତାର ସହ କାର୍ଯ୍ୟ କରନ୍ତୁ । ଆପଣଙ୍କ ମୁହଁରେ ଏପରି ଦୁର୍ବଳତା ଶୋଭା ପାଏ ନାହିଁ । ସଇତାନ ଯେ'ହେଉ, ସେ ମଣିଷ । ପବନ ନୁହେଁ ଯେ ଅଦୃଶ୍ୟ ହୋଇଯାଇଛି । ଯେତେ ଶୀଘ୍ର ସମ୍ଭବ ହୁଏ, ଏ ରହସ୍ୟ ଉଦ୍‌ଘାଟନ କରନ୍ତୁ । ଡି.ଏସ୍.ପି.ଙ୍କ ମୁହଁରେ ପ୍ରଫୁଲ୍ଲବାବୁ ଆଉ କୌଣସି ଜବାବ ଦେଇ ନ ପାରି ନୀରବ ରହିଲେ ।

ଡି.ଏସ୍.ପି. ପୁଣି ପଚାରିଲେ ଆଚ୍ଛା ! ଅମର ବାବୁ କୁଆଡ଼େ ଯାଇଛନ୍ତି ?

ପ୍ରଫୁଲ୍ଲବାବୁ କହିଲେ ସେ କେଉଁଆଡ଼କୁ ଯାଇଛନ୍ତି ଏ ଯାକେ ଫେରି ନାହାନ୍ତି । ମୋର ଅନୁମାନ ସେ ଏଇ ରହସ୍ୟର କୌଣସି ସୂତ୍ର ଆବିଷ୍କାର କରି ନିଶ୍ଚୟ ଫେରିବେ ।

ଡି.ଏସ୍.ପି. ହାତଘଡ଼ିକୁ ଚାହିଁଲେ । କହିଲେ : ମୋର ସମୟ ହୋଇଗଲାଣି । ମୁଁ ଯାଉଛି । ଆପଣ ଯେପରି ଖୁବ୍ ଧ୍ୟାନ ସହକାରେ ଓ ବିଚକ୍ଷଣତାର ସହିତ ଯଥା ଶୀଘ୍ର ଏ ଅପକର୍ମର ଅବସାନ ଘଟାନ୍ତୁ ।

* * *

ସେଇଦିନ ରାତି ଦଶ । ରଣଜିତ୍‌ବାବୁ ଚିନ୍ତିତ ହୋଇ ବସିଛନ୍ତି । ରକ୍ତଦୂତ

ତାଙ୍କ ହାତକୁ ଚିଠି ଖଣ୍ଡିଏ ବଢ଼ାଇଦେଇ କହିଲା : ସେ ଏହି ଚିଠିରେ ସବୁକଥା ଲେଖି ଦେଇଛନ୍ତି ଏବଂ କହିଛନ୍ତି, ଆପଣ ଶୀଘ୍ର ବ୍ୟବସ୍ଥା କରିବେ । ବିଳମ୍ବରେ ଫଳ ବିଷମୟ ହୋଇପାରେ ।

ରଣଜିତ୍‌ବାବୁ ବେଗରେ ଚିଠି ଖଣ୍ଡିକ ହସ୍ତରୁ ଟାଣିନେଇ ପଢ଼ି ବସିଲେ । ସେଥିରେ ଲେଖାଥିଲା—

ରଣଜିତ୍‌ବାବୁ !

ସମସ୍ୟା ବଡ଼ ଜଟିଳ । ଖୁବ୍ ଶୀଘ୍ର ପ୍ରତିକାର ଲୋଡ଼ା । କିଛି ସମୟ ପୂର୍ବରୁ ଭୂତକୋଠିରେ ଅମରବାବୁ ଖୁଣ୍ ହୋଇଛନ୍ତି । କିନ୍ତୁ ସେ ମରି ନାହାନ୍ତି । ଛୁରୀ ତାଙ୍କ ପେଟରେ ନ ଭୁଷି ବାହୁ ପାର୍ଶ୍ୱରେ ଭୁଷିଛି । ତାଙ୍କୁ ଏହି ଦୁଇଘଣ୍ଟା ଭିତରେ ମହାନଦୀ ଗର୍ଭକୁ ଫୋପାଡ଼ି ଦିଆଯିବ । କଟକ ସହରରୁ ଗାଡ଼ି ଗଲେ ସେଥିରେ ଭର୍ତ୍ତି କରି ନେଇ ଫିଙ୍ଗି ଦେଇଆସିବେ । କିନ୍ତୁ ଆପଣଙ୍କୁ ତାଙ୍କ ଜୀବନ ରକ୍ଷା କରିବାକୁ ହେବ । ଯେମିତି ଇଚ୍ଛା ସେମିତି ।

ହଁ, ପୁଣି ଆଉ ଏକ ଗୁରୁତ୍ୱପୂର୍ଣ୍ଣ କଥା, ମନେଥିବ ନିଶ୍ଚୟ, ଆରତୀ ଦେବୀଙ୍କୁ ଉଦ୍ଧାର କରିବାର ସମସ୍ତ ଆୟୋଜନ କରିସାରିଛନ୍ତି ତ ? ହାତମୁଠାରୁ ଖସିଲେ ଆଉ ମିଳିବ ନାହିଁ ।

ଏତେଦିନ ପରେ ସେମାନଙ୍କ ଗୁପ୍ତ ମନ୍ତ୍ରଣାକକ୍ଷର ସନ୍ଧାନ ମୋତେ ଆଜି ମିଳିଛି । ଆନନ୍ଦର ମୋର ସୀମା ନାହିଁ । ବହୁ କଷ୍ଟରେ ମୁଁ ସେତକ ପାଇ ପାରିଛି । ତେଣୁ ଚେଷ୍ଟା କଲେ ଆହୁରି ଅନେକ ଗୁପ୍ତ ରହସ୍ୟ ସେମାନଙ୍କର ମୋତେ ମିଳିବ । ତେବେ ଟିକିଏ ଧୈର୍ଯ୍ୟ ଲୋଡ଼ା । ଦେଖାଯାଉଛି, ଦିନୁଦିନ ଆମେ ସଫଳତା ଦିଗରେ ଆଗେଇଛନ୍ତି । ଫଳାଫଳ ଭବିଷ୍ୟତ ହାତରେ । ଆପଣ ଶୀଘ୍ର ବ୍ୟବସ୍ଥା କରିବେ । ଟିକିଏ ମାତ୍ର ବିଳମ୍ବରେ ସର୍ବନାଶ ଘଟିପାରେ । ରହିଲି । ପୁଣି ନୂତନ ତଥ୍ୟ ପାଇଲେ ତୁରନ୍ତ ଜଣାଇବି ।

ଆପଣଙ୍କ—ବିଶ୍ୱସ୍ତ ୯୯୯ ।

ପୁନଶ୍ଚ : ଖୁବ୍ ଅଳ୍ପ ସମୟ ଭିତରେ ବହୁତ ବେଶୀ କାମ କରିବାକୁ ପଡ଼ିବ । ମୁଁ ଅନ୍ୟ କିଛି କରିପାରୁ ନାହିଁ, ତେଣୁ ଦୁଃଖିତ । ଆଶା କରେ, ଆପଣ ସକଳ କାର୍ଯ୍ୟରେ ସଫଳତା ଅର୍ଜନ କରିବେ ।

ଚିଠିଟି ପଢ଼ିସାରି ରଣଜିତ୍‌ବାବୁ ରକ୍ତଦୂତ ଆଡ଼କୁ ଚାହିଁଲେ । ରକ୍ତଦୂତ ମୁହଁରେ ପ୍ରଶ୍ନବାଚକ ଚିହ୍ନ । ରଣଜିତ୍‌ବାବୁ ଚଞ୍ଚଳ ହୋଇଉଠିଲେ ।

ତୁମେ କେତେଜଣ ଆଉ ଏଠାରେ ଅଛ ?

ରକ୍ତଦୂତ ଉତ୍ତର ଦେଲା ପାଞ୍ଚ ଛ'ଜଣ ଅଛୁ ।

ରଣଜିତ୍‌ବାବୁ ଆଦେଶ ଦେଲେ ଶୀଘ୍ର ପ୍ରସ୍ତୁତ ହୋଇପଡ଼ । ଜିପ୍ ନେଇ

ମହାନଦୀର ସାତ ନମ୍ବର ଖୁଣ୍ଟି ପାଖକୁ ଚାଲିଯାଅ ଖଣ୍ଡେ ଦୂରରେ ଅପେକ୍ଷା କରିଥିବ । ଦୁଇଜଣ ଲୋକ ଗୋଟାଏ ଶବ ମଟରରେ ଭରି ବୋଧହୁଏ ଆଠ ନମ୍ବର ଖୁଣ୍ଟି ଆଡ଼କୁ ଯିବେ । ତୁମେ ସେମାନଙ୍କର ପଛେ ପଛେ ଜିପ୍ ଚଳାଇବ । ଠିକ୍ ଖରିବଣ ପାଖରେ ସେମାନଙ୍କୁ ଆକ୍ରମଣ କରିବ । ଅଗ୍ନେୟାସ୍ତ୍ର ପ୍ରୟୋଗ ନ କରି ଗୁଣ୍ଡା ଦୁଇଟାଙ୍କୁ କାବୁ କରି ସେମାନଙ୍କ କବଳରୁ ଶବଟିକୁ ଛଡ଼ାଇ ଆଣିବ । ଖୁବ୍ ସାବଧାନ, ସେ ଶବ ମୃତ ନୁହେଁ । କିନ୍ତୁ ମୃତ ଭଳି ଅଚେତ । ଯେପରି ଶବଟିକୁ ବିଶେଷ କଷ୍ଟ ନ ହୁଏ ।

ରକ୍ତଦୂତ ବିସ୍ମୟ ବିସ୍ଫାରିତ ନେତ୍ରରେ ରଣଜିତ୍‌ବାବୁଙ୍କ ଆଡ଼େ ଅନାଇ ପଚାରିଲା କାହାର ଶବ ସେଟା ?

ରଣଜିତ୍‌ବାବୁ କହିଲେ : ଠିକ୍ ଶବ ନୁହେଁ । ତେବେ ଅମରବାବୁଙ୍କ ଆଘାତପ୍ରାପ୍ତ ଶରୀର ।

ରକ୍ତଦୂତ ଚମକି ଉଠିଲା ଏଁ, ଅମରବାବୁଙ୍କ ଆଘାତପ୍ରାପ୍ତ ଶରୀର ? ତେବେ ଦିନକୁ ଦିନ ଅବସ୍ଥା ଯେ ଖରାପ ଆଡ଼କୁ ଗତି କରୁଛି । ସେମାନେ କ୍ରମଶଃ ଯେ ସରକାରୀ ଲୋକଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେଣି ।

ସେ କଥା ପରେ ରକ୍ତଦୂତ । ବର୍ତ୍ତମାନ ପରିସ୍ଥିତିରେ ଆଗ କାମ ଆଗେ ତୁଲେଇବାକୁ ପଡ଼ିବ । ଆଚ୍ଛା, ରକ୍ତମେଘ ସମୁଦ୍ର ଉପକୂଳକୁ ଯାତ୍ରା କରିସାରିଲେଣି ?

ହଁ । ସେ'ତ ସଞ୍ଜ ଛ'ଟାରୁ ଗଲାଣି ।

ସାଙ୍ଗରେ କେତେ ଜଣ ସହକର୍ମୀ ନେଇଛି ?

ପ୍ରାୟ ପନ୍ଦର ଜଣ ।

ଗୁଳା ବାରୁଦ ?

ଆବଶ୍ୟକ ପରିମାଣରେ ।

: ବେଶ୍ ! ତୁମେ ଯେତେ ଚଞ୍ଚଳ ଯାଅ । ଅମରବାବୁଙ୍କ ଜୀବନଟାକୁ ନିଶ୍ଚୟ ବଞ୍ଚେଇବାକୁ ହେବ । ତା'ପରେ ଅନ୍ୟ କଥା ।

ରକ୍ତଦୂତ କ୍ଷଣେ ବିଳମ୍ବ ନ କରି ଆପଣା କାର୍ଯ୍ୟରେ ଆଗଭର ହୋଇ ବାହାରି ପଡ଼ିଲା ।

ରଣଜିତ୍‌ବାବୁ ସଙ୍ଗେ ସଙ୍ଗେ ଟେଲିଫୋନ ରିସିଭରଟା ଉଠାଇ ହସ୍‌ପିଟାଲକୁ ଟେଲିଫୋନ କଲେ । ଅମରବାବୁଙ୍କ ଜଖମି ଶରୀରକୁ ଉପଶମ କରାଇବା ପାଇଁ ସୁବ୍ୟବସ୍ଥା କରିବାକୁ ହେବ । ତାଙ୍କ ଜୀବନ ସଙ୍କଟାପନ୍ନ ।

ପ୍ରାୟ ଘଣ୍ଟାକ ଭିତରେ ରକ୍ତଦୂତ ଦୁଇଜଣ ସହକର୍ମୀଙ୍କ ସହ ଫେରିଆସି ରଣଜିତ୍‌ବାବୁଙ୍କୁ ଜଣାଇଲେ ଯେ, ସେ ସମସ୍ତ ଠିକ୍ କରି ଦେଇଆସିଛି । ଅମରବାବୁଙ୍କୁ ହସ୍‌ପିଟାଲରେ ଭର୍ତ୍ତି କରାହୋଇଛି । ଆମର କୌଣସି ପରିଚୟ ହସ୍‌ପିଟାଲରେ

ଦେଇନାହୁଁ । କେବଳ ଏତିକି କହିଛୁ ଯେ, ମହାନଦୀ କୂଳକୁ ଭ୍ରମଣ ଉଦ୍ଦେଶ୍ୟରେ ଯାଇ ଏହାଙ୍କୁ କ୍ଷତବିକ୍ଷତ ଅବସ୍ଥାରେ ପାଇଛୁ ।

ରଣଜିତ୍‌ବାବୁ ଖୁସି ହେଲେ । କହିଲେ : ଠିକ୍ କହିଛ । ପରିଚୟ ନ ଦେବାଟା ହିଁ ଭଲ ହୋଇଛି । ନଚେତ୍ ପୋଲିସ କର୍ମଚାରୀମାନେ ଘଡ଼ି ଘଡ଼ି ଆସି ଆମକୁ ନାନା ପ୍ରଶ୍ନ ପଚାରି ବିବ୍ରତ କରିପକାଇ ଥାଆନ୍ତେ । ଆମର ଉଦ୍ଦେଶ୍ୟ ସାଧନ ମୂଳରେ ବହୁ ବାଧା ବିପତ୍ତି ଉପସ୍ଥିତ ହୋଇଥାଆନ୍ତା । ତା'ପରେ ସେ ଗୁଣ୍ଡା ଦୁଇଟାଙ୍କର ବ୍ୟବସ୍ଥା କ'ଣ କଲ ?

ତାଙ୍କୁ କ୍ଲୋରୋଫର୍ମ ଦେଇ ସେଇ ଖରିବଣରେ ଶୁଆଇ ପକାଇ ଆସିଛୁ । ହୁଏତ କାଲି ସକାଳେ ଯାଇଁ ସେମାନଙ୍କର ନିଦ ଭାଙ୍ଗିବ ।

ଆଚ୍ଛା ରକ୍ତଦୂତ ' ସେମାନେ କ'ଣ ତୁମଙ୍କୁ ଚିହ୍ନି ପାରିଥିଲେ ?

ରକ୍ତଦୂତ ଅବଜ୍ଞାର ହସ ହସି କହିଲା ସେମାନେ ଚିହ୍ନିପାରିଛନ୍ତି ଯେ ଆମେ ଆପଣଙ୍କର ଲୋକ । ତା' ବୋଲି ଭୟର ତ କୌଣସି କାରଣ ନାହିଁ । ସେମାନେ ଜାଣନ୍ତୁ ଏବଂ ବୁଝନ୍ତୁ ଯେ ତାଙ୍କ ପଛରେ ତାଙ୍କଠୁଁ ମଧ୍ୟ ଧୂର୍ତ୍ତ ଏକ ଦୁର୍ଦ୍ଧାନ୍ତ ଦଳ ଲାଗିପଡ଼ିଛି ।

ରଣଜିତ୍‌ବାବୁଙ୍କ ମୁଣ୍ଡ ଭାବନା ଭାରରେ ଭାରି ହୋଇପଡ଼ିଲା । ତୁମେ ସେମାନଙ୍କୁ ଚିହ୍ନାଦେଇ ବୋଧହୁଏ ଭଲ କରିନାହଁ । ହୁଏତ ଭବିଷ୍ୟତରେ ସେମାନେ ଆମ ଉଦ୍ଦେଶ୍ୟ ସାଧନ ମୂଳରେ ବାଧା ଉପୁଜାଇ ପାରନ୍ତି । ନରରକ୍ତରେ ହାତ ଧୋଇବା ଆମ ସଂଘର ନିୟମବିରୁଦ୍ଧ । ନଚେତ୍ ଗୁଣ୍ଡା ଯୋଡ଼ିକୁ ସେ ପୂରକୁ ବିଦାକରି ଦେବାର ସମୟ ବର୍ତ୍ତମାନ ଆମ ହାତରେ ଅଛି । ଆଚ୍ଛା, ଯାହା ତ ହେବାର ହୋଇଗଲାଣି । ତୁମେ ଗୋଟିଏ କାମ କର, ପୁଣି ଗାଡ଼ି ନେଇ ଚାଲିଯାଅ । ସେ ଦୁଇଟିଙ୍କୁ ଗାଡ଼ିରେ ଶୁଆଇ ଘେନିଆସିବ । ଆମ ଅଡ୍ଡାରରେ ଆମେ ସେମାନଙ୍କୁ ରଖିବା । ଯେପରି ଆମର କୌଣସି ବାର୍ତ୍ତା ବିପକ୍ଷ ଦଳର କାନଯାଏ ପହୁଞ୍ଚି ନ ପାରିବ ତା'ର ବ୍ୟବସ୍ଥା ମଧ୍ୟ କରିବା ।

ରକ୍ତଦୂତ ସହକର୍ମୀ ଦୁଇଜଣଙ୍କୁ ସଙ୍ଗରେ ଧରି ଉଦ୍ଦେଶ୍ୟ ସାଧନ ପଥରେ ବାହାରି ପଡ଼ିଲା । ରଣଜିତ୍‌ବାବୁ ଘଟିଯାଇଥିବା ଘଟଣାଗୁଡ଼ିକୁ ଆଉ ଥରେ ଚିନ୍ତା କରି ବସିଲେ । ତାଙ୍କର ମନେହେଲା, ସେ ଥରେ ଯାଇ ହସ୍‌ପିଟାଲରେ ଅମରବାବୁଙ୍କୁ ଦେଖିଆସିବେ । ଘଡ଼ିକି ଚାହିଁଲେ । ରାତି ସାଢ଼େ ଏଗାରଟା ।

ପଦାକୁ ବାହାରି ପଡ଼ିଲେ । ଊଏଟିଂ ରୁମ୍‌ରେ ବସି ନନ୍ଦଲାଲବାବୁ, ପ୍ରଫୁଲ୍ଲବାବୁ ଏବଂ ହସ୍‌ପିଟାଲର ବଡ଼ ଡାକ୍ତର ସୁଧାଂଶୁବାବୁ କଥାବାର୍ତ୍ତା ହେଉଥିଲେ । ରଣଜିତ୍‌ବାବୁଙ୍କୁ ଦେଖି ସମସ୍ତେ ସମସ୍ୱରରେ କହି ଉଠିଲେ : ଏଇ ଯେ ରଣଜିତ୍‌ବାବୁ ! ଆସନ୍ତୁ ଆସନ୍ତୁ ।

ରଣଜିତ୍‌ବାବୁ ମୁହଁରେ ଗଭୀର ଦୁଃଖର ରେଖା ଫୁଟାଇ ଡାକ୍ତରବାବୁଙ୍କୁ

ପଚାରିଲେ : ଶୁଣିଲି ଅମରବାବୁ କୁଆଡ଼େ ଶକ୍ତ ଆଘାତ ପାଇ ହସ୍‌ପିଟାଲରେ ଭର୍ତ୍ତି ହୋଇଛନ୍ତି । ତାଙ୍କର ଅବସ୍ଥା କିପରି ?

ଡାକ୍ତରବାବୁ କହିଲେ : ବଡ଼ ଆଶଙ୍କାଜନକ । ବହୁ ରକ୍ତହାନି ଫଳରେ ଓ ଉପଯୁକ୍ତ ସମୟରେ ପ୍ରତିକାର ଅଭାବରୁ ଅବସ୍ଥା ଖୁବ୍ ବେଶୀ ବଳେଇ ପଡ଼ିଛି । ତେବେ ଆଶା କରାଯାଏ, ଦୁଇ ତିନିଦିନ ଭିତରେ ତାଙ୍କର ହୋସ ଫେରିଆସି ପାରେ କିମ୍ୱା ଆହୁରି ଡେରି ହୋଇପାରେ, କିନ୍ତୁ ତା' ପୂର୍ବରୁ ନୁହେଁ ।

ରଣଜିତ୍‌ବାବୁ କହିଲେ : ବଡ଼ ଦୁଃଖର ଏବଂ ଅନୁଶୋଚନାର କଥା ଡାକ୍ତରବାବୁ । କଟକର ନାଗରିକ ଜୀବନଯାପନ ଦିନୁଦିନ ବଡ଼ ଶଙ୍କାକୁଳ ହୋଇଉଠୁଛି । ଦିନ ପରେ ଦିନ ନାରୀହରଣ, ଖୁଣ, ଜଖମ ବଢ଼ି ଚାଲିଛି । କିଏ ଏହାର ପ୍ରତିରୋଧ କରିବ ?

ପୋଲିସ ଇନିସ୍ପେକ୍ଟର ପ୍ରଫୁଲ୍ଲବାବୁ ତଳକୁ ମୁହଁପୋତି ବସିଥିଲେ । ନନ୍ଦଲାଲବାବୁ କହିଲେ : ଆପଣଙ୍କ କଥା ଅକ୍ଷରେ ଅକ୍ଷରେ ସତ ରଣଜିତ୍‌ବାବୁ । ଏଣିକି ଦୁର୍ବୃତ୍ତମାନେ ସରକାରୀ ଲୋକମାନଙ୍କ ଉପରେ ଆକ୍ରମଣ ଆରମ୍ଭ କଲେଣି ।

ରଣଜିତ୍‌ବାବୁ ନନ୍ଦଲାଲବାବୁଙ୍କ କଥା ଆଡ଼େ କାନ ନ ଦେଇ ଡାକ୍ତରଙ୍କୁ କହିଲେ : ମୋର ଟିକେ ଅମରବାବୁଙ୍କୁ ଦେଖିବାର ଇଚ୍ଛା ଥିଲା, ଅନୁମତି ଦେବେ ?

ଡାକ୍ତରବାବୁ ସ୍ୱରରେ କୋମଳତା ଫୁଟାଇ କହିଲେ : କ୍ଷମା କରିବେ ରଣଜିତ୍‌ବାବୁ । ବର୍ତ୍ତମାନ ଆଉ ଅମରବାବୁଙ୍କୁ ଦେଖିବା ସମ୍ଭବ ନୁହେଁ । ହୁଏତ କାଲି ଚାରିଟା ପରେ ଥରେ ଆସିବେ, ସେଇ ସମୟରେ ଦେଖିବା ସମ୍ଭବ ହେବ ।

ନନ୍ଦଲାଲବାବୁ ଡାକ୍ତରଙ୍କୁ କହିଲେ : ଆପଣଙ୍କର କାର୍ଯ୍ୟ ସମାପ୍ତ ହୋଇଗଲାଣି ବୋଲି କହୁଥିଲେ, ତେବେ ଉଠନ୍ତୁ ଯିବା ।

ଡାକ୍ତରବାବୁ ଚେଆର ଉପରୁ ଉଠୁଉଠୁ କହିଲେ : ହଁ ଚାଲନ୍ତୁ ।

ସମସ୍ତେ ରାସ୍ତାକୁ ବାହାରି ଆସିଲେ । ଡାକ୍ତରବାବୁ ରଣଜିତ୍‌ବାବୁଙ୍କୁ କହିଲେ : ମଟରରେ ବସନ୍ତୁ ନା, ଡ୍ରାଇଭର ଆପଣଙ୍କୁ ଘରଠି ଛାଡ଼ିଦେଇ ଆସିବ ।

ରଣଜିତ୍‌ବାବୁ ଆପତ୍ତି କଲେ ନାହିଁ, ନନ୍ଦଲାଲବାବୁ ଆପଣା ମଟରରେ ଓ ପ୍ରଫୁଲ୍ଲବାବୁ ପୋଲିସ ଲରୀରେ ଉଠି ବସିଲେ । ଡାକ୍ତରବାବୁଙ୍କ ଘର ପାଖରେ ମଟର ଲାଗିବାରୁ ସେ ରଣଜିତ୍‌ବାବୁଙ୍କୁ ରାତ୍ରିଭୋଜନଟା ତାଙ୍କରି ଘରଠି ସାରି ଯିବା ପାଇଁ ଅନୁରୋଧ କଲେ । ରଣଜିତ୍‌ବାବୁ ଡାକ୍ତରଙ୍କ କଥା ଏଡ଼ି ପାରିଲେ ନାହିଁ ।

ରାତ୍ରିଭୋଜନ ସମାପ୍ତି ପରେ ରଣଜିତ୍‌ବାବୁ ଡାକ୍ତରବାବୁଙ୍କଠୁଁ ବିଦାୟ ନେଇ ପଦବ୍ରଜରେ ଆପଣା ବାସସ୍ଥଳୀକୁ ବାହୁଡ଼ି ଯିବେ କହି ଚାଲି ଆସିଲେ । ସେ ଡାକ୍ତରଙ୍କ ହତା ପାର ହୋଇ ରାସ୍ତା ଉପରକୁ ଉଠୁଛନ୍ତି, ଏହି ସମୟରେ ଖଣ୍ଡେ ଗାଡ଼ି ଡାକ୍ତରବାବୁଙ୍କ ହତା ଭିତରକୁ ପଶିଲା । ଗାଡ଼ିର ଆରୋହୀ ପ୍ରତି ରଣଜିତ୍‌ବାବୁଙ୍କ ମନରେ କ'ଣ ଗୋଟାଏ ସନ୍ଦେହ ଉଦ୍ରେକ ହେଲା । ଆରୋହୀ

ଯେଉଁ ଗାଡ଼ିରେ ବସିଛନ୍ତି, ସେ ଗାଡ଼ିଟିକୁ ରଣଜିତ୍‌ବାବୁ ଭଲ ଭାରେ ଚିହ୍ନନ୍ତି, ମାତ୍ର ଗାଡ଼ିର ମାଲିକ ଅନ୍ୟ ଜଣେ ବୋଲି ତାଙ୍କ ମନରେ ଗୋଟାଏ ଧାରଣା ଉପୁଜିଲା ।

ରଣଜିତ୍‌ବାବୁ ଗାଡ଼ି ପଛେ ପଛେ ପୁଣି ଡାକ୍ତରବାବୁଙ୍କ ଘରଠାରୁ ଲେଉଟିଲେ । ସେ ଲକ୍ଷ୍ୟ କଲେ ଆଗନ୍ତୁକ ଜଣକ ଡାକ୍ତରବାବୁଙ୍କ ଡ୍ରଇଂରୁମ୍‌ରେ ତାଙ୍କୁ ଅପେକ୍ଷା କରିଛି । ଡ୍ରଇଂ ରୁମ୍‌କୁ ଲାଗି ଗୋଟିଏ ବଡ଼ ଗଛ ଥିଲା ଏବଂ ସେ ଗଛର ଶାଖା ଡ୍ରଇଂ ରୁମ୍‌ର ଗୋଟିଏ ଝରକା ଯାଏ ଲମ୍ବିଯାଇଥିଲା । ରଣଜିତ୍‌ବାବୁ ସେଇ ଗଛକୁ ଉଠି ଯାଇ ଡ୍ରଇଂ ରୁମ୍ ସନ୍ନିହିତ ଶାଖାର ଏକ ପତ୍ରବହୁଳ ସ୍ଥାନରେ ଲୁଚି ବସିଲେ । ଡାକ୍ତରଙ୍କ ସହିତ ଆଗନ୍ତୁକଙ୍କର ବାର୍ତ୍ତାଳାପ ଶୁଣିବା ପାଇଁ ରଣଜିତ୍‌ବାବୁଙ୍କ ମନରେ କୌତୂହଳ ଜନ୍ମିଥିଲା ।

ଡାକ୍ତରବାବୁ ଡ୍ରଇଂ ରୁମ୍‌ରେ ଉପସ୍ଥିତ ହୋଇ ଅଚିହ୍ନା ଭଦ୍ର ବ୍ୟକ୍ତିଙ୍କୁ ନମସ୍କାର କଲେ । ଆଗନ୍ତୁକ ଜଣକ ପକେଟରୁ ଶହେଟଙ୍କିଆ ନୋଟ କେତେ ଖଣ୍ଡ ବାହାର କରି ମେଜ ଉପରେ ରଖୁ ରଖୁ କହିଲେ  ବୁଝିଲେ ଡାକ୍ତରବାବୁ ! ମୋର ଗୋଟିଏ ଅନୁରୋଧ ଆପଣଙ୍କୁ ରଖିବାକୁ ହେବ ।

ଡାକ୍ତରବାବୁ ହଠାତ୍ ଜଣେ ଅପରିଚିତ ବ୍ୟକ୍ତିଙ୍କ ମୁହଁରୁ ଏପରି କଥା ଶୁଣିବେ ବୋଲି ଆଶା କରି ନଥିଲେ । ସେ ଟିକିଏ ଇତସ୍ତତଃ ହୋଇ କହିଲେ  ଆଗ ଆପଣଙ୍କ ପରିଚୟଟା...

: ମୋ ପରିଚୟର କୌଣସି ଆବଶ୍ୟକତା ନାହିଁ ଆପଣଙ୍କ ପାଖରେ, ମୋଟା ଟଙ୍କା ପାଇବେ । କାମ ଖୁବ ଅଳ୍ପ, କରିପାରିଲେ ଆପଣଙ୍କ ଅବସ୍ଥା ବଦଳିଯିବ ।

ଡାକ୍ତରବାବୁଙ୍କ ମେଜ ଉପରେ ଶହେଟଙ୍କିଆ ନୋଟଗୁଡ଼ିକ ରଖା ସରିଥିଲା । ଡାକ୍ତରବାବୁ ଛଦ୍ମବେଶଧାରୀ ଲୋକଟିକୁ ଚିହ୍ନିବାକୁ ଚେଷ୍ଟା କରୁଥିଲେ । ମାତ୍ର ପାରିଲେ ନାହିଁ । ଟଙ୍କାର ଝଲକରେ ତାଙ୍କ ଆଖି ଝଲସି ଯାଇଥିଲା, ସେ କେବଳ ବଲବଲ କରି ଅନାଇ ରହିଲେ ।

ଆଗନ୍ତୁକ ଜଣକ କହିଲା : ଚାହିଁଛନ୍ତି କ'ଣ ? କାମ କରିବେ ଟଙ୍କା ନେବେ, ଏପରି ସୁଯୋଗ ଅଳ୍ପ ଲୋକଙ୍କ ଭାଗ୍ୟରେ ଜୁଟିଥାଏ ।

ଡାକ୍ତରବାବୁଙ୍କ ଦୃଷ୍ଟି ଟଙ୍କା ଉପରେ ସ୍ଥିର ଥିଲା । ସେ ଥଙ୍ଗଥଙ୍ଗ ହୋଇ ପଚାରିଲେ  କ'ଣ କରିବାକୁ ହେବ ?

ଆଗନ୍ତୁକ ଜଣକ ଡାକ୍ତରଙ୍କ ହାତକୁ ଦଶଖଣ୍ଡି ଶହେ ଟଙ୍କିଆ ନୋଟ ବଢ଼ାଇ ଦେଉ ଦେଉ କହିଲେ : ଆପଣ ପ୍ରାଥମିକ ଖର୍ଚ୍ଚ ପାଇଁ ଏତକ ଗ୍ରହଣ କରନ୍ତୁ । କାର୍ଯ୍ୟ ହାସଲ ପରେ ଆହୁରି ପାଞ୍ଚହଜାର ମିଳିବ ।

ଡାକ୍ତରବାବୁ ବିସ୍ମୟରେ ଆଗନ୍ତୁକ ହାତରୁ ନୋଟଗୁଡ଼ିକ ଗ୍ରହଣ କରି କହିଲେ  କ'ଣ କରିବାକୁ ହେବ କୁହନ୍ତୁ ।

ଆଗନ୍ତୁକଙ୍କ କପାଳରେ ସ୍ୱେଦବିନ୍ଦୁ ଦେଖା ଦେଇଥିଲା । ସେ କହିଲେ : କିନ୍ତୁ ଖୁବ

ସତର୍କତା ସହକାରେ କାର୍ଯ୍ୟ ସମାଧାନ କରିବାକୁ ପଡ଼ିବ ଡାକ୍ତରବାବୁ ! ଆପଣ ଓ ମୋ ଛଡ଼ା ଯେପରି ଅନ୍ୟ କେହି ଜାଣିପାରିବେ ନାହିଁ, ପାରିବେ ?

ଡାକ୍ତର ଶଙ୍କିତ ସ୍ୱରରେ କହିଲେ : ଖୁବ୍ ପାରିବି, କ'ଣ କରିବାକୁ ହେବ କୁହନ୍ତୁ ।

ଆଗନ୍ତୁକ ଦୃଢ଼ ସ୍ୱରରେ କହିଲେ : ଜଣକୁ ହତ୍ୟା କରିବାକୁ ପଡ଼ିବ, ପାରିବେ ?

ଡାକ୍ତରବାବୁ ନିଜକୁ ସମ୍ଭାଳି ନେଲେ । ପକେଟକୁ ଚାହିଁଲେ ଟଙ୍କା ସେତକ ନିରାପଦରେ ଅଛି । କଣ୍ଠରେ ଦମ୍ଭିଲା ଭାବ ଫୁଟାଇବାକୁ ଚେଷ୍ଟାକରି କହିଲେ କାହାକୁ ?

ଆଗନ୍ତୁକ ଜଣକ ପୂର୍ବବତ କହିଲେ  ଅମରବାବୁଙ୍କୁ ।

ଡାକ୍ତରବାବୁ ହଠାତ୍ କିଛି ବୁଝି ନ ପାରି ଆଗନ୍ତୁକଙ୍କ ମୁହଁକୁ ଜଳଜଳ କରି ଅନାଇ ରହିଲେ । ତାଙ୍କ ଅମାନିଆ ଆଖି ଯୋଡ଼ାକ ପକେଟ ଭିତରେ ଥିବା ନୋଟଗୁଡ଼ିକ ଉପରେ ଆଉଥରେ ବୁଲିଆସିଲା । ସେ ସ୍ୱରକୁ ସହଜ ଓ ସରଳ କରି କହିଲେ  ଅମରବାବୁଙ୍କୁ ହତ୍ୟା କରି ଆପଣଙ୍କର ଲାଭ ?

ଆଗନ୍ତୁକ କହିଲେ : ସେ ଲାଭକ୍ଷତିର ତୁଳନା କରିବା ନିମିତ୍ତ ଆପଣ ମଥା ବ୍ୟଥା କରନ୍ତୁ ନାହିଁ । କାର୍ଯ୍ୟ ହାସଲ ପରେ ମୋଠୁଁ ବାକି ଟଙ୍କାତକ ବୁଝିନେବେ ।

ଡାକ୍ତରବାବୁ ମୁହୂର୍ତ୍ତେ ଚିନ୍ତା କଲେ । ଧନ ଅଭାବ ପଡ଼ିଥିବାରୁ ବଡ଼ଝିଅଟିର ବିବାହ ଏପର୍ଯ୍ୟନ୍ତ ଦିଆ ହୋଇପାରି ନାହିଁ । ସଂସାରର ବହୁ ଅଭାବ ଏପର୍ଯ୍ୟନ୍ତ ତାଙ୍କ ପଛ ଛାଡ଼ି ନାହାନ୍ତି । ଧନୀମାନେ ଅସତ୍ ଉପାୟରେ ଟଙ୍କା ରୋଜଗାର କରି କୋଠା ପିଟୁଛନ୍ତି । ଜଣେ ଦରମରା ମଣିଷକୁ ଯଦି ମାରିଦେଇ ମୋଟା ଅଙ୍କର ଧନ କିଛି ହସ୍ତଗତ କରି ହୁଏ, ସେଥିରେ କ୍ଷତି କ'ଣ ? ତା'ଛଡ଼ା ଅମରବାବୁଙ୍କ ଅବସ୍ଥା ଯାହା ଟିକିଏ ହାତ ସଫେଇ କଲେ କାମ ଫତେ । କେହି ବୁଝିପାରିବେ ନାହିଁ କି ଜାଣିପାରିବେ ନାହିଁ । ସେ ଚିତ୍ତ ସ୍ଥିରକରି ଆଗନ୍ତୁକ ଆଡ଼େ ଚାହିଁ ଧୀର ସ୍ୱରରେ କହିଲେ  ମୁଁ ଆପଣଙ୍କ କଥାରେ ଏକମତ ।

ଆଗନ୍ତୁକ ମୁହଁରେ କୌଣସି ଆନନ୍ଦର ଚିହ୍ନ ନ ଫୁଟାଇ ଗମ୍ଭୀର କଣ୍ଠରେ କହିଲେ: ତେବେ ବିଷ ଇଞ୍ଜେକ୍ସନ ମୁଁ କିଣିଆଣି ଦେବି, ନା ଆପଣ କିଣି ଆଣିବେ ?

ଡାକ୍ତରବାବୁ କହିଲେ : ଆପଣ **କାଲି ଚାରିଟାବେଳେ** ଆସି ମୋତେ ଗୋଟିଏ ବିଷ ଇଞ୍ଜେକ୍ସନ ଦେଇଯିବେ । ମୁଁ ରାତି ଆଠଟା ସୁଦ୍ଧା ସମସ୍ତ ଠିକ୍ କରିଦେବି ।

ଆଗନ୍ତୁକ ଚେଆର ଛାଡ଼ିଲେ । ଯିବା ପୂର୍ବରୁ ଚେତାବନୀ ଶୁଣାଇ ଗଲେ ଖୁବ୍ ସାବଧାନ ଡାକ୍ତରବାବୁ ! ଅନ୍ୟ କେହି ଜାଣିପାରିଲେ ଆପଣଙ୍କର ସର୍ବନାଶ ହେବ । ମୋର କିନ୍ତୁ କେହି କିଛି କରିପାରିବେ ନାହିଁ ।

ଆଗନ୍ତୁକ ନମସ୍କାର କରି ବାହାରି ଗଲେ । ଡାକ୍ତରବାବୁ ପ୍ରତିନମସ୍କାର କରିବାକୁ ଭୁଲିଯାଇ ଟଙ୍କା ଗଣି ବସିଲେ  ହଁ ଶହେଟଙ୍କିଆ ନୋଟ ଦଶଖଣ୍ଡ ଠିକ୍ ଅଛି ।

## ଘୋର ଆତଙ୍କ

ତହିଁ ଆରଦିନ ସକାଳ । ଭୂତକୋଠିରେ ସେଇ ଅନ୍ଧାରୁଆ ପ୍ରକୋଷ୍ଠରେ ଗୋଟିଏ ଛୋଟ ସଭା ବସିଥିଲା । ଯେ କେତେଜଣ ଲୋକ ସେଠାରେ ଉପସ୍ଥିତ ଥିଲେ ସଭିଏଁ ଛଦ୍ମ ଆବରଣରେ ଆବରିତ ହୋଇଥିଲେ । ସେମାନଙ୍କ ଦଳପତି ଜଣକୁ ଡାକି ପଚାରିଲା ଚଣ୍ଡା ଚାମଣ୍ଡାଙ୍କର ହୋସ୍ ହେଲାଣି ?

ସେ ଜଣକ ସବିନୟ ସ୍ୱରରେ କହିଲା ଆଜ୍ଞା ହଁ ।

ସେମାନଙ୍କୁ ମୋ ପାଖକୁ ଆସିବାକୁ କହ ।

ଦୁହେଁ କମ୍ପିତ ପଦଚାଳନାରେ ଦଳପତିଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଦଳପତି ପଚାରିଲା ତୁମମାନଙ୍କଠୁଁ ଅମରବାବୁଙ୍କୁ କିଏ ଛଡ଼ାଇ ନେଲା କହିପାରିବ ?

ଚଣ୍ଡା ବିନୀତ ସ୍ୱରରେ ଉତ୍ତର ଦେଲା : ଆଜ୍ଞା ସେମାନେ ରଣଜିତ୍‌ବାବୁଙ୍କ ଲୋକ । କଥାବାର୍ତ୍ତାରୁ ଆମେ ବୁଝିଲୁ ଯେ ରଣଜିତ୍‌ବାବୁ ତାଙ୍କୁ କାର୍ଯ୍ୟୋଦ୍ଧାର ନିମିତ୍ତ ପଠାଇଥିଲେ ।

ଦଳପତିର ମୁହଁ ବିସ୍ମୟରେ ଭରିଉଠିଲା । ଆଖି ଯୋଡ଼ାକ କପାଳକୁ ଉଠାଇ ପଚାରିଲା ତୁ ଠିକ୍ ଜାଣୁ ତ ସେ ରଣଜିତ୍‌ର ଲୋକ ବୋଲି ?

ଚଣ୍ଡା ଦୃଢ଼ କଣ୍ଠରେ ଉତ୍ତର ଦେଲା ଆଜ୍ଞା ହଁ । ମୁଁ ମଧ୍ୟ ତାଙ୍କୁ ରଣଜିତ୍ ଘରଠାରେ କେତେଥର ଦେଖିଛି । ଆପଣ ଯେତେବେଳେ ମୋତେ ତାଙ୍କ ଘରଠାରେ ସତର୍କ ଦୃଷ୍ଟି ରଖିବାକୁ କହନ୍ତି, ମୁଁ ସେ ଆଡ଼କୁ ଗଲେ ପ୍ରାୟ ସେମାନଙ୍କୁ ଦେଖେ । ରଣଜିତ୍ ସହିତ ସେମାନଙ୍କର ବସିବା ହସିବାର ମୁଁ ମଧ୍ୟ କେତେଥର ଦେଖିଛି ।

ଦଳପତି ଚିନ୍ତା କରିବାକୁ ଲାଗିଲା । ରଣଜିତ୍‌ର ଲୋକ ଅମରବାବୁର ଆଘାତ ପ୍ରାପ୍ତ ଶରୀର ମୋ ଲୋକଠୁ କାଢ଼ି ନେଇଛନ୍ତି । ଉଦ୍ଦେଶ୍ୟ ? ତା'ଛଡ଼ା ସେମାନେ ଏ ସମ୍ବାଦ ପାଇଲେ କିପରି ? ତେବେ ଏ ସବୁ ଯେତେ ଅଘଟଣ ମୋ କର୍ତ୍ତବ୍ୟ ସାଧନ ପଥରେ ଘଟୁଛି, ତା' ପଛରେ କ'ଣ ରଣଜିତ୍‌ର ହାତ ଅଛି ?

ଆଉ ଜଣେ ଆସି ସେଦିନର ସମ୍ବାଦପତ୍ର ଖଣ୍ଡିଏ ଦଳପତି ହାତକୁ ବଢ଼ାଇ ଦେଇଗଲା । ଦଳପତି ଚଣ୍ଡା ଚାମଣ୍ଡାଙ୍କୁ ଚାଲିଯିବାକୁ ଆଦେଶ ଦେଇ ମମ୍‌ବତି ଆଲୁଅରେ ଖବରକାଗଜର ପୃଷ୍ଠା ଓଲଟାଇବାକୁ ଲାଗିଲେ । ତୃତୀୟ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ଛପା ଗୋଟିଏ ସମ୍ବାଦ ଉପରେ ଦଳପତିର ଆଖି ଅଟକି ଗଲା ।

ସେ ସ୍ଥିରହୋଇ ବସି ଖବର କାଗଜ ଉପରେ ଚଞ୍ଚଳ ଆଖି ଯୋଡ଼ାକ ଘହଁରାଇବାରେ ଲାଗିଲା । ତେବେ କ'ଣ ମୋ ପଛଆଡ଼େ ରୀତିମତ ଷଡ଼ଯନ୍ତ୍ର ଚାଲିଛି ?

ସେ ଖବର କାଗଜର ସମ୍ବାଦଟାକୁ ଆଉଥରେ ଭଲ ଭାବରେ ପଢ଼ି ବସିଲା ।

ଗୋପାଳପୁର ବନ୍ଦରଠାରେ 'ଜଳତରଙ୍ଗ' ନାମକ
ଜାହାଜଟିର ଅସ୍ତିତ୍ୱ ଲୋପ
ଭୀଷଣ ବିସ୍ଫୋରଣ ଫଳରେ ଜାହାଜଟି ଜଳମଗ୍ନ ହୋଇଛି ।
(ଷ୍ଟାଫ ରିପୋର୍ଟରଙ୍କ ଠାରୁ)

ଗୋପାଳପୁର, ଅଦ୍ୟ ୨୬।୧୧ ତାରିଖ ଗୋପାଳପୁର ବନ୍ଦରରୁ ବମ୍ବେର ବିଶିଷ୍ଟ ବ୍ୟବସାୟୀ ହଜାରିମଲ ଶର୍ମାଙ୍କ 'ଜଳତରଙ୍ଗ' ନାମକ ଜାହାଜଟି ରାତି ଏଗାରଟା ସମୟରେ ବମ୍ବେ ଅଭିମୁଖରେ ଯାତ୍ରା କରିବାର ଥିଲା । ମାତ୍ର ଉପଯୁକ୍ତ ସମୟ ପୂର୍ବରୁ, ଆନୁମାନିକ ସାଢ଼େ ଦଶଟା ସମୟରେ ଏକ ପ୍ରକାଣ୍ଡ ବିସ୍ଫୋରଣ ଫଳରେ ଜାହାଜଟି ଜଳମଗ୍ନ ହୋଇଯାଇଛି । ହଜାରିମଲ ଶର୍ମାଙ୍କର ବହୁ ଟଙ୍କାର ଜିନିଷପତ୍ର ନଷ୍ଟ ହୋଇଯାଇଛି । ଏହି ବିସ୍ଫୋରଣ ପଛରେ କୌଣସି ଗୁପ୍ତ ଷଡ଼ଯନ୍ତ୍ର ଥିଲାପରି ଅନୁମାନ କରାଯାଉଛି । ଏହା ଯାତ୍ରୀବାହୀ ଜାହାଜ ହୋଇ ନଥିବାରୁ ଏଥିରେ ବିଶେଷ ଲୋକ ନଥିଲେ । ଯେତେ ଜଣ ଚାଳକ ଇତ୍ୟାଦି ଥିଲେ ସେମାନେ ସମସ୍ତେ ବଞ୍ଚି ଯାଇଛନ୍ତି । କାହାରି ମୃତ ବା ଆହତ ସମ୍ବାଦ ମିଳିନାହିଁ, କିମ୍ବା ଗୁପ୍ତ ଷଡ଼ଯନ୍ତ୍ରୀମାନଙ୍କର କୌଣସି ସମ୍ବାଦ ସ୍ଥାନୀୟ ପୋଲିସ ଡିପାର୍ଟମେଣ୍ଟର ହସ୍ତଗତ ହୋଇ ନାହିଁ । ଧମାଧମ ତଦନ୍ତ ଚାଲିଛି । ଆଶାଜନକ କୌଣସି ସମ୍ବାଦ ଏ ପର୍ଯ୍ୟନ୍ତ ମିଳିନାହିଁ ।

ଦଳପତି କାଗଜଖଣ୍ଡିକ ଦୂରକୁ ଫିଙ୍ଗିଦେଇ ପାର୍ଶ୍ୱକକ୍ଷର ଏକ କାଠବାକ୍ସ ଖୋଲି ତା' ଭିତରୁ ଟେଲିଫୋନ୍‌ଟିଏ ବାହାର କଲା । ମନରେ ତା'ର ଘୋର ଆତଙ୍କ । କାଲି ରାତି ସାଢ଼େ ଦଶଟାରୁ ଏପରି ଅଘଟଣ ଘଟିଲାଣି । ସେଇ ଜାହାଜରେ ଆରତୀର ଯିବାର ଥିଲା । ଅଥଚ କ'ଣ ହେଲା ନ ହେଲା ଏତେବେଳଯାଏ କୌଣସି ସମ୍ବାଦ ମୋତେ ଦେଲ ନାହିଁ । ତେବେ କଅଣ ସେମାନେ ପୋଲିସ ହାତରେ ପଡ଼ିଛନ୍ତି !

ଟେଲିଫୋନ ରିସିଭର ଉଠାଇ କାନ ପାଖରେ ଧରିଲା ।

ହାଲୋ... ହାଲୋ...

କୌଣସି ସମ୍ବାଦ ନାହିଁ । ଦଳପତି ହାଲୋ... ହାଲୋ... କହି ପାଗଳଙ୍କ ପରି ଚିତ୍କାର କରିଉଠିଲା । ମାତ୍ର ଅପର ପ୍ରାନ୍ତରୁ କୌଣସି ଖବର ଆସିଲା ନାହିଁ ।

ତେବେ କ'ଣ ଟେଲିଫୋନ ଲାଇନ୍ ବିଗିଡ଼ି ଯାଇଛି ? ନା ଷଡ଼ଯନ୍ତ୍ରୀ ଦଳ

ଲାଇନ କାଟି ଦେଇଛନ୍ତି ? ଦଳପତି ବିବ୍ରତ ହୋଇପଡ଼ିଲା । ଭୟ ଓ ଆଶଙ୍କାରେ ମୁହଁ ବିବର୍ଣ୍ଣ ହୋଇଆସିଲା । ସେ ଟେଲିଫୋନ୍ ରିସିଭରଟାକୁ ଦୂରକୁ ଫିଙ୍ଗି ଦେଇ ସେଇ ଅନ୍ଧକାର ପ୍ରକୋଷ୍ଠରେ ପଦଚାଳନା କରିବାକୁ ଲାଗିଲା । ପାର୍ଶ୍ୱ ବଣବୁଦା ଆଡ଼େ ଘନ ଘନ କଟାକ୍ଷପାତ କରିବାକୁ ଲାଗିଲା । ବର୍ତ୍ତମାନ ଉପାୟ କଅଣ କିପରି ସେ ସମ୍ବାଦ ପାଇବ ?

ପାର୍ଶ୍ୱ ବଣବୁଦାର ଗୁପ୍ତ ପଥଦେଇ ଦଳପତି ଘଟଣା ସ୍ଥଳକୁ ଛୁଟି ଯିବା ପାଇଁ ମଟର ସାଇକେଲଟିକୁ ପରୀକ୍ଷା କରୁଥିଲା । ସେଆଡୁ ଆଉଖଣ୍ଡେ ମଟର ସାଇକେଲ ଆସୁଥିବାର ଶବ୍ଦ ଶୁଣାଗଲା । ଦଳପତି ପଛକୁ ଚାହିଁ ଦେଖିଲା ସହକାରୀ ଅବନୀ ଆସୁଛି । ତା' ପିଣ୍ଡରେ ପ୍ରାଣ ପଶିଲା । ସେ ଆଶାୟୀ ନୟନଯୁଗଳକୁ ସେଇ ଆଡ଼କୁ ଦଉଡ଼ାଇ ଦେଇ ଚଞ୍ଚଳ ଚିତ୍ତରେ ଅପେକ୍ଷା କଲା । ଅବନୀ ମଟର ସାଇକେଲଟାକୁ ଉପଯୁକ୍ତ ସ୍ଥାନରେ ରଖିଦେଇ ଭିତରକୁ ପଶିଆସିଲା ।

ଦଳପତି ଚଞ୍ଚଳ ଚିତ୍ତରେ ପ୍ରଶ୍ନ କଲା  ଖବର କ'ଣ ଅବନୀ ?

ଅବନୀର ଦମ ଉଠୁଥିଲା । ସେ ନିଜକୁ ଟିକିଏ ସମ୍ଭାଳି ନେଇ କହିଲା : ଖବର ଭଲ । ଅବସ୍ଥା ଆୟତ୍ତକୁ ଅଣାଯାଇଛି । ତେବେ ଆରତୀ ହାତଛଡ଼ା ହୋଇଯାଇଛି ।

ଦଳପତି ଅବନୀ ଆଡ଼େ ହାଁ କରି ଅନାଇ ରହିଲା ।

ତୁମେ କ'ଣ କହୁଛ ? ଆରତୀ ହାତମୁଠାରୁ ଖସିଯାଇଛି ?

ଅବନୀ ଲଜ୍ଜିତ ହୋଇ କହିଲା  ଆଉ ସେକଥା କୁହନ୍ତୁ ନାହିଁ କାଳନେମି । ସେ ଏକ ଖଣ୍ଡଲଢ଼େଇ ପରେ ସଇତାନମାନେ ଆମ ହାତରୁ ଆରତୀକୁ କାଢ଼ି ନେଇଛନ୍ତି । ଆମ ହାତରେ ଯଥେଷ୍ଟ ପରିମାଣରେ ଗୁଳିଗୋଳା ନଥିବା ହିଁ ଆମର ଏ ଲଢ଼େଇରେ ପରାଜୟର ମୂଳ କାରଣ ।

କାଳନେମି (ଦଳପତି) ନାକରୁ ଦୀର୍ଘଶ୍ୱାସ ବାହାରୁଥିଲା । ସତେ ଯେପରି ତାହା ପ୍ରଳୟର ପୂର୍ବାଭାସ । ଅବନୀକୁ ପଚାରିଲା  ଆଚ୍ଛା ଘଟଣାଟା କିପରି କ'ଣ ଘଟିଲା କୁହ ତ ଶୁଣେ ।

ଅବନୀ ଆରମ୍ଭ କଲା  ସେତେବେଳକୁ ରାତି ଠିକ୍ ସାଢ଼େ ଦଶଟା । ଆମେ ଘଟଣାସ୍ଥଳୀରେ ପହଞ୍ଚିବାକୁ ଆଉ ମାତ୍ର ଦୁଇ ମାଇଲ ବାକିଥାଏ । ଗାଡ଼ି ଆମର ପଚାଶ ମାଇଲ ବେଗରେ ଚାଲୁଥାଏ । ହଠାତ୍ ଗୋଟାଏ କାନଫଟା ଆବାଜ ଶୁଣିଲୁ । ତା' ପଛେ ପଛେ ଖଣ୍ଡିଏ ଜିପ୍ ଆସି ଆମ ମଟରର ପଥରୋଧ କରି ଠିଆ ହେଲା । ଆମେ ମଟରର ବେଗ କମାଇ ଘଟଣା କ'ଣ ଜାଣିବା ପୂର୍ବରୁ ଜିପ୍ ଉପରୁ ଲୁହବୁହା ଗ୍ୟାସ ଆମ ଗାଡ଼ିକୁ ଫିଙ୍ଗାହେଲା । ତାହା ଏଡ଼େ କଡ଼ା ଆଉ ଏତେ ତୀବ୍ର ଥିଲା ଯେ ଆମେ ସଙ୍ଗେସଙ୍ଗେ ଅନ୍ଧଙ୍କ ପରି ହୋଇଗଲୁ । ଚାରିଆଡ଼େ ଅନ୍ଧାର ଦିଶିଲା । ଆମେ ପିସ୍ତଲ ଚଳେଇଲୁ । ମାତ୍ର ଫଳ କିଛି ଫଳିଲା ନାହିଁ । ତାଙ୍କ

ଲୋକ କେହି ଆହତ ହେଲେ ନାହିଁ । ଆମ ପିସ୍ତଲର ଗୁଳି ଶେଷ ହେବାକ୍ଷଣି ପାଞ୍ଚ ସାତଟା ଲୋକ ଜିପ୍‌ରୁ ଡେଇଁପଡ଼ି ଆମକୁ କାବୁକରି ନେଲେ । ଗାଡ଼ି ଭିତରୁ ଆରତୀକୁ ସେଇଭଳି ଅଚେତ ଅବସ୍ଥାରେ କାଢ଼ିନେଇ ଜିପ୍‌ରେ ପକାଇ ଆଗକୁ ଛୁଟି ଚାଲିଗଲେ । ଆମେ ଆଉ ତାଙ୍କର କୌଣସି ଖବର ପାଇଲୁ ନାହିଁ । ଆମେ ଲୁହବୁହା ଗ୍ୟାସ କବଳରୁ ମୁକୁଳି ଯେତେବେଳେ ଆସି ବନ୍ଦରରେ ପହଞ୍ଚିଲୁ, ଦେଖିଲୁ ଜାହାଜଟି ପ୍ରଚଣ୍ଡ ବିସ୍ଫୋରଣ ଫଳରେ ଜଳମଗ୍ନ ହୋଇଛି । ପୋଲିସମାନଙ୍କର କଡ଼ା ତଦାରଖ ଚାଲିଛି । ଆମ କ୍ୟାମ୍ପରେ ଯାଇ ଦେଖିଲୁ 'କୃଷ୍ଣଛାୟା' ମୁଣ୍ଡରେ ହାତଦେଇ ବସିଛନ୍ତି । ସେ ଆମକୁ ଦେଖି ଆନନ୍ଦ ପ୍ରକାଶ କଲେ ନାହିଁ । ଆମେ ତାଙ୍କ ପାଖରେ ସମସ୍ତ ଘଟଣା ପ୍ରକାଶ କଲୁ । ସମସ୍ତେ ମିଳି ରାତି ବାରଟାଯାଏ ଖୋଜାଖୋଜି କଲୁ ମାତ୍ର ସେମାନଙ୍କର କୌଣସି ସନ୍ଧାନ ପାଇଲୁ ନାହିଁ । ଆପଣଙ୍କୁ ଏ ଦୁର୍ଘଟଣା ଜଣାଇବା ପାଇଁ ଟେଲିଫୋନ ଉଠାଇଲି ମାତ୍ର ଦୁର୍ଭାଗ୍ୟ । ସେ ମଧ୍ୟ ଅଚଳ 'କୃଷ୍ଣଛାୟା' ବଡ଼ ଦୁଃଖ ପ୍ରକାଶ କଲେ । ତାଙ୍କ କର୍ମମୟ ଜୀବନ କାଳ ଭିତରେ ଏପରି ଏକ ଅଘଟଣ କେବେ ଘଟି ନ ଥିଲା ବୋଲି କହିଲେ ।

ତା'ପରେ ହଜାରିମଲ ଶର୍ମା ନିଜେ ଆସି ଆମ କ୍ୟାମ୍ପରେ ଉପସ୍ଥିତ ହେଲେ । ସେ କହିଛନ୍ତି ତିନି ଚାରିଦିନ ଭିତରେ ବମ୍ବେରୁ ତାଙ୍କର ଖଣ୍ଡେ ଜାହାଜ ଦକ୍ଷିଣ ଆଫ୍ରିକାକୁ ଛାଡ଼ିବ । ସେ ଇତି ପୂର୍ବରୁ ଆପଣଙ୍କୁ ଯେଉଁ ଚିଠି ଖଣ୍ଡିକ ଦେଇଥିଲେ, ଆପଣ ସେଇ ଚିଠି ଅନୁଯାୟୀ କାର୍ଯ୍ୟ କରିବେ । ଦୁଇ ତିନିଦିନ ଭିତରେ ଆପଣ ସମସ୍ତ ଆୟୋଜନ କରି ଏବଂ ମାଲ ମସଲା ହାତରେ ନେଇ ତାଙ୍କୁ କଲିକତାରେ ଭେଟିବେ । ଡାଇମଣ୍ଡ ହାରବର ବନ୍ଦରରୁ ଆପଣଙ୍କ ମାଲ ବୁକ୍ ହେବ । ସେ ଆଜି ନଗଦ ଦଶହଜାର ଟଙ୍କା 'କୃଷ୍ଣଛାୟାଙ୍କୁ' ଦେଇଯାଇଛନ୍ତି । ଆଉ ଚିଠି ଦେବାର ବେଳ ନ ଥିବାରୁ ମୋ ଆଗରେ ସମସ୍ତ ଘଟଣା ଗୋଟି ଗୋଟି କରି ବୁଝାଇ କହିଛନ୍ତି । ସେ ଦକ୍ଷିଣ ଆଫ୍ରିକାରୁ ଜରୁରୀ ଟେଲିଗ୍ରାମ ପାଇଛନ୍ତି ବୋଲି କହୁଥିଲେ । ସେମାନେ ମାଲ ଖୁବ୍ ଶୀଘ୍ର ଚାହାନ୍ତି । ତେଣୁ ଆପଣ ଏଥର ହେଳା କଲେ ଆଉ ଚଳିବ ନାହିଁ ।

ଅବନୀ ସବୁ କଥାତକ କହିସାରି ଖଣ୍ଡିଏ ଚେଆର ଉପରେ ବସିପଡ଼ିଲା । କାଳନେମି ମଧ୍ୟ ଖଣ୍ଡିଏ ଚେଆର ଉପରେ ବସିପଡ଼ି ଆଗତ ଓ ବିଗତ କଥା ଚିନ୍ତା କରିବାରେ ଲାଗିଲା । ଦୁଇ ଚାରିଦିନ ଭିତରେ ହଜାରିମଲ ଶର୍ମାଙ୍କୁ ମାଲ ଯୋଗାଇବାକୁ ପଡ଼ିବ । ସଂଗ୍ରହ ତ ପ୍ରାୟ ହୋଇଯାଇଛି । ଖାଲି ଚାହି କୌଶଳ । ଜନସମାଜ ଆଖିରେ ଧୂଳି ପକାଇ ପାରିଲେ ହେଲା ।

କାଳନେମି ଉପାୟ ଚିନ୍ତା କରିବସିଲା କିପରି ଭାବରେ କାର୍ଯ୍ୟ ହାସଲ କରିବାକୁ ହେବ । କି କୌଶଳ ଅବଲମ୍ବନ କଲେ କେହି ମୋ ଷଡ଼ଯନ୍ତ୍ରର ଟେର ପାଇବେ ନାହିଁ । ଚିନ୍ତାଭାରରେ ଭାରାକ୍ରାନ୍ତ ମସ୍ତିଷ୍କ ଆହୁରି ଭାରି ହେବାକୁ ଲାଗିଲା । ଚିନ୍ତା ଯେତେ ଯେତେ ବଢ଼ିଲା, ଉପାୟର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ ଧୂଆଁଳିଆ ଆକାରରେ ଆଖି

ଆଗରେ ଦିଶିବାକୁ ଲାଗିଲା । ସେ ସେଗୁଡ଼ିକୁ କାଗଜ କଲମରେ ଲିପିବଦ୍ଧ କରି ଚାରିଦିନର କାର୍ଯ୍ୟସୂଚୀ ପ୍ରଣୟନ କଲା । ମୁହଁରେ ଟିକିଏ ହସ ଫୁଟାଇ ଅବନୀ ଆଡ଼େ ଚାହିଁ କହିଲା ତା'ପରେ ଅବନୀ ଆଉ ସବୁ ଖବର କ'ଣ ?

ଅବନୀ କିଛି ବୁଝି ନ ପାରି ଆବାକାବା ହୋଇ କାଳନେମି ମୁହଁକୁ ଅନାଇ ରହିଲା । କାଳନେମି କହିଲା ତା'ହେଲେ ଗୋଟାଏ ସଇତାନ ଦଳ ଆମ ପଛେ ପଛେ ଆଣ୍ଟୁଗଣ୍ଠି ଛିଣ୍ଡେଇ ଖୁବ୍ ଧାଇଁଛନ୍ତି ନା ?

ଅବନୀ କହିଲା ମୁଁ ତ ଆଜ୍ଞା ଦେଖୁଛି ସେଇଆ । ଆଚ୍ଛା ! ଏଇ ଦଳଟାର କୌଣସି ସନ୍ଧାନ ଆପଣ ନେଇ ନାହାନ୍ତି ? କି ଉଦ୍ଦେଶ୍ୟରେ ସେମାନେ ଆମ ପଛେ ପଛେ ଗୋଡ଼ାଇଛନ୍ତି ?

କାଳନେମି ଅବଜ୍ଞାର ହସ ହସି କହିଲା : ସେମାନଙ୍କର ଖବର ନେବା ଦରକାର ମନେ କରି ନାହିଁ । ତେଣୁ ନେଇ ନାହିଁ । ତେବେ ବର୍ତ୍ତମାନ ଅବସ୍ଥା ଯେତେଦୂର ଆଗେଇ ଗଲାଣି, ଏଥର ନେବାକୁ ହିଁ ହେବ । ଆଉ ତା' ପୁଣି ଖୁବ୍ ଭଲ ଭାବରେ ।

ଅବନୀ ଉତ୍ସାହିତ ହୋଇ କହିଲା ବାସ୍ତବିକ ସେମାନଙ୍କୁ କାବୁ ନ କଲେ ଆଉ ଉପାୟ ନାହିଁ । କେତେବେଳେ କୋଉ କଥା ! ବର୍ତ୍ତମାନ ପୋଲିସ ଡିପାର୍ଟମେଣ୍ଟଟା ଯେପରି ଆଖି ମୁକୁଳା କରି ଅନେଇଲାଣି, ଗୁଇନ୍ଦାଗୁଡ଼ାକ ଯେପରି ଧାଁ ଦଉଡ଼ କରୁଛନ୍ତି, କେତେବେଳେ ନଜରରେ କ'ଣ ଟିକିଏ ପଡ଼ିଗଲା ତ ସର୍ବନାଶ ।

କାଳନେମି କଥାର ସୁଅ ବଦଳାଇବାକୁ ଯାଇ କହିଲା ଆଚ୍ଛା ଅବନୀ ! ବର୍ତ୍ତମାନ ସେ ସବୁ କଥା ଥାଉ, କାମର କଥା ଆଲୋଚନା କର । ଏଇ ଦେଖ ଚାରିଦିନର କାର୍ଯ୍ୟସୂଚୀ, ଆଉ ଏଇ ସୂଚୀ ଅନୁଯାୟୀ ସମସ୍ତ ଆୟୋଜନ କର । ଏଥିରେ ଯେପରି ତ୍ରୁଟି ନହୁଏ ।

ଅବନୀ କାଳନେମି ହସ୍ତରୁ କାର୍ଯ୍ୟ ସୂଚୀଟି ଗ୍ରହଣ କଲା ।

## ବିଶ୍ୱାସରେ ବିଷ

ସେଇଦିନ ସଞ୍ଜ ସାତଟା ।

ହସପିଟାଲର ଓଏଟିଂ ରୁମ୍‌ରେ ବସିଛନ୍ତି ହସ୍‌ପିଟାଲର ବଡ଼ ଡାକ୍ତର ସୁଧାଂଶୁବାବୁ, ଡି.ଏସ୍.ପି. ପୋଲିସ ଇନିସ୍ପେକ୍ଟର ଏବଂ ନନ୍ଦଲାଲବାବୁ ।

ପୋଲିସ ଇନିସ୍ପେକ୍ଟର ପ୍ରଫୁଲ୍ଲବାବୁ କହିଲେ ମୋର ବିଶ୍ୱାସ ଅମରବାବୁଙ୍କ ଚେତା ଫେରିଆସିଲେ ଆମେ ତାଙ୍କଠୁଁ ଅନେକ ତଥ୍ୟ ସଂଗ୍ରହ କରିପାରିବା ।

ନନ୍ଦଲାଲବାବୁ କହିଲେ ଡାକ୍ତରବାବୁ କହୁଛନ୍ତି ଏପର୍ଯ୍ୟନ୍ତ ଅମରବାବୁଙ୍କ ଅବସ୍ଥା ସଂକଟାପନ୍ନ ! କେବେ ଯେ ହୋସ୍ ଫେରିବ କହି ହେଉନାହିଁ । ଆପଣମାନେ ଯଦି ତାଙ୍କରି ଭରସାରେ ବସି ରୁହନ୍ତି, ତେବେ କ'ଣ ଚଳିବ ? ଏଣେ ତ ଦେଖୁଛନ୍ତି ଅବସ୍ଥା ଦିନକୁଦିନ ବଳେଇ ପଡୁଛି । ତୁରନ୍ତ ଏହାର କିଛି ସୁବ୍ୟବସ୍ଥା ନକଲେ...

ଡି.ଏସ୍.ପି. କହିଲେ ସେ କଥା ସତ ନନ୍ଦଲାଲବାବୁ ! ମୁଁ ଅବସ୍ଥାର ଗୁରୁତ୍ୱ ବୁଝୁଛି । ସମସ୍ତ ଶକ୍ତି ପ୍ରୟୋଗ କରିସାରିଲିଣି ଦୁର୍ବୃତ୍ତମାନଙ୍କୁ କବଳିତ କରିବା ପାଇଁ, ମାତ୍ର ସମ୍ଭବ ହୋଇଉଠୁନି ।

ଡାକ୍ତରବାବୁ ହାତ ଘଡ଼ିକୁ ଚାହିଁ କହିଲେ ଆଚ୍ଛା ଆପଣମାନେ ବସି କଥାବାର୍ତ୍ତା କରନ୍ତୁ । ସମୟ ହୋଇଗଲାଣି, ମୁଁ ଅମରବାବୁଙ୍କୁ ଗୋଟାଏ ଇଞ୍ଜେକ୍ସନ ଦେଇଆସେ ।

ଡାକ୍ତରବାବୁ ଆଗେଇ ଗଲେ । ତାଙ୍କର ଆଜି ପ୍ରତି ପଦକ୍ଷେପରେ ଚଞ୍ଚଳତାର ଭାବ ଫୁଟି ଦିଶୁଥିଲା ।

ସେ ଅମରବାବୁଙ୍କ ବେଡ଼ ପାଖରେ ପହଞ୍ଚି ଅମରବାବୁଙ୍କୁ ପରୀକ୍ଷା କଲେ । ଅବସ୍ଥା କ୍ରମେ ଉନ୍ନତି ଦିଗକୁ ଗତି କରୁଛି । ପକେଟରୁ ଇଞ୍ଜେକ୍ସନ ଶିଶିଟା କାଢ଼ିଲେ । ହାତ ଥରିଉଠିଲା । ଥରିଲା ହାତରୁ ଇଞ୍ଜେକ୍ସନ ଶିଶିଟା ଥରେ ଅମରବାବୁଙ୍କ ବେଡ୍ ଉପରେ ଖସିପଡ଼ିଲା । ଡାକ୍ତରବାବୁ ପୁଣି ତାକୁ ଉଠାଇ ଆଣି ତା' ମୁହଁ ଭାଙ୍ଗିଲେ । ସିରିଞ୍ଜ୍ (ଇଞ୍ଜେକ୍ସନ ଦେବା ଯନ୍ତ୍ର)ର ତରଳ ପଦାର୍ଥତକ ଭରିଲେ ।

ଥରେ ଚାରିଆଡ଼େ ସତର୍କ ଦୃଷ୍ଟି ବୁଲାଇ ଆଣିଲେ । ଝିଡ଼ିକିବାଟେ ବାହାରକୁ ଚାହିଁଲେ । କେହି ଲୁଚିରହି ମୋର କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁନାହିଁ ତ ? ଅନ୍ତର ତାଙ୍କର ଥରିଉଠିଲା । ସେ ଅମରବାବୁଙ୍କ ଦକ୍ଷିଣ ବାହୁରେ ସ୍ପିରିଟ୍ ମିଶା ତୁଳା ଘଷିଲେ ।

ଛୁଞ୍ଚି ସମେତ ଇଞ୍ଜେକସନ ଯନ୍ତ୍ରଟିକୁ ଆଉ ଥରେ ପରୀକ୍ଷା କରି ସେ ଅମରବାବୁଙ୍କ ବାହୁରେ ଫୋଡ଼ିବାକୁ ନେଉଛନ୍ତି, ହଠାତ୍ ଗୋଟାଏ ଆବାଜ ହେଲା । ଆଖି ପିଛୁଳାକେ ଝିଡ଼ିକି ସେ ପଟରୁ ଗୋଟାଏ ବୁଲେଟ ଆସି ଡାକ୍ତରବାବୁଙ୍କ ଦକ୍ଷିଣ ବାହୁରେ ଭେଦିଗଲା । ସେ ଆର୍ତ୍ତ ଚିତ୍କାର କରି ତଳେ ପଡ଼ିଗଲେ ।

ଡି.ଏସ୍.ପି. ପ୍ରଭୃତି ଓଏଟିଂ ରୁମ୍‌ରୁ ଧାଇଁ ଆସିଲେ । ଦେଖିଲେ ଇଞ୍ଜେକ୍‌ସନ ଯନ୍ତ୍ରଟି ତଳେ ପଡ଼ି ଚୁନା ହୋଇଯାଇଛି । ଡାକ୍ତରବାବୁଙ୍କ ଦକ୍ଷିଣ ବାହୁରୁ ରକ୍ତଧାର ବହିଯାଉଛି । ସେ ଚିତ୍‌କାତ୍ ହୋଇ ତଳେ ପଡ଼ିଛନ୍ତି । ସଙ୍ଗେସଙ୍ଗେ ଘରଟି ଲୋକାରଣ୍ୟ ହୋଇଗଲା । ଡାକ୍ତରବାବୁଙ୍କୁ ସ୍ଥାନାନ୍ତରିତ କରାଇ ପ୍ରାଥମିକ ଚିକିତ୍ସା କରାଗଲା । ପ୍ରଫୁଲ୍ଲବାବୁ ଡି.ଏସ୍.ପି.ଙ୍କ ମୁହଁକୁ ବଲବଲ କରି ଅନାଇ ରହିଲେ । ନନ୍ଦଲାଲବାବୁ ବିସ୍ମୟ ବିସ୍ଫାରିତ ନେତ୍ରରେ ଏଆଡ଼େ ସେଆଡ଼େ ଚାହିଁ କହିଲେ  ଏ'ତ ବଡ଼ ଆଶଙ୍କାଜନକ ପରିସ୍ଥିତି । ହସ୍‌ପିଟାଲକୁ ଆସି ମଧ୍ୟ ସଇତାନମାନେ ଅମରବାବୁଙ୍କୁ ଶେଷ କରିବାକୁ ଗୁଳି ଚଳାଉଛନ୍ତି । ସୌଭାଗ୍ୟ କ୍ରମେ ସିନା ଗୁଳିଚୋଟଟା ଅମରବାବୁଙ୍କ ଉପରେ ନ ବସି ଡାକ୍ତରବାବୁଙ୍କ ହସ୍ତରେ ବସିଲା, ନତୁବା...

ଡି.ଏସ୍.ପି. ଘରର ଚାରିଦିଗରେ ଆଖି ବୁଲାଉଥିଲେ । ତାଙ୍କ ଆଖି ଯାଇଁ ବେଡ୍ ତଳକୁ ପଡ଼ିଥିବା ଖାଲି ଇଞ୍ଜେକ୍‌ସନ ଶିଶିଟି ଉପରେ ପଡ଼ିଲା । ସେ ସେଟିକୁ ଉଠାଇ ଆଣି ଦେଖିଲେ, ବିଷ ଇଞ୍ଜେକ୍‌ସନ । ଚିହିଁକି ପଡ଼ିଲେ, ଏଁ ଅମରବାବୁଙ୍କୁ ବିଷ ଇଞ୍ଜେକ୍‌ସନ ଦିଆଯାଇଥିଲା ? ସେ ସେହି ଖାଲି ଶିଶିଟିକୁ ପକେଟରେ ଭରିଲେ । ପରୀକ୍ଷା କରି ଦେଖିଲେ, ଇଞ୍ଜେକ୍‌ସନ ଯନ୍ତ୍ରଟି ଅମରବାବୁଙ୍କ ଦିହରେ ଭେଦିନାହିଁ । ସ୍ୱସ୍ତିର ନିଃଶ୍ୱାସ ମାରିଲେ ।

ଲୋକ ଗହଳି ଭିତରେ ଡି.ଏସ୍.ପି.ଙ୍କ କାର୍ଯ୍ୟକଳାପକୁ କେହି ଲକ୍ଷ୍ୟ କରିନଥିଲେ । ଡି.ଏସ୍.ପି. ପୁଣି ଓଏଟିଂ ରୁମ୍‌କୁ ଫେରିଗଲେ । ଚିନ୍ତାରେ ତାଙ୍କ ମୁଣ୍ଡ ଭାରି ଭାରି ଲାଗୁଥିଲା । ଡାକ୍ତରବାବୁଙ୍କୁ କିଏ କେଉଁ ଉଦ୍ଦେଶ୍ୟରେ ଗୁଳି କଲା ? ଡାକ୍ତରବାବୁ କ'ଣ ଜାଣି ଶୁଣି ଅମରବାବୁଙ୍କୁ ବିଷ ଇଞ୍ଜେକ୍‌ସନ ଦେଉଥିଲେ ? କେହି ତେବେ କ'ଣ ଡାକ୍ତରବାବୁଙ୍କର ଏ ଦୁର୍ନୀତି ଲକ୍ଷ୍ୟକରି ଅମରବାବୁଙ୍କ ଜୀବନ ବଞ୍ଚାଇବା ପାଇଁ ଡାକ୍ତରବାବୁଙ୍କୁ ଗୁଳି ଚଳାଉ ଚଳାଉ ଲକ୍ଷ୍ୟଭ୍ରଷ୍ଟ ହୋଇଛି ? କେଉଁଟା ସତ୍ୟ ? କେଉଁଟା ଠିକ୍ ?

ଡି.ଏସ୍.ପି. ଏହାର କୌଣସି ଗୋଟାଏ ଶେଷନିଷ୍ପତ୍ତି ନ କରୁଣୁ ନନ୍ଦଲାଲ ବାବୁ ପହଞ୍ଚି କହିଲେ  ଏ'ତ ବଡ଼ ତାଜୁବ ବ୍ୟାପାର, ହସ୍‌ପିଟାଲର ବଗିଚା ହତା ଭିତରୁ ଗୁଳି ଆସି ଡାକ୍ତରବାବୁଙ୍କୁ ଜଖମ କଲା । ଅଥଚ ପ୍ରଫୁଲ୍ଲବାବୁ ପୋଲିସ ଦଉଡ଼ାଇ କାହାରି କିଛି ସନ୍ଧାନ ପାଇଲେ ନାହିଁ ।

ଡି.ଏସ୍.ପି. କହିଲେ  ନ ପାଇବାର ତ କଥା, କିନ୍ତୁ ପାଇଥିଲେ ବୋଧହୁଏ ପ୍ରକୃତ ଗୁଳିଚଳାଳିକୁ ପାଇ ନଥାନ୍ତେ ।

ଠିକ୍ ସେତିକିବେଳେ ରଣଜିତ୍‌ବାବୁ ହସି ହସି ଆସି ଡି.ଏସ୍.ପି.ଙ୍କୁ ଅଭିବାଦନ ଜଣାଇଲେ । ଡି.ଏସ୍.ପି. ରଣଜିତ୍‌ବାବୁଙ୍କୁ ବସିବାକୁ ଚେଆର ଦେଇ ବର୍ତ୍ତମାନ ଘଟିଥିବା ଅଘଟଣର କେତେକାଂଶ ତାଙ୍କ ଆଗରେ କହିଲେ । ରଣଜିତ୍‌ବାବୁଙ୍କ ହସ ହସ ମୁଖମଣ୍ଡଳ ଉପରେ ବେଦନାର ରେଖା ଫୁଟି ଦିଶିଲା । ସେ ଡାକ୍ତରବାବୁଙ୍କ ଅକାଳ ଦୁର୍ଘଟଣାଜନିତ ସମବେଦନା ଜ୍ଞାପନ କଲେ ।

ଏହି ସମୟରେ ନନ୍ଦଲାଲବାବୁ ପକେଟରୁ ଦୁଇଖଣ୍ଡ ନିମନ୍ତ୍ରଣ କାର୍ଡ ବାହାର କରି ଖଣ୍ଡେ ଡି.ଏସ୍.ପି. ଓ ଆଉଖଣ୍ଡେ ରଣଜିତ୍‌ବାବୁଙ୍କ ହାତକୁ ବଢ଼ାଇ ଦେଇ କହିଲେ କାଲି ମୋ ବାସଭବନଠି ଏକ କ୍ଷୁଦ୍ର ଜଳଯୋଗର ଆୟୋଜନ କରିଛି । ଓଡ଼ିଶାର ମହାମାନ୍ୟ ଲାଟ୍ ସାହେବ, ପ୍ରଧାନମନ୍ତ୍ରୀ ତଥା ଅନ୍ୟାନ୍ୟ ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ନିମନ୍ତ୍ରିତ ହୋଇଛନ୍ତି । ଆପଣମାନେ ପଦାର୍ପଣ କରିବେ ନିଶ୍ଚୟ । ମୁଁ ଏହି କାର୍ଯ୍ୟରେ ଆସିଥିଲି । ହଠାତ୍ ଏକ ଦୁର୍ଘଟଣା ଘଟିବା ଫଳରେ ଅନେକ ଡେରି ହୋଇଗଲାଣି । ବର୍ତ୍ତମାନ ମୁଁ ଆପଣଙ୍କଠାରୁ ବିଦାୟ ନେଉଛି । ଆଶା କରେ, ଯଥା ସମୟରେ ଆପଣମାନେ ଯୋଗ ଦେବେ ।

ଡି.ଏସ୍.ପି. କାର୍ଡ ଖଣ୍ଡିକୁ ଆମୂଳଚୂଳ ପାଠ କରିସାରି କହିଲେ, : କେତେଦିନର କ୍ଲାନ୍ତି ପରେ ଆପଣଙ୍କ ନିମନ୍ତ୍ରଣ ଟିକିଏ ଆନନ୍ଦ ଦେବ ନିଶ୍ଚୟ ।

ନନ୍ଦଲାଲବାବୁ ହସି ହସି ସେଠାରୁ ଅନ୍ତର ହୋଇଗଲେ । ରଣଜିତ୍‌ବାବୁ ଆଉ କେତେକ ବାର୍ତ୍ତାଳାପ ପରେ ଡି.ଏସ୍.ପି.ଙ୍କ ଠାରୁ ବିଦାୟ ନେଲେ ।

ଡି.ଏସ୍.ପି. ହସ୍‌ପିଟାଲରୁ ପରିଚାଳକଙ୍କୁ ଡକାଇ ପଠାଇ କହିଲେ, ସୁଧାଂଶୁବାବୁଙ୍କୁ ବର୍ତ୍ତମାନ ଅନ୍ତତଃ ପନ୍ଦର ଦିନ ସକାଶେ ବିଶ୍ରାମ କରିବାକୁ ଦିଅନ୍ତୁ । କାରଣ ସେ ଆଘାତପ୍ରାପ୍ତ ହୋଇଛନ୍ତି । ତାଙ୍କ ଜାଗାରେ ଅନ୍ୟ ଡାକ୍ତର ନିଯୁକ୍ତ କରାଇ ନିଅନ୍ତୁ । ଆଉ ଗୋଟିଏ କଥା, ଅମରବାବୁ ପୂର୍ଣ୍ଣ ଆରୋଗ୍ୟ ଲାଭ ନ କରିବା ଯାଏ ଆମ ତରଫରୁ ଜଣେ ଡାକ୍ତର ତାଙ୍କୁ ଚିକିତ୍ସା କରିବା ପାଇଁ ରହିବେ ।

ହସ୍‌ପିଟାଲର ପରିଚାଳକ ଡି.ଏସ୍.ପି.ଙ୍କ କଥାର ଅର୍ଥ କିଛି ବୁଝିପାରିଲେ ନାହିଁ । କେବଳ ମୁଣ୍ଡ ହଲାଇ ସମ୍ମତି ଜ୍ଞାପନ କଲେ ।

ପ୍ରଫୁଲ୍ଲବାବୁ ନିରାଶ ହୋଇ ଫେରିଆସି ଜଣାଇଲେ କୌଣସି ସନ୍ଧାନ ପାଇଲି ନାହିଁ ଆଜ୍ଞା । ସମସ୍ତେ ବିଫଳ ହୋଇ ଫେରିଆସିଛନ୍ତି ।

ଡି.ଏସ୍.ପି.ଙ୍କ ଓଷ୍ଠପୁଟରେ ହାସ୍ୟର ରେଖା ଫୁଟିଉଠିଲା । ସେ ଲୋକଟା ଏତେ ବୋକା ହୋଇଥିଲେ ଆପଣମାନେ ତାକୁ କେଉଁଦିନୁ ଗାରଦରେ ଠୁଙ୍କି ସାରନ୍ତେଣି । ଆପଣଙ୍କ ବୁଦ୍ଧିବିଦ୍ୟା ଅପେକ୍ଷା ତା' ବୁଦ୍ଧିର ଦଉଡ଼ ଢେର ବେଶୀ । ତେଣୁ ସେ ଆମମାନଙ୍କ ନାକରେ ଦଉଡ଼ି ଲଗାଇ ଟାଣି ଟାଣି ନେଉଛି ।.

ପ୍ରଫୁଲ୍ଲବାବୁ କୌଣସି ଉତ୍ତର ଦେଲେ ନାହିଁ ।

ଡି.ଏସ୍.ପି. ପୁଣି ପଚାରିଲେ  ଆଚ୍ଛା ପ୍ରଫୁଲ୍ଲବାବୁ ! ଅମରବାବୁଙ୍କୁ ହସ୍‌ପିଟାଲରେ ଆଣି କିଏ ଭର୍ତ୍ତି କରାଇଥିଲା ?

ପ୍ରଫୁଲ୍ଲବାବୁ କହିଲେ  ସେ ମଧ୍ୟ ଏକ ରହସ୍ୟଜନକ ବ୍ୟାପାର ଆଜ୍ଞା । ଅମରବାବୁଙ୍କୁ ହସ୍‌ପିଟାଲକୁ ଆଣିବାର ପନ୍ଦର କୋଡ଼ିଏ ମିନିଟ ପୂର୍ବରୁ କିଏ ଜଣେ ଟେଲିଫୋନ କରି ଜଣାଇ ଦେଲା ଯେ, ସେ ଥାନାରୁ କହୁଛି । ଗୁଇନ୍ଦା ଅମରବାବୁ ଶକ୍ତ ଆଘାତ ପାଇଛନ୍ତି । ତାଙ୍କର ଅବସ୍ଥା ସଂକଟାପନ୍ନ । ତାଙ୍କୁ ଦୁଇଜଣ ଗୋଟାଏ ଜିପ୍‌ରେ ପକାଇ ନେଇ ଯାଉଛନ୍ତି । ଗୋଟାଏ ସିଟ୍ ଖାଲିକରି ରଖିଥାଆନ୍ତୁ ।

ସତକୁ ସତ ପନ୍ଦର କୋଡ଼ିଏ ମିନିଟ ପରେ ଦୁଇଜଣ ସବଳକାୟ ବ୍ୟକ୍ତି ଅମରବାବୁଙ୍କ ଦରମରା ଶରୀରଟାକୁ ଆଣି ପହଞ୍ଚାଇଲେ । ସେମାନଙ୍କୁ ପଚାରିବାରୁ କହିଲେ, ଆମେ ମହାନଦୀ କୂଳରୁ ସାଉଁଟି ଆଣିଛୁ । ସେମାନଙ୍କ ପରିଚୟ ପାଇବା ପୂର୍ବରୁ ସେମାନେ ଅମରବାବୁଙ୍କୁ ହସ୍‌ପିଟାଲର ଡାକ୍ତର ହସ୍ତରେ ସମର୍ପଣ କରି ଜିପ୍ ଛୁଟାଇ ଚାଲିଗଲେ । ପରେ ବୁଝାଗଲା ଯେ ପ୍ରକୃତରେ ଥାନାରୁ କେହି ଫୋନ କରି ନଥିଲେ ।

ଡି.ଏସ୍.ପି. ସମସ୍ତ କଥା ମନଯୋଗ ସହକାରେ ଶୁଣୁଥିଲେ । ସେ ମନେ ମନେ ଆଜିର ଘଟଣା ଓ ସେଦିନର ଘଟଣାକୁ ତୁଳନା କରୁଥିଲେ । ନିଶ୍ଚୟ ଜଣେ ତୃତୀୟ ପକ୍ଷ ଏ ଅଘଟଣର ଆଢୁଆଳରେ ଲୁଚି ରହି କାର୍ଯ୍ୟ କରୁଛି । ହୁଏତ ତା' ଉଦ୍ଦେଶ୍ୟ ସତ୍ ଅଥବା ଅସତ୍ ହୋଇପାରିଥାଏ । ସେ ପ୍ରଫୁଲ୍ଲବାବୁଙ୍କୁ ପଚାରିଲେ : ଆଚ୍ଛା ଏ ଆଠଦିନ ଭିତରେ କିଏ କୌଣସିଠି ପୋଲିସ ଫୋର୍ସର ସାହାଯ୍ୟ ଲୋଡ଼ିଛି କି ?

ପ୍ରଫୁଲ୍ଲବାବୁ କ୍ଷଣେ କାଳ ଚିନ୍ତା କରି ଉତ୍ତର ଦେଲେ  ନା । ଯେତେଦୂର ମନେହୁଏ କେହି କେବେ କେଉଁଠି ଲୋଡ଼ିନାହିଁ ।

ଡି.ଏସ୍.ପି. କହିଲେ : ହୁଏତ ଭବିଷ୍ୟତରେ ଏପରି ଦିନ ଆସିପାରେ କେହି ପୋଲିସ ଫୋର୍ସର ସାହାଯ୍ୟ ଲୋଡ଼ିବ । ଆପଣ ଟିକିଏ ସଜାଗ ଥିବେ ପ୍ରଫୁଲ୍ଲବାବୁ ! ଲୋଡ଼ିବା ମାତ୍ରେ ଆପଣ ତାକୁ ପ୍ରାଣପଣେ ସାହାଯ୍ୟ କରିବେ ।

ପ୍ରଫୁଲ୍ଲବାବୁ ପଚାରିଲେ  ଆପଣଙ୍କର ଏପରି ଭାବରେ ସନ୍ଦେହ କରିବାର କାରଣ ?

ଡି.ଏସ୍.ପି. କହିଲେ : କାରଣ ଅବଶ୍ୟ ଅଛି । ମାତ୍ର ବର୍ତ୍ତମାନ ତାହା ଅପ୍ରକାଶ୍ୟ ଭାବରେ ରହିବା ହିଁ ଭଲ । ଆପଣ ଟିକେ ସଜାଗ ଥାଆନ୍ତୁ । ମୁଁ ମଧ୍ୟ ଗୁଇନ୍ଦା ବିଭାଗରେ କୁହାଇ ଆଉ ଦୁଇଜଣ ଭଲ ଗୁଇନ୍ଦା ଏ କେସ୍ ପଛରେ ଲଗାଇ ଦେଉଛି । ଅମରବାବୁ ଆରୋଗ୍ୟ ହୁଅନ୍ତୁ । ତା'ପରେ ସବୁ ରହସ୍ୟ ହୁଏତ ପଦାରେ ପଡ଼ିଯିବ ।

ଡି.ଏସ୍.ପି. ଓ ପ୍ରଫୁଲ୍ଲବାବୁ ହସ୍‌ପିଟାଲରେ ଆଉଥରେ ଅମରବାବୁଙ୍କୁ ଦେଖି ଆସି ପୋଲିସ ଲରୀରେ ଯାଇ ବସିଲେ ।

## ଚକ୍ରୀର ମାୟାଚକ୍ର

ନନ୍ଦଲାଲବାବୁଙ୍କ ବୈଠକଖାନା । ସାଜସଜ୍ଜା ସବୁଦିନକୁ ବଳିପଡ଼ିଛି । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ପ୍ରାୟ ସମସ୍ତେ ଉପସ୍ଥିତ ହୋଇସାରିଲେଣି । ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ, ମାନ୍ୟବର ପ୍ରଧାନମନ୍ତ୍ରୀ, ଡି.ଏସ୍.ପି., ହସ୍‌ପିଟାଲର ପରିଚାଳକ, ରଣଜିତ୍‌ବାବୁ, ଦୈନିକ ଖବରକାଗଜମାନଙ୍କର ସମ୍ପାଦକ ଏବଂ ଆହୁରି ବହୁତ ସରକାର ବେସରକାରୀ ଭଦ୍ରବ୍ୟକ୍ତି ଉପସ୍ଥିତ ହୋଇ ନନ୍ଦଲାଲବାବୁଙ୍କ ଆୟୋଜନକୁ ସାଫଲ୍ୟ ମଣ୍ଡିତ କରିଛନ୍ତି ।

କେତେକ ସମୟ ଘରୋଇ ଆଳାପ ପରେ ନନ୍ଦଲାଲବାବୁ ଚେଆରରୁ ଉଠି କଣ୍ଠ ପରିଷ୍କାର କରି କହିଲେ  ମାନ୍ୟବର ପ୍ରଦେଶପାଳ ଓ ଉପସ୍ଥିତ ଭଦ୍ର ମହୋଦୟଗଣ... ଆଜି ଏହି ଆନନ୍ଦ ଉତ୍ସବଟିକୁ ସାଫଲ୍ୟମଣ୍ଡିତ କରି ଆପଣମାନେ ଯେଉଁ ସହୃଦୟତାର ପରିଚୟ ଦେଇଛନ୍ତି, ସେଥିପାଇଁ ମୁଁ ଆପଣମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । ଏହିପରି ଏକ ଶୁଭ ମୁହୂର୍ତ୍ତରେ ମୋର ମନ କଥା କେତୋଟି ଆପଣମାନଙ୍କ ପାଖରେ ଖୋଲି କହିବାକୁ ବହୁଦିନରୁ ଆଶା ପୋଷଣ କରିଥିଲି । ଆଶା ମୋର ଆଜି ଫଳବତୀ ହୋଇଛି ଏବଂ ସ୍ୱପ୍ନ ମୋର ସଫଳ ହୋଇଛି ।

ଆପଣମାନେ ଜାଣିଥିବେ, ମୁଁ ବହୁ ଦିନରୁ ଦେଶର ଉନ୍ନତିକର ଯୋଜନାମାନ ସ୍ଥିର କରିଥିଲେ ହେଁ ଆଜି ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ କରିପାରି ନଥିଲି । ସୁଖର କଥା, ଆପଣମାନଙ୍କର ଶୁଭଦୃଷ୍ଟି ଏବଂ ଈଶ୍ୱରଙ୍କର ଅପାର କରୁଣା ବଳରୁ ମୁଁ କେତେକଟା ସଫଳତା ଅର୍ଜନ କରିଥିବାରୁ ବକ୍ଷ ମୋର ଆନନ୍ଦରେ ନାଚି ଉଠୁଛି ।

ମୁଁ ଗୋଟିଏ ନୃତ୍ୟ ଗୀତର ଶିକ୍ଷାଳୟ ପ୍ରାୟ ଛ' ମାସ ହେବ ଖୋଲିଥିବାର ଆପଣମାନଙ୍କୁ ଜଣାଥିବ । ସେଥିରେ ଆଜି ପର୍ଯ୍ୟନ୍ତ ପ୍ରାୟ ଚାଳିଶ ଜଣ ହେବ ମହିଳା ଯୋଗ ଦେଇଛନ୍ତି । କେତେକ ଅନ୍ୟ ପ୍ରଦେଶର ମହିଳାମାନଙ୍କୁ ମଧ୍ୟ ଶିକ୍ଷାଳୟରେ ସ୍ଥାନ ଦେଇଛି । ଏମାନଙ୍କୁ ଆହୁରି ଉନ୍ନତ କରାଇବା ପାଇଁ ମୋର ପ୍ରବଳ ବାସନା ଜାଗିଥିଲା । ଦିନେ ଏଇ ସମ୍ପର୍କରେ ମୁଁ ମୋର ଗୋଟିଏ ବନ୍ଧୁଙ୍କ ନିକଟକୁ ଇଂଲଣ୍ଡକୁ ଚିଠି ପଠାଇଥିଲି । ଚିଠିରେ ଲେଖିଥିଲି  ଆମ ଶିକ୍ଷାର୍ଥୀମାନଙ୍କୁ ବିଦେଶୀୟ ନୃତ୍ୟ ଗୀତ ଶିଖିବା ନିମିତ୍ତ ମୋର ଇଂଲଣ୍ଡ ପଠାଇବାକୁ ଏକାନ୍ତ ଇଚ୍ଛା । ଆପଣ ଯଦି ସେଠାରେ ସେମାନଙ୍କ ନିମିତ୍ତ କୌଣସି ସୁବନ୍ଦୋବସ୍ତ କରାଇପାରନ୍ତେ, ତେବେ ମୁଁ

ସମସ୍ତ ଖର୍ଚ୍ଚ ବହନ କରି ଆମ ଶିକ୍ଷାର୍ଥୀମାନଙ୍କୁ ଶିକ୍ଷା ଦିଅନ୍ତି । ବନ୍ଧୁ ଜଣକ ମୋ ପ୍ରସ୍ତାବରେ ଖୁସିହୋଇ ସମସ୍ତ ବନ୍ଦୋବସ୍ତ କରି ଚିଠି ପଠାଇଛନ୍ତି । ମୁଁ ଏ ପ୍ରସ୍ତାବ ପିଲାମାନଙ୍କ ଆଗରେ ବାଢ଼ିବାରୁ ସମସ୍ତେ ମହା ଆନନ୍ଦରେ ସମ୍ମତି ଜଣାଇଲେ । ମୁଁ ସେମାନଙ୍କୁ ଗତ କାଲି ଏକ୍‌ସପ୍ରେସରେ କଲିକତା ପଠାଇ ଦେଇଛି । ସେଠାରେ ଦିନ ଦୁଇଟା ରହି ନୃତ୍ୟ ପ୍ରଦର୍ଶନର ମଧ୍ୟ ବନ୍ଦୋବସ୍ତ କରାଇଛି । ତା'ପରେ ଦୁଇ ତିନି ଦିନ ଅନ୍ତେ ଡାଇମଣ୍ଡହାରବରରୁ ଜାହାଜ ଚଢ଼ି ସମସ୍ତେ ବମ୍ବେ ଯିବେ ଏବଂ ବମ୍ବେରୁ ଇଂଲଣ୍ଡ ଅଭିମୁଖରେ ଯାତ୍ରା କରିବେ । ଇଏ ତ ଗଲା ଗୋଟିଏ କଥା ।

ଦ୍ୱିତୀୟ କଥା ହେଉଛି, ଆମ ପ୍ରଦେଶର ଲୋକ ପ୍ରାୟ ଶତକଡ଼ା ୯୯ ଜଣ ଗରିବ । ଖାଲି ସେତିକି ନୁହେଁ, ସେଇ ୯୯ ଜଣଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଦେଶଛଡ଼ା । ଅର୍ଥାତ ଆମ ପ୍ରଦେଶରେ ପେଟ ପୋଷିବାର କୌଣସି ସୁଗମ ପନ୍ଥା ନ ପାଇ, ବହୁ ଲୋକ କଲିକତା, ଆସାମ, ରେଙ୍ଗୁନ ଆଦି ବିଭିନ୍ନ ସ୍ଥାନମାନଙ୍କରେ ଅସହାୟ ଭାବରେ ପଡ଼ି ରହିଛନ୍ତି । ଯେଉଁମାନେ ଦେଶଛଡ଼ା ହେଇ ପଡ଼ିରହିଛନ୍ତି, ସେମାନେ କଳକବ୍‌ଜା କାମରେ ଏପରି ସୁଦକ୍ଷ ଯେ, ଆପଣମାନେ ଦେଖିଲେ ଆଶ୍ଚର୍ଯ୍ୟ ହେବେ । ଯେତେ ହେଲେ ପର ଦେଶ । ପରର ଗୋଲାମୀ । ସେମାନେ ଏମାନଙ୍କୁ ଶୁଭଦୃଷ୍ଟିରେ ଦେଖିବା ତ ଦୂରର କଥା, କୁକୁରଙ୍କ ପରି ବ୍ୟବହାର କରୁଛନ୍ତି । ଆମ ଲୋକେ ହାଡ଼େହାଡ଼େ ତାହା ଅନୁଭବ କଲେ ମଧ୍ୟ ଅନ୍ୟ ଉପାୟ ନଥିବାରୁ ମୋଡ଼ିମାଡ଼ି ହୋଇ ପଡ଼ିରହି ସମସ୍ତ ନିର୍ଯାତନା ସହ୍ୟ କରୁଛନ୍ତି । ଆମ ଦେଶରେ ଯଦି ଶିଳ୍ପର ପ୍ରସାର ହୁଅନ୍ତା, ଯନ୍ତ୍ର ସଭ୍ୟତା ଯଦି ମୁଣ୍ଡ ଟେକନ୍ତା, ତେବେ ଆମ ଲୋକେ ଆମ ମା' କୋଳକୁ ଫେରିଆସି ସୁଖ ସୁବିଧାରେ ଦିନ କଟାଇ ପାରନ୍ତେ । ଏହିସବୁ କଥା ମୁଁ ବହୁ ଦିନରୁ ଭାବି ଭାବି ଗୋଟିଏ କିଛି କରିବା ପାଇଁ ଚିନ୍ତା କରୁଥିଲି । ବହୁତ ଦିନରୁ ମଧ୍ୟ ଭାରତ ସରକାରଙ୍କଠାରୁ ଗୋଟିଏ ସୂତାକଳ ଏବଂ ଗୋଟିଏ କାଚ ଫାକ୍ଟରୀ କରିବାର ଅନୁମତି ପାଇଥିଲି । କିନ୍ତୁ ନାନା ଅସୁବିଧା ବଶତଃ ତାହା କାର୍ଯ୍ୟକାରୀ ହୋଇପାରି ନଥିଲା । ସୁଖର କଥା, ବର୍ତ୍ତମାନ ସମସ୍ତ ସରଞ୍ଜାମ ନିକଟରେ ଆସି ପହଞ୍ଚିଛି ବୋଲି ବିଦେଶରୁ ଖବର ଆସିଛି । ସେ କାର୍ଯ୍ୟ ମଧ୍ୟ ଗତ ଦୁଇଦିନ ହେବ ସୁରୁ ହୋଇଗଲାଣି । ଯେତେ ଶୀଘ୍ର ସମ୍ଭବ ହୁଏ ତେତେ ଶୀଘ୍ର ଲୁଗାକଳ ଓ କାଚ ଫାକ୍ଟରୀ କାର୍ଯ୍ୟକାରୀ କରିବାକୁ ଯତ୍ନବାନ ହେବି ।

ଆଜି ଏହି ଆନନ୍ଦ ଦିନରେ ମୁଁ ଆପଣମାନଙ୍କର ଶୁଭାଶିଷ କାମନା କରେ । ଆଶୀର୍ବାଦ କରନ୍ତୁ, ଯେପରି ଭଗବାନ ମୋ ଚଳନ୍ତି ପଥରେ ପୁଷ୍ପବୃଷ୍ଟି କରନ୍ତି ।

ଏହା କହିସାରି ନନ୍ଦଲାଲବାବୁ ଆପଣା ଚେଆର ଅଧିକାର କଲେ । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ନନ୍ଦଲାଲବାବୁଙ୍କର ଏ ସାଧୁ ଉଦ୍ୟମ ଯୋଗୁ ଭୂରି ଭୂରି ପ୍ରଶଂସା କଲେ । ନନ୍ଦଲାଲବାବୁଙ୍କ ବୁକୁ ଆନନ୍ଦରେ ଫୁଲିଉଠିଲା । ଯା'ହେଉ ସେ ଏକା କାମ

ଭଳି କାମ କେତୋଟିରେ ହାତ ନାଡ ଦେଇଚନ୍ତି । ପରେ ପରେ ପୁଣି ଘରୋଇ ଆଳାପ ଜମିଉଠିଲା ।

ରଣଜିତ୍‌ବାବୁ ହସ୍‌ପିଟାଲର ପରିଚାଳକଙ୍କୁ ପଚାରିଲେ : ଅମରବାବୁଙ୍କ ଅବସ୍ଥା କ'ଣ ?

ହସ୍‌ପିଟାଲର ପରିଚାଳକ ଉତ୍ତର ଦେଲେ ଖୁବ ଆଶା କରାଯାଏ କାଲି ଦିନ ଆଠଟା ପର୍ଯ୍ୟନ୍ତ ତାଙ୍କର ଚେତନା ଶକ୍ତି ଫେରିଆସିବ । ସେ ଖୁବ୍ ସୁସ୍ଥ ଅଛନ୍ତି । ଭୟର ଆଉ କୌଣସି କାରଣ ନାହିଁ ।

ନନ୍ଦଲାଲବାବୁ ମୁହଁରେ ସରସତା ଫୁଟାଇ କହିଲେ ଭଗବାନ କରନ୍ତୁ, ଅମରବାବୁ ଶୀଘ୍ର ଆରୋଗ୍ୟ ହୋଇଉଠନ୍ତୁ ଏବଂ ଦେଶର ଅହିତକାରୀମାନଙ୍କୁ କବଳିତ କରି ଦେଶର ଶକ୍ତି ଫେରାଇ ଆଣନ୍ତୁ ।

ରଣଜିତ୍‌ବାବୁ କେବଳ ଟିକେ ମୁରୁକି ମୁରୁକି ହସୁଥିଲେ । ଅଳ୍ପ ସମୟ ପରେ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ଯେ ଯାହାର କର୍ମସ୍ଥଳୀକୁ ବାହୁଡ଼ିଗଲେ । ନନ୍ଦଲାଲବାବୁ ସ୍ୱସ୍ତିର ନିଃଶ୍ୱାସଟିଏ ପକାଇଲେ ।

ଆହ୍ୱାନକ୍ରମେ ତାଙ୍କର ମ୍ୟାନେଜର ଆସି ଉପସ୍ଥିତ ହେଲେ । ନନ୍ଦଲାଲବାବୁ ପଚାରିଲେ : ସେମାନେ ସମସ୍ତେ ଯାଇ ନିରାପଦରେ କଲିକତାଠାରେ ପହଞ୍ଚିଛନ୍ତି ତ ?

ମ୍ୟାନେଜର ଟିକିଏ ଦୁଃଖ ମିଶ୍ରିତ କଣ୍ଠରେ ଉତ୍ତର ଦେଲେ, ସମସ୍ତେ ନିରାପଦରେ ଯାଇ ପହଞ୍ଚିଛନ୍ତି ସତ, ମାତ୍ର ସେଇ ଶିଖ୍ ତରୁଣୀଟିର କୌଣସି ପତ୍ତା ମିଳୁ ନାହିଁ । ଏଇ ମୁହୂର୍ତ୍ତରେ ଟେଲିଗ୍ରାମ ଆସିଛି ।

ନନ୍ଦଲାଲବାବୁ ଘଡ଼ିଏ ସ୍ଥିର ରହିଲେ ଶିଖ୍ ତରୁଣୀର ପତ୍ତା ମିଳୁନାହିଁ ? କ'ଣ କହୁଛ ତୁମେ ? ତେବେ ଅଣଚାଳିଶ ଜଣ ହୋଇଯାଉଛନ୍ତି ଯେ !

ମ୍ୟାନେଜର କହିଲେ ହଁ, ଚାଳିଶ ଜଣରୁ ଜଣେ କମିଗଲା । କିପରି ଭାବରେ କେଉଁଠୁ ସଙ୍ଗଛଡ଼ା ହେଲା କେଜାଣି ! ହୁଏତ ପରେ ଯାଇ ପୁଣି ସାମିଲ ହୋଇପାରେ ।

*　　　　*

ଏଣେ ନନ୍ଦଲାଲବାବୁଙ୍କ ଘରେ ପ୍ରୀତିଭୋଜନ ଉତ୍ସବ ଲାଗିଥିବାବେଳେ ତେଣେ ଭୂତକୋଠିରେ ଏକ ଛୋଟ ଆଲୋଚନା ବୈଠକ ବସିଥିଲା । ଦଳପତି ଓରଫ କାଳନେମି ପହଞ୍ଚିଲାରୁ ସମସ୍ତେ ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ । କାଳନେମି ଅବନୀକୁ ପଚାରିଲା : ତାପରେ ଆଉ ଖବର କ'ଣ ? କାର୍ଯ୍ୟସୂଚୀ ଅନୁଯାୟୀ ସମସ୍ତ କାର୍ଯ୍ୟ ସମାଧାନ ହେଉଛି ତ ?

ଅବନୀ ନତସ୍ୱରରେ ଉତ୍ତର ଦେଲା ଆଜ୍ଞା ହଁ ।

କାଳନେମି କହିଲା ସେ କାର୍ଯ୍ୟସୂଚୀର ଆଉ ଟିକେ ଅଦଳବଦଳ କରିବାକୁ ପଡ଼ିବ ଅବନୀ ! ଯାହା ଶୁଣିଲି ଅମର ଗୁଇନ୍ଦାଟା କାଲି ଭିତରେ ହୁଏତ ଚେତା

ଫେରିପାଇବ । ତା'ହେଲେ ଆମର ସର୍ବନାଶ ସୁନିଶ୍ଚିତ । ତେଣୁ ତା' ପୂର୍ବରୁ ଆମକୁ ଆଜି ରାତି ଭିତରେ କଟକ ଛାଡ଼ି କଲିକତା ଚାଲିଯିବାକୁ ହେବ । ଆମେ ହଜାରିମଲକୁ କାଲି ରାତିରେ ମାଲ ଜିମା ଦେଇ ଟଙ୍କା କାଢ଼ି ଆଣିଲେ ନିଶ୍ଚିନ୍ତ । ତେଣିକି ଅମର ଗୁଇନ୍ଦା ଜିଉ ତ ହଜାରିମଲର ଜାହାଜ ବୁଡୁ, ଆମର ସେଥିରେ ଯାଏ ଆସେ କ'ଣ ! କିନ୍ତୁ ରଣଜିତ୍ ଆମ ସଙ୍ଗରେ ଯେପରି ବ୍ୟବହାର କରି କରି ଆସିଲାଣି, ଆମେ ତାକୁ ତା'ର ଉପଯୁକ୍ତ ପାରିଶ୍ରମିକ ନ ଦେଲେ ବିଚରା ମନ କ୍ଷୁଣ୍ଣ କରିବ ।

ଅବନୀ ସମସ୍ତ ଶୁଣିସାରି କହିଲା  ତେବେ ଆଜି କଟକ ଛାଡ଼ି ଚାଲିଯିବାର ହେଉଛି ?

କାଳନେମି ଉତ୍ତର ଦେଲା  ଆଉ ପଚାରିବାକୁ ଅଛିନା ! କିନ୍ତୁ ଯିବା ପୂର୍ବରୁ ଆମକୁ ଆଉ ଏକ କାର୍ଯ୍ୟ ସମ୍ପନ୍ନ କରି ଯିବାକୁ ହେବ । ଯେପରି ନନ୍ଦଲାଲର ନାମ ଏ ଦୁନିଆ ବକ୍ଷରୁ ଲୋପ ପାଇଯାଏ, ତା'ର ବ୍ୟବସ୍ଥା ଆମକୁ କରିବାକୁ ହେବ ।

ଅବନୀ ବିସ୍ମୟ ନେତ୍ରରେ ପଚାରିଲା  କାହିଁକି ?

କାଳନେମି ଉତ୍ତର ଦେଲା  ମୋର ଆଦେଶ । ହୁଏତ ତା' ମୂଳରେ କିଛି ଉଦ୍ଦେଶ୍ୟ ନିହିତ ଅଛି । ତୁମକୁ ତାହା ପାଳନ କରିବାକୁ ହେବ ।

ଅବନୀ ଆଉ କୌଣସି ପ୍ରତିବାଦ ନ କରି କହିଲା : ଆପଣ ଯାହା ସମୀଚୀନ ମନେକରନ୍ତି, କରନ୍ତୁ । ମୋର କାମ କରିବାର କଥା ମୁଁ କରିବି । ଆପଣଙ୍କର ଆଦେଶ ଲଙ୍ଘନ କରିବା ମୋର ଉଦ୍ଦେଶ୍ୟ ନୁହେଁ ।

କାଳନେମି ଅବନୀ ପିଠିରେ ହାତମାରି କହିଲା : ସାବାସ୍ ! ହଁ ଶୁଣ ଅବନୀ, ଆଉ ଏକ କଥା । ତୁମେ ଆଜି କଟକ ଛାଡ଼ି ଯାଅନାହିଁ । ପାର ତ ଏ ସ୍ଥାନ ଛାଡ଼ି ଅନ୍ୟତ୍ର ଚାରି ପାଞ୍ଚଜଣ ସହଚର ସହ ରୁହ । କାଲି ରାତି ବାରଟା ସୁଦ୍ଧା ରଣଜିତ୍ ଓ ତାର ସମ୍ପ୍ରଦାୟଙ୍କୁ ଜବତ କରି ଆମ ମାୟାମହଲକୁ ଘେନିଯିବ । ମୁଁ ମଧ୍ୟ ସମସ୍ତ ଅଡୁଆ ନିଷ୍ପତ୍ତି କରି ଦଣ୍ଡକ ପରେ ଆସି ସେଠାରେ ଉପସ୍ଥିତ ହେବି । ଏଣିକି ଦୁଇ ତିନି ବର୍ଷ ଦିହଛପା ଦେବାର କଥା । ସେଇଠି ଗୋଟାଏ ବଡ଼ ମଉଜ କରାଯିବ ଏବଂ ରଣଜିତ୍ ସହ ତା'ର ସମ୍ପ୍ରଦାୟଙ୍କୁ ଶିଖେଇ ଦିଆଯିବ ଯେ, ସିଂହକୁ ରଗେଇଲେ ଫଳ ବିଷମୟ ହୁଏ ବୋଲି । ତୁମ ହାତରେ ରହିଲା ଦୁଇଟି କାମ । ଗୋଟିଏ ହେଉଛି ନନ୍ଦଲାଲର ନାମ ଲୋପ, ଅପରଟି ହେଉଛି ରଣିଜିତ୍‌କୁ ସଦଳବଳେ କାବୁକରି ମାୟାମହଲରେ ଉପସ୍ଥାପନ ! ମନେ ରହିଲା ! ଖୁବ୍ ସାବଧାନତା ଆବଶ୍ୟକ ।

ଅବନୀ ଦାମ୍ଭିକ କଣ୍ଠରେ କହିଲା : ଏତେଦୂର ଆଗେଇଲେଣି ଯେତେବେଳେ, ଶେଷ ମୁହୂର୍ତ୍ତରେ ଟିକିଏ ସାବଧାନତା ସହକାରେ ତ ନିଶ୍ଚୟ କାର୍ଯ୍ୟ ହାସଲ କରିବାକୁ ପଡ଼ିବ । ମୋର ବିଶ୍ୱାସ, ମୁଁ ଆପଣଙ୍କ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟରେ ସଫଳତା ଅର୍ଜନ କରିପାରିବି । ଆପଣ ନିଶ୍ଚିନ୍ତ ମନରେ କଲିକତାଠାରେ ବାକି କାର୍ଯ୍ୟତକ ସମ୍ପନ୍ନ କରାନ୍ତୁ ।

କାଳନେମି ଅବନୀ ପିଠି ଥାପୁଡ଼େଇ କହିଲା : ଅଶେଷ ଧନ୍ୟବାଦ ଅବନୀ ! ବୁଦ୍ଧି ଏବଂ କୌଶଳ ବଳରେ ସବୁ କରିପାରେ ମଣିଷ । ଦୁନିଆଟା ଆଜିକାଲି ବଦଳି ଯାଇଛି । ଛକାପଞ୍ଝାର ଯୁଗ ଏଇଟା । ନଗରେ ନଗରେ କୌଶଳର ରାଜୁତି । ଯେ ଯେତେ ଷଡ଼ଯନ୍ତ୍ର କରି ଆଗେଇ ପାରିଲା ତା'ର ହେଲା ଜୟ । ଯେ ଭଗବାନ ଜପ କରି ଧର୍ମର ନାମ ଧରି ପଡ଼ିରହିଲା, ସେ ପଡ଼ି ରହିଲା ପଛରେ । ତା'ର ସର୍ବନାଶ ଛଡ଼ା ଆଉ କ'ଣ ହୋଇପାରେ ଅବନୀ ! ମୁଁ ଆଜି ବିଶେଷ ଖୁସି । ବହୁଦିନର ଏହି କଳ୍ପନା ମୋର ଫଳବତୀ ହୋଇଛି । ଦିନ ଦୁଇଟା ସତର୍କତା ସହକାରେ କଟାଇ ଦିଅ । ତା'ପରେ... ହାଃ-ହାଃ-ହାଃ- ।

ଅବନୀ ବିସ୍ଫାରିତ ନୟନରେ ଅନାଇଥିଲା କାଳନେମି ଆଡ଼େ ।

କାଳନେମି ହସ ଥମେଇ କହିଲା ଆମ ପାଖରେ ବୁଦ୍ଧିର ବାହାଦୂରୀ ! କେଡ଼େ ମୂର୍ଖ ସେମାନେ । ମଣିଷ ଜୀବନର ମମତା ତେଜିଲେ ଏହିପରି ହୁଏ । ରଣଜିତ୍...ତୋର ଶେଷ ସମୟ ଉପସ୍ଥିତ । ମରିବାକୁ ପ୍ରସ୍ତୁତ ହୋଇ ରହ । କାଳନେମିର କାଳ ନଜରରୁ କେହି ଆଜିଯାକେ ଉଧୁରି ପାରିନାହିଁ । ତୁ ତ କାଲିର ମଣିଷଟାଏ । ଅବନୀ ! ପ୍ରସ୍ତୁତ ହୁଅ । ଚଣ୍ଡୀ ଚାମଣ୍ଡାଙ୍କୁ ପ୍ରସ୍ତୁତ କରାଅ । ମଝିରେ ମାତ୍ର ଦୁଇଟା ଦିନ । ରକ୍ତର ଉଛୁଳା ସୁଅ ଆଖି କେଉଁ ଦିନରୁ ଦେଖି ନାହିଁ । ରକ୍ତ...ରକ୍ତ...ରକ୍ତ...ହାଃ...ହାଃ...ହାଃ... ।

କାଳନେମି ସତେ ଯେପରି ପାଗଳ ହୋଇଯାଇଛି ।

## ସଇତାନ ହାତ ମୁଠାରେ?

ଡି.ଏସ୍.ପି. ନନ୍ଦଲାଲବାବୁଙ୍କ ପ୍ରୀତିଭୋଜନରୁ ଫେରି ସିଧାସଳଖ ଯାଇ ଥାନାରେ ପହଞ୍ଚିଲେ । ପୋଲିସ ଇନିସ୍ପେକ୍ଟର ପ୍ରଫୁଲ୍ଲବାବୁ ତାଙ୍କରି ପ୍ରତୀକ୍ଷାରେ ବସିଥିଲେ । ସେ ଡି.ଏସ.ପି.ଙ୍କୁ ଦେଖିବା ମାତ୍ରେ ଆନନ୍ଦାତିଶଯ୍ୟରେ କହି ପକାଇଲେ : ସଇତାନର ସନ୍ଧାନ ମିଳିଛି ଆଜ୍ଞା । ନୂତନ ଗୁଇନ୍ଦା ଅଜିତ୍‌ବାବୁ ସଇତାନର ସମସ୍ତ ତଥ୍ୟ ସଂଗ୍ରହ କରି ରଖିଛନ୍ତି । କେବଳ ଆପଣ ଆଦେଶ ଦେଲେ ଆମେ ତାକୁ ଏଠାକୁ ଧରି ଆଣିବୁ ।

ଡି.ଏସ୍.ପି. ହଠାତ୍ ଏପରି ଶୁଭସମ୍ବାଦ ପାଇବେ ବୋଲି ଆଶା କରି ନ ଥିଲେ । ସେ ପ୍ରଫୁଲ୍ଲବାବୁଙ୍କୁ ଉତ୍କଣ୍ଠିତ ଚିତ୍ତରେ ପଚାରିଲେ : ସତ କହୁଛ ପ୍ରଫୁଲ୍ଲବାବୁ! ସଇତାନର ସନ୍ଧାନ ମିଳିଛି? କିଏ ସେହି ସଇତାନ? ବୋଧହୁଏ ଆମରିମାନଙ୍କର ନିତି ଦେଖା ମୁହଁର କେହି ଜଣେ ହୋଇଥିବେ!

ପ୍ରଫୁଲ୍ଲବାବୁ କହିଲେ  ଆପଣଙ୍କ ଅନୁମାନ ଅକ୍ଷରେ ଅକ୍ଷରେ ସତ୍ୟ । ଏସବୁ ଘଟଣାର ନାୟକ ହେଉଛନ୍ତି ରଣଜିତ୍‌ବାବୁ !

ଡି.ଏସ୍.ପି. ଚମକି ପଡ଼ିଲେ  ଏଁ... ରଣଜିତ୍‌ବାବୁ ! ଆଚ୍ଛା, ପ୍ରମାଣ?

ପ୍ରଫୁଲ୍ଲବାବୁ ଖଣ୍ଡିଏ କାଗଜ ଡି.ଏସ.ପି.ଙ୍କ ହାତକୁ ବଢ଼ାଇ ଦେଉଦେଉ କହିଲେ  ଏଇ ଦେଖନ୍ତୁ ତା'ର ପ୍ରମାଣ । ଅମରବାବୁଙ୍କ ଡାଇରିକୁ ଅନୁସରଣ କରି ଅଜିତ୍‌ବାବୁ ସମସ୍ତ ତଥ୍ୟ ସଂଗ୍ରହ କରିଛନ୍ତି ।

ଡି.ଏସ୍.ପି. ପଢ଼ିଲେ ।

## ଅମରବାବୁଙ୍କ ଡାଏରି

ଯେଉଁଦିନ ଇନ୍ଦ୍ରଭୁବନରୁ ନନ୍ଦଲାଲବାବୁଙ୍କୁ ବେହୋସ କରାଯାଇ, ତାଙ୍କ ଦାମିକା ଘଡ଼ି ଅଦୃଶ୍ୟ ହେଲା ସେଦିନ ତା' ମୂଳରେ ଥିଲା ନୀହାରବାଳାଙ୍କ ହାତ । ସେ ତାଙ୍କର ପେସଓ୍ୱାରୀ ବନ୍ଧୁ ଜଣଙ୍କ ସାହାଯ୍ୟରେ ଘଡ଼ି ଅପସାରଣ କରାଇଥିଲେ । ସର୍ପ ଦଂଶନର ଅଭିନୟ ମାତ୍ର କରାଯାଇଥିଲା । ସେହି ପେସଓ୍ୱାରୀ ବନ୍ଧୁ ଜଣଙ୍କ ନୀହାରାବାଳାଙ୍କର ନିଶ୍ଚୟ ଜଣେ ଛଦ୍ମବେଶୀ ବନ୍ଧୁ ଥିଲେ, ତେବେ ସେଦିନ ମୁଁ ସେ ରହସ୍ୟ ଭେଦି ପାରି ନଥିଲି । ପରେ ଯେଉଁଦିନ ନୀହାରବାଳା ହରଣଚାଳ ହେଲେ, ସେଦିନ ତାଙ୍କ ଭ୍ୟାନିଟି ବ୍ୟାଗରୁ ରଣଜିତ୍‌ବାବୁଙ୍କର ଛବି ଖଣ୍ଡେ ପାଇ ବୁଝିଲି ଯେ, ରଣଜିତ୍‌ବାବୁ ନୀହାରବାଳାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ । ତେଣୁ ତାଙ୍କରି ଦ୍ୱାରା ଯେ ନୀହାରବାଳା ଏ ଅଘଟଣ ଘଟାଇଛନ୍ତି, ସେଦିନ ମୋ ମନରେ କେତେକ ମାତ୍ରାରେ ସନ୍ଦେହ ଜନ୍ମିଥିଲା । ଆହୁରି ମଧ୍ୟ ନୀହାରବାଳାଙ୍କ ଭ୍ୟାନିଟି ବ୍ୟାଗରୁ 'ରକ୍ତଦାୟୀ ସଂଘ'ର ଗୋଟିଏ ବ୍ୟାଚ ମିଳିଥିଲା । ସେଇ ରକ୍ତଦାୟୀ ସଂଘର ବିସ୍ତୃତ ବିବରଣୀ ପାଇ ପାରିଲେ, ନିଃସନ୍ଦେହରେ ରଣଜିତ୍‌ବାବୁଙ୍କୁ ଦୋଷୀ କରିହୁଅନ୍ତା । ମାତ୍ର ହଠାତ୍ ନୀହାରବାଳାଙ୍କ ହରଣଚାଳ ମୋ ମନରେ ଆଉ ଏକ ସନ୍ଦେହର ଛାୟାପାତ କରାଇଛି । ରଣଜିତ୍‌ବାବୁ ଯଦି ସହରର ଏଇ ସବୁ ଦୁର୍ଘଟଣା ସହିତ ଜଡ଼ିତ ଥାଆନ୍ତେ ତେବେ ନୀହାରବାଳା ତ ତାଙ୍କର ଅନ୍ତରଙ୍ଗ, ସେ ତାଙ୍କୁ ହରଣଚାଳ କରିଥାଆନ୍ତେ କାହିଁକି ?

ପୁଣି ରଣଜିତ୍‌ବାବୁଙ୍କ ପ୍ରତି ସନ୍ଦେହ ଜାଗେ ଯେ, ଯେଉଁଦିନ ନୀହାରବାଳାଙ୍କୁ ହରଣଚାଳ କରାଯାଇଥିଲା, ତହିଁଆରଦିନ ରାତିରେ ମୁଁ ସେଇ ନୀହାରବାଳାଙ୍କ ଶୟନ କକ୍ଷରେ ଆତ୍ମଗୋପନ କରି ରହିଥିଲି । ମୋର ବିଶ୍ୱାସ ଥିଲା, ଯେଉଁ ତଥ୍ୟପୂର୍ଣ୍ଣ ଭ୍ୟାନିଟି ବ୍ୟାଗ୍‌ଟି ସେମାନେ ଭୁଲ ବଶତଃ ଛାଡ଼ି ଚାଲିଯାଇଛନ୍ତି, ଯଦି ଚାଲାଖି କରି ନୀହାରବାଳାଙ୍କୁ ହରଣଚାଳ କରାଯାଇଥାଏ, ତେବେ ସେମାନେ ନିଶ୍ଚୟ ସେ ବ୍ୟାଗଟିକୁ ଉଦ୍ଧାର କରିବା ପାଇଁ ଆସିବେ । ମୋ ଅନୁମାନ ସତ୍ୟ ହେଲା । ମାତ୍ର ମୋରି ଭୁଲ ବଶତଃ ସେଦିନ ମୁଁ ଶତ୍ରୁକୁ କବଳିତ କରିପାରିଲି ନାହିଁ । ସଙ୍ଗେସଙ୍ଗେ ବାହାରେ ପିସ୍ତଲର ଆବାଜ ଶୁଣି ଅବସରପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ ପୁଳିନବାବୁଙ୍କ ଘରେ ଦେଖିଲି ତାଙ୍କୁ ହତ୍ୟା କରାଯାଇ ତାଙ୍କ ଝିଅ ଆରତୀ ଦେବୀଙ୍କୁ ହରଣଚାଳ କରାଯାଇଛି । ସେଇ ସଙ୍ଗେସଙ୍ଗେ ଯାଇ ରଣଜିତ୍‌ବାବୁଙ୍କୁ ଦେଖିଲି ଯେ ସେ ସେପର୍ଯ୍ୟନ୍ତ ଶୋଇ ନାହାନ୍ତି । ପଚାରିବାରୁ କହିଲେ ଜଣେ ବନ୍ଧୁଙ୍କ ଘରୁ ନିମନ୍ତ୍ରଣରୁ ଫେରୁଛି । ପୁଣି ତା'ପରେ...

ଆଉ ତେଣିକି ଲେଖା ନଥିଲା । ସେତକ ପଢ଼ିସାରି ପ୍ରଫୁଲ୍ଲବାବୁଙ୍କ ମୁହଁକୁ ଅନାଇଲେ । ପ୍ରଫୁଲ୍ଲବାବୁ ଅଜିତ୍‌ବାବୁଙ୍କ ଲିଖିତ ଆଉ ଖଣ୍ଡେ ରିପୋର୍ଟ ଡି.ଏସ୍.ପି.ଙ୍କ ହାତକୁ ବଢ଼ାଇ ଦେଲେ ।

## ଅଜିତ୍‌ବାବୁଙ୍କ ରିପୋର୍ଟ

...ତା'ପରେ ଡିପାର୍ଟମେଣ୍ଟ ମୋତେ ଏ ତଦନ୍ତରେ ନିଯୁକ୍ତ କରିବା ପୂର୍ବରୁ ମୁଁ ନିଜ ଇଚ୍ଛାରେ ଏ ଘଟଣା ପ୍ରତି ଟିକିଏ ଦୃଷ୍ଟି ରଖିଥିଲି । ଯେଉଁଦିନ ଗୋପାଳପୁର ବନ୍ଦରରେ ବିସ୍ଫୋରଣ ଫଳରେ ଜାହାଜ ବୁଡ଼ି ଯାଇଥିଲା, ମୁଁ ଖବର ପାଇ ସଙ୍ଗେ ସଙ୍ଗେ ସେଠାକୁ ଯାଇଥିଲି । ସମସ୍ତଙ୍କ ଅଲକ୍ଷ୍ୟରେ ତଦନ୍ତ କରି ଦେଖିଥିଲି ଯେ, ରଣଜିତ୍‌ବାବୁଙ୍କ ଲୋକେ ଏହି ବିସ୍ଫୋରଣ ଘଟାଇଛନ୍ତି । ମୋତେ ଏହି ତଦନ୍ତ କାର୍ଯ୍ୟରେ ନିଯୁକ୍ତ କରାହେବା ସଙ୍ଗେସଙ୍ଗେ ମୁଁ ଅମରବାବୁଙ୍କ ଡାଇରି ଖୋଲେଇ ଦେଖିଲି । ତାଙ୍କ ଅନୁମାନ ଓ ମୋ ଅନୁମାନ ବହୁ ପରିମାଣରେ ମିଳି ଯାଉଥିଲା । କେବଳ ସନ୍ଦେହ ଥିଲା, ସେହି 'ରକ୍ତଦାୟୀ ସଂଘ'ଟି କିଏ ଓ ତା'ର ପରିଚାଳକ କେଉଁମାନେ ? ଗତକାଲି ରାତିରେ ମୁଁ ତାହା ଆବିଷ୍କାର କରିଛି । 'ରକ୍ତଦାୟୀ ସଂଘ' ରଣଜିତ୍‌ବାବୁଙ୍କ ବନ୍ୟାବିପନ୍ନ ସମିତି । ରକ୍ତଦାୟୀ ସଂଘର ପରିଚାଳକ ନିଜେ ରଣଜିତ୍‌ବାବୁ । ତେଣୁ ନିଃସନ୍ଦେହ ଯେ ସହରର ଏ ସମସ୍ତ ଦୁର୍ଘଟଣାର ମୂଳରେ ଅଛନ୍ତି ରଣଜିତ୍‌ବାବୁ । ତାଙ୍କୁ ସଦଳବଳେ ଗ୍ରେପ୍ତାର କରିପାରିଲେ ସବୁ ଦୁର୍ଘଟଣା ନିଆଁରେ ପାଣି ପକାଇଲା ପରି ରହିଯିବ ।

ଡି.ଏସ୍.ପି. ଯୋଡ଼ିକଯାକ ରିପୋର୍ଟ ପଢ଼ିସାରି କ୍ଷଣକାଳ ଚିନ୍ତା କଲେ । ରଣଜିତ୍‌ବାବୁଙ୍କ ପକ୍ଷରେ ଏହା କ'ଣ ସମ୍ଭବ ? ତାଙ୍କର ମନେପଡ଼ିଲା ଡାକ୍ତରଙ୍କୁ ଗୁଳିଚାଳନା କଥା । ଠିକ୍ ଗୁଳିକାଣ୍ଡର ପରେ ପରେ ରଣଜିତ୍‌ବାବୁ ଆସି ତାଙ୍କ ପାଖରେ ପହଞ୍ଚିଲେ । ତାଙ୍କ ନାକରୁ ଖରନିଶ୍ୱାସ ବାହାରୁ ଥିଲା । ଡି.ଏସ୍.ପି. ଭାବିଲେ ହଁ ଠିକ୍ କଥା ! ରଣଜିତ୍ ଗୁଳି ଚଳାଇ ସଙ୍ଗେସଙ୍ଗେ ମୋ ପାଖକୁ ଚାଲିଆସିଛି । ତେଣୁ ପ୍ରଫୁଲ୍ଲବାବୁ ପୋଲିସ ଦଉଡ଼ାଇ ମଧ୍ୟ ଗୁଳି ଚାଳକର ସନ୍ଧାନ ପାଇନାହାନ୍ତି ।

ସେ ଆହୁରି ଭାବିଲେ, ସତେ ଏ ଦୁନିଆରେ ମଣିଷ କେଡ଼େ ଭଦ୍ର ଠକ ହୋଇପାରେ ! ମିଥ୍ୟା ଛଳନା କରି ମଣିଷ କି ଅପକର୍ମମାନ କରି ନ ଯାଉଛି । ଯା' ହେଉ ରଣଜିତ୍‌କୁ ସଦଳବଳେ କାବୁ କରିବାକୁ ପଡ଼ିବ ।

ସେ ପ୍ରଫୁଲ୍ଲବାବୁଙ୍କ ମୁହଁକୁ ଅନାଇ କହିଲେ : ଏତେ ଦିନ ପରେ ଆମ ଆଖି ଆଗରୁ କଳାମେଘ ଘୁଞ୍ଚିଗଲା । ଆପଣ ରଣଜିତ୍‌କୁ ଆରେଷ୍ଟ କରିବାର ସମସ୍ତ ଆୟୋଜନ କରନ୍ତୁ । ଠିକ୍ ରାତି ବାରଟା ଗୋଟାଏ ବେଳକୁ ତା' ଆଡ୍‌ଡା ଘେରାଉ କଲେ ଭଲ ହୁଅନ୍ତା, କାରଣ ସେତେବେଳକୁ ବୋଧହୁଏ ସମସ୍ତେ ଏକତ୍ରିତ ହୋଇଥାଆନ୍ତେ ।

ପ୍ରଫୁଲ୍ଲବାବୁ କହିଲେ ମୁଁ ମଧ୍ୟ ସେଇଆ ଠିକ୍ କରିଛି । ଅଜିତ୍ ବାବୁଙ୍କୁ କହିଛି ସେମାନଙ୍କ ଉପରେ କଡ଼ା ନଜର ରଖିବା ପାଇଁ । ଆପଣ ଏଥର ଯାଆନ୍ତୁ ବିଶ୍ରାମ କରିବେ । ମୁଁ ତାର ସମସ୍ତ ସୁବନ୍ଦୋବସ୍ତ କରାଇ ଦେଉଛି ।

ସେଇଦିନ ରାତି ବାରଟା ।

ରଣଜିତ୍‌ବାବୁ ନିଜ କକ୍ଷରେ ଶୟନ କରିଛନ୍ତି । ଗୃହର ଅନ୍ୟାନ୍ୟ କର୍ମଚାରୀମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ବିଭିନ୍ନ କାର୍ଯ୍ୟରେ ବିଭିନ୍ନ ସ୍ଥାନମାନଙ୍କୁ ଚାଲିଯାଇଛନ୍ତି । ହଠାତ୍ ଘରେ ସତର୍କ ଘଣ୍ଟା ବାଜିଉଠିଲା । ରଣଜିତ୍‌ବାବୁଙ୍କ ନିଦ ଚାଉଁକିନା ଭାଙ୍ଗିଗଲା । ସେ ଉଠିବସିଲେ । ଏହି ସମୟରେ ମୁଣ୍ଡରେ ଏକ ଶକ୍ତ ଆଘାତ ପାଇ ବସିପଡ଼ିଲେ । ଦୁଇ ଜଣ ଛଦ୍ମବେଶୀ ତାଙ୍କୁ ବିଛଣା ଉପରୁ ଉଠାଇ ନେଇଗଲେ । କ୍ରମଶଃ ତାଙ୍କର ଚେତନାଶକ୍ତି ଲିଭି ଆସୁଥିଲା । ସେ ଜାଣିପାରିଲେ ତାଙ୍କୁ ବାହାରକୁ ଅଣାଯାଇ କୌଣସି ଏକ ମଟରରେ ବସାଇ ଦିଆଗଲା । ସଙ୍ଗେସଙ୍ଗେ ମଟରଟି ଦ୍ରୁତଗତିରେ ଛୁଟି ଚାଲିଲା । ତେଣିକି ଆଉ ସେ କିଛି ବୁଝିପାରିଲେ ନାହିଁ । ତାଙ୍କର ଚେତନାଶକ୍ତି ଏକାଥରକେ ଲୋପ ପାଇଗଲା ।

## ପୁଣି ଆତଙ୍କର ଘନଘଟା

ତହିଁ ଆରଦିନ ଡି.ଏସ୍.ପି. ବିଛଣାରୁ ନ ଉଠୁଣୁ ପ୍ରଫୁଲ୍ଲବାବୁ ଯାଇ ତାଙ୍କ ବାସଭବନରେ ଉପସ୍ଥିତ ହେଲେ । ଏ ଖବର ପାଇ ଡି.ଏସ.ପି. ସେହି ରାତ୍ରି ପୋଷାକରେ ପ୍ରଫୁଲ୍ଲବାବୁଙ୍କୁ ବୈଠକଖାନାରେ ଦେଖାଦେଲେ । ତାଙ୍କ ମୁହଁରୁ ହତାଶାର ଭାବ ଫୁଟି ପଡୁଥିଲା । ସେ ଡି.ଏସ.ପି.ଙ୍କୁ ଅଭିବାଦନ କରିବାକୁ ଭୁଲିଯାଇ ଉଦ୍‌ବେଗ କଣ୍ଠରେ ଆରମ୍ଭ କଲେ : ସବୁ ପଣ୍ଡ ହୋଇଗଲା ଆଜ୍ଞା । ରଣଜିତ୍‌ବାବୁ ସଦଳବଳେ ଆମ ଆଖିରେ ଧୂଳି ନିକ୍ଷେପ କରି ପଳାଇ ଯାଇଛନ୍ତି ।

ଡି.ଏସ୍.ପି.ଙ୍କ ଆଖି କପାଳକୁ ଉଠିଗଲା  ଆପଣ କ'ଣ କହୁଛନ୍ତି ।

ପ୍ରଫୁଲ୍ଲବାବୁ ଧୈର୍ଯ୍ୟ ହରାଇଥିଲେ । କହିଲେ : ସେ କଥା ଆଉ କୁହନ୍ତୁ ନାହିଁ ଆଜ୍ଞା ! ଆମେ ସେଠାରେ ପହଞ୍ଚିବାର ଅଧଘଣ୍ଟା ପୂର୍ବରୁ ସେମାନେ ଦୁଇଖଣ୍ଡ ମଟରଗାଡ଼ିରେ ବାହାରି ଯାଇଛନ୍ତି । ଗୋଟାଏ କନେଷ୍ଟବଲ ଦେଖିଛି ରଣଜିତ୍‌ବାବୁଙ୍କ ଘରଠାରୁ ଠିକ୍ ବାରଟା ସମୟରେ ଦୁଇଖଣ୍ଡ ମଟରଗାଡ଼ି ପବନ ବେଗରେ ଛୁଟି ଚାଲିଯାଉଛି ।

ଡି.ଏସ୍.ପି. କେବଳ ପ୍ରପୁଲ୍ଲବାବୁଙ୍କ ମୁହଁକୁ ଅନାଇଥିଲେ । ବିରକ୍ତିମିଶା କଣ୍ଠରେ କହିଲେ: ମୁଁ ଜାଣେ, ଆପଣଙ୍କର ସବୁ କାମ ସେହିପରି । ଶତ୍ରୁକୁ ହାତରେ ପାଇ ମଧ୍ୟ ଯଦି ଆପଣ ଧରି ନ ପାରନ୍ତି, ତେବେ ଆଉ ଆପଣ କ'ଣ କରିବେ ? ଅଜିତ୍‌ବାବୁ କେଉଁଠି ଅଛନ୍ତି ?

ପ୍ରଫୁଲ୍ଲବାବୁ କହିଲେ  ତାଙ୍କର କୌଣସି ପତ୍ତା ମିଳୁ ନାହିଁ । ମୁଁ ବହୁତ ଖୋଜିଲିଣି, ମାତ୍ର କେଉଁଠୁ ହେଲେ ତାଙ୍କର ସନ୍ଧାନ ପାଉନାହିଁ ।

ଡି.ଏସ.ପି. କ୍ଷଣକାଳ ଚିନ୍ତାକରି କହିଲେ  ତେବେ କ'ଣ ସେ ମଧ୍ୟ ଅମରବାବୁଙ୍କ ଭଳି ଆତତାୟୀମାନଙ୍କ ହାତରେ ଶିକାର ହୋଇଛନ୍ତି ?

ଠିକ୍ ସେତିକିବେଳେ ଖବରକାଗଜ ହକର୍ ସେଦିନର ସମ୍ବାଦପତ୍ର ଖଣ୍ଡେ ଦେଇଗଲା । ଡି.ଏସ.ପି. ପ୍ରଥମ ପୃଷ୍ଠାରେ ହେଡିଂ ଦେଖି ଚିତ୍କାର କରି ଉଠିଲେ । ସମ୍ବାଦପତ୍ରର ସମ୍ବାଦ ନିମ୍ନରେ ଉଦ୍ଧୃତ କରାଗଲା ।

## ମହାନଦୀରେ ନୌକାଡୁବି

କଟକର ଧନକୁବେର ନନ୍ଦଲାଲବାବୁ ଚାପଡ଼ଙ୍ଗାରେ ପାର ହେଇ ସେପାଖକୁ ଯାଉଥିବା ସମୟରେ, ପ୍ରଚଣ୍ଡ ବିସ୍ଫୋରଣ ଫଳରେ ନୌକାସହ ଜଳମଗ୍ନ । କେବଳ ମଟରଟିର ଭଗ୍ନାବଶେଷ ଛଡ଼ା ନନ୍ଦଲାଲବାବୁଙ୍କର କୌଣସି ସନ୍ଧା ମିଳୁ ନାହିଁ ।

(ନିଜ ସମ୍ବାଦଦାତାଙ୍କ ଠାରୁ)

ଗତକାଲି ପ୍ରାୟ ରାତି ଦଶଟାବେଳେ କଟକର ସ୍ୱନାମଧନ୍ୟ ଧନକୁବେର ନନ୍ଦଲାଲବାବୁ ତାଙ୍କ ମଟର ସହ ଚାପଡ଼ଙ୍ଗା ସାହାଯ୍ୟରେ ମହାନଦୀ ପାର ହେଉଥିଲେ । ଠିକ ମଝିନଈରେ ଏପରି ଏକ ପ୍ରଚଣ୍ଡ ବିସ୍ଫୋରଣ ହେଲା ଯେ, ଯା' ଫଳରେ ନୌକା, ଅଥବା ନୌକାର ମାଝି କିମ୍ବା ନନ୍ଦଲାଲବାବୁ କାହାରି ଚିହ୍ନବର୍ଣ୍ଣ ପର୍ଯ୍ୟନ୍ତ ମିଳୁ ନାହିଁ । ବହୁ ଖୋଜ ଖବର ଓ ଅନୁସନ୍ଧାନ ଫଳରେ ନନ୍ଦଲାଲବାବୁଙ୍କ ମଟରର ଭଗ୍ନାବଶେଷ ମାତ୍ର ଉଦ୍ଧାର କରାଯାଇଛି ।

ନନ୍ଦଲାଲବାବୁ ଦେଶର ଜଣେ ହିତାକାଂକ୍ଷୀ ଥିଲେ । ସେ ଦେଶହିତକର ବହୁ ଛୋଟବଡ଼ କାର୍ଯ୍ୟମାନଙ୍କରେ ନିଜକୁ ଉତ୍ସର୍ଗ କରିଥିଲେ । ଆମ ପ୍ରଦେଶର ନାମ ଟେକ ରଖିବା ପାଇଁ ନୃତ୍ୟ ଗୀତ ଶିଖିବା ନିମିତ୍ତ ସେ ବହୁ ଛାତ୍ରୀ ବିଦେଶକୁ ପଠାଇ ଅଛନ୍ତି, ତା'ଛଡ଼ା ଲୁଗାକଳ ଓ କାଚ କଳ ଆଦିର ନିର୍ମାଣ ପାଇଁ ସମସ୍ତ ଆୟୋଜନ ସେ କରିଥିଲେ । ନନ୍ଦଲାଲବାବୁଙ୍କର ହଠାତ୍ ଏପରି ଆକସ୍ମିକ ବିୟୋଗ ଫଳରେ ଦେଶ ବହୁ ଆଶାରୁ ବଞ୍ଚିତ ହେଲା । ଆମେ ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ସମବେଦନା ଜ୍ଞାପନ କରୁଛୁଁ ଏବଂ ତାଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି ନିମିତ୍ତ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛୁ ।

ପ୍ରଫୁଲ୍ଲବାବୁଙ୍କ ମୁହଁ ମେଘଢ଼ଙ୍କା ସୂର୍ଯ୍ୟ ପରି ପୁଣି ମଳିନ ହୋଇପଡ଼ିଲା । ସେ କାତର କଣ୍ଠରେ କହିଲେ ପୁଣି ଆଉ ଏକ ଶୋଚନୀୟ ଦୁର୍ଘଟଣା ।

ଡି.ଏସ୍.ପି. କହିଲେ : ଆପଣ ଏ ଦୁର୍ଘଟଣାର ସମ୍ବାଦ କାଲି ରାତିରେ ପାଇ ନାହାନ୍ତି ?

ନା ।

ବୋଧହୁଏ କାଲି ଆପଣ ଆଉ ଥାନାକୁ ଫେରିନାହାନ୍ତି ?

ଥାନାକୁ ଲେଉଟି ଯିବାର ଆଉ ସରାଗ ନ ଥିଲା ଆଜ୍ଞା ! ରଣଜିତ୍‌ବାବୁଙ୍କୁ ନ ପାଇ ଶୋଚନୀୟ ପରାଜୟ ପରେ ମନ ମୋର ଭାଙ୍ଗି ପଡ଼ିଥିଲା । ସିଧା ସଳଖେ ଘରକୁ ଲେଉଟି ଯାଇଥିଲି ।

ଡି.ଏସ୍.ପି. ସମ୍ବାଦପତ୍ରର ଅନ୍ୟ ଏକ ପୃଷ୍ଠାରେ ଆଖି ଅଟକାଇ କହିଲେ ଭଲ କରିଛନ୍ତି । ଏଥର ସମ୍ପାଦକୀୟ ଟିପ୍ପଣୀ ଶୁଣନ୍ତୁ ।

...ଆମେ ବଡ଼ ଦୁଃଖର ସହିତ ଜଣାଇବାକୁ ବାଧ୍ୟ ହେଉଛୁ ଯେ, ଗତ କେତେଦିନଧରି କଟକ ସହର ଭିତରେ କେତେ ଯେ ଅକଥନୀୟ ଦୁର୍ଘଟଣା ଘଟିଗଲାଣି ତା'ର ସୀମା ନାହିଁ । ଧନକ୍ଷୟ ଓ ଜନକ୍ଷୟର ପରିମାଣ ଦିନୁଦିନ ବଢ଼ିଚାଲିଛି । ଦେଶବାସୀଙ୍କ ଆଗରେ ତା'ର ଏକ ଟିପ୍ପଣୀ ଆମେ ତଳେ ଦେଉଛୁ ।

୧। ମଦନଲାଲଙ୍କ ଗିନି ହାଉସରୁ ତିନିଲକ୍ଷ ଟଙ୍କାର ଜହରତ୍ ଉଡ଼ିଯାଇଛି ।

୨। ମହମ୍ମଦ ରସୁଲାଙ୍କୁ ହତ୍ୟା କରାଯାଇ ତାଙ୍କ ଘରୁ ନଗଦ ଟଙ୍କା ଓ ଗହଣା ସମେତ ଏକଲକ୍ଷ ଟଙ୍କାର ସମ୍ପତ୍ତି ଲୁଟ କରାଯାଇଛି ।

୩। ବିନୋଦ ବାବୁଙ୍କର ସୁନ୍ଦରୀ କନ୍ୟା ବୈଶାଳୀକୁ ହରଣଚାଳ କରାଯାଇଛି ।

୪। ଶିବ ଶଙ୍କର ଜୁୟେଲାରୀ କମ୍ପାନୀରୁ ତିନିଲକ୍ଷ ଟଙ୍କାର ଜୁୟେଲାରୀ ଲୁଟ କରାଯାଇଛି ।

୫। ଗାର୍ଲସ କଲେଜ କୋଠରିରୁ ଦୁଇଜଣ ଯୁବତୀଙ୍କୁ ଅପହରଣ କରାଯାଇଛି ।

୬। ଇନ୍ଦ୍ରଭୁବନର ବାର୍ଷିକୋତ୍ସବ ଦିନ ନନ୍ଦଲାଲବାବୁଙ୍କୁ ଅଚେତନ କରାଯାଇ ତାଙ୍କ ବହୁ ମୂଲ୍ୟ ହାତଘଡ଼ିକୁ କାଢ଼ି ନିଆହୋଇଛି ।

୭। ସୁଗାୟିକା ନୀହାରବାଳାଙ୍କୁ ହରଣଚାଳ କରାଯାଇଛି ।

୮। ଅବସରପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ ପୁଳିନବାବୁଙ୍କୁ ହତ୍ୟା କରାଯାଇ ତାଙ୍କର ଏକମାତ୍ର କନ୍ୟାକୁ ହରଣଚାଳ କରାହୋଇଛି ।

୯। ଗୁଇନ୍ଦା ଅମରବାବୁଙ୍କୁ ନୃଶଂସ ଭାବରେ ହତ୍ୟା କରିବା ଚେଷ୍ଟା କରାଯାଇଛି ।

୧୦। ହସ୍‌ପିଟାଲରେ ଡାକ୍ତରବାବୁଙ୍କୁ ଗୁଳି କରାଯାଇଛି । ଏ ସମସ୍ତ ଅଘଟଣ ପରେ କାଲି ପୁଣି ନନ୍ଦଲାଲବାବୁଙ୍କୁ ନଦୀଗର୍ଭରେ ସଲିଳ ସମାଧି ଦିଆଯାଇଛି ।

ପାଠକମାନଙ୍କର ସ୍ମରଣ ଥିବ ଯେ, ଅଳ୍ପ ଦିନ ପୂର୍ବେ ଗୋପାଳପୁର ବନ୍ଦରରେ ମଧ୍ୟ ଏହିପରି ଏକ ଅପ୍ରୀତିକର ଦୁର୍ଘଟଣା ଘଟିଥିଲା । ଯା' ଫଳରେ ବମ୍ବେର ବିଶିଷ୍ଟ ବ୍ୟବସାୟୀ ଶର୍ମା ମହାଶୟଙ୍କର ଖଣ୍ଡିଏ ମାଲ ବୋଝେଇ ଜାହାଜ ଜଳମଗ୍ନ ହୋଇଥିଲା ।

ଏ ସମସ୍ତ ମୂଳରେ ଯେ ଗୋଟିଏ ଦଳ କର୍ତ୍ତୃକ ଅଥବା ଭିନ୍ନ ଭିନ୍ନ ଦୁର୍ବୃତ୍ତମାନଙ୍କ ଦ୍ୱାରା ସଙ୍ଘଟିତ ହେଉଛି, ପୋଲିସ କର୍ତ୍ତୃପକ୍ଷମାନେ ତା'ର କୌଣସି ସନ୍ଧାନ ଖୋଜି ବାହାର କରିବା ତ ଦୂରର କଥା, ଏଇସବୁ ଅନ୍ୟାୟ ଅନାଚାର କିପରି ବନ୍ଦ କରାଯିବ ତା'ର କୌଣସି ସୁବନ୍ଦୋବସ୍ତ ମଧ୍ୟ କରୁନାହାନ୍ତି । ଦେଶବାସୀ ଦିନୁଦିନ ଭୟଭୀତ ଓ ଆତଙ୍କିତ ହେଇପଡୁଛନ୍ତି । ଓଡ଼ିଶା ପୋଲିସ ଡିପାର୍ଟମେଣ୍ଟର ସୁଖ୍ୟାତି ଟିକକ ଦିନୁଦିନ ସେମାନେ ହରେଇ ବସିଲା ଭଳି ମନେହେଉଛି । ଦେଶର ଶାନ୍ତିଶୃଙ୍ଖଳା ରକ୍ଷା କରିବା ପାଇଁ ଜାତୀୟ ଧନ ବ୍ୟୟ କରାଯାଇ ପୋଲିସ ଡିପାର୍ଟମେଣ୍ଟ ଖୋଲା ହୋଇଛି । ଏପରି ସ୍ଥଳେ ଯଦି ନାଗରିକମାନଙ୍କର ଧନହାନି ପ୍ରାଣହାନିର ଆଶଙ୍କା

ଦିନୁଦିନ ବଢ଼ିଚାଲେ, ତେବେ ଜାତିର ଧନ ଏହିପରି ଡିପାର୍ଟମେଣ୍ଟ ପଛରେ ଖର୍ଚ୍ଚ ହେଉଥିବାରୁ ଅପବ୍ୟୟ ହେଉଛି ବୋଲି ବୁଝିବାକୁ ହେବ । ଏହିସବୁ ଅପ୍ରୀତିକର ଘଟଣା ଜନିତ ଆମେ ପୋଲିସ ଡିପାର୍ଟମେଣ୍ଟକୁ ଉପଦେଶ ଦେବାକୁ ଚାହୁଁ ଯେ, ସେମାନେ ସଜାଗ ଏବଂ ସଚେତନ ହୁଅନ୍ତୁ । ଦେଶଦ୍ରୋହୀ ସଇତାନମାନଙ୍କ ମୁଖୋସ ଆଢୁଆଳରୁ ବିଚ୍ ରାସ୍ତାକୁ ଟାଣି ଆଣି ଦେଶବାସୀଙ୍କ ଆଗରେ ଦେଖାଇ ଦିଅନ୍ତୁ ଯେ ଦେଶର ଶତ୍ରୁ ଏଇ ନରପିଶାଚଗଣ ।

ଆଶା କରୁ, ଆମ ଅରଣ୍ୟରୋଦନ ଶୂନ୍ୟରେ ମିଳାଇ ନ ଯାଇ ପୋଲିସ ଡିପାର୍ଟେମେଣ୍ଟ କର୍ଣ୍ଣଗହ୍ୱରରେ ପ୍ରବେଶ କରିବ ।

ଡି.ଏସ୍.ପି. କାଗଜଖଣ୍ଡିକ ପଢ଼ିସାରି ଦୂରକୁ ଫିଙ୍ଗି ଦେଇ ପ୍ରଫୁଲ୍ଲବାବୁଙ୍କ ମୁହଁକୁ ଅନାଇ ରହିଲେ । ପ୍ରଫୁଲ୍ଲବାବୁଙ୍କ ତୁଣ୍ଡରେ ଭାଷା ନ ଥିଲା । ଆଖିଯୋଡ଼ିକ ଆବଦ୍ଧ ଥିଲା ଦୂର ରାଜପଥ ଉପରେ । ହଠାତ୍ ତାଙ୍କ ଆଖିଯୋଡ଼ିକ ରାଜପଥ ଉପରେ ଅଜିତ୍‌ବାବୁଙ୍କୁ ଆବିଷ୍କାର କଲା । ଜଡ଼ତା ଘୁଞ୍ଚିଗଲା । ସେ ଚଞ୍ଚଳ ହୋଇଉଠି ଡି.ଏସ୍.ପି.ଙ୍କୁ କହିଲେ  ଅଜିତ୍‌ବାବୁ ଫେରିଲେଣି । ଏଥର ସମସ୍ତ ସମ୍ବାଦ ଆମେ ତାଙ୍କ ଠାରୁ ପାଇପାରିବା ।

ଅଜିତ୍‌ବାବୁ ସେଠାରେ ପହଞ୍ଚିଲେ । ଆଖି ତାଙ୍କର ଲାଲ ଦିଶୁଥିଲା । ଦିହସାରା କ୍ଲାନ୍ତିର ଭାବ ଫୁଟିଉଠୁଥିଲା । ସେ ଖଣ୍ଡିଏ ଚେଆର ଉପରେ ତାଙ୍କର ଅବଶ ଦେହଟାକୁ ନଦି ଦେଇ କହିଲେ : ସଇତାନମାନଙ୍କର ଆଡ୍‌ଡା ଆବିଷ୍କାର କରିଛି । ଏଣିକି ବିଶେଷ କିଛି ଚିନ୍ତା କରିବାକୁ ପଡ଼ିବ ନାହିଁ ।

ଡି.ଏସ୍.ପି. ଓ ପ୍ରଫୁଲ୍ଲବାବୁଙ୍କ ମୁହଁରେ ହସ୍ୟରେଖା ଫୁଟିଦିଶିଲା । ସେମାନେ ଉଦ୍‌ବେଗ କଣ୍ଠରେ ପଚାରିଲେ  କ'ଣ ଘଟଣାଟା ବିଷଦ ଭାବରେ ବର୍ଣ୍ଣନା କରନ୍ତୁ ତ ଆପଣ ।

ଅଜିତ୍‌ବାବୁ କପେ ଚା'ର ବରାଦ କରାଇ ସାରି କହିଲେ  ଗତକାଲି ରଣଜିତ୍‌କୁ ଧରା ନ ହୋଇ ଭଲ ହୋଇଛି । ମୋର ଧାରଣା ନ ଥିଲା ଯେ, ସେମାନଙ୍କର ଏପରି ଏକ ଆଡ୍‌ଡା ଅଛି ଯେଉଁଠି କି ଚନ୍ଦ୍ର ସୂର୍ଯ୍ୟର ପ୍ରବେଶ ମଧ୍ୟ ନିଷିଦ୍ଧ । କାଲି ରାତି ବାରଟାରେ ମୁଁ ରଣଜିତ୍ ଘର ଆଡ଼କୁ ଯାଇଥାଏ, ଦେଖିଲି ଯୋଡ଼ାଏ ମଟର ତାଙ୍କ ଘର ପାଖରୁ ଛାଡ଼ି ଚାଲିଯାଉଛି । ମୁଁ ଆଉ ଆଗପଛ ନ ବିଚାରି ଗୋଟାଏ ମଟର ପଛ ପାଖରେ, ଯେଉଁଠି ଚକା ଆଦି ରହେ, ସେଇଠି ବସିପଡ଼ିଲି । ମଟର ଦୁଇଖଣ୍ଡ ଯାକ ଭୁତକୋଠି ପାର୍ଶ୍ୱ ଦେଇ ଗୋଟାଏ ଜଙ୍ଗଲ ଭିତରେ ପଶିଲେ । ଜଙ୍ଗଲରେ ଗୁପ୍ତପଥ ଅଛି, ସେଇ ପଥଦେଇ ଦୁଇଖଣ୍ଡ ଯାକ ମଟର ଉଲ୍‌କା ବେଗରେ ଧାଇଁଗଲା । ପୂରା ଦୁଇଘଣ୍ଟା ଅନ୍ତେ ମଟରର ଗତି ଶିଥିଳ ହେଲା । ଗୋଟିଏ ପାହାଡ଼ର ଏକ ସୁବିଶାଳ ଗୁହା ନିକଟରେ ମଟର ଦୁଇଖଣ୍ଡ ଅଟକିଗଲା । ମୁଁ ପଛ ପଟରୁ ସମସ୍ତଙ୍କ ଅଲକ୍ଷ୍ୟରେ ଗୋଟାଏ ଉହାଡ଼ିଆ ବଣବୁଦା

ମୂଳେ ଲୁଚି ବସିଲି । ମଟରରୁ ସମସ୍ତେ ଓହ୍ଲାଇ ଯିବା ଅନ୍ତେ ଧୀର ପଦଚାଳି ସେମାନଙ୍କ କଥାବାର୍ତ୍ତା ଶୁଣିଲି । ମଝିରେ ଦୁଇଦିନ ଛାଡ଼ି ସେମାନଙ୍କର ଗୋଟାଏ ମହୋତ୍ସବ ସେଠାରେ ହେବ । ସେଇଦିନ ତାଙ୍କ ଦଳର ସମସ୍ତ ମେମ୍ବର ଓ ଦଳପତି ସେଠାରେ ଉପସ୍ଥିତ ହେବେ । ତେଣୁ ମୁଁ ସ୍ଥିର କରିଛି, ଆମେ ପୋଲିସ ଫୋର୍ସ ନେଇ ସେଇଦିନ ତାଙ୍କ ଗୁମ୍ଫା ଘେରାଉ କରି ଦୁର୍ବୃତ୍ତମାନଙ୍କୁ ହାତକଡ଼ି ପିନ୍ଧାଇବା ।

ପ୍ରଫୁଲ୍ଲବାବୁ ଅଜିତ୍‌ବାବୁଙ୍କ କଥା ମନ ଧ୍ୟାନଦେଇ ଶୁଣୁଥିଲେ । ଅଜିତ୍‌ବାବୁଙ୍କ କାହାଣୀ ଶେଷ ହେବାରୁ କହିଲେ  ଦେଖନ୍ତୁ ତ ରଣଜିତ୍‌ର ଚାଲାଖି । ଭଦ୍ର ମହଲରେ ରହି, ଭଦ୍ରଲୋକଙ୍କ ସଙ୍ଗରେ ମିଶି କିପରି ଆମମାନଙ୍କ ଆଖିରେ ଧୂଳି ପକାଇବାକୁ ବସିଥିଲେ । ଏଥିରେ ଦୁନିଆରେ କାହାକୁ ବିଶ୍ୱାସ କରିବା ?

ଡି.ଏସ୍.ପି. କହିଲେ  ଯା' ହେଉ, ଏତେଦିନ ପରେ ଆମ ହଟହଟାର ଅବସାନ ହେବାକୁ ଯାଉଛି । ଏଥର ଅଭିଯାନ ନିମିତ୍ତ ମୁଁ ସମସ୍ତ ବନ୍ଦୋବସ୍ତ କରିବି । ଆପଣମାନଙ୍କ ଉପରେ ନିର୍ଭର କରି ବାରମ୍ବାର ମୋତେ ଅନୁତାପ କରିବାକୁ ପଡୁଛି ।

ସେଦିନକାର ଆଲୋଚନା ବୈଠକ ସେତିକିରୁ ସାଙ୍ଗ ହେଲା ।

* * *

ତହିଁ ଆରଦିନ ସକାଳେ ଡି.ଏସ.ପି. ଖଣ୍ଡିଏ ଟେଲିଗ୍ରାମ ପାଇଲେ । ''କାଲି ସକାଳ ଦଶଟାରେ ବୋମ୍ବାଇ ବନ୍ଦରରୁ ଖଣ୍ଡିଏ ଜାହାଜ ଛାଡୁଛି । ତହିଁରେ ପ୍ରାୟ ପାଞ୍ଚଶହ ହେବ ମହିଳା ଉଚ୍ଚଶିକ୍ଷା ପାଇବେ ବୋଲି ବିଦେଶ ଯାତ୍ରା କରୁଛନ୍ତି । ମାତ୍ର ତହିଁର ଭିତିରି ଉଦ୍ଦେଶ୍ୟ କାହାରିକୁ ଜଣା ନାହିଁ । ସେମାନଙ୍କୁ ହଜାରିମଲ ଶର୍ମା ବିଭିନ୍ନ ପ୍ରଦେଶରୁ ଏଜେଣ୍ଟମାନଙ୍କ ସାହାଯ୍ୟରେ କିଣି ଆଣି ଦକ୍ଷିଣ ଆଫ୍ରିକାକୁ ପଠାଉଛନ୍ତି । ସେଠାରେ ସେମାନେ ମୋଟା ଟଙ୍କାରେ ବିକ୍ରି କରାଯିବେ । ଏହା ଅକ୍ଷରେ ଅକ୍ଷରେ ସତ । ଆପଣ ଅବିଶ୍ୱାସ ନ କରି, ବମ୍ବେରୁ ଛାଡୁଥିବା ସେଇ ଜଳକଲ୍ଲୋଳ ଜାହାଜଟିକୁ ଅଟକାଇ ରଖିବାର ବନ୍ଦୋବସ୍ତ କରାନ୍ତୁ । ନତୁବା ହାତଛଡ଼ା ହେଲେ ଆଉ କୌଣସି ଉପାୟ ନଥିବ ।''

—ଆପଣଙ୍କର

ନୀହାରବାଳା

ଡି.ଏସ୍.ପି. ଟେଲିଗ୍ରାମ ଖଣ୍ଡିକ ପଢ଼ିସାରିବା କ୍ଷଣି ତାଙ୍କ ମୁଣ୍ଡ ବୁଲାଇ ଦେଲା । ଏହା କ'ଣ ସମ୍ଭବ ? ସେ ସଙ୍ଗେସଙ୍ଗେ ବମ୍ବେର ପୋଲିସ ଡିପାର୍ଟମେଣ୍ଟକୁ ଟେଲିଗ୍ରାମ କରି ଘଟଣାଟିର ପୁଙ୍ଖାନୁପୁଙ୍ଖ ତଦନ୍ତ କରିବା ପାଇଁ ଜଣାଇ ଦେଲେ ।

## ଯବନିକାପାତ

ଆଜି ମାୟାମହଲର ମହୋତ୍ସବ । ରାତ୍ରି ପ୍ରାୟ ନ'ଟା ହେବ । ବିଭିନ୍ନ କେନ୍ଦ୍ରର ସମସ୍ତ ସଦସ୍ୟ ସଦସ୍ୟା ଉପସ୍ଥିତ ହୋଇସାରିଲେଣି । ଆନନ୍ଦର କଳରୋଳ ଉତ୍ଥିତ ହେଉଛି । କାଳନେମି ଜଣେ ଭୃତ୍ୟକୁ ଆଦେଶ ଦେଲା ରଣଜିତ୍‌କୁ ତାଙ୍କ ସମ୍ମୁଖକୁ ଆଣିବା ପାଇଁ । ଭୃତ୍ୟ ଆଦେଶ ପାଳନ କଲା ।

କାଳନେମି ଅଟ୍ଟହାସ୍ୟ କରିଉଠିଲା ତା'ପରେ ରଣଜିତ୍ ବାବୁ ! କ'ଣ କୁଶଳରେ ଅଛନ୍ତି ତ ? ଆପଣ କାୟିକ ଓ ମାନସିକ ବହୁ ଶକ୍ତି ଖଟେଇ ଆମ ପଛେ ପଛେ ଧାଇଁଥିଲେ ଆମକୁ ଫାନ୍ଦରେ ପକାଇବା ପାଇଁ । ମାତ୍ର ଦେଖୁଛନ୍ତି ତ, ଆପଣ ନିଜେ ପାତିଥିବା ଫାନ୍ଦ ଭିତରେ ନିଜେ କେମିତି ଛନ୍ଦିହୋଇ ପଡ଼ିଛନ୍ତି ? ଯାର ପୁରସ୍କାର ଆପଣ କ'ଣ ପାଇବେ ଜାଣନ୍ତି ?

ଦୁଇଜଣ ସବଳକାୟ ବ୍ୟକ୍ତି ହାତରେ ଯୋଡ଼ାଏ ଶାଣିତ ଛୁରିକା ଧରି ଆଗେଇ ଆସିଲେ ।

କାଳନେମି ପୁଣି ଅଟ୍ଟହାସ୍ୟ କରିଉଠିଲା ଏହାହିଁ ହେଉଛି ଆପଣଙ୍କର ଉପଯୁକ୍ତ ପୁରସ୍କାର । ଆମର ସମସ୍ତ କାର୍ଯ୍ୟରେ ଆମେ ପୂର୍ଣ୍ଣ ସଫଳତା ଅର୍ଜନ କରିପାରିଛୁ । ଏଥରକ ଆପଣଙ୍କ ସମ୍ପ୍ରଦାୟର ଲୋକଙ୍କ ରକ୍ତ ନିଗାଡ଼ି ଆମର ଏହି ମହୋତ୍ସବ ଦିନରେ ରକ୍ତତାଣ୍ଡବ ନୃତ୍ୟ ରଚନା କରିବୁ ।

ରଣଜିତ୍‌ବାବୁ ଗୋଟିଏ ନିର୍ଭୀକ ସୈନିକ ପରି କାଳନେମି ସମ୍ମୁଖରେ ଠିଆ ହୋଇଥିଲେ । ସତେ ଯେପରି ସେ ଏଥି ନିମିତ୍ତ ବହୁ ଦିନରୁ ପ୍ରସ୍ତୁତ ହୋଇଅଛନ୍ତି ।

କାଳନେମି ଆଉଥରେ ଅଟ୍ଟହାସ୍ୟ କରି କହିଲା ଘାତକ ! ଆଉ ଡେରି କାହିଁକି ?

ସେଇ ସବଳକାୟ ଲୋକ ଯୋଡ଼ାକ ରଣଜିତ୍‌ବାବୁଙ୍କ ଆଡ଼କୁ ମାଡ଼ି ଆସିଲେ । ହଠାତ୍ ଦୁଇଟା ଗୁଳି ଆସି ଦୁଇଜଣ ଘାତକକୁ ଭୂମିଶାୟୀ କରିଦେଲା । ବିସ୍ମିତ ହୋଇ କାଳନେମି ପଛକୁ ଚାହିଁ ଦେଖିଲା, ପଛରେ ପୋଲିସ ଫୋର୍ସ । ସଙ୍ଗେସଙ୍ଗେ ବନ୍ଧୁକର ମୁହଁ ଗର୍ଜି ଉଠିଲା । କାଳନେମି କେଉଁଆଡ଼େ ପଳାଇ ଯିବା ପୂର୍ବରୁ ଦୁଇଜଣ ସିପାହୀ ଛୁଟିଆସି ତାକୁ କାବୁ କରିନେଲେ । ନୀହାରବାଳା ପୋଲିସ ଫୋର୍ସ ଭିତରୁ ବାହାରି ଆସି କାଳନେମିର ମୁହଁରୁ ଛଦ୍ମ ଆବରଣ ଖୋଲିପକାଇଲା ।

ସମସ୍ତେ ହାଁ କରି ଅନାଇ ରହିଲେ : ଏଁ... ନନ୍ଦଲାଲ୍‌ବାବୁ !

ରଣଜିତ୍‌ବାବୁ କହିଉଠିଲେ ଆଶ୍ଚର୍ଯ୍ୟ ହେବେ ନାହିଁ ଆଜ୍ଞା ! ଆଜିକାଲିର

ଏଇ ଦୁନିଆରେ ଆପଣମାନେ ଯେଉଁମାନଙ୍କୁ ଶିକ୍ଷିତ ଆଉ ସଭ୍ୟ ବୋଲି ଭାବନ୍ତି, ସେଇମାନଙ୍କ ମୁଖରେ ହିଁ ସଦାସର୍ବଦା ମାୟା ମୁଖୋସ ଦିଆହୋଇଥାଏ । ତା'ର ପ୍ରମାଣ ଆପଣଙ୍କ ସମ୍ମୁଖରେ ନନ୍ଦଲାଲବାବୁ ।

ଡି.ଏସ୍.ପି.ଙ୍କ ଆଦେଶକ୍ରମେ ଜଣେ କନେଷ୍ଟବଲ ରଣଜିତ୍ ବାବୁଙ୍କୁ ବନ୍ଧନ ମୁକ୍ତ କରାଇଦେଲା ।

ରଣଜିତ୍‌ବାବୁ ମୁକ୍ତ ହୋଇ ଡି.ଏସ୍.ପି.ଙ୍କୁ ପଚାରିଲେ  ଗତକାଲି ବମ୍ବେ ବନ୍ଦରରୁ ଯେଉଁ ଜାହାଜ ଛାଡ଼ିବାର ଥିଲା, ତା'ର ସମ୍ବାଦ ଆପଣଙ୍କୁ ନୀହାରବାଳା ନିଶ୍ଚୟ ଦେଇଥିବେ । ଆପଣ ତା'ର କୌଣସି ପ୍ରତିକାର କରିଛନ୍ତି କି ?

ଡି.ଏସ୍.ପି. କହିଲେ  ହଁ କରିଛି । ସମସ୍ତ ମହିଳାଙ୍କୁ ଉଦ୍ଧାର କରାଯାଇଛି ଏବଂ ହଜାରିମଲ ଶର୍ମାକୁ ନଜର ବନ୍ଦୀରେ ରଖାଯାଇଛି ବୋଲି ବମ୍ବେର ପୋଲିସ କର୍ତ୍ତୃପକ୍ଷ ମୋତେ ଟେଲିଗ୍ରାମ କରି ଜଣାଇଛନ୍ତି । ଆପଣ କୁହନ୍ତୁ ତ କିପରି ଏହି ରହସ୍ୟ ଉଦ୍‌ଘାଟନ କରିବା ଦିଗରେ କୃତକାର୍ଯ୍ୟ ହେଲେ ଏବଂ ସମ୍ବାଦ ଆମକୁ ପୂର୍ବରୁ କାହିଁକି ନ ଜଣାଇଲେ ?

ରଣଜିତ୍‌ବାବୁ କଣ୍ଠ ପରିଷ୍କାର କରି କହିଲେ  ମୁଁ ଏ ରହସ୍ୟ ଉଦ୍‌ଘାଟନର ବୃତ୍ତାନ୍ତ ବଖାଣିବା ଆଗରୁ ମୋର ଏବଂ ନୀହାରବାଳାଙ୍କର ସମ୍ୟକ ପରିଚୟ ଦିଏଁ । ଆମ ଦୁହିଁଙ୍କ ଘର ଓଡ଼ିଶାର ଏକ ଅନୁନ୍ନତ ଅଞ୍ଚଳରେ । ଦୁହେଁ ଆମେ ପାଠ ପଢୁଥିଲୁ ଏକା ସ୍କୁଲ ଏବଂ ଏକା କ୍ଲାସରେ । ଦୁହିଁଙ୍କ ଭିତରେ ସ୍ନେହସୌହାର୍ଦ୍ଦ୍ୟ ଏତେ ବଢ଼ି ଯାଇଥିଲା ଯେ ଆମେ କେହି କାହାରିକୁ ମୁହୂର୍ତ୍ତେ ଛାଡ଼ିପାରୁ ନ ଥିଲୁ । ଫଳରେ ଗାଁ ଲୋକେ ଆମକୁ ବିଷଦୃଷ୍ଟିରେ ଚାହୁଁଥିଲେ । ଏପରି ଏକ ସମୟ ଆସିଲା, ଯେଉଁ ସମୟରେ ମୋର ଏକମାତ୍ର ସମ୍ବଳ ପିତା ଏବଂ ନୀହାରବାଳାଙ୍କର ଏକମାତ୍ର ସମ୍ବଳ ମାତା ପ୍ରାୟ ଦୁଇଚାରିମାସ ଅନ୍ତରରେ ଆମ ଦୁହିଁଙ୍କ ମାୟାମମତା ତୁଟେଇ ଦେଇ ସେ ପୁରକୁ ଚାଲିଗଲେ । ଆମେ ହେଲୁ ନିଃସହାୟ । ସେତେବେଳକୁ ଆମର ବୟସ ଟିକିଏ ବେଶୀ ହୋଇଥିଲା । ଆମେ କଟକ ଚାଲିଆସିଲୁ । କୌଣସି ପ୍ରକାରେ ଦୁଇଜଣ ପରିପୋଷଣ ହୋଇ ନିଜର ଜୀବନ ନିର୍ବାହ କରୁଥିଲୁ । ଦେଶରେ ବନ୍ୟାବିପତ୍ତି ପଡ଼ିଲା । ଦିନେ ଦୁହେଁ ପ୍ରତିଜ୍ଞା କଲୁ ଦେଶକୁ ନାନା ସଙ୍କଟରୁ ଉଦ୍ଧାର କରିବା ଦିଗରେ ଆମେ ଜୀବନ ପଣ କରି ଲାଗିପଡ଼ିବା । ବନ୍ୟା ସାହାଯ୍ୟ ପାଣ୍ଠି ଖୋଲି ଦୁହେଁ ଅକ୍ଳାନ୍ତ ପରିଶ୍ରମ କଲୁ । ଫଳରେ ବଡ଼ବଡ଼ ଲୋକଙ୍କ ଆଖି ଆଗରେ ଆମେ ପଡ଼ିଲୁ !

କିଛି ଦିନ ପରେ ପୁଣି ନନ୍ଦଲାଲବାବୁଙ୍କ ଏ ଚକ୍ରାନ୍ତ ଆମ ଦେଶ ଉପରେ ବଜ୍ର ନିକ୍ଷେପ କଲା । ଦୁଇ ଚାରିଟା ଦୁର୍ଘଟଣା ପରେ ଆମେ ଏଇ ମାୟାଜାଲ ଭେଦିବୁ ବୋଲି ଶପଥ ଗ୍ରହଣ କଲୁ । ଦିନେ ତାଙ୍କର ଜଣେ କର୍ମୀ ଆମ ହାତରେ ପଡ଼ିଲା । ତା'ରିଠୁଁ କୌଶଳ କ୍ରମେ ଜାଣିଲୁ ଯେ, ନନ୍ଦଲାଲବାବୁଙ୍କ ହାତରେ ଯେଉଁ

ଘଡ଼ିଟି ଅଛି ସେଇଟିକୁ ଯଦି ହାତପଇଠ କରାଯାଏ, ତେବେ ସବୁ ତଥ୍ୟ ଆମେ ଉଦ୍‌ଘାଟନ କରିପାରିବୁ ।

ଫଳରେ ସୁଯୋଗ ପଡ଼ିଲା ଆମକୁ ଇନ୍ଦ୍ରଭୁବନରେ । ମୁଁ ଛଦ୍ମବେଶରେ ପେସୱାରୀ ମୁସଲମାନ ସାଜି ନନ୍ଦଲାଲବାବୁଙ୍କ ହସ୍ତରୁ ଘଡ଼ି ଉଦ୍ଧାର କଲି । ନୀହାରବାଳା ସଙ୍ଗେସଙ୍ଗେ ଥାଇ ମତେ ସାହାଯ୍ୟ କରୁଥାଆନ୍ତି ।

ଘଡ଼ିରେ ବିଶେଷ କିଛି ଲାଭ ହେଲା ନାହିଁ । ସେ କେବଳ ଗୋଟିଏ ଶୂନ୍ୟକୁହା ଘଡ଼ି ! ସେହି ଘଡ଼ିରୁ ଜାଣିପାରିଲୁ ଯେ ନନ୍ଦଲାଲବାବୁଙ୍କର ଗୋଟିଏ ମସ୍ତବଡ଼ ଦଳ ଅଛି । ଯାହାର କି ଶାଖା ବିଭିନ୍ନ ସ୍ଥାନରେ । ଆହୁରି ମଧ୍ୟ ସେଇ ଘଡ଼ିରୁ ବୁଝିପାରିଲୁ ସେମାନେ ଓଡ଼ିଶାର ସୁନ୍ଦରୀ କନ୍ୟାମାନଙ୍କୁ ଧରି ବିଦେଶକୁ ରପ୍ତାନି କରନ୍ତି ଏବଂ ମୋଟା ଅଙ୍କରେ ଟଙ୍କା ପାଆନ୍ତି । ନୀହାରବାଳା ମଧ୍ୟ ସେମାନଙ୍କ ଆଖିରେ ପଡ଼ିଥିଲା । ଯେଉଁଦିନ ନନ୍ଦଲାଲବାବୁଙ୍କ ଦୁର୍ଘଟଣାର ଘଟିଲା ସେଇଦିନ ନୀହାରବାଳାଙ୍କୁ ହରଣଚାଳ କରିବା ନିମିତ୍ତ ଗୁପ୍ତ ଷଡ଼ଯନ୍ତ୍ର କରାଯାଇଥିଲା । ମାତ୍ର ତାହା ସବୁ ପାଣି ଫୋଟକା ପରି ମିଳେଇ ଗଲା । ମୁଁ ନୀହାରବାଳାଙ୍କ ବିପଦ କଥା ସ୍ମରଣ କରି ତାଙ୍କୁ ମୋ'ରି ଲୋକଙ୍କ ଦ୍ୱାରା ଇନ୍ଦ୍ରଭୁବନରୁ ହରଣଚାଳ କରିଆଣିଲି । ଯା' ଫଳରେ ନନ୍ଦଲାଲବାବୁ ଆଉ କେବେ ନୀହାରବାଳାଙ୍କ କଥା ନ ଭାବନ୍ତି । କିନ୍ତୁ ଆମର ଦୋଷ ରହିଗଲା ଗୋଟାଏ ମସ୍ତବଡ଼ । ନୀହାରବାଳାଙ୍କ ଭ୍ୟାନିଟି ବ୍ୟାଗଟି ରହିଗଲା ଇନ୍ଦ୍ରଭୁବନରେ । ତା' ଭିତରେ ଥିଲା ଆମ ଗୁପ୍ତ ସଙ୍ଘର ଗୋଟିଏ ଚିହ୍ନ ଏବଂ ମୋର ଖଣ୍ଡେ ଫଟୋ । ମୁଁ ସେଇ ଭ୍ୟାନିଟି ବ୍ୟାଗଟିକୁ ଉଦ୍ଧାର କରିବା ପାଇଁ ତହିଁ ଆରଦିନ ରାତିଅଧରେ ଇନ୍ଦ୍ରଭୁବନକୁ ଗୁପ୍ତ ବେଶରେ ଗଲି । ବ୍ୟାଗ ତ ପାଇଲି ନାହିଁ କିନ୍ତୁ ଅମରବାବୁଙ୍କ ଗୁଳିଚୋଟରୁ ଖସି ଆତ୍ମରକ୍ଷା କରିଥିଲି । ପଦାକୁ ବାହାରି ଆସି ଶୁଣିଲି କାହାର ଆର୍ତ୍ତ ଚିତ୍କାର ଏବଂ ଗୁଳି ଚାଳନାର ଆବାଜ । ଅନୁସନ୍ଧାନ କରି ଦେଖିଲି ନନ୍ଦଲାଲବାବୁ ପୁଳିନବାବୁଙ୍କ କନ୍ୟାକୁ ବେହୋସ ଅବସ୍ଥାରେ ଆଣି ଗୋଟିଏ ମଟରରେ ଲଦୁଛନ୍ତି । ମୁଁ ସଙ୍ଗେସଙ୍ଗେ ଗୁଳି ଚଳାଇଲି । ଗୁଳିଟି ଲକ୍ଷ୍ୟଭ୍ରଷ୍ଟ ହୋଇ ନନ୍ଦଲାଲବାବୁଙ୍କ ବାହୁରେ ଭେଦିଲା । ସେ ମଟର ଛୁଟାଇ ଚାଲିଗଲେ ।

ତା'ପରେ ନୀହାରବାଳାଙ୍କୁ ମୁଁ ଛଦ୍ମବେଶ କରାଇ ଗୋଟିଏ ଶିଖ୍ ତରୁଣୀ ସଜାଇ ନନ୍ଦଲାଲବାବୁଙ୍କ ନୃତ୍ୟ ଗୀତ ଶିକ୍ଷା କେନ୍ଦ୍ରକୁ ପଠାଇଲି । ସେ ସେଠାରେ ରହି ମୋତେ ସେମାନଙ୍କର ଗୁପ୍ତ ଖବରମାନ ଯୋଗାଇବାର କଥା ହେଲା ।

ନନ୍ଦଲାଲବାବୁଙ୍କର ଭୂତକୋଠିରେ ଗୁପ୍ତ ପରାମର୍ଶ ବୈଠକ ବସେ । ସେଠାରେ ନନ୍ଦଲାଲବାବୁ ଛଦ୍ମ ଆବରଣ ପିନ୍ଧି 'କାଳନେମି' ନାମରେ ପରିଚିତ ହୁଅନ୍ତି । ସେଇଠାରେ ଅମରବାବୁଙ୍କୁ ଛୁରିମାରା ହୋଇଥିଲା ଏବଂ ରାତିରେ ମହାନଦୀ ଗର୍ଭକୁ ନିକ୍ଷେପ କରାଯିବ ବୋଲି ପରାମର୍ଶ ହୋଇଥିଲା । ନୀହାରବାଳା ସେ ସମ୍ବାଦ ସଂଗ୍ରହ

କରି ମୋ ପାଖକୁ ପଠାଇଥିଲେ । ମୁଁ ମୋ ଲୋକ ପଠାଇ ଅମରବାବୁଙ୍କୁ ମହାନଦୀ କୂଳରୁ ଉଦ୍ଧାର କରି ଆଣି ହସପିଟାଲରେ ଭର୍ତ୍ତି କରାଇଥିଲି ।

ପୁଲିନବାବୁଙ୍କ କନ୍ୟା ଆରତୀ ଦେବୀଙ୍କୁ 'ଜଳତରଙ୍ଗ' ଯୋଗେ ଅନ୍ୟତ୍ର ପଠାଇ ଦେବାର ପରାମର୍ଶ ହୋଇଥିଲା । ହଜାରିମଲ ନନ୍ଦଲାଲବାବୁଙ୍କୁ ମୋଟା ଟଙ୍କା ଦେଇ ନୀହାରବାଳାଙ୍କ ଜାଗାରେ କିଣି ନେଉଥିଲା । ମୁଁ ମୋ ଲୋକ ପଠାଇ ଜାହାଜକୁ ଜଳମଗ୍ନ କରାଇଥିଲି ଏବଂ ଆରତୀ ଦେବୀଙ୍କୁ ଉଦ୍ଧାର କରିଥିଲି ।

ତା'ପରେ ଦିନେ ହଠାତ୍ ଖବର ପାଇଲି ଯେ, ନନ୍ଦଲାଲବାବୁ ହସ୍‌ପିଟାଲର ବଡ଼ ଡାକ୍ତରଙ୍କୁ ମୋଟା ଅଙ୍କର ଟଙ୍କା ଘୁଷ୍‌ଦେଇ ଅମରବାବୁଙ୍କ ଜୀବନ ନଷ୍ଟ କରାଇ ଦେବାକୁ ଚାହିଁଛନ୍ତି । ମୁଁ ସେ ସମ୍ବାଦ ଶୁଣି ଡାକ୍ତରବାବୁ ବିଷ ଇଞ୍ଜେକସନ ଦେବାବେଳେ ତାଙ୍କ ବାହୁକୁ ଗୁଳି କରିଥିଲି । ତା'ପରେ ନନ୍ଦଲାଲବାବୁ ଆମ ସମସ୍ତଙ୍କୁ ଏକ ପ୍ରୀତିଭୋଜନ ଦେଇ ଚାଳିଶଜଣ ମହିଳାଙ୍କୁ ବିଦେଶରେ ଉଚ୍ଚଶିକ୍ଷା ଦେବା ନିମିତ୍ତ ପଠାଉଛନ୍ତି ବୋଲି କହି ବୃଥା ଛଳନା କରିଥିଲେ । ସେହି ଚାଳିଶଜଣ ମହିଳାଙ୍କୁ ପ୍ରଦେଶର ବାହାରକୁ ପଠାଇଦେଇ ସାରିବା ଉତ୍ତାରୁ ତାଙ୍କର ଓଡ଼ିଶାରୁ ପ୍ରାୟ କାମ ସରିଆସିଥିଲା ଏବଂ ସେ ପ୍ରାୟ ପାଞ୍ଚକୋଟି ଟଙ୍କା ଅର୍ଜନ କରିସାରିଥିଲେ । ତାଙ୍କର ନାମକୁ ଲୋପ କରେଇ ଦେବା ପାଇଁ ଖାଲି ମଟରଗାଡ଼ି ଖଣ୍ଡେ ଚାପଡଙ୍ଗାରେ ପକାଇ ମଝିନଦୀରେ ସେ ତାହାକୁ ବିସ୍ଫୋରଣ କରାଇଥିଲେ ଏବଂ ନନ୍ଦଲାଲବାବୁ ହତ ବୋଲି ସମସ୍ତଙ୍କ ମନରେ ଗୋଟାଏ ଦୃଢ଼ବିଶ୍ୱାସ ଜନ୍ମାଇଥିଲେ । ସେଇଦିନ ରାତିରେ ଦୈବକ୍ରମେ ମୁଁ ସେମାନଙ୍କର ଶିକାର ହୋଇ ଏଠାକୁ ଅଣା ଯାଇଥିଲି । ତା'ପରର ଘଟଣା ହୁଏତ ନୀହାରବାଳା କହିବେ ।

ସମସ୍ତେ ନୀହାରବାଳାଙ୍କ ମୁହଁକୁ ଅନାଇଲେ ।

ନୀହାରବାଳା କହିଲେ ଯେଉଁଦିନ ନନ୍ଦଲାଲବାବୁ ଚାଳିଶଜଣ ମହିଳାଙ୍କୁ ବିଦେଶକୁ ନୃତ୍ୟଗୀତ ଶିଖିବାକୁ ପଠାଉଛନ୍ତି ବୋଲି କହି ଗାଡ଼ିରେ ବସାଇଲେ ତା' ପୂର୍ବରୁ ମୁଁ ତାଙ୍କର ସମସ୍ତ ରହସ୍ୟ ବୁଝିପାରିଥିଲି । ହାଓଡ଼ା ଷ୍ଟେସନଠୁ ଗାଡ଼ିରୁ ଓହ୍ଲାଇ ମୁଁ ସମସ୍ତଙ୍କ ଅଲକ୍ଷ୍ୟରେ ଅଦୃଶ୍ୟ ହୋଇଯାଇଥିଲି ଏବଂ ବେଶ ପରିବର୍ତ୍ତନ କରି ଗୋଟିଏ ପୁରୁଷ ପୋଷାକ ପିନ୍ଧିଥିଲି । ନନ୍ଦଲାଲବାବୁଙ୍କର ହଜାରିମଲଙ୍କ ସହ ଗୁପ୍ତ ବୈଠକ ଯେଉଁଠି ବସିବ ସେକଥା ମୋତେ ପୂର୍ବରୁ ଜଣାଥିଲା । ମୁଁ ସେଇଠିକୁ ଯାଇ ସେଠା ଚାକରଙ୍କୁ ମୋଟା ଟଙ୍କା ଦେଇ ଗୋପନ ପରାମର୍ଶ ଶୁଣିବି ବୋଲି ଠିକଣା କଲି ।

ବୈଠକ ଦିନ ବିଭିନ୍ନ ପ୍ରଦେଶରୁ ଏଜେଣ୍ଟମାନେ ଆସିଥିଲେ । ସମସ୍ତେ ପ୍ରାୟ ତିରିଶି ଚାଳିଶିଜଣ କରି ମହିଳା ବନ୍ଦୋବସ୍ତ କରି ଆଣିଥିଲେ । ହଜାରିମଲ ଶର୍ମା ସେଇଦିନ ସମସ୍ତଙ୍କୁ ସେମାନଙ୍କର ପାଉଣା ଚୁକ୍ତି କରାଇଲେ । ନନ୍ଦଲାଲବାବୁ ସେଦିନ ପଚାଶ ଲକ୍ଷ ଟଙ୍କାର ଚେକ ଖଣ୍ଡେ ପାଇଥିଲେ ।

ମୁଁ ସେଇଦିନ ସଙ୍ଗେସଙ୍ଗେ ଆପଣଙ୍କ ପାଖକୁ ଖଣ୍ଡେ ଟେଲିଗ୍ରାମ କରିଥିଲି । ତା'ପରେ ଓଡ଼ିଶାକୁ ଫେରିଆସିଲି । ଆପଣଙ୍କ ସଙ୍ଗେ ଦେଖାହେଲା । ଆପଣ ରଣଜିତ୍‌ବାବୁଙ୍କ ଅପକୀର୍ତ୍ତିର କାହାଣୀ ମୋ ଆଗରେ ଶୁଣାଇଲେ । ମୁଁ ମନେ ମନେ ହସିଥିଲି । ଭାବିଲି ଘଟଣାସ୍ଥଳୀକୁ ଗଲେ ଆପଣ ବଳେ ଆପଣଙ୍କ ଭୁଲ ବୁଝିପାରିବେ । ତେଣୁ ସମସ୍ତ ଘଟଣା ମୁଁ ଆପଣଙ୍କ ଆଗରେ ଖୋଲି କହିଲି ନାହିଁ । ମୋର ବିଶ୍ୱାସ, ବର୍ତ୍ତମାନ ଆପଣ ନିଜର ଭୁଲ ବୁଝିପାରିଛନ୍ତି ।

ସମସ୍ତେ ମନଯୋଗ ସହକାରେ ରଣଜିତ୍‌ବାବୁ ଓ ନୀହାରବାଳାଙ୍କ କଥା ଶୁଣୁଥିଲେ । କଥା ଶେଷ ହେବାମାତ୍ରେ ନନ୍ଦଲାଲବାବୁଙ୍କ ଆଡ଼େ ସମସ୍ତ ଚାହିଁଲେ । ନନ୍ଦଲାଲବାବୁ ଧୀରେ କନେଷ୍ଟବଲ ଉପରକୁ ଢଳି ପଡୁଛନ୍ତି ।

ଡି.ଏସ୍.ପି. ଧାଇଁଯାଇ ଦେଖିଲେ ନନ୍ଦଲାଲବାବୁ ତାଙ୍କ ହାତରେ ଥିବା ବିଷ ମୁଦିଟିକୁ ପାଟିରେ ପୂରାଇଛନ୍ତି । ଜଡ଼ ଶରୀରଟା ତାଙ୍କର ତଳେ ଲୋଟିପଡ଼ିଲା ।

ସମସ୍ତେ ମୁହଁ ଚାହାଁଚାହିଁ ହେଲେ ।

ଡି.ଏସ୍.ପି. କହିଲେ : ଆଃ...! ନନ୍ଦଲାଲବାବୁଙ୍କ ଅସଲ ପରିଚୟଟା ମିଳିପାରିଲା ନାହିଁ । ତା' ପୂର୍ବରୁ ସେ ଦେହତ୍ୟାଗ କରିଚାଲିଗଲେ ।

ରଣଜିତ୍‌ବାବୁ ହସିଉଠିଲେ  ଆହୁରି ନନ୍ଦଲାଲବାବୁଙ୍କର ଅସଲ ପରିଚୟ ବାକି ରହିଗଲା ନା ! ସେ ଯେ ଜଣେ ନରହନ୍ତା—ଡାକୁ—ସଇତାନ! ଏହାପରେ ଆହୁରି ତାଙ୍କର ପରିଚୟ ଲୋଡୁଛନ୍ତି ଆପଣ ?

ଡି.ଏସ୍.ପି. କହିଲେ: ବୁଝୁନାହାନ୍ତି ରଣଜିତ ବାବୁ ! ମହତ୍ ଜନମାନଙ୍କର ପରିଚୟ ଟିକିଏ ବିଶେଷ ରୂପେ ଆବଶ୍ୟକ ହୋଇଥାଏ ।

ସେତିକିବେଳେ ଦୁଇଜଣ କନେଷ୍ଟବଲ ଆଉ ଏକ ଦୁର୍ଦ୍ଦାନ୍ତ ଛଦ୍ମବେଶୀକୁ ଡି.ଏସ.ପି.ଙ୍କ ସମ୍ମୁଖରେ ଛିଡ଼ା କରେଇଲେ । କହିଲେ  ଏ ଆଜ୍ଞା, ଗୋଟାଏ ଗୁପ୍ତ ସୁଡ଼ଙ୍ଗ ପଥଦେଇ ପଳାଇ ଯାଉଥିଲେ ।

ରଣଜିତ୍‌ବାବୁ ତା ଛଦ୍ମ ଆବରଣ କାଢ଼ି ପକାଇ କହିଲେ  ଓହୋ ଆପଣ ବୋଧହୁଏ କୃଷ୍ଣଛାୟା !! ତା' ନ ହୋଇଥିଲେ ଏ କଳା ପହରଣରେ ଅଙ୍ଗ ଆବୃତ କରିଥାଆନ୍ତ କିଆଁ ?

ପୋଲିସ ଫୋର୍ସ ସମସ୍ତ ଦୁର୍ବୃତ୍ତମାନଙ୍କ ହାତରେ କଡ଼ି ପକାଇ ଦେଇ ପୋଲିସ ଲରୀରେ ଭର୍ତ୍ତି କଲେ ।

ହଠାତ୍ ନିଦ ଭାଙ୍ଗିଗଲା ରଞ୍ଜିତାର । ତା'ର ମନେହେଲା ଘରର ଏଇ ଗଭୀର ଅନ୍ଧାକର ଭିତରେ କିଏ ଯେପରି କ୍ଷିପ୍ର ଗତିରେ ବାହାରି ଚାଲିଗଲା । ବେଡ୍ ସୁଇଚ୍‌ଟା ଜଳେଇ ଦେଇ ରଞ୍ଜିତା ଦେଖିଲା, ତା' ଘରର ଦରଜାଟା ଧୀରେ ଯେପରି ବନ୍ଦ ହୋଇଯାଉଛି ।

ରଞ୍ଜିତା ଅନୁଭବ କଲା ତା' ଗଳାଟା ଯେପରି ଶୁଖିଯାଉଛି । ଏପରି ହେବାର କାରଣ ସେ କିଛି ବୁଝିପାରିଲା ନାହିଁ । ଧୀରେଧୀରେ ଉଠି ବିଛଣା ଉପରେ ବସିଲା । ଘରର ଚାରିଆଡ଼କୁ ଚାହିଁ ଭଲକରି ଥରେ ଦେଖିଲା । ଟେବୁଲ ଉପରୁ ପାଣିଗ୍ଲାସଟି ଉଠାଇ ଢକଢକ କରି ପାଣିତକ ପିଇଦେଇ ଗୋଟାଏ ଦୀର୍ଘଶ୍ୱାସ ପକାଇ ଥକ୍କା ହୋଇ ବସିପଡ଼ିଲା ।

ତା'ହେଲେ ? କିଏ କ'ଣ ତା' ଶୋଇବାଘରେ ପଶିଥିଲା ?

ରଞ୍ଜିତା ଧୀରେଧୀରେ ଉଠିଗଲା ବିଛଣାରୁ । ଦରଜା ଟାଣି ଦେଖିଲା ନା, ବନ୍ଦ ଅଛି ତ ! ତେବେ ?

ମନେ ମନେ ହସିଉଠିଲା ରଞ୍ଜିତା ।

ଦୁଃସ୍ୱପ୍ନ ! ଦୁଃସ୍ୱପ୍ନ ଛଡ଼ା ଆଉ କିଛି ନୁହେଁ ।

ସେ ପୁଣି ଯାଇ ବିଛଣାରେ ବସିଲା ।

କିନ୍ତୁ...

କ'ଣ ସେଇଟା ? ରଞ୍ଜିତାର ଦୃଷ୍ଟି ଆକର୍ଷିତ ହେଲା ଗୋଟିଏ ଉଜ୍ଜ୍ୱଳ ପଦାର୍ଥ ଉପରେ । ତା' ଖଟ ଗୋଡ଼ ପାଖରେ ପଡ଼ିଛି । ରଞ୍ଜିତା ଉଠାଇ ନେଇ ଦେଖିଲା, ଗୋଟାଏ 'ଲାଇଟର୍' । ଲାଇଟ୍‌ର ଉପରେ ଗୋଟିଏ ଉଲ୍ଲଙ୍ଗ ଜାପାନୀ ଲଳନାର ଚିତ୍ର ।

ରଞ୍ଜିତାର ଛାତି ଭିତରଟା ଯେପରି କମ୍ପିଉଠିଲା ।

ତା'ହେଲେ...?

ନିଶ୍ଚୟ କେହି ଆସିଥିଲା ତା' ଘର ଭିତରକୁ । ଏବଂ ଯେ ଆସିଥିଲା ସେ ଲୋକଟି ନିଶ୍ଚୟ ଗୋଟିଏ ପୁରୁଷ ଲୋକ । ଲୋକଟିର ଉଦ୍ଦେଶ୍ୟ ?

ରଞ୍ଜିତାର ଚିନ୍ତାଧାରା ଆଉ ଆଗେଇ ପାରିଲା ନାହିଁ । ସେ ସ୍ତବ୍ଧ ହୋଇ ବସି ରହିଲା । ବହୁତ ବେଳଯାଏ ।

|| ଅନ୍ତରଙ୍ଗ ସୂଚନା ||
|| ସ୍ପନ୍ଦନ ||

ଘଡ଼ିରେ ତିନିଟା ବାଜିବାର ଶବ୍ଦ ହେଲା ।

ଏତେ ରାତିରେ ରଞ୍ଜିତା ଆଉ କରିବ କ'ଣ ?

ରଞ୍ଜିତା ଆଉ ଶୋଇପାରିଲା ନାହିଁ ।

କିପରି ଏକ ଆଶଙ୍କାରେ ତା' ମନ ଭିତରଟା ପୂରି ରହିଥିଲା ।

ସକାଳ ହେଉ ନ ହେଉଣୁ ରଞ୍ଜିତାର ଦରଜାରେ କିଏ କରାଘାତ କରିବାର ସେ ଶୁଣିଲା । ମୁହୂର୍ତ୍ତେ କ'ଣ ଚିନ୍ତା କଲା । ତା'ପରେ ଉଠିଯାଇ ଦରଜା ଖୋଲିଦେଲା । ସାମନାରେ ଠିଆ ହୋଇଛନ୍ତି ରଙ୍ଗନାଥ ଶ୍ରୀବାସ୍ତବ । ରଞ୍ଜିତାର ବାପା ।

ରଞ୍ଜିତା ବିଶ୍ୱାସ କରିପାରିଲା ନାହିଁ, ଏତେ ସକାଳୁ ତା'ର ବାପା ତା' ଶୋଇବାଘର ଦୁଆରେ କାହିଁକି ?

ରଙ୍ଗନାଥ ଶ୍ରୀବାସ୍ତବ ଗମ୍ଭୀର ହୋଇ ରଞ୍ଜିତାର ଶୋଇବାଘର ଭିତରକୁ ପଶିଆସିଲେ । ଘରର ଏଣେତେଣେ ଚାହିଁଲେ ଚାରିଆଡ଼କୁ । ତା'ପରେ ରଞ୍ଜିତା ମୁହଁକୁ ତୀବ୍ର ଦୃଷ୍ଟିରେ କିଛି ସମୟ ଚାହିଁ, ଶୋଫା ଉପରେ ବସୁ ବସୁ କହିଲେ ମୋତେ ଏତେ ସକାଳୁ ଏଠାରେ ଦେଖି ତୁ ଆଶ୍ଚର୍ଯ୍ୟ ହୋଇଯାଇଛୁ ନିଶ୍ଚୟ । କିନ୍ତୁ କ'ଣ ଜାଣୁ ମା ! ମୋର କାହିଁକି ମନେହେଲା, ଏ କେତେ ବର୍ଷ ହେଲା, ମୁଁ ତୋ' ପ୍ରତି ଭୀଷଣ ଅବହେଳା କରୁଛି । ତୋର ଭଲମନ୍ଦ, ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ସେତେ ଦୃଷ୍ଟି ଦେଇପାରୁ ନାହିଁ ।

ରଞ୍ଜିତା ହସିଲା, କହିଲା   ନା ଡାଡି, ମୁଁ ତ ବେଶ ଅଛି । ମୋର ଅଭାବ ଅସୁବିଧା କିଛି ତ କେବେ ହୋଇନାହିଁ । ତା'ଛଡ଼ା ତମେ ବା ଘରେ କେଇଦିନ ରହୁଛ ? ସବୁବେଳେ ତ ବାହାରେ ବୁଲୁବୁଲୁ ତମର ଦିନ ଯାଉଛି । ମୁଁ ବରଂ ଭାବୁଥିଲି ଏଣିକି ତମେ ଟିକିଏ ବିଶ୍ରାମ କର ।

ରଙ୍ଗନାଥ ଶ୍ରୀବାସ୍ତବ ଅନେକ ସମୟ ରଞ୍ଜିତା ମୁହଁକୁ ଅନାଇ ବ୍ୟଥିତ କଣ୍ଠରେ କହିଲେ : ସତ କହନି ରଞ୍ଜୁ, ତୋ'ର ନୂଆ ମା' ଏ ଘରକୁ ଆସିଲା ଦିନରୁ ତୁ ଅବହେଳିତ ହୋଇନାହୁଁ ?

ରଞ୍ଜିତା ମୁହଁରେ ହସ ଫୁଟାଇ କହିଲା : ନା ଡାଡି, ମୁଁ ତ ମୋଟେ କିଛି ଅନୁଭବ କରିନାହିଁ । ବରଂ ବେଳେବେଳେ ମମି ମତେ ଆଦର କରେ, ସଙ୍ଗରେ ନେଇ ବୁଲି ବାହାରେ, ମୋର ଖାଇବାପିଇବା ଭଲମନ୍ଦ ଖବର ବୁଝେ । ଯେତେ ଦିନ ସେ ଘରେ ରହେ, ମୋ' ପ୍ରତି କେବେ ତ ସେ ଅବହେଳା କରିନାହିଁ । କିନ୍ତୁ ଡାଡି, ଆଜି ହଠାତ୍ ତମର ହେଲା କ'ଣ ? ତମେ ଏତେ ସକାଳୁ ଉଠି...

କାଲି ରାତିରେ ମୁଁ ଗୋଟାଏ ଦୁଃସ୍ୱପ୍ନ ଦେଖିଲି ରଞ୍ଜୁ । ନିଦରୁ ଉଠି ଦେଖିଲି... ନା ଥାଉ ରଞ୍ଜୁ । ତୁ ଭଲ ଅଛୁ ତ ? ତୋ'ର କିଛି ଅସୁବିଧା ହୋଇନାହିଁ ତ ?

ନା ଡାଡି ।

ରଞ୍ଜିତା ତା' ଉଠିଗଲା ଶ୍ରୀବାସ୍ତବଙ୍କ ପାଖକୁ ।

ରଙ୍ଗନାଥ ଶ୍ରୀବାସ୍ତବ ରଞ୍ଜିତା ମୁଣ୍ଡରେ ହାତ ବୁଲାଇ, ଛଳଛଳ ଆଖିରେ କହିଲେ ? ମୁଁ ଭୁଲ୍ କରିଛି ମା' । ମୋର ଏ ବୟସରେ...

ତେଣିକି ସେ ଆଉ କହିପାରିଲେ ନାହିଁ । ସୋଫାରୁ ଉଠି ଘରୁ ବାହାରି ଚାଲିଗଲେ ।

ରଞ୍ଜିତା ସ୍ତବ୍ଧ ହୋଇ ତାଙ୍କ ଯିବା ପଥକୁ ଅନାଇ ରହିଲା ।

ହଠାତ୍ ଆଜି ଡାଡିଙ୍କର ଏପରି ପରିବର୍ତ୍ତନରେ ରଞ୍ଜିତା ବୋଧହୁଏ ବିବ୍ରତ ହୋଇଉଠିଥିଲା । ସେ ତା' ଡାଡିଙ୍କୁ କେବେ ଏପରି ଅସହାୟ ଅବସ୍ଥାରେ ଦେଖି ନ ଥିଲା ।

ରଙ୍ଗନାଥ ଶ୍ରୀବାସ୍ତବଙ୍କ ଜୀବନର ଇତିହାସ ଖୁବ ବଳିଷ୍ଠ । ସେ ସଂଗ୍ରାମୀ ସୈନିକ । ଜୀବନର ରଣକ୍ଷେତ୍ରରେ ନିଷ୍ଠାର ସହିତ ସଂଗ୍ରାମ କରି ସେ ଆଜି ପ୍ରତିଷ୍ଠିତ ।

ରଙ୍ଗନାଥ ଶ୍ରୀବାସ୍ତବ ମଡର୍ଣ୍ଣ ଟିଉବ୍‌ସ କମ୍ପାନୀର ମ୍ୟାନେଜିଂ ଡିରେକ୍ଟର । ତାଙ୍କ କମ୍ପାନୀର ଖ୍ୟାତି ସମଗ୍ର ଦେଶରେ । ସେ ଜଣେ ବଳିଷ୍ଠ କର୍ମଠ ବ୍ୟକ୍ତି । ରଞ୍ଜିତା ତା' ଡାଡିଙ୍କୁ ଚିହ୍ନେ । ବେଳେବେଳେ ରଞ୍ଜିତାର ମନେହୁଏ ତା' ଡାଡିଙ୍କର ତୁଳନା ହୁଏ ନାହିଁ ।

କିନ୍ତୁ ଆଜି ହଠାତ୍ ରଞ୍ଜିତା ତା' ଡାଡିଙ୍କର ଏପରି ଅସହାୟ ଅବସ୍ଥା ଦେଖି ବ୍ୟଥିତ ହୋଇପଡ଼ିଥିଲା । ହୁଏତ ରଞ୍ଜିତାର ନୂଆ ମମିଙ୍କ ସହିତ ଡାଡିଙ୍କର କିଛି ମନୋମାଳିନ୍ୟ ହୋଇଛି ।

ରଞ୍ଜିତା ଠିଆହୋଇ ଆକାଶ ପାତାଳ ନାନା କଥା ଭାବୁଥିଲା । ସେତିକିବେଳେ ଘର ଭିତରେ ପ୍ରବେଶ କଲେ ତା'ର ମମି । ସେ ରଞ୍ଜିତାକୁ ଏପରି ଅବାକ ହୋଇ ଠିଆହୋଇ ଥିବାର ଦେଖି ଯେପରି ଫାଟିପଡ଼ିଲେ । ବ୍ୟଥିତ ସ୍ୱରରେ କହିଲେ : ତମ ବାପ ଝିଅଙ୍କର ଆଜି ହୋଇଛି କ'ଣ କହିଲ ! ସକାଳୁ ଉଠି ଦେଖୁଛି ବାପଙ୍କର ଏଡ଼େ ମୁହଁ, ଝିଅକୁ ଆସି ଦେଖୁଛି, ସେ ବି ହାଣ୍ଡିପରି ମୁହଁକରି ଠିଆ ହୋଇଛି । ଏ ସବୁର କାରଣ କ'ଣ ? ମୋର ମନେହେଉଛି, ଏପରି ଏକ ଅଶାନ୍ତ ବାତାବରଣ ପାଇଁ ଦାୟୀ ମୁଇଁ, ମୁଁ ଏ ଘରେ ଅନାହୂତ । ମୁଁ ଏ ଘରେ ପର । ମୋରି ପାଇଁ ଏ ଘରେ ଅଶାନ୍ତିର ଝଡ଼ ଉଠିଛି । ନା ନା, ମୁଁ ଆଉ ପାରୁନାହିଁ । ମୁଁ ଚାଲିଯିବି । ମୋତେ କେହି ନିଜର ପରି ଗ୍ରହଣ କରିପାରୁ ନାହିଁ । ସ୍ୱାମୀ, ସ୍ତ୍ରୀ, ମା' ଝିଅ ଭିତରେ ଗୋଟାଏ ଯେପରି ବିରାଟ ବ୍ୟବଧାନ ସୃଷ୍ଟି ହୋଇଛି ।

ମନ୍ଦିରା ଶ୍ରୀବାସ୍ତବ ସୋଫା ଉପରେ ବସିପଡ଼ି କଇଁକଇଁ ହୋଇ କାନ୍ଦି ପକାଇଲେ ।

ରଞ୍ଜିତା ମା'ର ଲୁହ ପୋଛି ଦେଇ କହିଲା : ଛି ମମି । ଏପରି ତମେ ଭାବୁଛ

କାହିଁକି ? କେବେ ମୁଁ ତମକୁ ଅବମାନନା କରିଥିବାର ଦେଖିଛ ? ମୁଁ ମା' ବଦଳରେ ମା' ପାଇଛି । ମୋ'ଠାରୁ ଭାଗ୍ୟବତୀ ଆଉ କିଏ ଅଛି କହିଲ ? ତା'ଛଡ଼ା ବାପା ଭାରି ବ୍ୟସ୍ତ ଲୋକ । ତାଙ୍କ କଥା ଧରିବସିଲେ ଚଳିବ ନାହିଁ । ସେ କେତେବେଳେ କ'ଣ ଭାବନ୍ତି, କ'ଣ କରନ୍ତି, ତାଙ୍କ ଚିନ୍ତାଧାରା ସହିତ ତାଳ ମିଳେଇ ଚାଲି ନ ପାରିଲେ ସେ ବିରକ୍ତ ହେବେ । ତାଙ୍କ କଥା ଧରିବ ନାହିଁ ମମି, ସେ ବାହାରେ ଯାହା ହେଲେ ବି ତାଙ୍କ ହୃଦୟ ଭାରି ନରମ । ତମେ ବ୍ୟସ୍ତ ହୁଅ ନାହିଁ । ବଳେ ସବୁ ଠିକ୍ ହୋଇଯିବ ।

ନା ରଞ୍ଜୁ ନା । ତମ ଡାଡିଙ୍କ ମନରେ କିଏ ଧାରଣା ଦେଇଛି ଯେ, ମୁଁ କୁଆଡ଼େ ତତେ ଭଲପାଏ ନାହିଁ । ନିଜର ଝିଅପରି ଗ୍ରହଣ କରିପାରେ ନାହିଁ । ସେଥିପାଇଁ ସେ ମୋତେ ବାରମ୍ବାର ଖୁଞ୍ଚା ମାରୁଛନ୍ତି । ମୁଁ ଆଉ କେତେ ସହିପାରନ୍ତି । କାଲି ସେ କ'ଣ ଗୋଟାଏ ସ୍ୱପ୍ନ ଦେଖି ମୋତେ ନିଦରୁ ଉଠାଇ ବିରକ୍ତ କଲେ । ମୁଁ ତ ରକ୍ତମାଂସର ଜଣେ ମଣିଷ ।

ରଞ୍ଜିତା ତା'ର ମମିର ଆଖିରୁ ଲୁହପୋଛି ଦେଇ ଉଠାଇ ଠିଆ କରାଇଲା । କହିଲା  ତମେ ଯାଅ ମମି । ମୁଁ ଡାଡିଙ୍କୁ ସବୁ ବୁଝାଇ ଦେବି । ଡାଡି ବର୍ତ୍ତମାନ ତାଙ୍କ କମ୍ପାନୀର ଗୋଟାଏ ନୂଆ ଯୋଜନା ପାଇଁ ବ୍ୟସ୍ତ ଅଛନ୍ତି । ଏପରି ଅବସ୍ଥାରେ ତାଙ୍କ ସହିତ ମନ କଷାକଷି କରିବା ଉଚିତ ହେବ ନାହିଁ । ଆଜି ଚା' ଟେବୁଲରେ ମୁଁ ତାଙ୍କୁ ଶାନ୍ତ କରାଇଦେବି ।

ମନ୍ଦିରା ଶ୍ରୀବାସ୍ତବ ଘରୁ ବାହାରି ଚାଲିଗଲେ ।

ରଞ୍ଜିତା ଅନେକ ବେଳଯାଏ ଗୁମ୍‌ମାରି ସୋଫା ଉପରେ ବସି ରହିଲା । ତା'ପରେ ଧୀରେ ଧୀରେ ଉଠିଗଲା ଖଟ ଉପରକୁ ।

ତକିଆ ଉଠାଇ ଦେଖିଲା, ସେଇ ଉଲ୍ଲଙ୍ଗ ଜାପାନୀ ଝିଅଟା ତା' ଆଡ଼କୁ ନିର୍ଲଜ୍ଜଙ୍କ ପରି ଚାହିଁ ହସୁଛି ।

ରଞ୍ଜିତା ଲାଇଟରଟା ଉଠାଇ ରାଗରେ ଝରକା ବାଟେ ଫୋପାଡ଼ି ଦେବାକୁ ବସିଥିଲା । କିନ୍ତୁ ହଠାତ୍ କ'ଣ ଭାବି ଲାଇଟରଟାକୁ ହାତମୁଠା ଖୋଲି ଭଲ ଭାବରେ ଦେଖିଲା ଅନେକ ସମୟ । ତା'ପରେ ଧୀରେଧୀରେ ସେଇଟିକୁ ସାଇତି ରଖିଲାପରି ଗୁଂଜିଦେଲା ତା' ଭ୍ୟାନିଟି ବ୍ୟାଗରେ ।

ସତ୍ୟବ୍ରତ ମହାପାତ୍ର ରଞ୍ଜିତା ଶ୍ରୀବାସ୍ତବକୁ ବସିବାକୁ କହି ଖବର କାଗଜ ଉପରୁ ମୁଣ୍ଡ ଉଠାଇ ଭଲ ଭାବରେ ଥରେ ତା' ମୁହଁକୁ ଚାହିଁଲେ ।

ଆପଣ ତା'ହେଲେ ରଞ୍ଜିତା ଶ୍ରୀବାସ୍ତବ । ମୋତେ ଫୋନ୍ କରିଥିଲେ ?

ଆଜ୍ଞା ।

ବୁଝିଲି । ଆପଣ ମଡର୍ଣ୍ଣ ଟିଉବସ କମ୍ପାନୀର ମ୍ୟାନେଜିଂ ଡାଇରେକ୍ଟର ରଙ୍ଗନାଥ ଶ୍ରୀବାସ୍ତବଙ୍କର ଏକମାତ୍ର କନ୍ୟା ?

ଆଜ୍ଞା ।

ଆପଣଙ୍କ ଡାଡିଙ୍କ ସହିତ ମୋର ପରିଚୟ ଅଛି ।

ତା'ହେଲେ ଆପଣ ତ ନିଶ୍ଚୟ ମୋ' ସମ୍ବନ୍ଧରେ ସବୁ କଥା ଜାଣିଥିବେ ।

: ନା । ମୁଁ କିଛି ଜାଣିନାହିଁ ରଞ୍ଜିତା ଦେବୀ । ମୋର ମନେପଡୁଛି, ଦୁଇ ତିନିବର୍ଷ ତଳେ ଆପଣଙ୍କ ଡାଡିଙ୍କ ସହିତ ମୋର ଥରେ ପରିଚୟ ହୋଇଥିଲା ଗ୍ରାଣ୍ଡ ହୋଟେଲରେ । ଗୋଟାଏ ବିଶେଷ ଉତ୍ସବରେ । ଖାଲି କେତୋଟି ମିନିଟ୍‌ର କଥାବାର୍ତ୍ତା । ଏବେ ସେ ମୋତେ କି ମୁଁ ତାଙ୍କୁ ରାସ୍ତାରେ ଦେଖିଲେ ଚିହ୍ନିପାରିବୁ ନାହିଁ । ଯା'ହେଉ, ଏଥର ଆପଣଙ୍କ କଥା କୁହନ୍ତୁ ।

ମୋତେ ଆପଣ ଆପଣ କହିବେ ନାହିଁ ।

ସତ୍ୟବ୍ରତ ମୁହୂର୍ତ୍ତେ ନୀରବ ରହି ରଞ୍ଜିତା ମୁହଁକୁ ଚାହିଁଲେ । ସ୍ମିତ ହସି କହିଲେ   ବେଶ୍ ଏଥର ତମ କଥା କୁହ ।

: ମୋ' କଥା ଦେଖିବାକୁ ଗଲେ କିଛି ନାହିଁ । କିନ୍ତୁ ଏଇ ପଦାର୍ଥଟା ମୋତେ ଆଦୌ ସ୍ଥିରକରି ବସାଇ ଦେଲାନାହିଁ । ରଞ୍ଜିତା ଭ୍ୟାନିଟି ବ୍ୟାଗରୁ ଲାଇଟରଟା ବାହାର କରି ସତ୍ୟବ୍ରତ ହାତକୁ ବଢ଼ାଇଦେଲା ।

ସତ୍ୟବ୍ରତ ହାତରେ ନେଇ ସେଇଟା ଭଲକରି ଦେଖିସାରି ଗମ୍ଭୀର ହୋଇ ପଚାରିଲେ : ଏଇଟା କାଲି ରାତିରେ ତମେ ତମର ଶୋଇବା ଘରୁ ପାଇଛ ?

ରଞ୍ଜିତା ଅବାକ୍ ହୋଇ ପଚାରିଲା : ଆପଣ ଜାଣିଲେ କିମିତି ?

ସତ୍ୟବ୍ରତ ହସୁ ହସୁ କହିଲେ   ମୁଁ ତମଠାରୁ ଅଧିକ କିଛି ଜାଣେ ବୋଲି ତ ତମେ ମୋ' ପାଖକୁ ଆସିଛ । ଯା'ହେଉ ଏଥର ତମ କଥା କୁହ । ଏଇ ଲାଇଟରକୁ ଦେଖି ତମର କ'ଣ ମନେହେଉଛି ଆଉ କାହିଁକି ତୁମେ ରାତିଭରି ଶୋଇପାରି ନାହଁ । ତମ ଡାଡି ଓ ମମିଙ୍କ ସହିତ ତମର କ'ଣ କଥାବାର୍ତ୍ତା ହୋଇଛି । ସବୁ କଥା ସୁନାଝିଅଟି ପରି କହିପକାଇଲ ।

ରଞ୍ଜିତା କଥାଟା କେଉଁଠୁ ଆରମ୍ଭ କରିବ ବୋଧହୁଏ ଠିକ୍ କରିପାରୁ ନଥିଲା ।

ସତ୍ୟବ୍ରତ କହିଲେ   ମୂଳରୁ ଆରମ୍ଭ କର ।

ମୂଳରୁ ମାନେ ?

ଏଇ ଧର ତମ ଡାଡିଙ୍କର ତମେ ଏକମାତ୍ର ସନ୍ତାନ । ତମ ଡାଡି ଓ ମମିଙ୍କର ତମ ଉପରେ ଅଶେଷ ଭରସା । କିନ୍ତୁ ତମେ ହଠାତ୍ ଦିନେ ଜାଣିପାରିଲ ଯେ ତମ ଡାଡି ଆଉ ମମିଙ୍କ ଭିତରେ ମନୋମାଳିନ୍ୟ ଦେଖାଦେଇଛି । ତମର ମମି ହୁଏତ ତମର ବିବାହ କୌଣସି ଏକ ଜାଗାରେ ଠିକ୍ କରିଛନ୍ତି, ଅଥବା ତମର ନିଜ ନିର୍ବାଚିତ ପାତ୍ର ପାଇଁ ମମି ସମର୍ଥନ କରୁଛନ୍ତି, ଡାଡି କିନ୍ତୁ ସେ ବାଟରେ ଯିବାକୁ ଅମଙ୍ଗ ।

: ନା ନା, ଘଟଣାଟା ତାହା ନୁହେଁ ମିଷ୍ଟର ମହାପାତ୍ର । ବରଂ ଓଲଟା । ମୋର ଡାଡି ଖୁବ୍ ଭଲଲୋକ । ମୋତେ ସେ ଖୁବ୍ ଭଲପାଆନ୍ତି । କିନ୍ତୁ ମମି...

ରଞ୍ଜିତା ଟିକିଏ ଅଟକି ଗଲା ।

ସତ୍ୟବ୍ରତ ମହାପାତ୍ର କହିଲେ   ମମି ତା'ହେଲେ...

ଡାଡିଙ୍କର ଦ୍ୱିତୀୟ ପକ୍ଷ ସ୍ତ୍ରୀ । ମୋର ଅସଲ ମମି ଯେତେବେଳେ ମରିଯାଏ, ସେତେବେଳେ ମୋର ବୟସ ଦଶ କି ଏଗାର ବର୍ଷ । ସେତେବେଳେ ମୁଁ ଖୁବ୍ କାନ୍ଦିଥିଲି । ଡାଡି ମୋତେ ସଙ୍ଗରେ ନେଇ ବହୁ ଜାଗା ବୁଲେଇ ଥିଲେ । ମମିର ଶୋକ ଭୁଲିବା ପାଇଁ ମୋତେ ଦୁଇ ତିନିବର୍ଷ ଲାଗିଥିଲା । ତା'ପରେ ସାତଆଠବର୍ଷ ବିତି ଯାଇଥିଲା । ଡାଡି ବି ମମିଙ୍କ କଥା ଭୁଲିଯାଇ ନିଜର ବ୍ୟବସାୟରେ ଆତ୍ମନିୟୋଗ କରିଥିଲେ । କିନ୍ତୁ ଏବେ ଦୁଇବର୍ଷ ତଳେ ହଠାତ୍ ଦିନେ ବମ୍ବେରୁ ଫେରିଲେ ଜଣେ ଭଦ୍ରମହିଳାଙ୍କୁ ସଙ୍ଗରେ ଧରି । ମୋ' ପାଖରେ ଆସି ଧୀରେ ଧୀରେ କହିଲେ   ରଞ୍ଜୁ, ଏ ତୋ'ର ନୂତନ ମମି । ଦେଖନି, ତୋ'ର ପସନ୍ଦ ହେଉଛି ?

ସେଇ ଭଦ୍ରମହିଳାଙ୍କ ଆଡ଼କୁ ମୁଁ କାତର ନୟନରେ କିଛି ସମୟ ଚାହିଁ ରହିଥିଲି । ଭଦ୍ରମହିଳା ହସି ହସି ମୋତେ କୋଳକୁ ଟାଣିନେଇ ଗେଲ କରିଥିଲେ ।

ସେଇ ଦିନଠାରୁ ଅନେକ ଦିନଯାଏ ସେ ମୋତେ ସଙ୍ଗରେ ଧରି ବୁଲିଥିଲେ । ଗେଲ କରିଥିଲେ । ବାତ୍ସଲ୍ୟ ମମତାରେ ମୋତେ ବାନ୍ଧିବା ପାଇଁ ଚେଷ୍ଟା କରିଥିଲେ ।

ଧୀରେ ଧୀରେ ମୋ' ମନ ବି ନରମ ହୋଇଆସିଥିଲା ।

ମୁଁ ତାଙ୍କୁ ମମି ଡାକିଥିଲି । ଆଦରି ନେଇଥିଲି ।

ଡାଡି ଆଉ ମମି ଘରେ ବେଶୀ ସମୟ ରହୁ ନ ଥିଲେ । ପ୍ରାୟ ବାହାରେ ବାହାରେ ଘୂରି ବୁଲୁଥିଲେ । ତେଣୁ ସେମାନଙ୍କ ସଂସର୍ଗରେ ମୋତେ ବେଶୀ ସମୟ ଆସିବାକୁ ପଡୁ ନ ଥିଲା ।

ତଥାପି ମମିଙ୍କ ପ୍ରତି ମୋର କୌଣସି ବିଦ୍ୱେଷ ନ ଥିଲା ।

ଚାଲିଥିଲା ବେଶ୍ । ମୁଁ ମୋ' ପାଠ ପଢୁଥିଲି । ବାନ୍ଧବୀମାନଙ୍କ ସହିତ ଘୂରି

ବୁଲୁଥିଲି । ଯେମିତି ଥିଲି ସେମିତି । ଘରକୁ ନୂଆ ମମି ଆସିବାରେ ବି ମୋର ଗତିବିଧିରେ କୌଣସି ପରିବର୍ତ୍ତନ ହୋଇ ନ ଥିଲା ।

କିନ୍ତୁ ଗତ ମାସେ ଦୁଇମାସ ହେବ ମୁଁ ଡାଡିଙ୍କୁ ବେଳେବେଳେ କିପରି ଅନ୍ୟ ମନସ୍କ ହେବାର ଲକ୍ଷ୍ୟ କରୁଥିଲି । ବେଳେବେଳେ ସେ ମୋତେ କିପରି ଆକୁଳ ନୟନରେ ଚାହୁଁଥିଲେ । ଡାକି ପଚାରୁଥିଲେ, ମା' ଭଲ ଅଛୁ ତ ?

ଦିନ କଟି ଯାଉଥିଲା ।

କିନ୍ତୁ କାଲି ରାତିରେ ଏପରି କେତୋଟି ଘଟଣା ଘଟିଲା, ଯେଉଁଥିପାଇଁ ମୁଁ ଖୁବ୍ ବିବ୍ରତ ଓ ଚିନ୍ତିତ ହୋଇପଡ଼ିଲି । ମୋର ଜଣେ ବାନ୍ଧବୀଙ୍କ ପରାମର୍ଶକ୍ରମେ ମୋତେ ଆପଣଙ୍କ ପାଖକୁ ଆସିବାକୁ ପଡ଼ିଲା ।

: ହୁଁ, ମୋ' ପାଖକୁ ଆସି ବେଶ୍ କରିଛ । କିନ୍ତୁ କାଲି ରାତିର ଘଟଣା ତ କିଛି କହିଲ ନାହିଁ ?

ରଞ୍ଜିତା ଆଉ ଟିକିଏ ଚିନ୍ତା କଲା । କହିଲା : ସବୁଦିନ ପରି କାଲି ରାତିରେ ମୁଁ ଖାଇପିଇ ଶୋଇଥିଲି । କେତେ ରାତି ହେବ କେଜାଣି ହଠାତ୍ କାହିଁକି ମନେହେଲା ମୋର ଯେପରି ଶ୍ୱାସ କଷ୍ଟ ହେଉଛି । ମୋର ନିଦ ଭାଙ୍ଗିଗଲା । ମୁଁ ଅନୁଭବ କଲି କିଏ ଯେପରି ଦ୍ରୁତ ପାଦରେ ମୋ' ଶୋଇବାଘରୁ ବାହାରି ଯାଉଛି । ମୁଁ ଚମକି ଉଠି ବେଡ ସୁଇଚ ଜଳେଇ ଦେବାମାତ୍ରେ, ମନେହେଲା ମୋ' ଘରର କବାଟଟା ଧୀରେ ବନ୍ଦ ହୋଇଯାଉଛି । ଉଠିଯାଇ ଦେଖିଲି, ନା, କବାଟଟା ତ ବନ୍ଦ ଅଛି ।

କିଛି ଚିନ୍ତା କରିପାରିଲି ନାହିଁ । ମନେହେଲା, ବୋଧହୁଏ ଏହା ଗୋଟାଏ ଦୁଃସ୍ୱପ୍ନ ।

କିନ୍ତୁ ପୁଣି ବିଛଣାକୁ ଫେରିଆସିଲା ବେଳେ ଦେଖିଲି ଏଇ ଲାଇଟରଟା ମୋ' ଖଟ ପାଖରେ ପଡ଼ିଛି ।

ଆଶ୍ଚର୍ଯ୍ୟ ହୋଇ ଉଠାଇ ଦେଖିଲି ଲାଇଟରଟା ।

ଆଉ ନିଦ ହେଲା ନାହିଁ ।

ନାନା ପ୍ରକାର ଦୁଶ୍ଚିନ୍ତାରେ ମନଟା ପୂରି ରହିଲା ।

ହଠାତ୍ ଦରଜାରେ କିଏ ନକ୍ କରିବାର ଶବ୍ଦ ଶୁଣି ମୁଁ ଚମକି ଉଠିଲି । ପ୍ରକୃତିସ୍ଥ ହୋଇ ଦରଜା ଖୋଲି ଦେଖିଲି, ଡାଡି । ସେ କିପରି ଆକୁଳ ନୟନରେ ମୋରି ଆଡ଼େ ଚାହିଁ ଠିଆ ହୋଇଛନ୍ତି ।

ମୋତେ ଦେଖି ଆଖି ଦୁଇଟା ତାଙ୍କର ଛଳଛଳ ହୋଇଉଠିଲା ।

ବ୍ୟଥିତ କଣ୍ଠରେ ମୋତେ ପଚାରିଲେ ଭଲ ଅଛୁ ତ ମା !

ଡାଡିଙ୍କର ହଠାତ୍ ଏପରି ପରିବର୍ତ୍ତନର କାରଣ ମୁଁ ବୁଝିପାରିଲି ନାହିଁ । ସେ

ମୋ' ମୁଣ୍ଡ ଆଉଁଶି ଦେଇ କହିଲେ : କାଲି ରାତିରେ ଗୋଟାଏ ଦୁଃସ୍ୱପ୍ନ ଦେଖିଲି । ନିଦ ଭାଙ୍ଗିଗଲା । ଉଠି ଦେଖିଲି... ନା ଥାଉ ରଞ୍ଜୁ, ତୁ ଭଲ ଅଛୁ ତ ?

ଏତିକି କହି ସେ ଘରୁ ବାହାରି ଚାଲିଗଲେ ।

ମୁଁ ସ୍ତବ୍ଧ ହୋଇ ସେଇଆଡ଼େ ଅନେଇଲି ।

କିଛି ସମୟ ପରେ ମମି ଭିତରକୁ ପଶି ଆସିଲେ ।

ମନେ ହେଉଥିଲା ସେ ବି ବ୍ୟସ୍ତ ଓ ବିବ୍ରତ । ସେ ଆସି ମୋତେ ବିବ୍ରତ କଣ୍ଠରେ କହିଲେ ତୋ' ଡାଡିଙ୍କ ମନରେ କିଏ ଧାରଣା ଦେଇଛି ଯେ ମୁଁ କୁଆଡ଼େ ତତେ ଭଲପାଏ ନାହିଁ । ସେଇଥିପାଇଁ ସେ ମୋତେ ବାରମ୍ବାର ଖୁଞ୍ଚା ମାରୁଛନ୍ତି । ମୁଁ ତ ଜଣେ ରକ୍ତମାଂସର ମଣିଷ । ମୁଁ ଆଉ କେତେ ସହିପାରନ୍ତି !

ସେ ଏକପ୍ରକାର ଦୁଃଖରେ ଭାଙ୍ଗିପଡ଼ିଥିଲେ ।

ମୁଁ ତାଙ୍କୁ ସାନ୍ତ୍ୱନା ଦେଇ ବିଦାୟ ଦେଲି ।

ମୋର ମନେହେଲା, ଡାଡି ଓ ମମିଙ୍କ ମଧ୍ୟରେ କୌଣସି କାରଣରୁ ମନୋମାଳିନ୍ୟ ହୋଇଛି । ପୁଣି ମୁଁ ଫେରିଆସିଲି ମୋର ଖଟ ଉପରକୁ । କିନ୍ତୁ ଖଟ ତଳେ ଏଇ ଲାଇଟରଟା ଦେଖିବା ମାତ୍ରେ ମୋର ସର୍ବାଙ୍ଗ କମ୍ପିଉଠିଲା ।

ମୁଁ କିଛି ବୁଝିପାରିଲି ନାହିଁ ।

ତେବେ ଏତିକି ମୋର ଧାରଣା ହେଲା ଯେ, କାଲି ରାତିରେ କିଏ ଜଣେ ମୋ' ରୁମ୍‌କୁ ଆସିଥିଲା । କାହିଁକି ଏବଂ କେଉଁ ଉଦ୍ଦେଶ୍ୟରେ- ଯେତେ ଚିନ୍ତା କଲି କିଛି ଠିକ୍ କରିପାରିଲି ନାହିଁ ।

ରଞ୍ଜିତା ଚୁପ୍ ହୋଇ ସତ୍ୟବ୍ରତଙ୍କ ମୁହଁ ଆଡ଼େ ଅନାଇ ରହିଲା ।

ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତା କଲେ ।

ତମର ଡାଡି ସିଗାରେଟ ଟାଣନ୍ତି ?

ହଁ । କିନ୍ତୁ ସେ ଲାଇଟର ବ୍ୟବହାର କରନ୍ତି ନାହିଁ ।

ହୁଁ । ତମେ ତା'ହେଲେ ମୋ'ଠାରୁ କ'ଣ ଆଶା କରୁଛ ?

ମୁଁ କିଛି ଆଶା କରୁନାହିଁ । ମୋତେ କିନ୍ତୁ କାଲି ରାତିର ଏଇ ଘଟଣାଟା ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି । ତା'ଛଡ଼ା ଡାଡି ମମିଙ୍କର ଆଚରଣ ମଧ୍ୟ ମୋତେ କିପରି ଅଦ୍ଭୁତ ଲାଗୁଛି । ଆପଣ ଯଦି କିଛି ମନେ ନ କରନ୍ତି, ମୋର କିଛି ଭାବିବାର ନାହିଁ ।

ସତ୍ୟବ୍ରତ ଲାଇଟରଟି ଜଳାଇଲେ ।

ପର ମୁହୂର୍ତ୍ତରେ ଲାଇଟରରୁ ଟଣ୍ ଟଣ୍ କରି ଏକ ସୁନ୍ଦର ମ୍ୟୁଜିକାଲ ସାଉଣ୍ଡ ଶୁଣାଗଲା । ରଞ୍ଜିତା ସେଇ ସାଉଣ୍ଡରେ ଆକର୍ଷିତ ହୋଇ କାନ ଡେରିଲା । ସତ୍ୟବ୍ରତ ପୁଣି ଥରେ ଲାଇଟର ଜଳାଇଲେ । ମ୍ୟୁଜିକାଲ ସାଉଣ୍ଡ ପୁଣି ବାହାରିଲା ।

ସତ୍ୟବ୍ରତ କହିଲେ ଯିଏ ତମ ରୁମ୍‌କୁ ଆସିଥାଉ, ଲୋକଟି କିନ୍ତୁ ଆର୍ଟିଷ୍ଟିକ । ଲାଇଟର ମୋ' ପାଖରେ ଥାଉ । ତମେ ଏଥର ଫେରିଯାଇପାର ।

ମୁଁ ଫେରିଯିବି । ମୋର ଭୟ କରିବାର କିଛି ନାହିଁ ତ ?

ନା, ଆପାତତଃ ଭୟର କିଛି କାରଣ ନାହିଁ । ତେବେ ମୁଁ ତମର କେସ୍ ସମ୍ବନ୍ଧରେ ଅନୁସନ୍ଧାନ ଆରମ୍ଭ ନ କରିବା ଯାଏ, ତମୁକୁ କିଛି ଭରସା ଦେଇପାରୁ ନାହିଁ ।

ତା'ହେଲେ ?

ତମ ଡାଡି ଆଉ ମମି ଘରେ ଅଛନ୍ତି ?

: ଥିଲେ ତ । କିନ୍ତୁ ଡାଡି ଅଫିସକୁ ଚାଲିଯିବେଣି । ମମି ବି ବାହାରି ଯିବେଣି କୁଆଡ଼େ ।

ତମ ମମିଙ୍କ ସମ୍ବନ୍ଧରେ ତମର ଧାରଣା କ'ଣ ?

ମୋଟାମୋଟି ଭଲ । ମୋ' ପ୍ରତି ତାଙ୍କର କେବେ ଖରାପ ଧାରଣା କିଛି ଥିଲାପରି ମନେହୁଏ ନାହିଁ ।

: ତମ ମମିଙ୍କର ଘର କେଉଁଠି ? ମାନେ ସେ କେଉଁଠିକାର ଝିଅ ? ତାଙ୍କର ବଂଶପରିଚୟ କିଛି ତମକୁ ଜଣାଅଛି ?

ନା, ତେବେ ମୁଁ ଦିନେ ଡାଡିଙ୍କ ମୁହଁରୁ ଶୁଣିଥିଲି, ମମିଙ୍କ ପୈତୃକ ଘର ବମ୍ବେରେ । ମମି ସେଠିକାର ଜଣେ ରକ୍ଷଣଶୀଳ ପରିବାରର କନ୍ୟା ।

ହୁଁ ଠିକ୍ ଅଛି । ଆଚ୍ଛା ତମେ ଏଥର ଘରକୁ ଯାଅ । ଘରେ ଥିବ । ଆଜି କୁଆଡ଼େ ବାହାରିବ ନାହିଁ । ସନ୍ଧ୍ୟା ସୁଦ୍ଧା ମୁଁ ତୁମକୁ ଫୋନ କରି କହିବି, କ'ଣ କରିବ ନ କରିବ ।

ମଡର୍ଣ୍ଣ ଟିଉବ୍‌ସ କମ୍ପାନୀ ଅଫିସରେ ପହଞ୍ଚି ସତ୍ୟବ୍ରତ ମହାପାତ୍ର ରିସେପ୍‌ସନିଷ୍ଟ ଟେବୁଲରେ ନିଜର ନାମାଙ୍କିତ କାର୍ଡଟି ଦେଲେ ।

ରିସେପ୍‌ନିଷ୍ଟ ମୁଣ୍ଡ ଟେକି ଚାହିଁଲା ।

ସତ୍ୟବ୍ରତ ମହାପାତ୍ର କହିଲେ ରଙ୍ଗନାଥ ଶ୍ରୀବାସ୍ତବଙ୍କୁ ପଠାଇ ଦିଅନ୍ତୁ ।

ରିସେପ୍‌ନିଷ୍ଟ କିଛି ସମୟ ସତ୍ୟବ୍ରତ ମହାପାତ୍ର ମୁହଁକୁ ଏକ ଲୟରେ ଅନାଇ ରହି, ଟେଲିଫୋନର ରିସିଭର ଉଠାଇ ଡାଏଲ କଲା ।

ଇଏସ୍ ବସ୍ । ମିଷ୍ଟର ମହାପାତ୍ର । କ୍ରିମିନଲୋଜିଷ୍ଟ ।

ସତ୍ୟବ୍ରତ ଆଉ କିଛି ଶୁଣିପାରିଲେ ନାହିଁ । ରିସେପ୍‌ନିଷ୍ଟ ଆଉଥରେ ଚାହିଁ ସ୍ମିତ ହସି କହିଲା  ବସ୍ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି ।

ସତ୍ୟବ୍ରତ ମହାପାତ୍ର ରିସେପ୍ସନିଷ୍ଟଙ୍କୁ ଧନ୍ୟବାଦ ଦେଇ ଉଠିଗଲେ ।

ପ୍ରକୃତରେ ରଙ୍ଗନାଥ ଶ୍ରୀବାସ୍ତବ ସତ୍ୟବ୍ରତ ମହାପାତ୍ରଙ୍କୁ ଅପେକ୍ଷା କରିବସିଥିଲେ ।

ସତ୍ୟବ୍ରତ ମହାପାତ୍ରଙ୍କ ସହିତ କରମର୍ଦ୍ଦନ କରି କହିଲେ  ଆସନ୍ତୁ ରହସ୍ୟ ସନ୍ଧାନୀ । ଆଜି ହଠାତ୍ ବାଟ ଭୁଲି ଏଆଡ଼େ ଚାଲିଆସିଲେ ଯେ ।

: ବାଟ ଭୁଲିବି କାହିଁକି ମିଷ୍ଟର ଶ୍ରୀବାସ୍ତବ । ଆପଣଙ୍କ ନିମନ୍ତ୍ରଣ ରକ୍ଷା କଲି । ଆପଣଙ୍କ ମନେ ନାହିଁ ? ଦୁଇ ବର୍ଷ ତଳେ ଗ୍ରାଣ୍ଡ ହୋଟେଲରେ ସେଇ ପାର୍ଟିରେ ଆପଣଙ୍କ ସହିତ ଦେଖା ହୋଇଥିଲା । ଆପଣ ମୋତେ ସେଦିନ ନିମନ୍ତ୍ରଣ କରି ନ ଥିଲେ ?

ଶ୍ରୀବାସ୍ତବ ହୋ ହୋ ହୋଇ ହସିଉଠିଲେ ।

ଅନେକ ଦିନ ପରେ ସେ ବୋଧହୁଏ ଏପରି ପ୍ରାଣ ଖୋଲି ହସିପାରିଲେ ।

କହିଲେ  ବାସ୍ତବିକ ଆପଣଙ୍କର ତୁଳନା ହୁଏ ନାହିଁ ମିଷ୍ଟର ମହାପାତ୍ର । ଆପଣ ଖାଲି ରହସ୍ୟସନ୍ଧାନୀ ନୁହନ୍ତି, ଆପଣ ଜଣେ ମାନେ...

ହଠାତ୍ ସତ୍ୟବ୍ରତ ମହାପାତ୍ରଙ୍କ ଆଖି ଉପରେ ଆଖି ପଡ଼ିବାରୁ ସେ ନୀରବ ହୋଇଗଲେ । ସତ୍ୟବ୍ରତ ମହାପାତ୍ର ଟେବୁଲ ଉପରେ ଫ୍ରେମରେ ଅଣ୍ଟା ହୋଇଥିବା ଗୋଟିଏ ଫଟୋ ଆଡ଼େ ନିର୍ନିମେଷ ନୟନରେ ଅନାଇ ରହିଥିଲେ ।

ଏକ୍‌ସକିଉଜ ମି. ମିଷ୍ଟର ଶ୍ରୀବାସ୍ତବ । ଏହି ମହିୟସୀ ମହିଳା ବୋଧହୁଏ ମିସେସ ଶ୍ରୀବାସ୍ତବ ।

ରଙ୍ଗନାଥ ଶ୍ରୀବାସ୍ତବ୍ ପାଟି ଫିଟେଇଲେ ନାହିଁ । କେବଳ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ସେତିକିବେଳେ ଟେଲିଫୋନ୍‌ଟା ବାଜିଉଠିଲା । ମିଷ୍ଟର ଶ୍ରୀବାସ୍ତବ ରିସିଭର ଉଠାଇ କଥାବାର୍ତ୍ତା ହେଲେ । ଅଳ୍ପ ସମୟ ପରେ ରିସିଭରଟା ରଖିଦେଇ ଶ୍ରୀବାସ୍ତବ କହିଲେ  ମନେହେଉଛି, ମିସେସ ଶ୍ରୀବାସ୍ତବଙ୍କ ସହିତ ଆପଣ ପୂର୍ବରୁ ପରିଚିତ ।

ତଥାପି ସତ୍ୟବ୍ରତ ମହାପାତ୍ର ସେହି ଫଟୋ ଆଡ଼େ ଅପଲକ ଆଖିରେ ଚାହିଁ ରହିଥିଲେ । କହିଲେ : ନା ମୁଁ ମିସେସ ଶ୍ରୀବାସ୍ତବଙ୍କ ସହିତ ପରିଚିତ ନୁହେଁ, ତେବେ କେଉଁଠି ଦେଖିଲାପରି ମନେହେଉଛି । କେଉଁଠି ଦେଖିଥିଲି, ସ୍ଥାନଟା ମନେପଡୁ ନାହିଁ ।

: ଆଚ୍ଛା ମିଷ୍ଟର ମହାପାତ୍ର ! କ'ଣ କହିବାକୁ ଯାଇ ମିଷ୍ଟର ଶ୍ରୀବାସ୍ତବ ନୀରବ ହୋଇଗଲେ ।

ସତ୍ୟବ୍ରତ ଏଥର ଫଟୋ ଉପରୁ ଦୃଷ୍ଟି ଫେରେଇ ଆଣି ଶ୍ରୀବାସ୍ତବଙ୍କ ମୁହଁ ଉପରେ ନିବଦ୍ଧ କଲେ ।

କୁହନ୍ତୁ ମିଷ୍ଟର ଶ୍ରୀବାସ୍ତବ । ଅଟକିଲେ କାହିଁକି ?

ମୁଁ ଭାବୁଚି ଆପଣ ଆଜି ଆସି ଭଲ କରିଛନ୍ତି । ହୁଏତ ଭଗବାନଙ୍କର ଅଭିପ୍ରେତ ଆପଣ ।

ମାନେ ?

: ନା, ମାନେ କିଛି ନୁହେଁ ଯେ, ମୁଁ ଆପଣଙ୍କ ସହିତ କିଛି ସମୟ ନିରୋଳାରେ ଗଳ୍ପ କରିବାକୁ ଚାହେଁ । ଏ କେତେ ଦିନ ହେବ ମୁଣ୍ଡଟା ଭୀଷଣ ଭାବରେ ଜାମ୍ ହୋଇଯାଇଛି । ଆପଣଙ୍କର ଯଦି ସମୟ ଥାଏ...

: ସମୟ ମୋର ଯଥେଷ୍ଟ ଅଛି ମିଷ୍ଟର ଶ୍ରୀବାସ୍ତବ । ମୁଁ ପ୍ରସ୍ତୁତ ହୋଇଆସିଛି ଆପଣଙ୍କ ସହିତ ଗଳ୍ପ କରିବା ପାଇଁ, କ'ଣ ଏଇଠି ବସି ଗଳ୍ପ କରିବା ନା ଅନ୍ୟ କେଉଁଠି...

ଚେମ୍ବରର ଦରଜା ଖୋଲି ବେହେରା ଭିତରେ ପ୍ରବେଶ କଲା । ହାତରେ ଖଣ୍ଡିଏ ସ୍ଲିପ ।

ରଙ୍ଗନାଥ ଶ୍ରୀବାସ୍ତବ ସ୍ଲିପ୍‌ଟା ଉପରେ ଆଖି ପକାଇ କହିଲେ ସାହେବଙ୍କୁ କାଲି ଏଗାରଟା ବେଳକୁ ଆସିବାକୁ କହ । ଡ୍ରାଇଭରକୁ କହ ଗାଡ଼ି ବାହାର କରିବ ।

ବେହେରା ଫେରିଗଲା ।

ରଙ୍ଗନାଥ ଶ୍ରୀବାସ୍ତବ ଟେବୁଲ ଉପରେ କାଗଜପତ୍ର ସଜାଡୁ ସଜାଡୁ କହିଲେ ମିଷ୍ଟର ମହାପାତ୍ର ! ସତ କହିବାକୁ ଗଲେ, ଆପଣଙ୍କୁ ବର୍ତ୍ତମାନ ଏଇ ମୁହୂର୍ତ୍ତରେ ପାଇ ମୁଁ ଖୁବ୍ ଆନନ୍ଦିତ । ଚାଲନ୍ତୁ ।

ରଙ୍ଗନାଥ ଶ୍ରୀବାସ୍ତବ ଉଠି ଠିଆହେଲେ ।

ସେମାନେ ଧୀରେ ଧୀରେ ଘରୁ ବାହାରି ଲିଫ୍‌ଟରେ ତଳକୁ ଓହ୍ଲେଇଗଲେ ।

ଦରଜା ମୁହଁରେ ଗାଡ଼ି ଠିଆ ହୋଇଥିଲା ।

ପ୍ରଥମେ ରଙ୍ଗନାଥ ଶ୍ରୀବାସ୍ତବ ଓ ପରେ ସତ୍ୟବ୍ରତ ମହାପାତ୍ର ଗାଡ଼ିରେ ଉଠିଲେ ।

ଗାଡ଼ି ଛୁଟି ଚାଲିଲା ଉର୍ଦ୍ଧ୍ୱଶ୍ୱାସରେ ।

ଦୁହେଁ ନୀରବ । ରଙ୍ଗନାଥ ଶ୍ରୀବାସ୍ତବ ଯେପରି ଗଭୀର ଚିନ୍ତାମଗ୍ନ ।

ସତ୍ୟବ୍ରତ ବୁଝିପାରୁଥିଲେ ଶ୍ରୀବାସ୍ତବଙ୍କ ମନର ଅବସ୍ଥା । ନିଶ୍ଚୟ ଗୋଟାଏ କିଛି ଦ୍ୱନ୍ଦ୍ୱ ଦେଖାଦେଇଛି ତାଙ୍କ ଭିତରେ । ଯାହା ପ୍ରକାଶ କରିବାର ପଥ ସେ ଖୋଜି ପାଉ ନାହାନ୍ତି ।

ଗାଡ଼ି ଚାଲିଥିଲା ।

ଲକ୍ଷ୍ୟସ୍ଥଳ କେଉଁଠି ଜାଣି ନ ଥିଲେ ସତ୍ୟବ୍ରତ ।

ହଠାତ୍ ଶ୍ରୀବାସ୍ତବ ସ୍ୱପ୍ନରୁ ଉଠିଲା ପରି କହିଲେ ମିଷ୍ଟର ମହାପାତ୍ର ଆପଣ

ନିଶ୍ଚୟ ଜାଣନ୍ତି, ମୁଁ ଦ୍ୱିତୀୟଥର ବିବାହ କରିଛି । ମୋ' ସ୍ତ୍ରୀ ମନ୍ଦିରା । ମୋଠୁ ପନ୍ଦର ବର୍ଷର ସାନ । ସୁନ୍ଦରୀ । ବିଦୁଷୀ ।

ରଙ୍ଗନାଥ ଶ୍ରୀବାସ୍ତବ ଯେପରି ହଠାତ୍ କଥା ଆରମ୍ଭ କରିଥିଲେ, ପୁଣି ହଠାତ୍ ନୀରବ ହୋଇଗଲେ । ତାଙ୍କର ବୁଦ୍ଧିଦୀପ୍ତ ମୁଖମଣ୍ଡଳରେ କ୍ଲାନ୍ତିର ଘନଛାୟା ନଇଁ ଆସିଥିଲା ।

ସତ୍ୟବ୍ରତ ନୀରବତା ଭଙ୍ଗ କଲେ ମିଷ୍ଟର ଶ୍ରୀବାସ୍ତବ ! ଆପଣ ନୀରବ ହୋଇଗଲେ କାହିଁକି ? ଆପଣ ବିବାହ କରିଛନ୍ତି, ଏହା ତ କିଛି ନିନ୍ଦାର କଥା ନୁହେଁ । ଆପଣଙ୍କ ସ୍ତ୍ରୀ ମନ୍ଦିରା ଦେବୀ, ଆପଣଙ୍କର ସୁଖର ସଂସାର...

ନା ମିଷ୍ଟର ମହାପାତ୍ର । ଆପଣ ଜାଣି ନାହାନ୍ତି ମୋ' ଜୀବନ ରହସ୍ୟ । ସଂସାର ମୋର ଏକଦା ସୁଖର ଥିଲା । ଆଜି କିନ୍ତୁ ସୁଖ କେବଳ ସ୍ୱପ୍ନ ପରି ମନେହୁଏ । ଆଜି ମୁଁ ଭାବୁଛି ମୋର ଆଉଥରେ ବିବାହ କରିବା ଉଚିତ ହୋଇନାହିଁ ।

କାହିଁକି ମିଷ୍ଟର ଶ୍ରୀବାସ୍ତବ୍ ? ଲୋକେ ଦୁଇଥର କାହିଁକି, ପ୍ରୟୋଜନ ହେଲେ ତିନି ଚାରିଥର ମଧ୍ୟ ବିବାହ କରୁଛନ୍ତି । ଆପଣଙ୍କ ବୟସ ଯେ ଖୁବ୍ ଗୋଟାଏ ଅତିରିକ୍ତ ହୋଇଯାଇଛି ସେପରି କିଛି ନୁହେଁ । ଆପଣଙ୍କ ସ୍ତ୍ରୀ ଆପଣଙ୍କ ଠାରୁ ପନ୍ଦର ବର୍ଷ ସାନ । କ'ଣ ଅଛି ସେଥିରେ !!

ଘଟଣା ତାହା ନୁହେଁ ମିଷ୍ଟର ମହାପାତ୍ର । ଯେକୌଣସି କାରଣରୁ ହେଉ ମୋର ବିବାହିତ ଜୀବନ ଦିନକୁଦିନ ଯନ୍ତ୍ରଣାଦାୟକ ହୋଇଉଠୁଛି, ମୋର ମନେହେଉଛି ମନ୍ଦିରା ଯେପରି ମୋତେ ବିବାହ କରିଥିଲା ସୁଖର ସଂସାର ଗଢ଼ିବା ପାଇଁ ନୁହେଁ, ତା'ର ଉଦ୍ଦେଶ୍ୟ ସାଧନ କରିବା ପାଇଁ ।

ଉଦ୍ଦେଶ୍ୟ ମାନେ ?

ହଁ ମିଷ୍ଟର ମହାପାତ୍ର । ସେ ଏପରି ଏକ ବ୍ୟଥା ମୋ' ଛାତି ଭିତରେ ମୋତେ ଦଂଶନ କରୁଛି, ଯାହା ମୁଁ ଖୋଲି କରି କାହାକୁ କହିପାରୁ ନାହିଁ । ମନ୍ଦିରାର କାର୍ଯ୍ୟକଳାପ ଦିନକୁଦିନ ମୋତେ ଯେପରି ରହସ୍ୟମୟ ମନେହେଉଛି ।

ମୁଁ ଆପଣଙ୍କ କଥାର ଅର୍ଥ କିଛି ବୁଝିପାରୁ ନାହିଁ ମିଷ୍ଟର ଶ୍ରୀବାସ୍ତବ । ଆପଣ କ'ଣ ମନ୍ଦିରା ଦେବୀଙ୍କୁ ବିଶ୍ୱାସ କରିପାରୁ ନାହାନ୍ତି ?

ନା, ତା ବି ନୁହେଁ । କିନ୍ତୁ କେଜାଣି କାହିଁକି ଏ କେତେ ମାସ ହେଲା ମନ୍ଦିରାର ଗତିବିଧି ମୋତେ କିଛି ଭଲ ଲାଗୁ ନାହିଁ ।

ଗାଡ଼ି ଯାଇ ଏକ କୋଠା ସାମ୍ନାରେ ଠିଆହେଲା ।

ଶ୍ରୀବାସ୍ତବ ଗାଡ଼ିରୁ ଓହ୍ଲାଉ ଓହ୍ଲାଉ କହିଲେ ଆସନ୍ତୁ । ଆଜି ନିରୋଳାରେ ବସି କିଛି ସମୟ ଆପଣଙ୍କ ସହିତ କଥାବାର୍ତ୍ତା ହେବା ।

ଶ୍ରୀବାସ୍ତବ ଆଗେଆଗେ ଓ ସତ୍ୟବ୍ରତ ପଛେପଛେ ଚାଲିଲେ ।

ଗୋଟିଏ ଦୋତାଲା ସୁନ୍ଦର କୋଠାଘର ।

ମାର୍ବଲ ପାହାଚ ଅତିକ୍ରମ କରୁ କରୁ ଶ୍ରୀବାସ୍ତବ କହିଲେ : ଏଇ ଘରଟି ମୋ' ପ୍ରଥମ ଜୀବନର ନିଦର୍ଶନ । ଏଇଠି ମୁଁ ବଡ଼ ହୋଇଛି । ମୋର ସଂଗ୍ରାମମୟ ଜୀବନ କଟାଇଛି । ଏଇ ଘରେ ମୋର ପ୍ରଥମ ବିବାହିତ ଜୀବନ ଆରମ୍ଭ ହୋଇଥିଲା ।

ପ୍ରଥମ ଘରର ଦରଜା ଖୋଲି ଭିତରକୁ ପଶିବାକ୍ଷଣି ଗୋଟାଏ ବିରାଟ ତୈଳଚିତ୍ର ସାମ୍ନାରେ ଶ୍ରୀବାସ୍ତବ ଠିଆ ହୋଇପଡ଼ିଲେ । ଆଖି ତାଙ୍କର ଛଳଛଳ ହୋଇଉଠିଲା ।

ବାସନ୍ତୀ ! ମୋର ପ୍ରଥମ ସ୍ତ୍ରୀ । ଏହାଙ୍କ ସହିତ ମୋ' ସୁଖଦୁଃଖର ଅନେକ ବର୍ଷ କଟିଛି । ମୋର ଏକମାତ୍ର କନ୍ୟା ରଞ୍ଜୁର ଜନ୍ମଦାତ୍ରୀ । କିନ୍ତୁ ମିଷ୍ଟର ମହାପାତ୍ର ! ବାସନ୍ତୀ ଖୁବ୍ ନିଷ୍ଠୁର । ସେ ମୋତେ ନିର୍ଦ୍ଦୟ ଭାବରେ ଛାଡ଼ି ଚାଲିଗଲା ।

ଶ୍ରୀବାସ୍ତବ ଅନେକ ସମୟ ପରେ ପ୍ରକୃତିସ୍ଥ ହେଲେ । କହିଲେ : ଏଇ ଘରଟା କେବଳ ବାସନ୍ତୀର ସ୍ମୃତିରେ ମୁଁ ଭରି ରଖିଛି । ଏଠି ଆମେ କେହି ରହୁ ନାହିଁ । କିନ୍ତୁ ମୁଁ ଖୁବ୍ ବିବ୍ରତ ବୋଧ କଲେ, ଏଇଠିକି ଚାଲିଆସେ । ନିରୋଳାରେ ଅନେକ ସମୟ ବସି ରହେ । ଆପଣ ବିଶ୍ୱାସ କରିବେ ନାହିଁ ମିଃ ମହାପାତ୍ର, ଦୁଇ ତିନିଘଣ୍ଟା ପରେ ମୁଁ ପୁଣି ଆତ୍ମସଚେତନ ହୋଇଉଠେ । କର୍ମପ୍ରେରଣା ଫେରିପାଏ । ସମସ୍ତ ଗ୍ଲାନି ସମସ୍ତ ଅବଶୋଷ କୁଆଡ଼େ ଦୂରେଇ ଯାଏ, ମୁଁ ଯେପରି ନବଜନ୍ମ ପାଏ ।

ଶ୍ରୀବାସ୍ତବ ଗୋଟିଏ ସୋଫା ଉପରେ ବସିଲେ ଏବଂ ସତ୍ୟବ୍ରତଙ୍କୁ ସାମ୍ନାରେ ବସିବା ପାଇଁ ଅନୁରୋଧ ଜଣାଇଲେ ।

ସତ୍ୟବ୍ରତ ନୀରବରେ ବାସନ୍ତୀ ଦେବୀଙ୍କ ତୈଳଚିତ୍ର ଆଡ଼େ ଚାହିଁଥିଲେ । ନୀରବତା ଭଙ୍ଗ କରି କହିଲେ  ବେଳେବେଳେ ମଣିଷ ଜୀବନରେ ସମସ୍ୟା ଦେଖାଦିଏ । ପୁଣି ସମାଧାନ ବି ହୋଇଯାଏ । ଆପଣଙ୍କ ଘରୋଇ ଜୀବନ ଆଜି ଟିକିଏ ଭାରାକ୍ରାନ୍ତ ହୋଇଉଠିଛି । କିଛି ଦିନ ପରେ ପୁଣି ସବୁ ଠିକ୍ ହୋଇଯିବ ।

ଶ୍ରୀବାସ୍ତବଙ୍କ ମୁଖମଣ୍ଡଳ କିପରି ଅସ୍ୱାଭାବିକ ହୋଇଉଠିଲା । ସେ କହିଲେ : ଆପଣ ମୋର ଅନ୍ତର୍ଦାହ କଥା ବୁଝିପାରୁ ନାହାନ୍ତି ମିଷ୍ଟର ମହାପାତ୍ର, ମୁଁ ବି ପ୍ରକାଶ କରିପାରୁ ନାହିଁ । କିନ୍ତୁ ମିଷ୍ଟର ମହାପାତ୍ର, ମୋର ଆପଣଙ୍କୁ ଆଜି ଖୁବ୍ ପ୍ରୟୋଜନ ଥିଲା । ହୁଏତ ଭଗବାନ ଆପଣଙ୍କୁ ମୋ' ପାଖକୁ ପଠାଇଛନ୍ତି । ମୁଁ ଲକ୍ଷ୍ୟ କରିଛି ମୋ' ଜୀବନରେ କେବେ କୌଣସି ବ୍ୟତିକ୍ରମ ଦେଖା ଦେଲେ, ଭଗବାନ ମୋତେ ସହାୟ ହୁଅନ୍ତି । ଆପଣଙ୍କୁ ମୁଁ ଆଜି ମୋ' ଜୀବନର ଏକ ଗୋପନ କଥା କହିବାକୁ ଚାହେଁ ଏବଂ ମୋର ବିଶ୍ୱାସ ମୋ' ଜୀବନର ଗୋପନ କଥା ଆପଣଙ୍କ ନିକଟରେ ଗୋପନ ରହିବ ।

ଶ୍ରୀବାସ୍ତବ କଥା ଶେଷ କରି ମୋ' ମୁହଁକୁ ଅନାଇ ରହିଲେ ।

ସେ ବିଶ୍ୱାସ ଆପଣ ରଖିପାରନ୍ତି ମିଷ୍ଟର ଶ୍ରୀବାସ୍ତବ ।

ତା'ପରେ କେତୋଟି ମୁହୂର୍ତ୍ତ ନୀରବରେ କଟିଗଲା ।

ବୁଝିଲେ ମିଷ୍ଟର ମହାପାତ୍ର ! ମୋର କାହିଁକି ମନେହେଉଛି, ମୋର ଏକମାତ୍ର କନ୍ୟା ରଞ୍ଜିତା ମୋତେ ଅବିଶ୍ୱାସ କରୁଛି । ଠିକ୍ ଅବିଶ୍ୱାସ ନୁହେଁ, ମୋ' ପ୍ରତି କିପରି ତା'ର ଅନସ୍ଥାଭାବ ଦେଖାଦେଇଛି ।

ମନ୍ଦିରା, ବର୍ତ୍ତମାନ ମୋର ସ୍ତ୍ରୀ । ଲୋକ ହିସାବରେ ସେ ମନ୍ଦ ନୁହେଁ । ରଞ୍ଜିତାକୁ ସେ ତା'ର ନିଜର କରିବାକୁ ଚାହେଁ, କିନ୍ତୁ ରଞ୍ଜିତା ତା'ଠାରୁ ଦୂରେଇ ରହୁଛି । ଜାଣନ୍ତି ମିଷ୍ଟର ମହାପାତ୍ର, ହୁଏତ ଏ ବିବାହ ମୋର ଭୁଲ୍ ହୋଇଛି, ଭୁଲ୍ ହୋଇଛି ଏଇ ଦୃଷ୍ଟିରୁ ରଞ୍ଜିତା ପରି ଏତେ ବଡ଼ ଝିଅ ଥାଉଥାଉ ଏତେ ଦିନ ପରେ ମୋର ବିବାହ କରିବା ଉଚିତ୍ ନ ଥିଲା । କିନ୍ତୁ ଯାହା ହୋଇଯାଇଛି, ତାହା ଆଉ ଫେରେଇ ଆଣିବାର ଉପାୟ ନାହିଁ । ମୁଁ ବୁଝିପାରୁ ନାହିଁ, ରଞ୍ଜିତା କ'ଣ ଚାହେଁ । କାହିଁକି ସେ ମନ୍ଦିରାକୁ ନିଜର ମା' ପରି ଗ୍ରହଣ କରିପାରୁ ନାହିଁ ।

ଏଣେ ମନ୍ଦିରା, ସେ ବି ଜଣେ ନାରୀ । ସେ ଚାହେଁ ତା' ସଂସାରରେ ସେ ଆଧିପତ୍ୟ ବିସ୍ତାର କରି ସର୍ବମୟୀ କର୍ତ୍ତ୍ରୀ ହୋଇ ରହିବା ପାଇଁ ।

ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଯାଇଛି ମିଷ୍ଟର ମହାପାତ୍ର ! ମୁଁ ବୁଝିପାରୁ ନାହିଁ ଏ କ୍ଷେତ୍ରରେ ମୋର କର୍ତ୍ତବ୍ୟ କ'ଣ ! ଦୁହେଁ ମୋ' ନିଜର, ଅତି ଆପଣାର । କାହାରି ପ୍ରତି ଅବହେଳା ମୁଁ କରୁନାହିଁ । କେହି ଅସନ୍ତୋଷରେ ରହୁ, ସେ କଥା ମଧ୍ୟ ମୁଁ ଚାହେ ନାହିଁ । କିନ୍ତୁ ହଠାତ୍ ଏ କ'ଣ ହେଲା ?

ଅବଶ୍ୟ କେହି କାହା ବିରୁଦ୍ଧରେ ମୁହଁ ଖୋଲି ପଦେ କିଛି କହି ନାହିଁ । ତଥାପି ମୁଁ ବୁଝିପାରୁଛି ଆମ ପରିବାରରେ କିପରି ଅଶାନ୍ତିର ଏକ ଝଡ଼ ଉଠିଆସୁଛି । ଆପଣ ମୋତେ ଟିକିଏ ସାହାଯ୍ୟ କରିପାରିବେ ମିଷ୍ଟର ମହାପାତ୍ର ? ମୋତେ ଟିକେ...

କଥା ଅସମାପ୍ତ ରଖି ଶ୍ରୀବାସ୍ତବ ନୀରବ ହୋଇଗଲେ । ସତ୍ୟବ୍ରତ ମହାପାତ୍ର ଚାହିଁଲେ ବାସନ୍ତୀ ଦେବୀଙ୍କ ତୈଳଚିତ୍ର ଆଡ଼କୁ । ଏକ ଶାନ୍ତ କମନୀୟ ମୂର୍ତ୍ତି ।

ଫେରିଚାହିଁଲେ ଶ୍ରୀବାସ୍ତବଙ୍କ ମୁହଁକୁ । ଏକ ଚିନ୍ତିତ, ବ୍ୟଥିତ ଅଶାନ୍ତ ପ୍ରତିମୂର୍ତ୍ତି ।

ନୀରବତା ଭଙ୍ଗ କରି ଧୀରେ ଧୀରେ କହିଲେ ତା'ହେଲେ ଆପଣ ମୋ' ଠାରୁ କ'ଣ ଚାହାନ୍ତି ମିଷ୍ଟର ଶ୍ରୀବାସ୍ତବ ସମସ୍ୟା ଆପଣଙ୍କର ଅତି ଘରୋଇ । ଆପଣଙ୍କ ସ୍ତ୍ରୀ ଓ ସନ୍ତାନଙ୍କୁ ନେଇ ଆପଣଙ୍କର ସମସ୍ୟା । ଆପଣ ଟିକିଏ ଅନୁଧ୍ୟାନ କରନ୍ତୁ । ଟିକିଏ ଉଦାର ହୁଅନ୍ତୁ । ସବୁ ସମାଧାନ ହୋଇଯିବ ।

ଏତେ ଦୁଃଖରେ ବି ଶ୍ରୀବାସ୍ତବ ହସିଉଠିଲେ ।

କହିଲେ ଆପଣ ରଞ୍ଜିତାକୁ ଜାଣନ୍ତି ନାହିଁ । ସେ ଭାରି ଅଭିମାନିନୀ । ଅତି ଅଳ୍ପ ଦିନରୁ ମା'କୁ ହରାଇଥିଲା । ମୁଇଁ ଥିଲି ତା'ର ବାପ, ମା', ସଖା, ସହୋଦର ।

ସେ ସବୁଦିନ ମୋ' ଉପରେ ତା'ର ଆଧିପତ୍ୟ ବିସ୍ତାର କରି ଆସିଥିଲା । ଆଜି ବି ତ ସେ ତା' ଆଧିପତ୍ୟ ପୂର୍ବପରି ବିସ୍ତାର କରିପାରନ୍ତା ! କିନ୍ତୁ କାହିଁକି, କାହିଁକି ସେ ଦୂରେଇ ଯାଉଛି କାହିଁକି ଆଜି ତା' ମୁହଁର ନିର୍ମଳ ହସ ଫିକା ହୋଇଯାଉଛି ? ମୁଁ ଏହାର ଅନ୍ତର୍ନିହିତ କାରଣ ଜାଣିବାକୁ ଚାହେଁ ମିଷ୍ଟର ମହାପାତ୍ର । ଆପଣ ଏକମାତ୍ର ଲୋକ, ଯିଏ କି ମୋତେ ଏଇ ସଙ୍କଟରୁ ଉଦ୍ଧାର କରିପାରିବେ । ତା' ନହେଲେ ମୋର ସୁନାର ସଂସାର ଭାଙ୍ଗି ଚୁରମାର୍ ହୋଇଯିବ ।

କିନ୍ତୁ ମିଷ୍ଟର ଶ୍ରୀବାସ୍ତବ...

କୁହନ୍ତୁ । ଅଟକିଗଲେ କାହିଁକି ?

ଗୋଟାଏ ସମସ୍ୟା । ଆପଣଙ୍କ ସମସ୍ୟାର ମୂଳସୂତ୍ର ବାହାର କରିବା ପାଇଁ ହେଲେ, ମୋତେ ଆପଣଙ୍କ ପରିବାରର ଜଣେ ଅତି ବିଶ୍ୱାସୀ ବନ୍ଧୁ ଭାବରେ ପରିଚିତ ହେବାକୁ ପଡ଼ିବ । ଆପଣଙ୍କ ପରିବାର ମଧ୍ୟରେ ମୋର ଅବାଧ ଗତି ରହିବାକୁ ହେବ । ତାହା ସମ୍ଭବ ହେବ କିପରି ?

ସମ୍ଭବ ହେବ ମିଷ୍ଟର ମହାପାତ୍ର । ମୁଁ ସବୁର ବନ୍ଦୋବସ୍ତ କରିଦେବି । ଆପଣ ଖାଲି କଥା ଦିଅନ୍ତୁ । ଆପଣ ମୋ' ଅନ୍ତର୍ଦାହ କଥା ବୁଝିବେ ।

ରଞ୍ଜିତା ଶ୍ରୀବାସ୍ତବ ସତ୍ୟବ୍ରତ ମହାପାତ୍ରଙ୍କୁ ତା'ର ଡାଡିଙ୍କ ସହିତ କଥା କହୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।

ରଙ୍ଗନାଥ ଶ୍ରୀବାସ୍ତବ ରଞ୍ଜିତାକୁ ଡାକି କହିଲେ   ଶୁଣ ମା' । ଏ ହେଉଛନ୍ତି ସତ୍ୟବ୍ରତ ମହାପାତ୍ର । ତୋତେ ଘରେ ପଢ଼ାଇବେ । ଆଜିଠାରୁ ତୁ ତାଙ୍କ ପାଖରେ ପଢ଼ିବୁ ।

ରଞ୍ଜିତା ସତ୍ୟବ୍ରତ ମହାପାତ୍ରଙ୍କୁ ଯୋଡ଼ହସ୍ତରେ ପ୍ରଣାମ କଲା ।

ମନ୍ଦିରା ଶ୍ରୀବାସ୍ତବ ମଧ୍ୟ ସେଠାରେ ଉପସ୍ଥିତ ଥିଲେ ।

ରଙ୍ଗନାଥ ଶ୍ରୀବାସ୍ତବ ସତ୍ୟବ୍ରତ ଆଡ଼କୁ ଚାହିଁ କହିଲେ   ଆପଣଙ୍କ ଛାତ୍ରୀ

ଏଇ ରଞ୍ଜିତା । ଆଜିଠାରୁ ଆପଣ ତା'ର ଦାୟିତ୍ୱ ନିଅନ୍ତୁ । ତା'ର ପରୀକ୍ଷା ଆଉ ଦୁଇମାସ ରହିଲା ।

ସତ୍ୟବ୍ରତ ମହାପାତ୍ର ନୀରବରେ ଶ୍ରୀବାସ୍ତବଙ୍କ କଥା ଶୁଣୁଥିଲେ ।

ଶ୍ରୀବାସ୍ତବ ମନ୍ଦିରା ଦେବୀଙ୍କ ଆଡ଼େ ଚାହିଁ କହିଲେ ତମ ସହିତ ମଧ୍ୟ ମିଷ୍ଟର ମହାପାତ୍ରଙ୍କର ପରିଚୟ କରାଇ ଦିଏ । ଇଏ ଜଣେ ବିଖ୍ୟାତ ସାଇକଲୋଜିଷ୍ଟ । ବହୁତ ଖୋଜି ଏହାଙ୍କୁ ମୁଁ ପାଇଛି । ରଞ୍ଜିତାର ଜଣେ ଗାଇଡ୍ ଦରକାର ଥିଲେ । ଆଶା କରୁଛି, ତମେ ମଧ୍ୟ ସତ୍ୟବ୍ରତ ମହାପାତ୍ରଙ୍କୁ ପାଇ ଖୁସି ହେବ ।

ସତ୍ୟବ୍ରତ ମହାପାତ୍ର ମନ୍ଦିରା ଦେବୀଙ୍କୁ ଯୋଡ଼ହସ୍ତରେ ପ୍ରଣାମ ଜଣାଇଲେ ।

ନୀରବତା ଭିତରେ ସମସ୍ତେ ଚା' ପିଉଥିଲେ ।

ଶ୍ରୀବାସ୍ତବ ପୁଣି ଆରମ୍ଭ କଲେ ମିଷ୍ଟର ମହାପାତ୍ର, ଆମ ପରିବାର ବୋଇଲେ ଆମେ ଏଇ ତିନିଜଣ । କିଛି ଦିନ ପାଇଁ ଆପଣ ଆମ ଅତିଥି । ଆପଣଙ୍କ ପାଇଁ ଉଦ୍ଦିଷ୍ଟ ଘର ରଞ୍ଜିତା ଆପଣଙ୍କୁ ଦେଖାଇ ଦେବ । ଆପଣ ଅନ୍ତତଃ ଦୁଇଟା ମାସ ଆମ ଏଠି ରହିଯାଇ ରଞ୍ଜିତାକୁ ପଢ଼ାଶୁଣାରେ ଟିକିଏ ସାହାଯ୍ୟ କରିବେ । ମୁଁ ଚାହେଁ ରଞ୍ଜିତା ଫାଷ୍ଟକ୍ଲାସ ପାଉ । ଆଶା କରୁଛି, ଆପଣ ମୋ' ମନକଥା ବୁଝିପାରିଛନ୍ତି ।

ମନ୍ଦିରା ଶ୍ରୀବାସ୍ତବ ନୀରବରେ ବସିଥିଲେ ଏବଂ ନୀରବରେ ଚା'ଖିଆ ପର୍ବ ଶେଷକରି, ନୀରବରେ ଉଠି ଚାଲିଗଲେ । ରଞ୍ଜିତା ବି ମୁହଁ ବୁଜି ବସି ରହିଥିଲା ଏବଂ ଶେଷରେ ମୁହଁ ବୁଜି ଉଠି ଚାଲି ଯାଇଥିଲା ।

ଶ୍ରୀବାସ୍ତବ ପଛରୁ ଡାକି କହିଲେ ରଞ୍ଜୁ ! ମିଷ୍ଟର ମହାପାତ୍ରଙ୍କୁ ସଙ୍ଗରେ ନେଇଯା । ତାଙ୍କର ରହିବା ବନ୍ଦୋବସ୍ତ କରିଦିଏ ।

ରଞ୍ଜିତା ଫେରିଆସି ସତ୍ୟବ୍ରତଙ୍କ ସାମ୍ନାରେ ଠିଆହେଲା ।

ସତ୍ୟବ୍ରତ ଚେଆରରୁ ଉଠୁ ଉଠୁ କହିଲେ ଚାଲ ।

ଦୁହେଁ ଚାଲିଗଲେ ।

ଶ୍ରୀବାସ୍ତବ ସେମାନଙ୍କ ଯିବା ପଥକୁ ଚାହିଁଥିଲେ ।

କିଛି ଦୂର ଆଗେଇ ଯିବା ପରେ ରଞ୍ଜିତା କହିଲା ମୁଁ ଦେଖୁଛି ତ ଆପଣ ଜଣେ ସାଂଘାତିକ ଲୋକ ମିଷ୍ଟର ମହାପାତ୍ର ।

ତମେ ମତେ ଦେଖିଲ କେତେବେଳେ ! ଧୀରେ ଧୀରେ ମୋର ବିସ୍ତାର ଦେଖିବ । ଯାହାହେଉ, ମୋତେ ଏପରି ଗୋଟିଏ ଘରେ ରହିବାର ବନ୍ଦୋବସ୍ତ କରିଦିଅ, ଯେପରି ସେଉଠୁ ଥାଇ ମୁଁ ସମସ୍ତଙ୍କ ଗତିବିଧି ଲକ୍ଷ୍ୟ କରିପାରିବି ।

ଆପଣ ଆସନ୍ତୁ । ଉପର ମହଲାର ଶିଡ଼ି ପାଖ ଘରଟା ମୁଁ ଆପଣଙ୍କୁ ଦେଇ ଦେଉଛି । ସେଉଠୁ ଥାଇ ଆପଣ ସମସ୍ତଙ୍କୁ ଦେଖିପାରିବେ । ସେଇ ଶିଡ଼ି ପାଖ ଝରକା ପାଖରେ ବସି ଆପଣ ଚାହିଁଲେ ଆମ ସଦର ଗେଟ୍‌ଟା ବି ଦେଖି ହେବ ।

ରଞ୍ଜିତା ଆଗେଆଗେ ଓ ସତ୍ୟବ୍ରତ ପଛେପଛେ ଆଗେଇ ଥିଲେ ।

ଶିଡ଼ି ଉଠି ନିର୍ଦ୍ଦିଷ୍ଟ ଘର ଦୂଆର ମୁହଁରେ ପହଞ୍ଚିଲା ବେଳକୁ ଦେଖାଗଲା, ଘରଟି ଖୋଲା ଏବଂ ଘର ଭିତରେ ମନ୍ଦିରା ଦେବୀ ନିଜ ହାତରେ ସମସ୍ତ ଆସବାବପତ୍ର ସଜାଡ଼ିବାରେ ଲାଗିଛନ୍ତି ।

ସତ୍ୟବ୍ରତ ମହାପାତ୍ରଙ୍କୁ ଥମକି ଠିଆ ହୋଇଯିବାର ଦେଖି କହିଲେ ଆସନ୍ତୁ ମିଷ୍ଟର ମହାପାତ୍ର । ଆଶା କରୁଛି ଆପଣ ଏଇ ଘରଟି ପସନ୍ଦ କରିବେ । ରଞ୍ଜିତା ଆମର ଏକମାତ୍ର ସନ୍ତାନ । ତା'ର ଉନ୍ନତି ପାଇଁ ଆମେ ସର୍ବାନ୍ତଃକରଣରେ ଚେଷ୍ଟା କରୁଛୁ । ଆଶା କରୁଛୁ, ଆପଣଙ୍କ ହାତଯଶ ରହିବ ।

ମନ୍ଦିରା ଶ୍ରୀବାସ୍ତବ୍ ତଥାପି ଘରର ପ୍ରତ୍ୟେକଟି ଆସବାବପତ୍ର ତନଖି ତନଖି ଦେଖୁଥିଲେ । କେଉଁଠି ଧୂଳି ପଡ଼ିଛି, କେଉଁଠି ଜିନିଷପତ୍ରଗୁଡ଼ିକ ଅସଜଡ଼ା ହୋଇରହିଛି । ସବୁ ସେ ସଜାଡ଼ିବାରେ ଲାଗିଥିଲେ ।

ବସନ୍ତୁ ମିଷ୍ଟର ମହାପାତ୍ର । ଆପଣ ଠିଆ ହେଲେ କାହିଁକି ?

ସତ୍ୟବ୍ରତ ମନ୍ଦିରା ଦେବୀଙ୍କର ଅକୃତ୍ରିମ କଣ୍ଠସ୍ୱର ଶୁଣି ଚକିତ ହୋଇଗଲେ । ସେ ଧୀରେଧୀରେ ଗୋଟିଏ ସୋଫା ଉପରେ ବସୁ ବସୁ କହିଲେ: ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମିସେସ୍ ଶ୍ରୀବାସ୍ତବ । ମୁଁ ସବୁ ସଜାଡ଼ି ନେବି । ନ ହେଲେ ରଞ୍ଜିତା ତ ଅଛି । ସେ ସବୁ କରିଦେଇପାରିବ ।

ମନେହେଲା ସତ୍ୟବ୍ରତ ମହାପାତ୍ରଙ୍କ କଥାରେ ଯେପରି ମନ୍ଦିରା ଶ୍ରୀବାସ୍ତବ ସ୍ତବ୍ଧ ହେଲେ । କହିଲେ ଆପଣଙ୍କୁ ମୋର ଗୋଟିଏ ଅନୁରୋଧ ମିଷ୍ଟର ମହାପାତ୍ର । ଆପଣ ମୋତେ ମିସେସ ଶ୍ରୀବାସ୍ତବ କହିବେ ନାହିଁ । ବରଂ ମନ୍ଦିରା ଦେବୀ କୁହନ୍ତୁ ।

ସତ୍ୟବ୍ରତ ମହାପାତ୍ର କେତେକ ମୁହୂର୍ତ୍ତ ମନ୍ଦିରା ଶ୍ରୀବାସ୍ତବଙ୍କ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ ଧୀରେଧୀରେ ଦୃଷ୍ଟି ନତକରି ପଛକୁ ଚାହିଁଲେ, ରଞ୍ଜିତା ସେଠି ନାହିଁ । ଚାଲିଯାଇଛି ।

ମନ୍ଦିରା ଦେବୀ ସତ୍ୟବ୍ରତଙ୍କ ସାମ୍ନାକୁ ଆସି ଗୋଟିଏ ସୋଫାକୁ ଧରି ଠିଆହୋଇ କହିଲେ ମିଷ୍ଟର ମହାପାତ୍ର ! ଆପଣ ଆମର ଅତିଥି, ବିଶେଷକରି ରଞ୍ଜିତାର ଆପଣ ଗାଇଡ୍ । ରଞ୍ଜିତା ଇମିତି ଭଲ ଛାତ୍ରୀ । କିନ୍ତୁ ବେଳେବେଳେ ତା'ର କ'ଣ ହୁଏ କେଜାଣି ସେ ଏକ ଅଦ୍ଭୁତ ରୂପ ଧାରଣ କରି ବହିପତ୍ର ଫୋପାଡ଼ି, ଚିରି ଏକାକାର କରିଦିଏ । ଆଉ ବେଳେବେଳେ ନିଜ ଘରେ କବାଟ କିଳି ଦିନଦିନ ରାତିରାତି ଶୋଇରହି କ'ଣ ଯେ ଚିନ୍ତା କରେ- ସେ କଥା ଭଗବାନଙ୍କୁ ଗୋଚର । ଏହିପରି କେତୋଟି ମନ୍ଦ ଅଭ୍ୟାସ ରଞ୍ଜିତାର ଅଛି । ଆପଣ ନୂଆ ଲୋକ । ସେଇଥିପାଇଁ ମୁଁ ଆପଣଙ୍କୁ କହିଦେଲି । ଆପଣ ଟିକିଏ ଲକ୍ଷ୍ୟ ରଖିବେ ।

ସତ୍ୟବ୍ରତ ମୁହଁରେ ବିସ୍ମୟ ଫୁଟାଇ ପଚାରିଲେ ରଞ୍ଜିତା କାହିଁକି ଏପରି କରେ ? କିଛି ରୋଗ ଫୋଗ...

ନା ନା ମିଷ୍ଟର ମହାପାତ୍ର । ମନ୍ଦିରା ଦେବୀ ହସିଉଠିଲେ ।

ରଞ୍ଜିତା ବଡ଼ଲୋକ ବାପାର ଏକମାତ୍ର ସନ୍ତାନ । ଆଦର ଯତ୍ନରେ ମଣିଷ ହୋଇଛି । ବେଳେବେଳେ ହୁଏତ ଅଭିମାନରେ ସେ ସେପରି କରେ । ମୋର ମନେହେଉଛି, ସେଇଟା ତା'ର ଗୋଟାଏ ବଦଭ୍ୟାସ । ଆପଣ ଟିକିଏ ଦେଖିବେ ।

ମନ୍ଦିରା ଦେବୀ ଧୀରେଧୀରେ ଘରୁ ବାହାରି ଚାଲିଗଲେ ।

ସତ୍ୟବ୍ରତ ନୀରବରେ କିଛି ସମୟ ବସିରହି ଉଠିଗଲେ ଝରକା ପାଖକୁ । ସତକୁସତ ସେଇ ଝରକା ପାଖରେ ଠିଆ ହେଲେ ରାସ୍ତା ପର୍ଯ୍ୟନ୍ତ ଦିଶୁଛି । ଘର ଆଗରେ ଗୋଟାଏ ଛୋଟ ବଗିଚା । ସଜ୍ଜିତ ବୃକ୍ଷଲତା । ଛବିପରି ସୁନ୍ଦର । ବଗିଚା ଶେଷରେ ଲୁହା ଗେଟ । ଗେଟ୍ ଦୁଆରେ ଛୋଟ ଘରଟିଏ । ଦରବାନ ଗୋଟିଏ ଷ୍ଟୁଲ ଉପରେ ବସି ଢୋଳଉଛି ।

ସତ୍ୟବ୍ରତ ଫାଙ୍କା ରାସ୍ତା ଆଡ଼େ ଅନେଇ ଠିଆ ହୋଇଥିଲେ । ବେଳେବେଳେ ଜଣେ ଦି' ଜଣ ଲୋକ ସେ ବାଟେ ଚାଲିଯାଉଥିଲେ । ଖଣ୍ଡେ ଅଧେ ମଟରଗାଡ଼ି ମଧ୍ୟ ପାସ୍ କରି ଯାଉଥିଲା, ସ୍ଥାନଟି ଯେ ନିରୋଳା, ଝରକା ପାଖରେ ଠିଆହୋଇ ସତ୍ୟବ୍ରତ ବେଶ ଅନୁଭବ କରିପାରୁଥିଲେ ।

ଧୀରେଧୀରେ ସେ ଅନ୍ୟମନସ୍କ ହୋଇଉଠୁଥିଲେ ।

ରଞ୍ଜିତା ଏଇ ଘରର ଏକମାତ୍ର ସନ୍ତାନ । କୋଟିପତି ରଙ୍ଗନାଥ ଶ୍ରୀବାସ୍ତବ ତା'ର ପିତା । ତଥାପି ରଞ୍ଜିତା ଅସହାୟ । ବିଚିତ୍ର ଦୁନିଆର ଗତି । ଅଦ୍ଭୁତ ।

ହଠାତ୍ ଗୋଟାଏ ମଟରଗାଡ଼ିର ହର୍ଣ୍ଣ ଶୁଣି ସତ୍ୟବ୍ରତ ମହାପାତ୍ର ପ୍ରକୃତିସ୍ଥ ହୋଇଉଠିଲେ । ଦେଖିଲେ ଗୋଟିଏ ସବୁଜ ରଙ୍ଗର ଫିଆଟ୍ ଗାଡ଼ି ଲୁହାଗେଟ ସେ ପାଖରେ ଠିଆହୋଇ ହର୍ଣ୍ଣ ବଜାଉଛି । ଦରବାନଟି ଧଡ଼ପଡ଼ ହୋଇ ଉଠିଯାଇ ଲୁହାଗେଟ ଖୋଲିଦେଲା ।

ଫିଆଟ ଗାଡ଼ିଟି ଲନ୍ ଭିତରେ ପ୍ରବେଶ କଲା ।

ଗାଡ଼ିରୁ ଜଣେ ବୟସ୍କ ଭଦ୍ରମହିଳା ଓହ୍ଲାଇଲେ ଏବଂ ଧୀରେଧୀରେ ଆଗେଇ ଆସିଲେ ଘର ଭିତରକୁ ।

ସତ୍ୟବ୍ରତ ପଛଆଡ଼େ କାହାର ପାଦଶବ୍ଦ ଶୁଣି ବୁଲି ଅନେଇଲେ । ରଞ୍ଜିତା । ସେ ବି ସେଇ ଆଗନ୍ତୁକା ଭଦ୍ରମହିଳାଙ୍କ ଆଡ଼େ ଚାହିଁଥିଲେ ।

ସତ୍ୟବ୍ରତଙ୍କ ପ୍ରଶ୍ନବାଚୀ ଆଖିଯୋଡ଼ାକ ଆଡ଼େ ଚାହିଁ ରଞ୍ଜିତା କହିଲା ମମିଙ୍କର ବଡ଼ଭଉଣୀ । ମେନକା ଆଣ୍ଟିଜ ।

ହୁଁ, ରୁହନ୍ତି କେଉଁଠି ?

ପାର୍କଷ୍ଟ୍ରୀଟରେ ।

ରୋଜ ଆସନ୍ତି ?

ନା, ମମି କିନ୍ତୁ ପ୍ରାୟ ଯାଆନ୍ତି ତାଙ୍କ ଘରକୁ । କେବେ ମମି ନ ଗଲେ ସେ ଚାଲିଆସନ୍ତି ।

ତମ ମମିଙ୍କର ସେ ନିଜ ଭଉଣୀ ?

ମମି କୁହନ୍ତି ତ ! ମୁଁ ଯଚେଇ କରି ଦେଖିନାହିଁ ।

ଭଦ୍ରମହିଳାଙ୍କର ସ୍ୱାମୀ ?

ସେ ଜଣେ ବଡ଼ ନାଭାଲ ଅଫିସର ଶୁଣିଛି । ଭଦ୍ରଲୋକଙ୍କୁ କେବେ ଦେଖିବାର ସୌଭାଗ୍ୟ ହୋଇନାହିଁ ।

ଡାଡି କ'ଣ କୁହନ୍ତି ?

ତାଙ୍କ ମୁହଁରୁ ମୁଁ କିଛି ମନ୍ତବ୍ୟ ଶୁଣିନାହିଁ ।

ମେନକା ଆଣ୍ଟ୍ରି ଏ ଅସମୟରେ ଆସିଛନ୍ତି କାହିଁକି ?

କ'ଣ କାମ ଥିବ । ଅଥବା ଇମିତି ମମିଙ୍କ ସାଙ୍ଗରେ ଗପିବା ପାଇଁ ଚାଲିଆସିଛନ୍ତି । ସେ କଥା ଛାଡ଼ନ୍ତୁ । ଏଥର ମୋ' କଥା କୁହନ୍ତୁ । ଆପଣ ଦେଖୁଛି ସଶରୀରେ ଆସି ଆମ ଘରେ ଆସ୍ଥାନ ଜମେଇ ବସିଲେଣି । ଘଟଣା କ'ଣ ?

: ଘଟଣା ଦୁର୍ଘଟଣା ନୁହେଁ ନିଶ୍ଚୟ । ମୁଁ ଇମିତି ଗୋଟାଏ ସୁଯୋଗ ଖୋଜୁଥିଲି, କିନ୍ତୁ ସୁଯୋଗଟା ଯେ ଏତେ ସହଜରେ ଆସିଯିବ, ସେ କଥା ମୋଟେ ଚିନ୍ତା କରି ନ ଥିଲି । ଯା' ହେଉ ତୁମେ ଏଥର ନିଶ୍ଚିନ୍ତରେ ରାତ୍ରି ଯାପନ କରିପାର ।

: ତା' ତ କରିବି । କିନ୍ତୁ କଥା ହେଉଛି ମୁଁ ସେଇ ଲାଇଟରଟା କଥା ଭୁଲିପାରୁ ନାହିଁ । ମୋର ମନେହେଉଛି, କେହି ଜଣେ ପୁରୁଷ ଲୋକ ମୋ' ଶୋଇବା ଘରେ ପଶିଥିଲା । କିନ୍ତୁ କିଏ ସେଇ ଲୋକଟି ? ଉଦ୍ଦେଶ୍ୟ ତା'ର କ'ଣ ଥିଲା ?

ସତ୍ୟବ୍ରତ ମହାପାତ୍ର ରଞ୍ଜିତା ଆଡ଼େ କାନ ଦେଇଥିଲେ, କିନ୍ତୁ ଆଖି ଦୁଇଟା ତାଙ୍କର ସ୍ଥିର ଥିଲା ଯାଇ ଲନ ଉପରର ସେଇ ଫିଆଟ ଗାଡ଼ିଟା ଉପରେ । ଡ୍ରାଇଭର ଷ୍ଟିଅରିଂ ଉପରେ ମୁଣ୍ଡ ରଖି ଢୁଳଉଥିଲା । ଦରବାନ ତା' ଷ୍ଟୁଲ ଉପରେ ବସି ଫାଟକ ଆଡ଼େ ଚାହିଁଥିଲା ।

ସତ୍ୟବ୍ରତ ରଞ୍ଜିତା ପ୍ରଶ୍ନର କୌଣସି ଉତ୍ତର ନ ଦେଇ ପଚାରିଲେ   ତମର ଡାଡି ଘରେ ଅଛନ୍ତି ?

ନା' ସେ ଅଫିସ ଚାଲିଗଲେଣି ।

ମମି କେଉଁଠି ?

ତଳଘରେ ବସି ଦୁଇଭଉଣୀଯାକ କ'ଣ କଥାବାର୍ତ୍ତା ହେଉଥିବେ ।

ତମେ କିଛି ଶୁଣିନାହଁ ?

ରଞ୍ଜିତା ହସିଲା । କହିଲା   ପରର ଗୋପନ କଥା କ'ଣ କେହି ଶୁଣନ୍ତି ?

ସତ୍ୟବ୍ରତ ଅବାକ୍ ହୋଇ ରଞ୍ଜିତା ମୁହଁକୁ ଅନେଇଲେ । କହିଲେ   ପରର

ଗୋପନ କଥା ଶୁଣିବା ଅନ୍ୟାୟ ଘତ, କିନ୍ତୁ ଅନେକ ସମୟରେ ନିଜକୁ ବଞ୍ଚାଇବା ପାଇଁ ଅନ୍ୟାୟକୁ ନ୍ୟାୟ ମନେକରିବାକୁ ହୋଇଥାଏ ।

ମାନେ ?

ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ, ମାତ୍ର ତାଙ୍କ ଦୃଷ୍ଟି ତଳ ଲନ୍ ଉପରେ ପଡ଼ିବା କ୍ଷଣି ସେ ଚଞ୍ଚଳ ହୋଇଉଠିଲେ ।

ଲନ୍ ଉପରେ ରଞ୍ଜିତାର ମା' ଓ ମାଉସୀ କଥାବାର୍ତ୍ତା ହୋଇ ଆଗେଇଛନ୍ତି । ମନେହେଉଛି, ଦୁଇଜଣଯାକ ଯେପରି କୁଆଡ଼େ ବାହାରିଛନ୍ତି ।

ରଞ୍ଜୁ, ଦେଖିଲ ! ଦେଖିଲ !! ଏମାନେ କ'ଣ...

ବାହାରକୁ ଯାଉଛନ୍ତି । ମମି ଏମିତି ବେଳେବେଳେ ତାଙ୍କ ସଙ୍ଗରେ ବାହାରି ଯାଆନ୍ତି ।

ସେମାନେ ଦୁଇଜଣ ଯାଇ ଗାଡ଼ିରେ ବସିଲେ ।

ଗାଡ଼ି ବାହାରି ଚାଲିଗଲା ରାସ୍ତା ଉପରକୁ ।

ରଞ୍ଜିତା କହିଲା ଆପଣ ଏଥର ନିତ୍ୟକର୍ମ ଶେଷ କରି କିଛି ଖିଆପିଆ କରନ୍ତୁ ।

ସତ୍ୟବ୍ରତ କହିଲେ ଆଚ୍ଛା ରଞ୍ଜୁ ! ଗୋଟାଏ କଥା । ତମର ଡାଡି ଆଉ ମମି । ଏଇ ଦୁଇଜଣଯାକ ତୁମକୁ ନିଶ୍ଚୟ ଭଲପାଆନ୍ତି ।

ହଁ ।

ତମେ କ'ଣ ସେ ଦୁଇଜଣଙ୍କ ଭିତରୁ କାହାକୁ ସନ୍ଦେହ କର ?

ସନ୍ଦେହ ? ନା ତ । ଏପରି ଭାବନା ଆପଣଙ୍କ ମନକୁ ଆସୁଛି କାହିଁକି ?

ନା ରଞ୍ଜୁ । କଥା ହେଉଛି ମୁଁ ଜାଣିବାକୁ ଚାହେଁ, ତମର ଡାଡି ଆଉ ମମି ଦୁଇଜଣଯାକ ଯଦି ତୁମକୁ ଭଲପାଆନ୍ତି, ସ୍ନେହ କରନ୍ତି, ତା'ହେଲେ ତମ ମନ ଭିତରେ ଗୋଟାଏ ଭୟ ଜମାଟ ବାନ୍ଧିଲା କିପରି ?

ଭୟ ? ରଞ୍ଜିତା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା ।

ହଁ ଭୟ ରଞ୍ଜିତା । ତମେ ସଜ୍ଞାନରେ ତାହା ବୁଝି ନ ପାରିଲେ ବି, ତମ ମନ ଭିତରେ ଭୟଟା ଧୀରେ ଧୀରେ ସଞ୍ଚାରିତ ହେଉଛି । ଯାହାର ପୂର୍ଣ୍ଣ ପ୍ରକାଶ କାଲି ରାତିରେ ଘଟିଛି ।

ମାନେ ?

: ତମ ଘର ଭିତରକୁ ଲୁଚି ଲୁଚି କେହି କାଲି ରାତିରେ ଆସିଥିଲା ଏବଂ ତମେ ଭୟରେ ଆତଙ୍କିତ ହୋଇଉଠିଥିଲ । ଫଳରେ ଛୁଟି ଯାଇଥିଲ ମୋ' ପାଖକୁ ।

ଆପଣ କ'ଣ ଭାବୁଛନ୍ତି ସେଇଟା କେବଳ ମୋ' ମନର ଭୟ ! ଘର ଭିତରକୁ କେହି ଆସି ନଥିଲା ?

ନା, ତା' ମୁଁ ଭାବୁ ନାହିଁ । ତେବେ ଘଟଣା ଗୋଟାଏ ଯେ ଘଟିଛି ଏବଂ

ସେ ଘଟଣା ମୂଳରେ ମମି ବା ଡାଡିଙ୍କର କାହାର ଯେ ହାତ ଅଛି, ଏପରି ଏକ ଭାବନା ତମ ମନରେ ସଞ୍ଚାରିତ ହୋଇଛି । ଫଳରେ...

ସତ୍ୟବ୍ରତ ମହାପାତ୍ର କଥା ଶେଷ କଲେ ନାହିଁ । ରଞ୍ଜିତା ବି କିଛି ଉତ୍ତର ଦେଇପାରିଲା ନାହିଁ । ନୀରବତା ଭିତରେ କିଛି ସମୟ ଅତିବାହିତ ହୋଇଗଲା ।

ହଠାତ୍ ନୀରବତା ଭଙ୍ଗକରି ସତ୍ୟବ୍ରତ ମହାପାତ୍ର ପଚାରିଲେ, : ଆଚ୍ଛା ରଞ୍ଜୁ ! ତମର ଡାଡି ଆଉ ମମିଙ୍କ ଭିତରେ ସମ୍ପର୍କ କିପରି ?

ମାନେ ?

ସମ୍ପର୍କ ମୁଁ ଏଇ ଅର୍ଥରେ ପଚାରୁଛି, ଦୁହିଁଙ୍କ ମଧ୍ୟରେ କେବେ କୌଣସି ମନୋମାଳିନ୍ୟ ବା କଳିଗୋଳ ହେଇଥିବାର ତମେ ଲକ୍ଷ୍ୟ କରିଛ ?

ନା, ଡାଡି ଖୁବ୍ ଭଲ ଲୋକ ତ ! ସେ କେବେ କାହାରି ସହିତ କଳି କରିବାର ମୁଁ ଦେଖିନାହିଁ ।

: ହୁଁ, ଠିକ୍ ଅଛି । ତମେ ବର୍ତ୍ତମାନ ଯାଅ । ମୁଁ ବି ଟିକେ ବାହାରକୁ ଯାଉଛି । ସନ୍ଧ୍ୟାବେଳକୁ ଫେରିଆସିବି । ତା'ପରେ ପଢ଼ାପଢ଼ି ଆରମ୍ଭ କରିବା ।

ରଞ୍ଜିତା ହସିଲା । କହିଲା  ଅବଶ୍ୟ ଆପଣ ଆମ ଘରେ ରହୁଛନ୍ତି ଯେତେବେଳେ ମୋର ଚିନ୍ତାର କିଛି କାରଣ ନାହିଁ । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଛି, ଆପଣ କେତେ ଶୀଘ୍ର ବାପାଙ୍କୁ ହାତ କରିପାରିଲେ ।

ସତ୍ୟବ୍ରତ କିଛି ଉତ୍ତର ଦେଲେ ନାହିଁ । ଉଠି ଠିଆ ହେଲେ ।

ରଞ୍ଜିତା କହିଲା  ଆପଣ କିଛି ନ ଖାଇ ଯାଇପାରିବେ ନାହିଁ । ଖିଆପିଆ ଶେଷ କରନ୍ତୁ । ତା'ପରେ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇ ବୁଲିଆସିବେ ।

ସତ୍ୟବ୍ରତ ପୁଣି ଚେଆର ଉପରେ ବସିପଡ଼ିଲେ । କହିଲେ,  ତା'ହେଲେ ଶୀଘ୍ର ବ୍ୟବସ୍ଥା କର । ମୋର ଗୋଟାଏ ଜରୁରୀ କାମ ଅଛି । ମୋତେ ସାରି ଆସିବାକୁ ହେବ ।

ରଞ୍ଜିତା ଘରଛାଡ଼ି ଚାଲିଗଲା ।

ସେଦିନ ସତ୍ୟବ୍ରତ ଫେରିଲା ବେଳକୁ ରାତି ଅନେକ ହୋଇଯାଇଥିଲା । ବୋଧହୁଏ ଖାଇପିଇ ସମସ୍ତେ ଶୋଇ ଯାଇଥିଲେ । ଦରବାନ ଗେଟ୍ ପାଖରେ ଅପେକ୍ଷା କରିଥିଲା ।

ସତ୍ୟବ୍ରତ ମହାପାତ୍ର ଭିତରକୁ ପଶିବା ପରେ ଦରବାନ ଗେଟ ବନ୍ଦ କରିଦେଲା ।

ସେ ଗୁଣୁ ଗୁଣୁ ଗୀତ ଗାଇ ଗାଇ ନିଜ ରୁମ୍‌କୁ ଉଠିଗଲେ । ଦରଜା ଆଉଜା ହୋଇଥିଲା । ଭିତରେ ପଶିବା କ୍ଷଣି ପଛଆଡୁ ଗୋଟିଏ ପରିଚାରକ ଆସି କହିଲା ଆପଣଙ୍କ ଖାଇବା ଆଣିବି ?

ସତ୍ୟବ୍ରତ ବୁଲି ଅନାଇଲେ । ମୁହୂର୍ତ୍ତେ ନୀରବ ରହି କହିଲେ, ନା, ମୁଁ ଖାଇଆସିଛି । ରଞ୍ଜିତା ଦେବୀ ଶୋଇଲେଣି ?

ହଁ, ଦିଦି ଏଇ କିଛି ସମୟ ପୂର୍ବରୁ ଶୋଇବାକୁ ଗଲେ । ସେ ଆପଣଙ୍କ ପାଇଁ ଅପେକ୍ଷା କରିଥିଲେ ।

ଆଚ୍ଛା ତୁ ଶୋଇବୁ ଯା । ମୋର ଆଉ କିଛି ଦରକାର ହେବ ନାହିଁ ।

ଚାକରଟି ଚାଲିଗଲା । ସତ୍ୟବ୍ରତ ମହାପାତ୍ର ନିଜର ଲୁଗାପଟା ଖୋଲି, ଗୋଟିଏ ଆରାମ ଚଉକି ଉପରେ କିଛି ସମୟ ବସିଲେ । ଏ ଘରର ସମସ୍ୟା ଯେ ରହସ୍ୟାବୃତ, ସତ୍ୟବ୍ରତ ତାହା ଏଇ କେତେ ଘଣ୍ଟା ଭିତରେ ବେଶ୍ ବୁଝିପାରିଛନ୍ତି ।

ବାହାରକୁ ବାହାରି ସତ୍ୟବ୍ରତ ମହାପାତ୍ର ରଙ୍ଗନାଥ ଶ୍ରୀବାସ୍ତବଙ୍କ ଘରୋଇ ଜୀବନ ସମ୍ପର୍କରେ କେତେକ ଅନୁସନ୍ଧାନ କରି ଫେରିଆସିଛନ୍ତି । ଯାହା ତଥ୍ୟ ସଂଗ୍ରହ କରିଛନ୍ତି, ଯଦି ସତ୍ୟ ହୋଇଥାଏ ତେବେ ସାଂଘାତିକ ।

ସେ ନୀରବରେ କିଛି ସମୟ ବସି ରହି ହାତଘଡ଼ିକୁ ଚାହିଁଲେ, ସାଢ଼େ ଏଗାରଟା ବାଜିଲାଣି ।

ସେ ଉଠିଯାଇ ଘରର ଲାଇଟ ଅଫ୍ କରିଦେଲେ ଏବଂ ଖୋଲା ଝରକା ପାଖରେ ଯାଇ ନୀରବରେ ଠିଆହେଲେ ।

ବାହାରେ ଅନ୍ଧକାର

ଦରବାନର ଘରୁ ମଧ୍ୟ ଆଲୋକ ଲିଭିଯାଇଛି ।

ରାସ୍ତା ଉପରେ କୌଣସି ଯାନବାହାନର ଶବ୍ଦ ନାହିଁ ।

ସତ୍ୟବ୍ରତ ଖୋଲା ଆକାଶକୁ ଚାହିଁ ବୋଧହୁଏ ତାରାମଣ୍ଡଳୀର ଗତିବିଧି ଲକ୍ଷ୍ୟ କରୁଥିଲେ ।

ସେ ମନେ ମନେ ଆଉଥରେ ସବୁ କଥା ସଜାଡ଼ି ନେବାକୁ ଚେଷ୍ଟା କଲେ । ରଙ୍ଗନାଥ ଶ୍ରୀବାସ୍ତବ ମଡର୍ଣ୍ଣ ଟିଉବ୍‌ସର ମ୍ୟାନେଜିଂ ଡିରେକ୍ଟର । ଯଦିଓ ସେ ଏଇ ସଂସ୍ଥାଟିକୁ ନିଜର ରକ୍ତଦେଇ ଗଠନ କରିଛନ୍ତି, ତଥାପି ଏହା ଏକ ଲିମିଟେଡ କମ୍ପାନୀ । ଅସଂଖ୍ୟ ସେଆର ହୋଲ୍‌ଡରମାନଙ୍କର ଟଙ୍କାରେ ଏହି ସଂସ୍ଥାଟି ଗଢ଼ିଉଠିଛି ।

ରଙ୍ଗନାଥ ଶ୍ରୀବାସ୍ତବ ନିଃସନ୍ଦେହରେ ଏକ ଭଲ ଲୋକ ।

କିନ୍ତୁ ସେ ଯାହା ତଥ୍ୟ ସଂଗ୍ରହ କଲେ ସେଥିରୁ ମନେହେଲା, ରଙ୍ଗନାଥ ଶ୍ରୀବାସ୍ତବ ପୁନର୍ବିବାହ କରିବା ଦିନଠାରୁ ତାଙ୍କର ସମସ୍ତ ଚିନ୍ତାଧାରା ଯେପରି ଭିନ୍ନମୁଖୀ ହୋଇଛି । ରଙ୍ଗନାଥ ଶ୍ରୀବାସ୍ତବଙ୍କର ଆଇନ ପରାମର୍ଶଦାତା ଚାରୁ ମଜୁମଦାର ସେଇକଥା କହିଲେ ।

ଚାରୁ ମଜୁମଦାରଙ୍କର ସନ୍ଦେହ ହେଉଛି, ସେ ଗୋପନରେ ଏପରି କିଛି କିଛି କାର୍ଯ୍ୟ କରୁଛନ୍ତି, ଯାହା ତାଙ୍କ ପକ୍ଷରେ କରିବା ଉଚିତ୍ ନୁହେଁ ।

ଚାରୁ ମଜୁମଦାର ସ୍ୱୀକାର କଲେ ଯେ, ରଙ୍ଗନାଥ ଶ୍ରୀବାସ୍ତବଙ୍କର ପତ୍ନୀ ମନ୍ଦିରା ଶ୍ରୀବାସ୍ତବ ଯଦିଓ ସାଧାରଣ ଦୃଷ୍ଟିରେ ଜଣେ ଉପଯୁକ୍ତ ଗୃହିଣୀ, କିନ୍ତୁ ତାଙ୍କର ଅନ୍ତର୍ନିହିତ ଚିନ୍ତାଧାରା ଯେପରି ଟିକିଏ ଭିନ୍ନମୁଖୀ ।

କନ୍ୟା ରଞ୍ଜିତା ପ୍ରତି ଶ୍ରୀବାସ୍ତବଙ୍କର ପୂର୍ବ ବାତ୍ସଲ୍ୟ ଭାବ ଅକ୍ଷୁଣ୍ଣ ରହିଥିଲେ ସୁଦ୍ଧା, କିପରି ଟିକିଏ କିନ୍ତୁ ଭାବ ଜାଗ୍ରତ ହୋଇଛି ।

ମନ୍ଦିରା ଦେବୀ ରଞ୍ଜିତାକୁ ନିଜର ଜନ୍ମିତା କନ୍ୟା ଭଳି ଗ୍ରହଣ କରିଥିବାର ଭାବ ପ୍ରଦର୍ଶନ କରୁଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ତାହା କେତେଦୂର ସତ୍ୟ, ସେ ସମ୍ବନ୍ଧରେ ଚାରୁ ମଜୁମଦାର ସନ୍ଦେହ ପ୍ରକାଶ କରିଛନ୍ତି ।

ମୋଟ ଉପରେ ସେ, ମାନେ ଚାରୁ ମଜୁମଦାର ଏକ ଦ୍ୱନ୍ଦ୍ୱ ଭିତରେ ପଡ଼ିଥିବା ପରି ତାଙ୍କର ମନେହେଉଛି । ରଙ୍ଗନାଥ ଶ୍ରୀବାସ୍ତବ ପରିବାର ସହିତ ସେ ବାଲ୍ୟକାଳରୁ ସଂପୃକ୍ତ । ବିଶେଷକରି ବାସନ୍ତୀ ଦେବୀ ଚାରୁ ମଜୁମଦାରଙ୍କୁ ମହାପ୍ରସାଦ ଦେଇ ନିଜ ଧର୍ମଭାଇ କରିଥିଲେ । ବାସନ୍ତୀ ଦେବୀ ବଞ୍ଚିଥିବା ଯାଏ ସମ୍ପର୍କ ତାଙ୍କର ସେ ପରିବାର ସହିତ ଅତି ଘନିଷ୍ଠ ଥିଲା । ତା'ପରେ ବାସନ୍ତୀ ଦେବୀଙ୍କର ମୃତ୍ୟୁ ପରେ ଧୀରେ ଧୀରେ ସମ୍ପର୍କ ଯେପରି ଧିମେଇ ପଡ଼ିଲା, ଚାରୁ ମଜୁମଦାର ବି ଚିନ୍ତା କରୁଥିଲେ—

ହଠାତ୍ ସତ୍ୟବ୍ରତ ମହାପାତ୍ରଙ୍କ ଭାବନା ଅଟକି ଗଲା ।

ସେଇ ଗାଢ଼ ଅନ୍ଧକାର ଭିତରେ ତାଙ୍କର ମନେହେଲା, କିଏ ଯେପରି ଲୁହା ଫାଟକଟା ଭିତରେ ଗୋଟିଏ ଛୋଟ ଦରଜା ଖୋଲି ଭିତରକୁ ପଶୁଛି ।

ହଁ, ଜଣେ କେହି ଲନ ଭିତରେ ପଶିଲା ।

ଅନ୍ଧାକାରରେ କେବଳ ଗୋଟିଏ ଛାୟାମୂର୍ତ୍ତି ସେ ଦେଖିପାରୁ ଥିଲେ । ମୂର୍ତ୍ତିଟା ଲନ ଭିତରେ ଧୀରେ ଧୀରେ ଆଗେଇ ଆସିଲା । ସତ୍ୟବ୍ରତ ଆଉ ସ୍ଥିର ଭାବରେ ଠିଆ ହୋଇପାରିଲେ ନାହିଁ ।

ସେ ଦରଜା ଖୋଲି ଧୀର ପଦକ୍ଷେପରେ ବାହାରକୁ ବାହାରି ଆସିଲେ । ମୁହୂର୍ତ୍ତେ ଠିଆ ହେଲେ ନୀରବରେ । ନା, ଲୋକଟା ଉପରକୁ ଉଠିଲା ନାହିଁ । ତଳେ କେଉଁଠି ରହିଛି । କିଏ ଏହି ଲୋକଟା ? ତେବେ କ'ଣ ଏଇ ଲୋକଟା କାଲି ରାତିରେ ପ୍ରବେଶ କରିଥିଲା ରଞ୍ଜିତାର ଘର ଭିତରେ ?

ସନ୍ତର୍ପଣରେ ପାହାଚେ ପାହାଚେ କରି ସତ୍ୟବ୍ରତ ତଳକୁ ଓହ୍ଲାଉ ଥିଲେ । ଶେଷ ପାହାଚରେ ଠିଆହୋଇ ସେ ଦେଖିଲେ ଯେତେ ଦୂର ଯାଏ ଦୃଷ୍ଟି ଯାଉଛି, କେଉଁଠି କେହି ନାହିଁ । କେବଳ ଝାପ୍‌ସା ଅନ୍ଧକାର ।

ତେବେ ଲୋକଟା ଗଲା କେଉଁଆଡ଼େ ?

ଉପରୁ କାହାର ପାଦଶବ୍ଦ ଶୁଣାଗଲା ।

## ସ୍ପନ୍ଦନ

ସତ୍ୟବ୍ରତ କ୍ଷିପ୍ର ଗତିରେ ତଳକୁ ଓହ୍ଲାଇ ଗୋଟିଏ ଉହାଡ଼ିଆ ଜାଗାରେ ଆତ୍ମଗୋପନ କଲେ ।

ପାଦଶବ୍ଦ ଧୀରେଧୀରେ ପାଖେଇ ଆସୁଥିଲା ଏବଂ ଶେଷ ପାହାଚରେ ସେ ଯାହାକୁ ଠିଆ ହେବାର ଦେଖିଲେ ଅସ୍ପଷ୍ଟ ହେଲେ ବି ସେ ଯେ ଏକ ନାରୀମୂର୍ତ୍ତି ସ୍ପଷ୍ଟ ବାରି ହୋଇଯାଉଥିଲା ।

ନାରୀ ମୂର୍ତ୍ତିଟି ପାହାଚ ତଳକୁ ଓହ୍ଲାଇ ବାଁ ଡାହାଣକୁ ଥରେ ଚାହିଁ କ୍ଷିପ୍ର ଗତିରେ ଆଗେଇ ଯାଉଥିଲା ।

ନାରୀମୂର୍ତ୍ତିଟି ତେବେ କିଏ ?

ମନ୍ଦିରା ଦେବୀ ? ନା ରଞ୍ଜିତା ?

ସତ୍ୟବ୍ରତ ଦୂରରୁ ଥାଇ ଠିକ୍ ଲକ୍ଷ୍ୟ କରିପାରିଲେ ନାହିଁ । ନାରୀମୂର୍ତ୍ତିଟି ଆଗେଇ ଯାଉଥିଲା । ସତ୍ୟବ୍ରତ ଅନୁସରଣ କରିବାର ଉପାୟ ନ ଥିଲା । କାରଣ ଫାଙ୍କା ଜାଗା । ନାରୀମୂର୍ତ୍ତିଟି ଯଦି ପଛକୁ ଚାହେଁ ତା'ହେଲେ ସତ୍ୟବ୍ରତ ଧରାପଡ଼ିଯିବେ । ସେ ନିଜକୁ ସଂଯତ କରି ପୂର୍ବ ସ୍ଥାନରେ ନିଶ୍ଚଳ ଭାବରେ ଠିଆହୋଇ ରହିଲେ ।

ନାରୀମୂର୍ତ୍ତିଟି ଅଦୃଶ୍ୟ ହୋଇଯିବା ପରେ ସତ୍ୟବ୍ରତ ସେଠାରୁ ବାହାରି ଅନୁସରଣ କରିବାକୁ ଯିବେ, ତାଙ୍କର ମନେହେଲା, ଉପରେ କିଏ ଯେପରି ଆର୍ତ୍ତ କଣ୍ଠରେ ଚିତ୍କାର କରିଉଠିଲା ।

ସତ୍ୟବ୍ରତ ଚମକି ଉଠିଲେ ।

କିଛି ଅଘଟଣ ଘଟିଲା ନାହିଁ ତ ଆଉ !

ସେ ଆଉ ମୁହୂର୍ତ୍ତେ ଡେରି ନ କରି ପୁଣି ସେଇ ଶିଡ଼ି ବାଟେ ଉପରକୁ ଉଠିଗଲେ । ଏଥର ଉପରେ କୋଳାହଳ ଶୁଣିବାକୁ ମିଳିଲା । ଆଲୋକ ଜଳି ଉଠିଲା । ସେ ଦେଖିଲେ, ତାଙ୍କ ଘରର ତିନି ଚାରୋଟି ଘର ପରେ ରଞ୍ଜିତାର ଶୋଇବାଘର ଦୁଆର ମୁହଁରେ ଭିଡ଼ ଜମିଯାଇଛି । ଘରର ଚାକର ଚାକରାଣୀ, ଏପରିକି ସ୍ୱୟଂ ରଙ୍ଗନାଥ ଶ୍ରୀବାସ୍ତବ ମଧ୍ୟ ତାଙ୍କର ସ୍ଲିପିଂ ଗାଉନ ପିନ୍ଧି ଉପସ୍ଥିତ ହୋଇଛନ୍ତି । ସତ୍ୟବ୍ରତ ପହଞ୍ଚିବା ପରେ ଦେଖିଲେ, ମନ୍ଦିରା ଦେବୀ ନିଦ ମଳମଳ ଆଖିରେ ବ୍ୟସ୍ତବିବ୍ରତ ହୋଇ ଆସି ଉପସ୍ଥିତ ହୋଇଛନ୍ତି ।

ରଞ୍ଜିତା ଆତଙ୍କିତ ହୋଇ ସମସ୍ତଙ୍କ ମୁହଁକୁ ଚାହିଁଛି ।

ହେଲା କ'ଣ ରଞ୍ଜୁ ! ତୁ ଏପରି ଭାବରେ ଚିତ୍କାର କରିଉଠିଲୁ କାହିଁକି ? ରଙ୍ଗନାଥ ଶ୍ରୀବାସ୍ତବ ପଚାରିଲେ ।

ରଞ୍ଜିତା ମୂକଙ୍କ ଭଳି ସମସ୍ତଙ୍କ ଆଡ଼େ ଚାହିଁଥିଲା । ମନେହେଉଥିଲା, ସେ ସତକୁସତ ମୂକ ପାଲଟି ଯାଇଛି ।

ସତ୍ୟବ୍ରତ ମହାପାତ୍ର ଆଉ ସେଠାରେ ମୁହୂର୍ତ୍ତେ ଅପେକ୍ଷା ନ କରି ଛୁଟିଗଲେ ତଳକୁ । ସେଇ ଲୁହାଗେଟ୍‌ଟା ପାଖକୁ ।

କିନ୍ତୁ ନା, ବିରାଟ ଲମ୍ବାଗୋଟ ଭିତରେ ଥିବା ସେଇ ଛୋଟ ଦରଜାଟି ମେଲା ହୋଇରହିଛି ।

ନା, ସେ କାର୍ଯ୍ୟ ଶେଷ କରି ଫେରିଯାଇଛି ।

ସତ୍ୟବ୍ରତ ମହାପାତ୍ର ବ୍ୟର୍ଥମନୋରଥ ହୋଇ ଉପରକୁ ଫେରିଆସିଲେ ।

ଚଢ଼େଇ ଉଡ଼ିଯାଇଚି ।

ରଞ୍ଜିତା ଘର ପାଖରେ ଯାଇ ଦେଖିଲେ ଭିଡ଼ ଭାଙ୍ଗିଗଲାଣି । ଚାକରବାକର ସବୁ ଯେ ଯାହା ଘରକୁ ଫେରିଗଲେଣି । ଘର ଭିତରେ ଶ୍ରୀବାସ୍ତବ, ମନ୍ଦିରା ଦେବୀ ଏବଂ ରଞ୍ଜିତା ।

ରଞ୍ଜିତା ବିଛଣା ଉପରେ ଶୋଇଛି ।

ମନ୍ଦିରା ଦେବୀ ତା' ମୁଣ୍ଡ ଆଉଁଶି ଦେଉଛନ୍ତି ।

ଶ୍ରୀବାସ୍ତବ ଖଟବାଡ଼ ପାଖରେ ଠିଆହୋଇ ଜଳଜଳ କରି ରଞ୍ଜିତା ମୁହଁକୁ ଚାହିଁଛନ୍ତି ।

ସତ୍ୟବ୍ରତ ଦୁଆର ମୁହଁରେ ଠିଆହୋଇ ଭିତରକୁ ଯିବେ କି ନାହିଁ ଚିନ୍ତା କରୁଥିଲେ । ମନ୍ଦିରା ଦେବୀଙ୍କ ଦୃଷ୍ଟି ପଡ଼ିବାରୁ ସେ ଭିତରକୁ ଡାକିଲେ ।

ଶ୍ରୀବାସ୍ତବ ସତ୍ୟବ୍ରତଙ୍କୁ ଭିତରକୁ ଆସୁଥିବା ଦେଖି କହିଲେ ଆପଣ କିଛି ଜାଣିପାରିଛନ୍ତି ମିଷ୍ଟର ମହାପାତ୍ର ?

କ'ଣ ?

କେହି ଜଣେ ଏଇ ବାରଣ୍ଡା ଉପର ଦେଇ ଛୁଟି ପଳାଇ ଯିବାର ଆପଣ ଶୁଣିଛନ୍ତି ?

ନା ତ !

ରଞ୍ଜୁ କହୁଚି କିଏ ଜଣେ ଘରେ ପଶି ତା' ଗଳା ଟିପି ଧରିଥିଲା । ସେ ଚିତ୍କାର କରିବାରୁ ଛାଡ଼ି ପଳାଇଗଲା ।

ତା'ହେଲେ ତ ବଡ଼ ଚିନ୍ତାର ବିଷୟ ମିଷ୍ଟର ଶ୍ରୀବାସ୍ତବ । ସତ୍ୟବ୍ରତ ଗମ୍ଭୀର ହୋଇ କହିଲେ ।

କିଛି ଚିନ୍ତାର ବିଷୟ ନୁହେଁ ମିଷ୍ଟର ମହାପାତ୍ର ।

ମନ୍ଦିରା ଦେବୀ କହିଲେ । ମୋର ମନେହେଉଛି ରଞ୍ଜିତା ଗୋଟାଏ କିଛି ଦୁଃସ୍ୱପ୍ନ ଦେଖିଛି । ଫଳରେ ସେ ଚିତ୍କାର କରିଉଠିଛି । କେହି ଯଦି ସତକୁସତ ତା' ଘରକୁ ଆସିଥାଆନ୍ତା, ଏତେ ଶୀଘ୍ର ଅନ୍ତର୍ଦ୍ଧାନ ହୋଇ ଚାଲିଯାଆନ୍ତା କୁଆଡ଼େ ?

ଶ୍ରୀବାସ୍ତବ ଆଉ କିଛି ଉତ୍ତର ଦେଇପାରିଲେ ନାହିଁ ।

ମନ୍ଦିରା ଦେବୀ ରଞ୍ଜିତାର ଖଟ ଉପରେ ବସିପଡ଼ି କହିଲେ, ରଞ୍ଜୁ ! ତୁ ଭଲକରି ମନେପକାଇଲୁ । ପ୍ରକୃତରେ କେହି ଜଣେ ଲୋକ ଆସିଥିଲା ନା ତୁ ସ୍ୱପ୍ନ ଦେଖି ପାଟିକରି ଉଠିଥିଲୁ ?

ରଞ୍ଜିତା କେବଳ ବଲବଲ କରି ଅସହାୟ ଆଖିରେ ଚାହିଁଥିଲା । ମନେହେଉଥିଲା ତା'ର କଥା କହିବାର ଶକ୍ତି ଏତେବେଳଯାଏ ଫେରିଆସି ନାହିଁ ।

ଶ୍ରୀବାସ୍ତବ କହିଲେ  ଥାଉ, ତାକୁ ଆଉ ବିରକ୍ତ କରନାହିଁ । ସେ ଖୁବ୍ ଡରିଯାଇଛି । ତା' ପାଖରେ ମୁଁ ବସୁଛି । ତମେ ଯାଅ ଶୋଇବ । ସକାଳ ହେଉ, ସେ ମନରେ ଶକ୍ତି ଫେରି ପାଉ ତା'ପରେ ଦେଖାଯିବ ।

ମନ୍ଦିରା ଦେବୀ କହିଲେ.  ମୁଁ କେତେଥର କହିଲିଣି ଚମ୍ପା ଏ ଘରେ ଶୋଉ । ରଞ୍ଜୁର ସେଇ ଏକା ଜିଦ୍, ସେ ଏକା ଶୋଇବ । ଏମିତି ଜିଦ୍‌ଖୋର ହେଲେ ଚଳେ !

ଶ୍ରୀବାସ୍ତବ କହିଲେ  ତମେ ବର୍ତ୍ତମାନ ଚୁପ୍ କର । ରଞ୍ଜୁ ଟିକିଏ ପ୍ରକୃତିସ୍ଥ ହେଉ । କାଲି ସକାଳେ ତାକୁ ଉପଦେଶ ଦେବ ।

ସତ୍ୟବ୍ରତ ମହାପାତ୍ର ଘରର ଚାରିଆଡ଼େ ସତର୍କ ଦୃଷ୍ଟି ବୁଲାଇ ସାରି ଧୀରେଧୀରେ ଘରୁ ବାହାରି ଆସୁଥିଲେ । ଶ୍ରୀବାସ୍ତବ ପଛରୁ ଡାକିଲେ  ମିଷ୍ଟର ମହାପାତ୍ର ! ଆପଣ ତା'ହେଲେ କାହାରି ପାଦଶବ୍ଦ ଇତ୍ୟାଦି କିଛି ଶୁଣି ନାହାନ୍ତି ?

ନା, ମୋତେ ଟିକିଏ ଡେରିରେ ନିଦ ହୋଇଥିଲା, ଫଳରେ ମୁଁ ଗାଢ଼ ନିଦରେ ଶୋଇପଡ଼ିଥିଲି । କିଛି ବୁଝିପାରି ନାହିଁ ।

ସତ୍ୟବ୍ରତ ଧୀରେଧୀରେ ଘରୁ ବାହାରି ଚାଲିଗଲେ ।

ସତ୍ୟବ୍ରତ ବିଛଣାରେ ଶୋଇ ଛଟପଟ ହେଉଥିଲେ । ତାଙ୍କ ଆଖିକୁ ନିଦ ଆସୁ ନ ଥିଲା । ସେ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲେ । ରଞ୍ଜିତା ଘରକୁ କିଏ ଯାଇଥିଲା ? ଯେଉଁ ଛାୟାମୂର୍ତ୍ତିଟି ଲୁହା ଗେଟ ଖୋଲି ଭିତରକୁ ଆସିଥିଲା, ସିଏ ତେବେ କିଏ ? ତା'ଛଡ଼ା ଯେଉଁ ନାରୀମୂର୍ତ୍ତିଟି ଉପରୁ ତଳକୁ ଓହ୍ଲେଇ ଆସିଲା ସିଏ ବା କିଏ ? କାରଣ ରଞ୍ଜିତାର ଚିତ୍କାର ଶୁଣି ସତ୍ୟବ୍ରତ ଯାଇ ଦେଖିଲେ, ମନ୍ଦିରା ଦେବୀ ସେଠାରେ ଉପସ୍ଥିତ ଅଛନ୍ତି ।

ସତ୍ୟବ୍ରତ ଧରି ନେଇଥିଲେ ଯେ ମନ୍ଦିରା ଦେବୀ ଶିଡ଼ିରେ ଓହ୍ଲେଇ ଆସିଥିଲେ ସେଇ ଛାୟାମୂର୍ତ୍ତିଟି ସହିତ ସାକ୍ଷାତ କରିବା ପାଇଁ । କିନ୍ତୁ ତାଙ୍କ ଭାବନା ସବୁ ଗୋଳମାଳ ହୋଇଗଲା । ହିସାବ ଅନୁସାରେ ଏଠାରେ ଆଉ ଜଣେ ମହିଳାଙ୍କର ପ୍ରବେଶ ସେ ଧରି ନେଲେ । ଯଦି ତାହାହିଁ ହୁଏ, ତେବେ ସେ ମହିଳା ଜଣକ କିଏ ?

ରଙ୍ଗନାଥ ଶ୍ରୀବାସ୍ତବଙ୍କ ଘରେ ଅବଶ୍ୟ ଚାକର ଚାକରାଣୀ ମିଶି ଦୁଇ

ଚାରିଜଣ ଅଛନ୍ତି । ସେ ତ ସମସ୍ତଙ୍କୁ ସେଠାରେ ରୁଣ୍ଡ ହୋଇଥିବାର ଦେଖିଥିଲେ, କିନ୍ତୁ ଯେଉଁ ନାରୀମୂର୍ତ୍ତିଟି ଉପରୁ ତଳକୁ ଓହ୍ଲେଇ ଆସିଲା, ସେ ନିଶ୍ଚୟ ଚାକରାଣୀ ଭିତରୁ କେହି ନୁହେଁ । ତେବେ ?

ତେବେ କ'ଣ...

ଦରଜାରେ କିଏ ନକ୍ କରିବାର ଶୁଣି ସତ୍ୟବ୍ରତ ମହାପାତ୍ରଙ୍କ ଭାବନା ଥମିଗଲା । ସେ ଉଠିଆସି ଦରଜା ଖୋଲିଲେ । ବାହାରେ ଠିଆ ହୋଇଛନ୍ତି ମନ୍ଦିରା ଦେବୀ ।

ମୁଖମଣ୍ଡଳ ଭାରାକ୍ରାନ୍ତ ।

ସେ ଯେପରି କ୍ଳାନ୍ତ, ବ୍ୟଥିତ ।

ସତ୍ୟବ୍ରତ ଭିତରକୁ ଡାକିଲେ ।

ମନ୍ଦିରା ଦେବୀ ଅଳସ ପାଦ ଚାଳି ଭିତରକୁ ଯାଇ ଗୋଟିଏ ସୋଫା ଉପରେ ବସିପଡ଼ି କହିଲେ : ଦିନକୁଦିନ ସମସ୍ୟା ବଡ଼ ଜଟିଳ ହୋଇଉଠୁଛି ମିଷ୍ଟର ମହାପାତ୍ର । ରଞ୍ଜିତା ଆଜି ନୁହେଁ, ମଝିରେ ମଝିରେ ଏହିପରି ରାତିଅଧରେ ହଠାତ୍ ଚିତ୍କାର କରିଉଠେ । ତେବେ ଆଜିପରି ଏତେଟା କେବେ ହୋଇ ନ ଥିଲା । ମୁଁ ଏ ଘରକୁ ଆସିବା ଦିନୁ ଲକ୍ଷ୍ୟ କରିଛି, ରଞ୍ଜିତା କିପରି ଟିକିଏ ଅସ୍ୱାଭାବିକ । ବେଳେ ବେଳେ ସେ ଏପରି କିଛି କିଛି କାର୍ଯ୍ୟ କରିବସେ ଯାହା ସୁସ୍ଥ ମଣିଷ କେବେ କରିପାରିବ ନାହିଁ । ମୋର ମନେହେଉଛି, ଗୋଟାଏ ଦୁଷ୍ଟଗ୍ରହ ତା' ପଛେ ପଛେ ଘୂରୁଛି । ମିଷ୍ଟର ଶ୍ରୀବାସ୍ତବଙ୍କୁ ମୁଁ କେତେଥର କହିଲିଣି, ଗୋଟାଏ ଗୁଣିଆ ଡାକି ଦେଖେଇବା ପାଇଁ, ସେ ମୋ' କଥା ଶୁଣୁ ନାହାନ୍ତି । ମୁଁ ବି ଜୋର୍ କରିପାରୁ ନାହିଁ । କାରଣ ଆପଣ ହୁଏତ ଜାଣିନାହାନ୍ତି ରଞ୍ଜିତା ମୋର ଜନ୍ମିତା ଝିଅ ନୁହେଁ । ସେଇଥିପାଇଁ ଜୋର୍‌କରି ମୁଁ ନିଜ ଇଚ୍ଛାରେ କିଛି ଗୋଟାଏ କରିପାରୁ ନାହିଁ ।

ସତ୍ୟବ୍ରତ ମନ୍ଦିରା ଦେବୀଙ୍କୁ ସାନ୍ତ୍ୱନା ଦେଲେ । କହିଲେ: ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ତ ଏ ଘରକୁ ଆସିଲିଣି । ମିଷ୍ଟର ଶ୍ରୀବାସ୍ତବଙ୍କୁ ମୁଁ ବୁଝାଇ କହିବି । କିନ୍ତୁ ମୁଁ ତ ରଞ୍ଜିତା ଠାରେ କିଛି ଅସ୍ୱାଭାବିକତା ଲକ୍ଷ୍ୟ କରିପାରୁ ନାହିଁ ?

: ଆପଣ ତ କାଲି ଆସିଲେ । ଆପଣଙ୍କ ସହିତ ତା'ର ମାତ୍ର କେଇ ଘଣ୍ଟାର ଦେଖାସାକ୍ଷାତ । ଧୀରେ ଧୀରେ ଆପଣ ଲକ୍ଷ୍ୟ କରିବେ, ତେବେ ବାହାରକୁ ଫୁଟିଉଠିଲା ଭଳି ଖୁବ୍ ଗୋଟାଏ ଅସ୍ୱାଭାବିକତା କିଛି ନାହିଁ । ତଥାପି ମୋର ମନେହୁଏ ରଞ୍ଜିତା କିପରି ଅସ୍ୱାଭାବିକ । ମୋର ଆପଣଙ୍କୁ କହିବା କଥା, ଆପଣ ରଞ୍ଜିତାର ଗାଇଡ୍ ହୋଇଆସିଛନ୍ତି । ରଞ୍ଜିତାର ଭଲମନ୍ଦ ପ୍ରତି ଦୃଷ୍ଟି ଦେବା ଆପଣଙ୍କର କର୍ତ୍ତବ୍ୟ । ସେଇ ଦୃଷ୍ଟିରୁ ମୋର ଆପଣଙ୍କୁ କହିବା କଥା ହେଲା, ଆପଣ ରଞ୍ଜିତା ସମ୍ବନ୍ଧରେ ଟିକିଏ ମିଷ୍ଟର ଶ୍ରୀବାସ୍ତବଙ୍କୁ କହିବେ । ମୋ' ମତରେ ରଞ୍ଜିତାର ଚିକିତ୍ସା କରିବା ଉଚିତ୍ ।

ସତ୍ୟବ୍ରତ ମନ୍ଦିରା ଦେବୀଙ୍କର ରଞ୍ଜିତା ପ୍ରତି ଅନ୍ତରଙ୍ଗତା ଲକ୍ଷ୍ୟ କଲେ । କହିଲେ ମୁଁ ମିଷ୍ଟର ଶ୍ରୀବାସ୍ତବଙ୍କୁ କହିବି । ତେବେ ଟିକିଏ ସମୟ ହେଉ । ମୋର କର୍ତ୍ତବ୍ୟରେ ମୁଁ କେବେ ଅବହେଳା କରିବି ନାହିଁ । ବର୍ତ୍ତମାନ ରଞ୍ଜିତା ପ୍ରକୃତିସ୍ଥ ହେଲାଣି ?

ହଁ, ତେବେ ବିଶେଷ କିଛି କହୁନାହିଁ । ଖାଲି କହୁଛି କେହି ଜଣେ ତା' ଘରକୁ ଆସିଥିଲା, ସେ ଦୁଃସ୍ୱପ୍ନ ଦେଖୁନାହିଁ ।

ମିଷ୍ଟର ଶ୍ରୀବାସ୍ତବ ?

ତା'ରି ପାଖରେ ବସିଛନ୍ତି ।

ଆପଣ ତା'ହେଲେ ଯାଆନ୍ତୁ ଟିକିଏ ବିଶ୍ରାମ କରିବେ । ଯାହା ତ ହେବାର ହୋଇଗଲାଣି । ସକାଳ ନ ହେବାଯାଏ ଆଉ ଚିନ୍ତା କରି ଲାଭ କ'ଣ ହେବ ?

: ଚିନ୍ତା ମୁଁ ନ କଲେ ଆଉ କରିବ କିଏ କୁହନ୍ତୁ ? ରଞ୍ଜିତାର ତ ମୋ' ଛଡ଼ା ଆପଣାର ଲୋକ ଆଉ କେହି ନାହିଁ । ମିଷ୍ଟର ଶ୍ରୀବାସ୍ତବ ପୁରୁଷ ଲୋକ । ଦିନସାରା ସେ ତାଙ୍କର କାମ ନେଇ ବ୍ୟସ୍ତ ରହୁଛନ୍ତି । ଅକାଳେ ସକାଳେ ସିନା ସେ ଝିଅ କଥା, ଘର କଥା ଭାବୁଛନ୍ତି ! ତାଙ୍କର ସମୟ କାହିଁ ଯେ ସବୁକଥା ବୁଝିବେ ।

ସତ୍ୟବ୍ରତ କହିଲେ ପୁରୁଷଲୋକମାନେ ସବୁବେଳେ ସେଇଆ । ବାହାରେ ବାହାରେ ସେମାନଙ୍କର ଜୀବନ କଟିଯାଏ । ଘର ସମ୍ଭାଳନ୍ତି ସ୍ତ୍ରୀଲୋକମାନେ, ସନ୍ତାନ ସନ୍ତତିକୁ ମଣିଷ ବି କରନ୍ତି ସେମାନେ । ସେ ଦୃଷ୍ଟିରୁ ଆପଣଙ୍କ କର୍ତ୍ତବ୍ୟ ରଞ୍ଜିତା ପ୍ରତି ଯଥେଷ୍ଟ ରହିଛି ଏବଂ ଆପଣଙ୍କ କର୍ତ୍ତବ୍ୟ ପରିସରର ବାହାରର କଥା ମିଷ୍ଟର ଶ୍ରୀବାସ୍ତବ ବୁଝିବା ଉଚିତ୍ ।

ମୁଁ ସେଇକଥା ମୋଟେ ତାଙ୍କୁ ବୁଝାଇପାରିଲି ନାହିଁ ।

ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଧୀରେ ଧୀରେ ସବୁ ଠିକ୍ ହୋଇଯିବ ।

ନୀରବତା ଭିତରେ କିଛି ସମୟ ଅତିବାହିତ ହୋଇଗଲା ।

ମନ୍ଦିରା ଦେବୀ ଉଠୁ ଉଠୁ ପୁଣି ବସିପଡ଼ିଲେ । ଧୀରେ ଧୀରେ କହିଲେ : ଆଚ୍ଛା ମିଷ୍ଟର ମହାପାତ୍ର ! ଆପଣ ତ ଏଇ ଶିଡ଼ି ମୁଣ୍ଡ ଘରରେ ରହୁଛନ୍ତି, ରଞ୍ଜିତା ଯାହା କହୁଛି ଯଦି ସତ ହୋଇଥାଏ, ତେବେ ଲୋକଟା ତ ଏଇବାଟେ ଅନ୍ତର୍ଦ୍ଧାନ ହୋଇଥିବ । ଆପଣ କିଛି ଜାଣିପାରି ନାହାନ୍ତି ?

ସତ୍ୟବ୍ରତ ମହାପାତ୍ର ହଠାତ୍ ମନ୍ଦିରା ଦେବୀଙ୍କ ମୁହଁରୁ ଏପରି ଏକ ପ୍ରଶ୍ନ ଆଶାକରି ନ ଥିଲେ । ସେ ମୁହୂର୍ତ୍ତେ ନୀରବ ରହି, ମନ୍ଦିରା ଦେବୀଙ୍କ ମୁହଁ ଉପରୁ ଏକ କ୍ଷିପ୍ର ଚାହାଣି ବୁଲେଇ ନେଇ କହିଲେ, : ନା ମନ୍ଦିରା ଦେବୀ । ମୋର ନିଦଟା ସବୁଦିନ ଟିକିଏ ଗାଢ଼ । ତା'ଛଡ଼ା ଏ ନୂଆ ଜାଗାରେ ମୋତେ ସହଜେ ନିଦ ହେଲା

ନାହିଁ । ଶୋଉ ଶୋଉ ଅନେକ ରାତି ହୋଇଗଲା । ମୁଁ କିଛି ବୁଝିପାରି ନାହିଁ । ଏପରିକି ରଞ୍ଜିତାର ଚିତ୍କାର ମଧ୍ୟ ମୁଁ ଶୁଣି ନାହିଁ । କେବଳ ଆପଣମାନଙ୍କ ପାଟିଗୋଳ ଶୁଣି ମୋ' ନିଦଟା ଭାଙ୍ଗିଗଲା । ଯା'ହେଉ ସେଥିପାଇଁ ଆପଣ ଏତେ ଚିନ୍ତା କରନ୍ତୁ ନାହିଁ । ଯାହା ହେବାର ଥିଲା ହୋଇଯାଇଛି । ଆଉ ଯେପରି ଏହାପରେ କିଛି ନ ଘଟେ ସେଥିପାଇଁ ବରଂ ଚେଷ୍ଟା କରିବା ।

ମନ୍ଦିରା ଦେବୀ ଅଳସ ଭାଙ୍ଗିଲେ । ହାଇ ତୋଳିଲେ । ଉଠି ଠିଆହେଲେ : ଆଚ୍ଛା ମିଷ୍ଟର ମହାପାତ୍ର ! ଆଜି ମୁଁ ଆସୁଛି, କାଲି ସକାଳେ ଏ ସମ୍ବନ୍ଧରେ ସବିଶେଷ ଆଲୋଚନା କରିବା ।

ରାତି ପାହି ସକାଳ ହେଲା । ସତ୍ୟବ୍ରତ ଉଠି ନିତ୍ୟକର୍ମ ଶେଷ କଲେ ।

ଚାକର ଆଣି ଚା' ଦେଇଗଲା ।

କିନ୍ତୁ ମିଷ୍ଟର ଶ୍ରୀବାସ୍ତବ ମନ୍ଦିରା ଦେବୀ ବା ରଞ୍ଜିତା କେହି ଏ ପର୍ଯ୍ୟନ୍ତ ଉଠିନାହାନ୍ତି । କାହାରି ନିଦ ଭାଙ୍ଗି ନାହିଁ । ଗତ ରାତିରେ ଯେ ଗୋଟାଏ ଘଟଣା ଘଟିଯାଇଛି, ସେକଥା ଯେପରି କାହାରି ମନେ ନାହିଁ ।

ସତ୍ୟବ୍ରତ ନିଜେ ଉଠିକରି ରଞ୍ଜିତା ଘରଯାଏ ଗଲେ । ଭିତରୁ କବାଟ ବନ୍ଦ ହୋଇଥିଲା । ଦରଜାରେ ନକ୍ କରିବାରୁ ରଞ୍ଜିତା ଆସି କବାଟ ଖୋଲିଦେଲା । ସତ୍ୟବ୍ରତଙ୍କ ମୁହଁକୁ ଜଳଜଳ କରି ଅନାଇ ରହିଲା ।

ସତ୍ୟବ୍ରତ କହିଲେ ଭିତରକୁ ଚାଲ ।

ରଞ୍ଜିତା ଯାଇ ତା' ବିଛଣା ଉପରେ ବସିଲା ।

ସତ୍ୟବ୍ରତ ଗୋଟିଏ ଚେଆର ଉପରେ ବସି ପଚାରିଲେ କାଲି ରାତିର ଘଟଣା ସମ୍ବନ୍ଧରେ ମୁଁ କିଛି ଜାଣିବାକୁ ଚାହେଁ ।

କ'ଣ ଆଉ ଜାଣିବେ ? ରଞ୍ଜିତା ବିରସ କଣ୍ଠରେ କହିଲା । ମୋର ମନେହେଉଛି ସେଇ ଲୋକଟା ପୁଣି କାଲି ରାତିରେ ଆସିଥିଲା ଏବଂ ସେ ମୋ' ଗଳା ଟିପି ମୋତେ ହତ୍ୟା କରିବାକୁ ଚେଷ୍ଟା କରିଥିଲା ।

ଏଁ ! ସତ୍ୟବ୍ରତ ଯେପରି ଅବିଶ୍ୱାସ୍ୟ ଚାହାଣିରେ ରଞ୍ଜିତାକୁ ଅନାଇ ରହିଲେ । ଧୀରେ ଧୀରେ କହିଲେ, ତମେ ସେ ଲୋକଟାକୁ ଦେଖିଛ ରଞ୍ଜୁ ?

ହଁ ମୁଁ ଦେଖିଛି । ତେବେ ସ୍ୱଷ୍ଟ ଦେଖିପାରି ନାହିଁ । ଦେଖିଲେ ଚିହ୍ନିପାରିବି ନାହିଁ । ସେ ଯେତେବେଳେ ମୋ' କଣ୍ଠନଳୀଟାକୁ ଟିପି ଧରିଲା ମୋର ପ୍ରାୟ ଶ୍ୱାସରୁଦ୍ଧ

ହୋଇଆସିଥିଲା । ମୁଁ ଚିତ୍କାର କରିଉଠିଲି । ସଙ୍ଗେ ସଙ୍ଗେ ବେଡ଼୍ ସୁଇଚଟା ଜଳେଇ ଦେଲି । ଦେଖିଲି ଲୋକଟା ପଳାଇ ଯାଉଛି । ତା' ସର୍ବାଙ୍ଗ କଳା ପୋଷାକରେ ଆବୃତ ।

ରଞ୍ଜିତା କଥା କହିଲା ବେଳେ ଶିହରି ଉଠୁଥିଲା ।

ସତ୍ୟବ୍ରତ ପଚାରିଲେ ତମେ କ'ଣ ଘରର କବାଟ ବନ୍ଦକରି ନଥିଲ ?

ମୋର ଠିକ୍ ମନେପଡୁ ନାହିଁ । ତେବେ ମୁଁ ପ୍ରତିଦିନ ଶୋଇବା ଆଗରୁ ଦରଜା ବନ୍ଦ କରି ଶୁଏ । ମୋର ସିଏ ଗୋଟାଏ ଅଭ୍ୟାସ । ମୋର ମନେହେଉଛି, ମୋ' ଦରଜା ଖୋଲିବାର ଗୋଟାଏ ଚାବି ତା' ପାଖରେ ଅଛି ।

ହୁଁ । ସତ୍ୟବ୍ରତ କ'ଣ ଟିକିଏ ଚିନ୍ତା କଲେ । କହିଲେ, ଆଚ୍ଛା ଯେଉଁ ଲୋକଟି କାଲି ରାତିରେ ତମ ଘରେ ପ୍ରବେଶ କରିଥିଲା, ସେ ଲୋକଟି ସ୍ତ୍ରୀ କି ପୁରୁଷ, ତମେ କିଛି ଚିହ୍ନି ପାରିଥିଲ ?

ନା, ତେବେ ମୋର ମନେହେଉଛି ସେ ପୁରୁଷ । ପୁରୁଷ ନହେଲେ ତା' ଦେହରେ ଏତେ ବଳ ଆସିବ କୁଆଡୁ ?

: ଆଚ୍ଛା ରଞ୍ଜୁ । ତମେ କହୁଛ କାଲି ରାତିରେ ସେ ଲୋକଟା ତମ ଗଳା ଟିପି ତମକୁ ହତ୍ୟା କରିବାର ଉଦ୍ୟମ କରୁଥିଲା, ତମେ କହିପାରିବ ସେଇ ଲୋକଟାର ତମୁକୁ ହତ୍ୟା କରିବା ମୂଳରେ କି ଉଦ୍ଦେଶ୍ୟ ଥାଇପାରେ ?

: ଉଦ୍ଦେଶ୍ୟ ? ରଞ୍ଜିତା ଏପରି ଏକ ଅଭାବିତ ପ୍ରଶ୍ନ ଶୁଣି କିଛି ଉତ୍ତର ଦେଇପାରିଲା ନାହିଁ । ସେ ବରଂ ଓଲଟି ପ୍ରଶ୍ନ କଲା, ସତେ ତ ! ମୋତେ ହତ୍ୟା କରି ତା'ର ଲାଭ ବା କ'ଣ ହେବ ?

ସତ୍ୟବ୍ରତ କହିଲେ : ଲାଭ ନିଶ୍ଚୟ ତା'ର ଅଛି । ଯା' ହେଉ ସେଇ ଲାଭର ଉଦ୍ଦେଶ୍ୟଟାକୁ ଆମକୁ ଖୋଜି ବାହାର କରିବାକୁ ହେବ, ତା'ହେଲେ ସମସ୍ୟାର ସମାଧାନ ହୋଇପାରିବ । ଆଜିଠାରୁ ତୁମକୁ କିନ୍ତୁ ସାବଧାନରେ ଚଲାବୁଲା କରିବାକୁ ପଡ଼ିବ ରଞ୍ଜୁ । ଖୁବ୍ ସାବଧାନ ।

କିନ୍ତୁ ମୁଁ ତ ବୁଝିପାରୁ ନାହିଁ ମୁଁ କାହାର କ'ଣ ସର୍ବନାଶ କରିଛି ବୋଲି । କିଏ ବା କାହିଁକି ମୋ' ଉପରେ ପ୍ରତିଶୋଧ ନେବାକୁ ବସିଛି ?

ଏଇ ଜଗତରେ ଅନେକ ସ୍ୱାର୍ଥପର ଲୋକ ଅଛନ୍ତି, କାହାର ସ୍ୱାର୍ଥ ଓ ଉଦ୍ଦେଶ୍ୟ ଯେ କେଉଁ ଭାବରେ ପ୍ରସାରିତ, ଚିନ୍ତା କରିହେବ ନାହିଁ । ତୁମେ ଯାଅ । ନିତ୍ୟକର୍ମ ଶେଷକରି ନିଜର କାମ କର । କାଲି ରାତିରେ ଗୋଟାଏ ଦୁର୍ଘଟଣା ଘଟିଥିଲା ଏବଂ ତୁମେ ସେ ଘଟଣା ସହିତ ଜଡ଼ିତ ଥିଲ, ସେ କଥା ଏକବାରେ ଭୁଲିଯାଅ । ମୁଁ ଯେତେବେଳେ ଆସି ଏଠାରେ ରହିଛି, ତମର ସବୁ ଦାୟିତ୍ୱ ଆଜିଠାରୁ ମୋର ।

ସତ୍ୟବ୍ରତ ଚାଲିଆସୁଥିଲେ ।

ମନ୍ଦିରା ଦେବୀ ପଛରୁ ଡାକିଲେ । ସେ ନିଦରୁ ଉଠି ରଞ୍ଜିତାକୁ ଦେଖିବା ପାଇଁ ଆସୁଥିଲେ ।

ସତ୍ୟବ୍ରତ ଠିଆ ହୋଇପଡ଼ିଲେ ।

ମନ୍ଦିରା ଦେବୀ କହିଲେ   ଆପଣଙ୍କ ଘରକୁ ଚାଲନ୍ତୁ ।

ଘରେ ପହଞ୍ଚି ମନ୍ଦିରା ଦେବୀ କହିଲେ   ରଞ୍ଜୁ କିଛି କହୁଥିଲା ?

ହଁ ସେ କହୁଥିଲା, ସେ କିଛି ବୁଝିପାରି ନାହିଁ । ତା'ର ମନେହେଲା କେହି ଜଣେ ତା'ର ଗଳା ଚିପି ଧରିଛି । ସେ ଉଠିବାକୁ ଚେଷ୍ଟା କଲା, ଉଠିପାରିଲା ନାହିଁ । ଚିତ୍କାର କରିବାକୁ ଚେଷ୍ଟାକରି ସଫଳ ହୋଇଛି କି ନାହିଁ, ତା'ର ମନେ ନାହିଁ ।

ରଞ୍ଜିତା ମୁହଁରୁ ସବୁକଥା ଶୁଣିଲେ ତ ? ଏଥର ଆପଣଙ୍କର କ'ଣ ମନେହେଉଛି ? ମନ୍ଦିରା ଦେବୀ ପଚାରିଲେ ।

ହଁ, ମୋର ମନେହେଉଛି ଆପଣ ଯାହା କହୁଥିଲେ, ସେଇଆ ଠିକ୍ । ରଞ୍ଜିତାର ଏହା ଗୋଟାଏ ଦୁଃସ୍ୱପ୍ନ । ତା' ନହେଲେ ଏଇ ବନ୍ଦଘର ଭିତରେ ଏପରି ଏକ ଦୁର୍ଘଟଣା ଘଟିବା ଏକ ଅସମ୍ଭବ ବ୍ୟାପାର ।

: ଶୁଣନ୍ତୁ ମିଷ୍ଟର ମହାପାତ୍ର । ମୋ' କଥା ମିଷ୍ଟର ଶ୍ରୀବାସ୍ତବ ମୋଟେ ବିଶ୍ୱାସ କରିବାକୁ ଚାହାନ୍ତି ନାହିଁ । ଏବେ ବି ସେ ମୋ' ସହିତ ଯୁକ୍ତି କରୁଛନ୍ତି ଘଟଣାଟା ବାସ୍ତବ ବୋଲି । ପୁଣି କହୁଛନ୍ତି ଏ ସମ୍ବନ୍ଧରେ ଥାନାରେ ସେ ରିପୋର୍ଟ କରିବେ । ଆପଣ ଟିକେ ତାଙ୍କୁ ବୁଝାଇ କୁହନ୍ତୁ । ଘରର ଗୁମର ପଦାରେ ପକାଇବାକୁ ମୁଁ ଚାହେଁନି । ପୋଲିସ ଲୋକ ଘରେ ପଶିଲେ ଜିରାରୁ ଶିରା କାଢ଼ିବେ ।

ଆଚ୍ଛା ଆଚ୍ଛା, ମୁଁ ମିଷ୍ଟର ଶ୍ରୀବାସ୍ତବଙ୍କୁ ବୁଝାଇ କହିବି । ତେବେ ଆପଣ ଟିକିଏ ରଞ୍ଜିତା ପ୍ରତି ଦୃଷ୍ଟି ରଖନ୍ତୁ ।

ମନ୍ଦିରା ଦେବୀ ଆଉ କ'ଣ କହିଥାଆନ୍ତେ, କିନ୍ତୁ ଗୋଟିଏ ଚାକର ଆସି ଖବର ଦେଲା, ତାଙ୍କୁ ସାହେବ ଡାକୁଛନ୍ତି । ସେ ତରତର ହୋଇ ଘରୁ ବାହାରି ଚାଲିଗଲେ ।

ସତ୍ୟବ୍ରତ ମହାପାତ୍ର ପୁଣି ଚିନ୍ତାରେ ପଡ଼ିଗଲେ ।

ରଞ୍ଜିତାର ମମି ଆଉ ଡାଡିଙ୍କୁ ଛାଡ଼ିଦେଲେ ସେପରି ଆତ୍ମୀୟ ଲୋକ କେହି ନାହିଁ । କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଯାହା ଦେଖାଯାଉଛି ମମି ଆଉ ଡାଡି ଦୁଇଜଣଯାକ ରଞ୍ଜିତାର ହିତାକାଂକ୍ଷୀ । ତେବେ ରଞ୍ଜିତାର ଏଇ ସର୍ବନାଶଟି କରିବା ପାଇଁ କିଏ ଷଡ଼ଯନ୍ତ୍ର କରୁଛି ?

ଆଜି ଆଉ ଥରେ ଚାରୁ ମଜୁମଦାରଙ୍କ ଘରକୁ ଯିବାକୁ ହେବ । ତାଙ୍କରି ଠାରୁ ସବୁ ତଥ୍ୟ ବୁଝିଆସିବାକୁ ହେବ । ନିଶ୍ଚୟ ଏ ଘରେ ଗୋଟାଏ କିଛି ରହସ୍ୟର କୁହୁକ ଜାଲ ବିଛା ହୋଇଛି । ଯେଉଁ ଜାଲରେ ଛନ୍ଦି ହୋଇପଡ଼ିଛି ରଞ୍ଜିତା ।

ହୁଏତ ଶ୍ରୀବାସ୍ତବ ତାହା ଜାଣନ୍ତି ନାହିଁ ।

ହୁଏତ ମନ୍ଦିରା ଦେବୀ ତା'ର ସୁରାକ ପାଇ ନାହାନ୍ତି ।

ଅଥବା ଦୁଇଜଣ ଯାକ ଜାଣି ବି ନ ଜାଣିଲା ପରି ଅଭିନୟ କରୁଛନ୍ତି । ଯାହା ହେଉ, ଏ ରହସ୍ୟର ସୂତ୍ର ଉଦ୍‌ଘାଟନ କରିବାକୁ ହେବ । ବିଚାରୀ ରଞ୍ଜିତା ! ସରଳ କୋମଳ ଗୋଟିଏ ପ୍ରାଣ । ଅକାଳରେ କୀଟଦ୍ରଷ୍ଟ ହୋଇ ଝରିପଡ଼ିବାକୁ ଦିଆଯିବ ନାହିଁ ।

ସତ୍ୟବ୍ରତ କିଛି ସ୍ଥିରନିଶ୍ଚିତ ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ମିଷ୍ଟର ଶ୍ରୀବାସ୍ତବ ଆସି ଉପସ୍ଥିତ ହେଲେ । ମୁହଁରେ ତାଙ୍କର ଦୁଶ୍ଚିନ୍ତାର ପ୍ରତିଫଳନ । ସେ କହିଲେ କାଲି ରାତିର ଘଟଣା ପାଇଁ ମୁଁ ବଡ଼ ଚିନ୍ତିତ ମିଷ୍ଟର ମହାପାତ୍ର । ଏଥିରେ ଆଉ ସନ୍ଦେହ ନାହିଁ ଯେ କାଲି ରାତିରେ କେହି ଜଣେ ରଞ୍ଜିତା ଘରେ ପ୍ରବେଶ କରିଥିଲା ।

: ହୁଏତ ପ୍ରବେଶ କରିଥିଲା । ସତ୍ୟବ୍ରତ କହିଲେ । କିନ୍ତୁ ଆପଣ କହିପାରିବେ, ସେହି ଲୋକଟାର ରଞ୍ଜିତା ଘରେ ପ୍ରବେଶ କରିବାର ଉଦ୍ଦେଶ୍ୟ କ'ଣ ?

ଉଦ୍ଦେଶ୍ୟ ? ରଞ୍ଜିତାର କଥା ଯଦି ସତ୍ୟ ହୁଏ, ତେବେ ଉଦ୍ଦେଶ୍ୟ ସାଂଘାତିକ । ସେ ରଞ୍ଜିତାକୁ ହତ୍ୟା କରିବାକୁ ଚାହେଁ ।

: କିନ୍ତୁ କାହିଁକି ? ସତ୍ୟବ୍ରତ ପ୍ରଶ୍ନ କଲେ । ଏହି ହତ୍ୟାର ଅନ୍ତର୍ନିହିତ ଉଦ୍ଦେଶ୍ୟ କ'ଣ ?

ସେଇକଥା ମୁଁ ବି ଚିନ୍ତା କରୁଛି ମିଷ୍ଟର ମହାପାତ୍ର । ରଞ୍ଜିତା ମୋର ଏକମାତ୍ର ସନ୍ତାନ । କାହାରି ସୁଖସମୃଦ୍ଧିରେ ତା'ର ଈର୍ଷା ନାହିଁ । ଅଥଚ ରଞ୍ଜିତା ପରି ଏକ ନିରୀହ ପ୍ରାଣ ପ୍ରତି କାହାର କାହିଁକି ଏତେ ନିଷ୍ଠୁର ଆଚରଣ ?

ସତ୍ୟବ୍ରତ କହିଲେ କାହାରି ସୁଖସମୃଦ୍ଧିରେ ସିନା ରଞ୍ଜିତାର ଈର୍ଷା ନାହିଁ, କିନ୍ତୁ କାହାରି ସୁଖସମୃଦ୍ଧିରେ ଯଦି ରଞ୍ଜିତାର ଭାଗ ଥାଏ ?

: ମାନେ ? ମିଷ୍ଟର ଶ୍ରୀବାସ୍ତବ ଯେପରି ଚମକି ଉଠିଲେ । କହିଲେ, ନା ନା, ଏ ଆପଣ କ'ଣ କହୁଛନ୍ତି । ମୁଁ ବିଶ୍ୱାସ କରିପାରିବି ନାହିଁ । ଏହା ଅସମ୍ଭବ । ଏ ଦୁନିଆରେ କାହାରି ନା କାହାରି ସୁଖସମୃଦ୍ଧି ସହିତ ଅନ୍ୟ ଜଣେ ଜଡ଼ିତ । ତେଣୁ ଆତ୍ମୀୟ ପରିଜନମାନଙ୍କୁ ସନ୍ଦେହ କରିବା ଉଚିତ୍ ନୁହେଁ । ଆପଣ ଏ ସମ୍ବନ୍ଧରେ ଟିକିଏ ଭଲ ଭାବରେ ଚିନ୍ତା କରନ୍ତୁ । ମୁଁ ଆଜିଠାରୁ ଆପଣଙ୍କୁ ଆଉ ଗୋଟିଏ ଦାୟିତ୍ୱ ଦେଲି । ରଞ୍ଜିତାର ଏଇ ଅଦୃଶ୍ୟ ହତ୍ୟାକାରୀର ସନ୍ଧାନ ଆପଣଙ୍କୁ ଖୋଜି ବାହାର କରିବାକୁ ହେବ ।

ସତ୍ୟବ୍ରତ କହିଲେ ମୁଁ ଚେଷ୍ଟା କରିବି ନିଶ୍ଚୟ । ମୋ' ଉପସ୍ଥିତିରେ କାଲି ରାତିରେ ଯେଉଁ ଦୁର୍ଘଟଣା ଘଟିବାକୁ ଯାଉଥିଲା, ପ୍ରକୃତରେ ତାହା ଏକ ଅଭାବିତ ଦୁର୍ଘଟଣା । କିନ୍ତୁ ମୁଁ ବୁଝିପାରୁ ନାହିଁ ଏପରି ଏକ ଅଶୋଭନୀୟ ଘଟଣାର ମୂଳ ଉତ୍ସ କ'ଣ ହୋଇପାରେ । ସେ ଯା' ହେଉ ମୁଁ ତାକୁ ଖୋଜି ବାହାର କରିବି । ଆପଣ ନିଶ୍ଚିନ୍ତ ରୁହନ୍ତୁ । ଏ ଦାୟିତ୍ୱ ମୋର ।

ମିଷ୍ଟର ଶ୍ରୀବାସ୍ତବ ଯେପରି ଟିକିଏ ଆଶ୍ୱସ୍ତ ହେଲେ । କହିଲେ: କେତେ ଦିନ ହେଲା ମୁଁ ଲକ୍ଷ୍ୟ କରୁଛି, ରଞ୍ଜିତାର ଚାଲିଚଳଣ, ଆଚାର ଆଚରଣ ଟିକିଏ ଅସ୍ୱାଭାବିକ

ମନେହେଉଛି । ଅବଶ୍ୟ ରଞ୍ଜିତା ଜୀବନରେ ଏହି ବ୍ୟତିକ୍ରମ ମୋ' ଆଖିରେ ଯେତେଟା ପଡୁନାହିଁ, ମନ୍ଦିରା ସେତେଟା ଲକ୍ଷ୍ୟ କରୁଛି । ସେ ମୋତେ କେତେ ଥର କହିଲାଣି, ରଞ୍ଜିତାର ଏକ ବିଧିବଦ୍ଧ ଚିକିତ୍ସା କରିବା ପାଇଁ । ଆପଣ କ'ଣ ମନେ କରୁଛନ୍ତି ?

: ନା ମୋର ମନେ କରିବାର କ'ଣ ଅଛି ? ରଞ୍ଜିତା ଯଦି ଅସୁସ୍ଥ ହୋଇଥାଏ, ତେବେ ତା'ର ଚିକିତ୍ସା ନିଶ୍ଚୟ କରିବାକୁ ହେବ । ଯା' ହେଉ ସେ ଦିଗରୁ ମଧ୍ୟ ଆପଣ ନିଶ୍ଚିନ୍ତ ରୁହନ୍ତୁ । ମୁଁ କିଛି ଦିନ ରଞ୍ଜିତାକୁ ଲକ୍ଷ୍ୟ କରୁଛି । ଦୈନନ୍ଦିନ ଜୀବନର ବ୍ୟତିକ୍ରମ ପ୍ରତି ମୁଁ ଲକ୍ଷ୍ୟ ରଖିଛି । ଯଦି କିଛି କରିବାକୁ ହୁଏ, ମୁଁ ଆପଣଙ୍କୁ କହିବି ।

ଆପଣ ମୋତେ ବଞ୍ଚାଇ ଦେଲେ ମିଷ୍ଟର ମହାପାତ୍ର । ଆମର ଗୋଟାଏ ନୂଆ ଯୋଜନା ନେଇ ମୁଁ ଏତେ ବ୍ୟସ୍ତ ଅଛି ଯେ, ମୋର ଏ ଆଡ଼େ ନଜର ଦେବାର ସମୟ ମୋଟେ ନାହିଁ । ତା' ଭିତରେ ଏଇ ଦୁର୍ଘଟଣା ବାସ୍ତବିକ ମୋତେ ବିବ୍ରତ କରିପକାଇଥିଲା । ଆପଣଙ୍କୁ ପାଇ ମୁଁ ନିଶ୍ଚିନ୍ତ ହେଲି ।

ମିଷ୍ଟର ଶ୍ରୀବାସ୍ତବ ଉଠି ଠିଆହେଲେ ଏବଂ ସତ୍ୟବ୍ରତ ମହାପାତ୍ରଙ୍କ ହାତଯୋଡ଼ାକ ଚାପିଧରି କହିଲେ  ରଞ୍ଜିତାର ଦାୟିତ୍ୱ ଆପଣଙ୍କର ମିଷ୍ଟର ମହାପାତ୍ର । ମୁଁ ଆଜି ଦିଲ୍ଲୀ ଯାଉଛି । ଫେରିବାକୁ ତିନି ଚାରିଦିନ ସମୟ ଲାଗିବ । ଯଦି କିଛି ବିଶେଷ ପ୍ରୟୋଜନ ହୁଏ ତେବେ ମୋତେ ଫୋନ କଲେ ମୁଁ ସଙ୍ଗେ ସଙ୍ଗେ ଚାଲିଆସିବି ।

ସତ୍ୟବ୍ରତ ମହାପାତ୍ର କହିଲେ  ଆପଣ ନିଶ୍ଚିନ୍ତରେ ଯାଆନ୍ତୁ । ସବୁ ଦାୟିତ୍ୱ ମୋର ।

ସେଦିନ ସଂଧ୍ୟାବେଳକୁ ସତ୍ୟବ୍ରତ ପୁଣି ଗଲେ ଚାରୁ ମଜୁମଦାରଙ୍କ ଘରକୁ ।

ଚାରୁ ମଜୁମଦାର ଚେମ୍ବରରେ ବସି କ'ଣ ଗୋଟାଏ କେସ୍ ସମ୍ବନ୍ଧରେ ଗଭୀର ମନଯୋଗ ସହକାରେ ଆଇନ ବହି ଘାଣ୍ଟୁଥିଲେ ।

ସତ୍ୟବ୍ରତଙ୍କୁ ଦେଖି କିଛି ସମୟ ବସିବାକୁ କହିଲେ ।

ବେଶୀ ସମୟ ବସିବାକୁ ହେଲା ନାହିଁ । ଦଶ ପନ୍ଦର ମିନିଟ ପରେ ଚାରୁ ମଜୁମଦାର କେସ୍ ଫାଇଲଟା ବାନ୍ଧୁ ବାନ୍ଧୁ କହିଲେ, କୁହନ୍ତୁ ମହାପାତ୍ର ସାହେବ, ଆପଣ ନିଶ୍ଚୟ ଶ୍ରୀବାସ୍ତବଙ୍କ ସମ୍ବନ୍ଧରେ ମୋ'ଠାରୁ କିଛି ଜାଣିବାକୁ ଆସିଛନ୍ତି ।

ଆପଣଙ୍କ ଅନୁମାନ ସତ୍ୟ ସାର୍ । ମୁଁ ଟିକିଏ ଶ୍ରୀବାସ୍ତବଙ୍କ ମୃତ୍ୟୁ ପରର ସମ୍ବାଦ ଜାଣିବାକୁ ଚାହେଁ ! ମିଷ୍ଟର ଶ୍ରୀବାସ୍ତବଙ୍କ ମୃତ୍ୟୁ ପରେ ତାଙ୍କର ସମସ୍ତ ସମ୍ପତ୍ତିର କିଏ ମାଲିକ ହେବ, ସେ କାହା ନାମରେ କୌଣସି ଉଇଲ କରିଯାଇଛନ୍ତି କି ନାହିଁ, ଅଥବା ଆଇନତଃ ତାଙ୍କ ସମ୍ପତ୍ତିର ମାଲିକାନା ସମ୍ବନ୍ଧରେ କୌଣସି ବୈଚିତ୍ର୍ୟ ଅଛି କି ନାହିଁ, ଏଇସବୁ ସମ୍ବନ୍ଧରେ ମୋତେ ଆପଣ ଟିକିଏ ଆଲୋକ ଦିଅନ୍ତୁ ।

ଚାରୁ ମଜୁମଦାର କିଛି ସମୟ ନୀରବ ହୋଇ ବସିରହିଲେ । ଅପଲକ ନୟନରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ ରହିଲେ । ତା'ପରେ ଧୀରେ ଧୀରେ କହିଲେ : ଆପଣ ରଙ୍ଗନାଥ ଶ୍ରୀବାସ୍ତବଙ୍କ ଘରୋଇ ଜୀବନ ସମ୍ପର୍କରେ ଯାହା ସବୁ ଜାଣିବାକୁ ଚାହାନ୍ତି ମୁଁ ବୁଝିପାରିଛି । କିନ୍ତୁ ମୋର ସେ ସବୁ କହିବା କ'ଣ ଉଚିତ ହେବ ? ମୁଁ ରଙ୍ଗନାଥ ଶ୍ରୀବାସ୍ତବଙ୍କର ଆଇନ ଉପଦେଷ୍ଟା । ତାଙ୍କ ଜୀବନର ସମସ୍ତ ଗୋପନ କଥା ମୋତେ ଜଣାଅଛି । ତା' ବୋଲି ମୁଁ ସେ ସବୁ ପ୍ରକାଶ କରିବାର ଅଧିକାର ତ ଶ୍ରୀବାସ୍ତବଙ୍କ ଠାରୁ ପାଇ ନାହିଁ ।

ସତ୍ୟବ୍ରତ ଚାରୁ ମଜୁମଦାରଙ୍କ ମୁହଁକୁ ଚାହିଁ ହସିଲେ । କହିଲେ : ଆପଣ ଠିକ୍ କହିଛନ୍ତି ମିଷ୍ଟର ମଜୁମଦାର । କିନ୍ତୁ ଆପଣ ତ ନିଶ୍ଚୟ ଜାଣନ୍ତି ମୁଁ ଜଣେ ସାଧାରଣ ଲୋକ ନୁହେଁ । ପ୍ରୟୋଜନ ନ ଥିଲେ ଅନ୍ୟ ଜୀବନର ଗୋପନ ବୃତ୍ତାନ୍ତ ଜାଣିବାକୁ ମୁଁ ଆସି ଥାଆନ୍ତି ବା କାହିଁକି ?

ତା' ଅବଶ୍ୟ ଠିକ୍ କଥା । ଆପଣ ତା'ହେଲେ ଶ୍ରୀବାସ୍ତବଙ୍କ ଜୀବନ ସମ୍ବନ୍ଧରେ କ'ଣ ଜାଣିବାକୁ ଚାହାନ୍ତି ?

: ପ୍ରଥମ କଥା ହେଲା ରଙ୍ଗନାଥ ଶ୍ରୀବାସ୍ତବ ଯେ ଅଗାଧ ସମ୍ପତ୍ତିର ମାଲିକ, ଏହା ଅନସ୍ୱୀକାର୍ଯ୍ୟ । କିନ୍ତୁ ଶ୍ରୀବାସ୍ତବଙ୍କର ମୃତ୍ୟୁ ପରେ ଏଇ ସମ୍ପତ୍ତିର ଉତ୍ତରାଧିକାରୀ କିଏ ହେବ ?

ଆପଣ ମୋତେ ବଡ଼ ଚିନ୍ତାରେ ପକାଇଲେ ମିଷ୍ଟର ମହାପାତ୍ର । କାରଣ ରଙ୍ଗନାଥ ଶ୍ରୀବାସ୍ତବଙ୍କୁ ଆପଣ ଯେତେ ବଡ଼ ଧନୀ ବୋଲି ଭାବୁଛନ୍ତି, ସେ ମୋଟେ ତାହା ନୁହନ୍ତି । ଏଇ ଯେଉଁ ମର୍ଡର୍ଣ୍ଣ ଟିଉବ୍ସ କମ୍ପାନୀର ସେ ସ୍ରଷ୍ଟା, ତା'ର ସେ ମାଲିକ ନୁହନ୍ତି । ସେ ହେଉଛି ଏକ ଲିମିଟେଡ କମ୍ପାନୀ । ସେ କମ୍ପାନୀରେ ତାଙ୍କର ଖୁବ୍ କମ୍ ସେଆର ଅଛି । ଏତେ କମ୍ ସେଆର ଯେ, ସେ ଡିରେକ୍ଟର ହେବାର ଉପଯୁକ୍ତ ନୁହନ୍ତି । କିନ୍ତୁ ଯେଉଁ ଜଣକର ପଚାଶ ଶତାଂଶରୁ ଅଧିକ ସେୟାର ଅଛି ଏଇ କମ୍ପାନୀରେ, ସେଇ ଜଣକ ଅଥରାଇଜ୍ କରିଛନ୍ତି ରଙ୍ଗନାଥ ଶ୍ରୀବାସ୍ତବଙ୍କୁ ମ୍ୟାନେଜିଂ ଡିରେକ୍ଟର ହେବା ପାଇଁ । ଯାହା ଫଳରେ ରଙ୍ଗନାଥ ଶ୍ରୀବାସ୍ତବ ମର୍ଡନ ଟିଉବ୍ସ କମ୍ପାନୀର ମ୍ୟାନେଜିଂ ଡିରେକ୍ଟର । ଏହା ଖୁବ୍ ଗୋପନ କଥା । ବାହାରେ ଏ ସମ୍ବନ୍ଧରେ କେହି କିଛି ଜାଣନ୍ତି ନାହିଁ । କହିବାକୁ ଗଲେ ଶ୍ରୀବାସ୍ତବଙ୍କର ଏହା ବିଜ୍ନେସ୍ ସିକ୍ରେଟ ।

ଆଉ ରଙ୍ଗନାଥ ଶ୍ରୀବାସ୍ତବଙ୍କର ନିଜର କହିବାକୁ ଗଲେ ଗୋଟାଏ ଦୁଇଟା କୋଠା ଆଉ ଚାରିପାଞ୍ଚଲକ୍ଷର ଇନ୍‌ସୁରେନ୍‌ସ ଅଛି । ବାସ୍ ଏତିକି ।

ସତ୍ୟବ୍ରତ ମହାପାତ୍ର କିଛି ସମୟ ସ୍ତବ୍ଧ ହୋଇ ଚାରୁ ମଜୁମଦାରଙ୍କ ମୁହଁକୁ ଅନାଇ ରହିଲେ । ସେ ହୁଏତ ତାଙ୍କ କଥା ବିଶ୍ୱାସ କରିପାରୁ ନ ଥିଲେ ।

ଚାରୁ ମଜୁମଦାର କହିଲେ  ଆପଣ ଆହୁରି ଶୁଣିଲେ ଆଶ୍ଚର୍ଯ୍ୟ ହେବେ ଯେ ସେଇ ପାଞ୍ଚଲକ୍ଷ ଟଙ୍କା ଇନ୍‌ସୁରେନ୍‌ସ ମଧ୍ୟରୁ ଗତ ବର୍ଷେ ଦୁଇବର୍ଷ ହେବ ଚାରିଲକ୍ଷ ଟଙ୍କାର ଇନ୍‌ସୁରେନ୍‌ସ କରାହୋଇଛି ।

: ଆଚ୍ଛା ମିଷ୍ଟର ମଜୁମଦାର, ଶ୍ରୀବାସ୍ତବଙ୍କର ଏହି ପଲିସିମାନଙ୍କର ନୋମିନି କିଏ ?

ନୋମିନି ? ତାଙ୍କର ସ୍ତ୍ରୀ ଏବଂ ସନ୍ତାନ ।

ମାନେ ମନ୍ଦିରା ଦେବୀ ଆଉ ରଞ୍ଜିତା ?

ହଁ ।

ଉଭୟେ କ'ଣ ସେ ଟଙ୍କାର ସମାନ ଅଂଶୀଦାର ?

ହଁ ।

ଆଚ୍ଛା, ଆଗରୁ ଯେଉଁ ଲକ୍ଷେ ଟଙ୍କାର ପଲିସି ଥିଲା ?

: ତା'ର ମଧ୍ୟ ନୋମିନି ବଦଳା ହୋଇ ସ୍ତ୍ରୀ ଓ କନ୍ୟାଙ୍କ ନାମରେ କରାହୋଇଛି । ଶ୍ରୀବାସ୍ତବଙ୍କ ଜୀବନରେ ଏଇ ପାଞ୍ଚଲକ୍ଷ ଟଙ୍କାର ଇନ୍‌ସୁରେନ୍‌ସ ମୋଟେ ହୁଏତ ହୋଇନଥାନ୍ତା, ଯଦି ମନ୍ଦିରା ଦେବୀ ତାଙ୍କ ଜୀବନସଙ୍ଗିନୀ ହୋଇ ଆସି ନଥାନ୍ତେ ।

ହୁଁ, ବୁଝିଲି । ତା'ହେଲେ ମନ୍ଦିରା ଦେବୀ ଶ୍ରୀବାସ୍ତବଙ୍କୁ ଏହି ଇନ୍‌ସୁରେନ୍‌ସ କରେଇବାକୁ ବାଧ୍ୟ କରାଇଛନ୍ତି ।

ମୋର ତ ସେଇଆ ମନେହୁଏ ।

ଆଚ୍ଛା ମିଷ୍ଟର ମଜୁମଦାର । ମୋର ଆଉ ଗୋଟିଏ ପ୍ରଶ୍ନ । ଏଇ ମଡର୍ଣ୍ଣ ଟିଉବ୍‌ସ କମ୍ପାନୀର ଏଇ ଯେଉଁ ପଚାଶ ଶତାଂଶରୁ ଅଧିକ ସେଆର ହୋଲ୍‌ଡର ବ୍ୟକ୍ତିଟି, ସେ ମହାଶୟ କିଏ ? ଏବଂ ସେ କାହିଁକି ନିଜେ ମ୍ୟାନେଜିଂ ଡିରେକ୍ଟର ନ ହୋଇ ଶ୍ରୀବାସ୍ତବଙ୍କୁ ମ୍ୟାନେଜିଂ ଡିରେକ୍ଟର କରିବାର ସୁଯୋଗ ଦେଇଛନ୍ତି ?

ଆପଣଙ୍କ ସେଇ ପ୍ରଶ୍ନର ମୁଁ କୌଣସି ଉତ୍ତର ଦେଇପାରିବି ନାହିଁ ମିଷ୍ଟର ମହାପାତ୍ର । ଅବଶ୍ୟ ସେଇ ଭଦ୍ରଲୋକଙ୍କ ନାମଟି ମୋତେ ଜଣାଅଛି । ସେ ହେଉଛନ୍ତି ମଦନଲାଲ ଅଗରୱାଲ । ଭଦ୍ରଲୋକ ଶ୍ରୀବାସ୍ତବଙ୍କର ସମବୟସୀ । ଦୁହିଁଙ୍କ ମଧ୍ୟରେ ଖୁବ୍ ବନ୍ଧୁତ୍ୱ । ଏତିକି ମୁଁ ଜାଣେ ।

ଆଚ୍ଛା ମିଷ୍ଟର ମଜୁମଦାର ! ଆଉ ଗୋଟିଏ ଦିଗ । ସେ ଦିଗଟି ହେଉଛି ରଙ୍ଗନାଥ ଶ୍ରୀବାସ୍ତବଙ୍କର ଏହି ସ୍ତ୍ରୀ ଆଉ କନ୍ୟାଙ୍କୁ ଛାଡ଼ିଦେଲେ ଅନ୍ୟ କେହି ତାଙ୍କ ବଂଶରେ ଜୀବିତ ନାହାନ୍ତି ? ଯେପରି ତାଙ୍କର ଭାଇ ବା ଭାଇଙ୍କ ପୁତ୍ର କନ୍ୟା, ମାନେ ରକ୍ତର ସମ୍ପର୍କ କଥା ମୁଁ କହୁଛି ।

ନା, ମୋ' ଜ୍ଞାତସାରରେ କେହି ନାହାନ୍ତି ।

ଆଚ୍ଛା ତାଙ୍କ ପ୍ରଥମ ସ୍ତ୍ରୀଙ୍କ ତରଫରୁ କେହି ?

ନା, ମିଷ୍ଟର ଶ୍ରୀବାସ୍ତବଙ୍କ ମୁହଁରୁ ତାଙ୍କର କେହି ସମ୍ପର୍କୀୟ ବା ଦୂର ସମ୍ପର୍କୀୟ କାହାରି ନାମ ମୁଁ କେବେ ଶୁଣି ନାହିଁ କିମ୍ବା କାହାରିକୁ କେବେ ଦେଖିନାହିଁ ।

ହୁଁ, ଆଉ ମିଷ୍ଟର ଶ୍ରୀବାସ୍ତବ ଉଇଲପତ୍ର କିଛି କରିନାହାନ୍ତି ।

ଉଇଲ୍ ! ଚାରୁ ମଜୁମଦାର ଟିକିଏ ଚିନ୍ତା କଲେ । କହିଲେ, ନା ଉଇଲ ପତ୍ର କଥା ମୋତେ କିଛି ଜଣା ନାହିଁ । ତେବେ କିଛି ଦିନ ଆଗରୁ ଶ୍ରୀବାସ୍ତବ ମୋତେ କହୁଥିଲେ ତାଙ୍କର ପୈତୃକ କୋଠାଟା ଶୀଘ୍ର ସେ ରଞ୍ଜିତା ନାଁରେ ଉଇଲ୍ କରିଦେବେ । କାହିଁକି ଏବଂ କେଉଁଥିପାଇଁ ମୋତେ ସେ କଥା ଜଣା ନାହିଁ । ଏହା ଭିତରେ ସେ ଗୋଟାଏ ନୂତନ ଯୋଜନାରେ ବ୍ୟସ୍ତ ଥାଇ ବୋଧହୁଏ ଉଇଲ କଥା ଭୁଲି ଯାଇଛନ୍ତି । ମୋର ଦେଖା ହେଲେ ମୁଁ ଆଉଥରେ ପଚାରିବି ।

ତାଙ୍କର ପୈତୃକ କୋଠା ମାନେ ! ଯେଉଁ ଘରେ ସେ ପୂର୍ବରୁ ବସବାସ କରୁଥିଲେ ?

: ହଁ, ଆପଣ ତ ଦେଖୁଛି ମିଷ୍ଟର ଶ୍ରୀବାସ୍ତବଙ୍କ ସମ୍ବନ୍ଧରେ ଅନେକ କଥା ଜାଣିଛନ୍ତି । ମୋ'ଠାରୁ ତ ସବୁକଥା ଶୁଣିଲେ, ଏଥର ଆପଣ କୁହନ୍ତୁ, ଶ୍ରୀବାସ୍ତବଙ୍କ ସମ୍ବନ୍ଧରେ ଏଇସବୁ ଅନୁସନ୍ଧାନର ଉଦ୍ଦେଶ୍ୟ କ'ଣ ?

: ଉଦ୍ଦେଶ୍ୟ ? ଉଦ୍ଦେଶ୍ୟ ଗୋଟାଏ ନିଶ୍ଚୟ ଅଛି । ନିଜେ ମିଷ୍ଟର ଶ୍ରୀବାସ୍ତବ ଯେକୌଣସି କାରଣରୁ ହେଉ, ନିଜକୁ ଅସହାୟ ମଣୁଛନ୍ତି, ତାଙ୍କର ମନେହେଉଛି ସେ ଆଗପରି ଏବେ ସ୍ୱଚ୍ଛନ୍ଦ ନୁହନ୍ତି ! ତାଙ୍କ ଜୀବନର ଗତି ପଥରେ କ'ଣ ଯେପରି ଏକ ବେସୁରା ରାଗିଣୀ ବାଜି ଉଠିଛି । କିନ୍ତୁ ସେ ସେଇ ରାଗିଣୀର ଉତ୍ସ ଖୋଜି ପାଉ ନାହାନ୍ତି । ତାଙ୍କର ମନେହେଉଛି ସେ ଯେପରି ଏକ ଅମୁହାଁ ଦେଉଳ ଭିତରେ ପଶି ଯାଇଛନ୍ତି । ଆଉ ବାହାରିବାକୁ ବାଟ ଖୋଜି ପାଉ ନାହାନ୍ତି ।

ଚାରୁ ମଜୁମଦାର କିଛି ମନ୍ତବ୍ୟ କଲେ ନାହିଁ । କେବଳ କହିଲେ: ମିଷ୍ଟର ଶ୍ରୀବାସ୍ତବ ଖୁବ୍ ଭଲ ଲୋକ, କର୍ମଠ ଓ ଅଧ୍ୟବସାୟୀ । ନିଜର ଭାଗ୍ୟ ନିଜେ ସେ ଗଠନ କରିଛନ୍ତି । ଏଭଳି ସତ୍ ଲୋକଙ୍କ ସଂଖ୍ୟା ଆଜିକାଲି ଆମ ଦେଶରେ ପ୍ରାୟ ବିରଳ କହିଲେ ଚଳେ । ଆପଣ ତାଙ୍କୁ ସାହାଯ୍ୟ କରନ୍ତୁ । ଯେତେବେଳେ ମୋର ପ୍ରୟୋଜନ ମନେକରିବେ, ମୋ' ପାଖକୁ ଆସିବେ । ମୁଁ ଆପଣଙ୍କୁ ସର୍ବାନ୍ତଃକରଣରେ ସାହାଯ୍ୟ କରିବି ।

ସତ୍ୟବ୍ରତ ଚାରୁ ମଜୁମଦାରଙ୍କ ଘରୁ ଫେରିବା ବାଟରେ ଭୀଷଣ ଚିନ୍ତିତ ହୋଇପଡ଼ିଥିଲେ । ରଞ୍ଜିତାକୁ କୌଣସି ଲୋକ ଯେ ହତ୍ୟା କରିବାକୁ ଚେଷ୍ଟା କରୁଥିଲା, ଏହା ସତ୍ୟ କଥା । କିନ୍ତୁ ରଞ୍ଜିତାକୁ ହତ୍ୟାକରି କାହାର କ'ଣ ଲାଭ ହେବ ? ଚାରୁ ମଜୁମଦାର କହିଲେ, ଶ୍ରୀବାସ୍ତବ ତାଙ୍କ ଆଦି କୋଠାଟା ରଞ୍ଜିତା ନାଁରେ ଉଇଲ କରିଦେ଼ବାକୁ ଚାହାନ୍ତି । ତେବେ କ'ଣ ସେଇ କୋଠାଟାରେ ଅନ୍ୟ କାହାର ଅଂଶ ଅଛି । ହୁଏତ ସେହି ଅଂଶୀଦାର ଶ୍ରୀବାସ୍ତବଙ୍କ ଉଦ୍ଦେଶ୍ୟ ବୁଝିପାରି ରଞ୍ଜିତାକୁ ତା' ବାଟରୁ ଘୁଞ୍ଚେଇ ଦେବାକୁ ଚାହୁଁଚି ।

ସତ୍ୟବ୍ରତଙ୍କ ଟ୍ୟାକ୍ସି ଶ୍ରୀବାସ୍ତବଙ୍କ ଦୁଆର ମୁହଁରେ ପହଞ୍ଚିବା ପୂର୍ବରୁ ସେ ଦେଖିଲେ ଗତକାଲିର ସେଇ ଫିଆଟ ଗାଡ଼ିଟା ଲନ୍‌ରୁ ବାହାରି ରାସ୍ତା ଉପରକୁ ଆସୁଛି । ଗାଡ଼ିରେ ବସିଛନ୍ତି ମନ୍ଦିରା ଶ୍ରୀବାସ୍ତବ । ଗାଡ଼ିଟା ରାସ୍ତାକୁ ବାହାରି ବାଁ ଆଡ଼କୁ ଚାଲିଗଲା । ସତ୍ୟବ୍ରତ ଟ୍ୟାକ୍ସିରୁ ଓହ୍ଲାଇବା ପାଇଁ ଦରଜା ଖୋଲୁଥିଲେ, କିନ୍ତୁ ପୁଣି ଦରଜା ବନ୍ଦକରି କହିଲେ  ସର୍ଦ୍ଦାରଜୀ ! ସେ ଫିଆଟ ଗାଡ଼ିଟାକୁ ଫଲୋ କର ।

ଟ୍ୟାକ୍ସି ଡ୍ରାଇଭର ସର୍ଦ୍ଦାରଜୀ ବୁଲିପଡ଼ି ସତ୍ୟବ୍ରତଙ୍କ ମୁହଁଆଡ଼କୁ ଥରେ ଚାହିଁଲା, ତା'ପରେ ଗିଅର ବଦଳାଇ ଏକ୍‌ସିଲେଟର ଉପରେ ଗୋଡ଼ ଥୋଇଲା ।

ଫିଆଟ ଗାଡ଼ିଟା ନିର୍ଜନ ରାସ୍ତାରେ ଆଗେଇ ଯାଇଥିଲା ଅନେକ ଦୂର ଯାଏ । ସର୍ଦ୍ଦାରଜୀ କିନ୍ତୁ ଅଳ୍ପ ସମୟ ମଧ୍ୟରେ ଗାଡ଼ିଟି ପାଖରେ ଯାଇ ପହଞ୍ଚି ଯାଇଥିଲା ।

ସେମାନେ ଆଗଉଥିଲେ ।

ନିର୍ଜନ ରାସ୍ତାରୁ ଗହଳି ରାସ୍ତା, ତା'ପରେ ଭି.ଆଇ.ପି. ରୋଡ । ଫିଆଟ ଗାଡ଼ିଟି ଛୁଟି ଚାଲିଥିଲା ଆଗକୁ ଆଗକୁ । ପଛେପଛେ ସତ୍ୟବ୍ରତ ମହାପାତ୍ର ।

ପ୍ରାୟ ଅଧଘଣ୍ଟାରୁ ଅଧିକ କାଳ ସେମାନେ ଛୁଟିଲେ ସେଇ ଫିଆଟ ପଛରେ । ଭି.ଆଇ.ପି. ରୋଡରୁ ଦମ୍‌ଦମ୍ ଏୟାରପୋର୍ଟ । ମେନ୍ ବିଲିଡିଂ ପାଖରେ ଗାଡ଼ିଟି ଠିଆ ହେଲା ।

ଦରଜା ଖୋଲି ମନ୍ଦିରା ଶ୍ରୀବାସ୍ତବ ଓହ୍ଲାଇଲେ । ଆଗକୁ ପଛକୁ ଚାହିଁଲେ । ତା'ପରେ ଆଗେଇ ଗଲେ ଏୟାରପୋର୍ଟ ଲାଉଞ୍ଜ ଭିତରକୁ ।

ସତ୍ୟବ୍ରତ ସର୍ଦ୍ଦାରଜୀକୁ କହିଲେ : ଏ କ୍ଷେତ୍ରରେ ତୁମକୁ ମୋତେ ଟିକେ ସାହାଯ୍ୟ କରିବାକୁ ହେବ ସର୍ଦ୍ଦାରଜୀ । ମୁଁ ପୋଲିସ ଲୋକ । ଏଇ ଯେଉଁ ସ୍ତ୍ରୀ

ଲୋକଟି ଭିତରକୁ ଗଲା, ସେ ମୋର ପରିଚିତ । ତେଣୁ ତୁମକୁ ସେଇ ସ୍ତ୍ରୀଲୋକଟି ପଛେପଛେ ଯାଇ ତା'ର ଗତିବିଧି ଲକ୍ଷ୍ୟ କରିବାକୁ ହେବ । ସେ କୁଆଡ଼େ ଯାଉଛି, କ'ଣ କରୁଛି । ମୁଁ ତମ ଟ୍ୟାକ୍‌ସିରେ ବସିଛି । ତମର ପାରିଶ୍ରମିକ ମୁଁ ତୁମକୁ ନିଶ୍ଚୟ ଦେଇଦେବି ।

ସର୍ଦ୍ଦାରଜୀ ମୁଣ୍ଡ ଘୂରେଇ ଆଉଥରେ ଚାହିଁଲା ସତ୍ୟବ୍ରତଙ୍କ ମୁହଁକୁ ।

ସତ୍ୟବ୍ରତ ବ୍ୟସ୍ତ ହୋଇ କହିଲେ  ଶୀଘ୍ର ଯାଅ ସର୍ଦ୍ଦାରଜୀ । ଡେରି ହେଲେ ସେ ହୁଏତ କୁଆଡ଼େ ଚାଲିଯାଇପାରେ ।

ସର୍ଦ୍ଦାରଜୀ ମୁହଁରେ ଟିକିଏ ବିରକ୍ତି ଭାବ ଫୁଟାଇ, ଚାବିଟା ଖୋଲି ନେଇ ଲାଉଞ୍ଜ ଭିତରକୁ ପଶିଲା । ସତ୍ୟବ୍ରତ ବସିରହିଲେ ସେଇଠି, ସେଇ ଗାଡ଼ି ଭିତରେ । ମନରେ ଅସଂଖ୍ୟ ଭାବନା ନେଇ ।

କ୍ରମେ କ୍ରମେ ସମୟ ବଢ଼ିବାକୁ ଲାଗିଲା । ଦଶ ମିନିଟ୍, ପନ୍ଦର ମିନିଟ୍, ଅଧଘଣ୍ଟା, ପଇଁଚାଳିଶ ମିନିଟ୍ ।

ନା ଗାଡ଼ି ଭିତରେ ଆଉ ବସିବା ସମ୍ଭବ ନୁହେଁ । ସେ ଦୁଆର ଖୋଲି ବାହାରୁଥିଲେ । କିନ୍ତୁ ଦେଖିଲେ, ମନ୍ଦିରା ଦେବୀ ଜଣେ ଲୋକ ସଙ୍ଗରେ ଗଳ୍ପ କରି କରି ଲାଉଞ୍ଜ ଭିତରୁ ବାହାରକୁ ବାହାରୁଛନ୍ତି ।

ଲୋକଟି ବୟସ୍କ ହେଲେ ବି ଖୁବ୍ ହୃଷ୍ଟପୁଷ୍ଟ । ମୁହଁରେ ସିଗାରେଟ୍ । ବେଶ ପୋଷାକରେ ଆଭିଜାତ୍ୟ । ବେଶ୍ ସୁପୁରୁଷ ।

ମନ୍ଦିରା ଦେବୀ ଫିଆଟ ଗାଡ଼ିର ଦରଜା ପାଖରେ କିଛି ସମୟ ଠିଆ ହେଲେ । ଦୁହେଁ ଗଳ୍ପ କରୁ କରୁ ଯେପରି କାହାକୁ ପ୍ରତୀକ୍ଷା କରି ଠିଆ ହୋଇଥିଲେ । ଆଉ ଜଣେ ମହିଳା ଆସିଲେ ।

ସେ ଭଦ୍ରମହିଳା ଯେ ସତ୍ୟବ୍ରତଙ୍କର ପରିଚିତା !

କିଏ ? ହଁ, ମନେପଡ଼ିଲା । ମେନକା ଆଣ୍ଡୃଜ । ମନ୍ଦିରା ଦେବୀଙ୍କ ଭଉଣୀ ।

ମନ୍ଦିରା ଶ୍ରୀବାସ୍ତବ ଓ ମେନକା ଆଣ୍ଡୃଜ ଗାଡ଼ିରେ ବସିଲେ ।

ଭଦ୍ରଲୋକ ହାତ ହଲାଇ ବିଦାୟ ସମ୍ବର୍ଦ୍ଧନା ଜଣାଇଲେ ।

ଗାଡ଼ି ଛାଡ଼ିଦେଲା ।

ସର୍ଦ୍ଦାରଜୀ ଫେରିଆସି ଟ୍ୟାକ୍‌ସି ପଛରେ ଠିଆ ହୋଇଥିଲା । ସତ୍ୟବ୍ରତଙ୍କୁ କହିଲା   ଆମେ କ'ଣ ଏମାନଙ୍କୁ ଫଲୋ କରିବା ?

ନା, ଦରକାର ନାହିଁ । ଏଥର ତମ ରିପୋର୍ଟ ଦିଅ ।

ସର୍ଦ୍ଦାରଜୀ କହିଲା   ଏଇ ଯୋଉ ଲୋକଟି ଏମାନଙ୍କୁ ଗାଡ଼ି ପାଖରେ ଛାଡ଼ିଦେଇ ଗଲା, ସେ ଲୋକ ଏଇ ଏୟାରପୋର୍ଟ ରେଷ୍ଟ ହାଉସ୍‌ରେ ରହୁଛି ! ୩ ନମ୍ବର ରୁମ୍‌ରେ । ଆମେ ଯେଉଁ ଭଦ୍ରମହିଳାଙ୍କୁ ଫଲୋ କରୁଥିଲେ, ସେ ଯାଇଥିଲେ ସେଇ ୩ ନମ୍ବର ରୁମ୍‌କୁ ।

ଠିକ୍ ଅଛି । ମୁଁ ଏଇଠି ରହୁଛି । ତୁମେ ଟ୍ୟାକ୍‌ସି ନେଇ ଚାଲିଯାଅ । ମୋର ଫେରୁ ଫେରୁ ଡେରି ହେବ । ସତ୍ୟବ୍ରତ ପକେଟରୁ ଶହେଟି ଟଙ୍କା ବାହାର କରି ସର୍ଦ୍ଦାରଜୀଙ୍କୁ ଦେଲେ ।

ଭଦ୍ରଲୋକ ଜଣକ ତା'ହେଲେ କିଏ ?

ସେ ହୁଏତ ମେନକା ଆଣ୍ଟୃଜଙ୍କର ସ୍ୱାମୀ ହେବେ । ଅଥବା ସେମାନଙ୍କର କେହି ଆତ୍ମୀୟ ସ୍ୱଜନ ହେବେ । ତଥାପି ସତ୍ୟବ୍ରତ ସେଇ ଲୋକଟି ସମ୍ବନ୍ଧରେ କିଛି ଜାଣିବାକୁ ଇଛା ପ୍ରକାଶ କଲେ ।

ଏୟାରପୋର୍ଟ ମ୍ୟାନେଜରଙ୍କ ପାଖରେ ପହଞ୍ଚିଲେ ସତ୍ୟବ୍ରତ ମହାପାତ୍ର । ରେଷ୍ଟ ହାଉସ୍‌ର ୩ ନମ୍ବରରେ ରହୁଥିବା ଭଦ୍ରବ୍ୟକ୍ତିଙ୍କ ପରିଚୟ ଜାଣିବାକୁ ଚାହିଁଲେ ।

ଏୟାରପୋର୍ଟ ମ୍ୟାନେଜର ଖାତା ଖୋଲେଇ ଦେଖିଲେ ମିଷ୍ଟର ଆର୍.କେ. ଉପାଧ୍ୟାୟ । ଦିଲ୍ଲୀରୁ ଆସିଛନ୍ତି ।

ସେତିକି ଛଡ଼ା ଆଉ କିଛି ପରିଚୟ ମିଳିଲା ନାହିଁ ଭଦ୍ରଲୋକଙ୍କର । ମିଷ୍ଟର ଉପାଧ୍ୟାୟ ! ଆର୍. କେ. ଉପାଧ୍ୟାୟ ।

ସତ୍ୟବ୍ରତ ଅନ୍ୟମନସ୍କ ହୋଇ ଏୟାରପୋର୍ଟ ମ୍ୟାନେଜରଙ୍କ ଘରୁ ବାହାରୁ ଥିଲେ । ହଠାତ୍ କାହା ଦେହରେ ଧକ୍‌କା ଲାଗିବାରୁ ସେ 'ସରି' କହି ଚାହିଁ ଦେଖିଲେ ତାଙ୍କ ସାମ୍‌ନାରେ ଠିଆ ହୋଇଛନ୍ତି ସ୍ୱୟଂ ମିଷ୍ଟର ଆର୍. କେ.ଉପାଧ୍ୟାୟ ।

ମିଷ୍ଟର ଉପାଧ୍ୟାୟ ହସିଲେ । କହିଲେ ଆପଣ ଟିକେ ବାଟଘାଟ ଦେଖି ଚାଲନ୍ତୁ । ମୁଁ ଯଦି ଜଣେ ଭଦ୍ରମହିଳା ହୋଇଥାଆନ୍ତି ?

ସତ୍ୟବ୍ରତ ଆଉ ଥରେ 'ସରି' କହି ମିଷ୍ଟର ଉପାଧ୍ୟାୟଙ୍କ ସହିତ କରମର୍ଦ୍ଦନ କରିବାକୁ ହାତ ବଢ଼ାଇଦେଲେ ।

ମିଷ୍ଟର ଉପାଧ୍ୟାୟ କରମର୍ଦ୍ଦନ କଲେ ।

ସତ୍ୟବ୍ରତ ମିଷ୍ଟର ଉପାଧ୍ୟାୟଙ୍କ ମୁହଁକୁ କିଛି ସମୟ ଅନାଇ ରହି କହିଲେ: ଆପଣ, ମାନେ ମୁଁ ଆପଣଙ୍କୁ କେଉଁଠି ଦେଖିଲା ପରି ମନେହେଉଛି ।

ମୁଁ ବି । ସଙ୍ଗେସଙ୍ଗେ ଉପାଧ୍ୟାୟ ଉତ୍ତର ଦେଲେ ।

କେଉଁଠି କୁହନ୍ତୁ ତ ?

ଦିଲ୍ଲୀ, ବମ୍ବେ, ମାଡ୍ରାସ କେଉଁଠି ଗୋଟାଏ ହୋଇଥିବ । ଛାଡ଼ନ୍ତୁ । ଧରିନିଅନ୍ତୁ ଆଜି ଆପଣଙ୍କ ସହିତ ପ୍ରଥମ ଦେଖାହେଲା । ଏହାପରେ ?

ସତ୍ୟବ୍ରତ ଦେଖିଲେ ମିଷ୍ଟର ଉପାଧ୍ୟାୟ ବେଶ୍ ରସିକ ଓ ଚତୁର ଲୋକ । କହିଲେ ଏହାପରେ ଆପଣ ଆପଣଙ୍କ ବାଟରେ ଚାଲିଯିବେ, ମୁଁ ମୋ' ବାଟରେ ଚାଲିଯିବି ।

ଉଁ, ହୁଁ । ମିଷ୍ଟର ଉପାଧ୍ୟାୟ ମୁଣ୍ଡ ହଲାଇ ବାରଣ କଲେ ।

ତା' ହେଲେ ?

ଗୋଟାଏ କିଛି କରାଯାଉ । ଏଇ ଧରନ୍ତୁ ଆଜି ଆମର ଏଇ ଅକସ୍ମାତ ପରିଚୟର ସ୍ମୃତିଟିକୁ ଧରି ରଖିବା ପାଇଁ, କ'ଣ କରିବା ? ସାମ୍ନାରେ ବାର୍ ଅଛି ! ଆପତ୍ତି ନଥିଲେ ଆସନ୍ତୁ । ଏକାଠି ବସି ଦୁହେଁ ଦୁହିଁଙ୍କ ହେଲ୍‌ଥ ଡ୍ରିଙ୍କ୍ କରିବା ।

ପ୍ରସ୍ତାବ ମନ୍ଦ ନୁହେଁ, କିନ୍ତୁ ଗୋଟାଏ ସର୍ତ୍ତରେ । ସତ୍ୟବ୍ରତ କହିଲେ ।

ସର୍ତ୍ତଟା ?

ଆପଣ ଆପଣଙ୍କ ପଇସା ଦେବେ ଏବଂ ମୁଁ ମୋ' ପଇସା ଦେଇ ନିଜ ନିଜ ଘରକୁ ଫେରିଯିବା ।

ଏଥର ମିଷ୍ଟର ଉପାଧ୍ୟାୟ ହୋ ହୋ ହୋଇ ହସିଉଠିଲେ । ସତ୍ୟବ୍ରତ ମହାପାତ୍ରଙ୍କ ସହିତ କରମର୍ଦ୍ଦନ କରି କହିଲେ ଚମତ୍କାର ପ୍ରସ୍ତାବ ଆପଣ କରିଛନ୍ତି । ଏହା ହିଁ ନିର୍ମଳ ବନ୍ଧୁତ୍ୱର ପରିଚୟ । ଲେଟ ଅସ୍ ଷ୍ଟାର୍ଟ ।

ସେମାନେ ଦୁଇ କଦମ ଆଗେଇ ଯିବା ପରେ ଏୟାରପୋର୍ଟ ରେଷ୍ଟ ହାଉସ୍‌ର ବେହେରା ପଛରୁ ଡାକ ପକାଇଲା ସା'ବ ଆପ୍ କା ଫୋନ୍ ।

ମିଷ୍ଟର ଉପାଧ୍ୟାୟଙ୍କର ପାଦ ଦୁଇଟା ଅଟକିଗଲା । ସେ ସତ୍ୟବ୍ରତଙ୍କ ମୁହଁକୁ କରୁଣ ଦୃଷ୍ଟିରେ ଚାହିଁ ଠିଆ ହୋଇଗଲେ ।

ସତ୍ୟବ୍ରତ ଚାଲି ଯାଉଥିଲେ, ପୁଣି ଫେରିଆସି କହିଲେ ଆପଣ ବରଂ ଯାଆନ୍ତୁ ମୋ' ରୁମ୍‌ରେ ଅପେକ୍ଷା କରିଥିବେ । ମୁଁ ଫୋନ୍ କରିସାରି ଆସୁଛି । ବେହେରାକୁ ଡାକି କହିଲେ, ସା'ବଙ୍କୁ ମୋ' ରୁମ୍‌କୁ ନେଇଯା' ।

ସତ୍ୟବ୍ରତ ତାହା ହିଁ କଲେ ଏବଂ ସେ ସେଇଆ ଚାହୁଁଥିଲେ ।

ରେଷ୍ଟ ହାଉସ୍‌ର ତିନି ନମ୍ବର ରୁମ୍‌ରେ ପଶି ସତ୍ୟବ୍ରତ ଦେଖିଲେ, ସୁନ୍ଦର ଭି. ଆଇ. ପି. ରୁମ୍ । ଏୟାରକଣ୍ଡିସନଡ୍ । ଦୁଇଟି ବେଡ୍ । ସୋଫା ଚେଆର ଆଲମିରା ।

ସତ୍ୟବ୍ରତ ଦେଖିଲେ, ମିଷ୍ଟର ଉପାଧ୍ୟୟଙ୍କର ଘର ଭିତରେ ବିଶେଷ କିଛି ଜିନିଷପତ୍ର ନାହିଁ । କେତେଟା ସାର୍ଟ ପ୍ୟାଣ୍ଟ ଟଙ୍ଗା ହୋଇଛି । ଦୁଇ ତିନିଟା ଶାଢ଼ି ବ୍ଲାଉଜ ମଧ୍ୟ ଆଖିରେ ପଡ଼ିଲା । ଗୋଟାଏ ଚମଡ଼ା ସୁଟକେଶ ଥୁଆ ହୋଇଥିଲା ଖଟ ତଳକୁ । କେଇଟା ପତ୍ରିକା ପଡ଼ିଥିଲା ଟି' ଟେବୁଲ ଉପରେ ।

ସତ୍ୟବ୍ରତ ସୋଫା ଉପରେ ବସି କିଛି ସମୟ ଏଣେ ତେଣେ ଚାହିଁଲେ । ପତ୍ରିକା ଖଣ୍ଡେ ଉଠାଇ ଆଣିଲେ ଟେବୁଲ ଉପରୁ । ତା' ତଳେ ଗୋଟାଏ ଫଟୋ ଆଲବମ୍ ।

ସତ୍ୟବ୍ରତ ଚଞ୍ଚଳ ହୋଇଉଠିଲେ ।

କ୍ଷିପ୍ର ହସ୍ତରେ ସେ ଉଠାଇ ନେଲେ ଆଲବମ୍‌ଟାକୁ ।

ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଯିବାରେ ଲାଗିଲେ ।

ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ଅନେକ ଗୁଡ଼ିଏ ସ୍ତ୍ରୀ ପୁରୁଷଙ୍କର ଫଟୋ

ରହିଛି ତା' ଭିତରେ । କିନ୍ତୁ ତାଙ୍କର ପରିଚିତ ମୁହଁ ମଧ୍ୟରୁ ସେ ଆବିଷ୍କାର କଲେ ରଞ୍ଜିତା ଏବଂ ରଙ୍ଗନାଥ ଶ୍ରୀବାସ୍ତବଙ୍କର ଫଟୋ ।

ଆଲବମଟିକୁ ରଖିଦେଲେ ଯଥା ସ୍ଥାନରେ । ତା' ଉପରେ ପତ୍ରିକାଟିଏ ଘୋଡ଼ାଇ ଦେଲେ । ଆନମନା ହୋଇ ଶାନ୍ତ ଶିଶୁଟି ପରି ବସିରହିଲେ ସୋଫା ଉପରେ ।

ଅଳ୍ପ ସମୟ ପରେ ଉପାଧ୍ୟାୟ ଆସିଲେ ।

ସେ କିପରି ବ୍ୟସ୍ତବିବ୍ରତ ଜଣାଯାଉଥିଲେ ।

ଆସିବସିଲେ ସତ୍ୟବ୍ରତଙ୍କ ସାମ୍ନାରେ । କହିଲେ : ମୋତେ ଏଇକ୍ଷିଣୀ ଟିକିଏ ବାହାରିବାକୁ ହେବ । ଗୋଟାଏ ଜରୁରୀ କାର୍ଯ୍ୟର ସମ୍ବାଦ ଆସିଛି । ଆପଣ କିଛି ମନେକରିବେ ନାହିଁ ।

ସତ୍ୟବ୍ରତ ମହାପାତ୍ର ହସିଲେ । କହିଲେ: ମନେକରିବାର କ'ଣ ଅଛି ?

ତା'ହେଲେ ?

ହଁ ମୁଁ ଉଠୁଛି । ଆପଣ ଆପଣଙ୍କ କାର୍ଯ୍ୟରେ ଯାଆନ୍ତୁ ।

ଆର୍. କେ. ଉପାଧ୍ୟାୟ ପକେଟରୁ ବିଦେଶୀ ସିଗାରେଟର ଗୋଟିଏ ପ୍ୟାକେଟ୍ ବାହାର କରି ସତ୍ୟବ୍ରତଙ୍କ ଆଡ଼କୁ ଦେଖାଇଲେ । ସତ୍ୟବ୍ରତ ଗୋଟିଏ ନେଲେ ଏବଂ ଉପାଧ୍ୟାୟ ଗୋଟିଏ ନେଇ ମୁହଁରେ ଦେଲେ ।

ଉପାଧ୍ୟାୟ ପକେଟ ଦରାଣ୍ଡୁ ଥିଲେ ଡିଆସିଲି ପାଇଁ ।

ସତ୍ୟବ୍ରତ ପକେଟରୁ ଲାଇଟରଟିଏ ବାହାର କରି ଜଳାଇଲେ ।

ଲାଇଟରର ମ୍ୟୁଜିକାଲ ଟ୍ୟୁନିଙ୍ଗରେ ଆକୃଷ୍ଟ ହୋଇ ଉପାଧ୍ୟାୟ ଲାଇଟରଟି ସତ୍ୟବ୍ରତଙ୍କ ହାତରୁ ଏକପ୍ରକାର ଛଡ଼ାଇ ନେଲେ । ଆଗ୍ରହରେ ଏପାଖ ସେପାଖ ଓଲଟାଇ ଦେଖି କହିଲେ ଏଇଟା ଆପଣ କେଉଁଠୁ ପାଇଲେ ?

ସତ୍ୟବ୍ରତ କହିଲେ ଏଇଟା ମୁଁ ସିଙ୍ଗାପୁରରୁ କିଣିଥିଲି ।

ବେଶ ସୁନ୍ଦର ହୋଇଛି ।

ଉପାଧ୍ୟାୟ ଲାଇଟରଟି ଜଳାଇ, ସିଗାରେଟ ଲଗାଇ ପୁଣି ସତ୍ୟବ୍ରତଙ୍କ ହାତକୁ ଫେରାଇ ଦେଲେ ।

ସତ୍ୟବ୍ରତ ସେତେବେଳକୁ ହାତରେ ଗୋଟାଏ ରୁମାଲ୍ ଧରି ମୁହଁ ପୋଛୁଥିଲେ । ଲାଇଟରଟି ସେଇ ରୁମାଲ ମିଶାକରି ଧରି ପକେଟରେ ରଖିଲେ ।

ଉପାଧ୍ୟାୟ କହିଲେ ଆପଣଙ୍କ ସହିତ ପରିଚୟ ହୋଇ ମୁଁ ଖୁସି ହେଲି ।

ମୁଁ ବି ।

ସମୟ ପାଇଲେ ଆପଣ ଆସିବେ ।

ନିଶ୍ଚୟ, ନିଶ୍ଚୟ । ଆପଣ ଆଉ କେତେ ଦିନ ଏଠାରେ ଅଛନ୍ତି ?

କିଛି ଠିକ୍ ନାହିଁ । ଦୁଇ ଚାରିଦିନ ରହିପାରେ, କାମ ସରିଲେ ଉହି ବି ଯାଇପାରେ । କାମ ଉପରେ ସବୁ ନିର୍ଭର କରୁଛି ।

ଠିକ୍ ଅଛି । ଏଠି ନହେଲେ ଆଉ କୋଉଠି ଆମର ଦେଖାହେବ । ଦିଲ୍ଲୀ, ବମ୍ବେ, ମାଡ୍ରାସ, ରେଙ୍ଗୁନ, ସିଙ୍ଗାପୁର କିମ୍ବା ହନୁଲୁଲୁ । ଦୁନିଆଟା ଗୋଲି କିନା, ଆମେ ବୁଲି ବୁଲି ଦିନେ ନା ଦିନେ ଭେଟାଭେଟି ହେବା ।

ସତ୍ୟବ୍ରତ ଉଠି ଠିଆହେଲେ ।

ଆର. କେ. ଉପାଧ୍ୟାୟଙ୍କ ସହିତ କରମର୍ଦ୍ଦନ କରି ବାହାରି ଆସିଲେ ରେଷ୍ଟ ହାଉସ୍‌ର ତିନି ନମ୍ବର ରୁମ୍‌ରୁ ।

ସତ୍ୟବ୍ରତ ଫେରିଆସିଲେ ଏୟାରପୋର୍ଟରୁ ।

ରାତି ସେତେବେଳକୁ ଦଶଟା ବାଜି ଯାଇଥିଲା । ଆର. କେ. ଉପାଧ୍ୟାୟଙ୍କୁ ହଠାତ୍ ସେ ଆବିଷ୍କାର କରି ବିଶେଷ ଖୁସି ହୋଇପାରିଲେ ନାହିଁ ।

ଲୋକଟି କିଏ ତା'ହେଲେ ?

ତା' ଆଲବମ୍ ଭିତରେ ରଞ୍ଜିତା ଓ ଶ୍ରୀବାସ୍ତବଙ୍କର ଫଟୋ କାହିଁକି ?

ଟ୍ୟାକ୍‌ସି ଯାଇ ରଙ୍ଗନାଥ ଶ୍ରୀବାସ୍ତବଙ୍କ ଦୁଆରେ ଠିଆହେଲା । ସତ୍ୟବ୍ରତ ଓହ୍ଲାଇ ଗଲେ । ମନ୍ଦିରା ଦେବୀ ଫେରିଲେଣି କି ନାହିଁ ଜାଣିବା ପାଇଁ ସତ୍ୟବ୍ରତଙ୍କ ମନରେ ଆଗ୍ରହ ଜନ୍ମି ଥିଲା ।

ସେ ଲନ୍ ପାରିହୋଇ ଘରଆଡ଼େ ଆଗେଇଲେ ।

ତଳେ ଶିଡ଼ି ପାଖରେ ଠିଆ ହେଲେ କିଛି ସମୟ । କିଛି ଗୋଳଚହଳ ନାହିଁ । ତଳ ଘରଗୁଡ଼ାକ ଅନ୍ଧାର ଅନ୍ଧାର ମନେହେଉଛି । ସେ ଶିଡ଼ିରେ ଉଠୁଥିଲେ ଉପରକୁ, ହଠାତ୍ ତାଙ୍କ କାନରେ ବାଜିଲା ଟେଲିଫୋନ୍‌ର ରିଙ୍ଗ୍ । ତଳ ଘରେ, ଶିଡ଼ି ପାଖକୁ ଦୁଇଟା ଘର ଛାଡ଼ି । ସତ୍ୟବ୍ରତ ଭାବିଥିଲେ ରିଙ୍ଗ୍‌ଟା ହୁଏତ ବାଜି ବାଜି ବନ୍ଦ ହୋଇଯିବ ।

କିନ୍ତୁ ରିଙ୍ଗ୍‌ଟା ହଠାତ୍ ବନ୍ଦ ହୋଇଗଲା । କେହି ବୋଧହୁଏ ରିସିଭରଟା ଉଠାଇ ନେଲା । ତଳ ଘରେ ତା'ହେଲେ ନିଶ୍ଚୟ କେହି ଫୋନ୍ ପାଇଁ ଅପେକ୍ଷା କରିଥିଲା । କିଏ ? ଝାପ୍‌ସା ଅନ୍ଧକାର ଭିତରେ ସତ୍ୟବ୍ରତ ଧୀରେ ଧୀରେ ଆଗେଇ ଗଲେ ସେଇ ଘର ପାଖକୁ ।

ସେ ନାରୀକଣ୍ଠର ସ୍ୱର ଶୁଣିଲେ । ଖୁବ୍ ଅସ୍ପଷ୍ଟ ଏବଂ ଧୀର । ସେ ଆହୁରି କାନ ଗୁଂଜି ଦେଲେ ଝରକା ସହିତ ।

ମୁଁ ଆଜି ଯାଇପାରିବି ନାହିଁ, ନା ନା, ଅସୁବିଧା ଅଛି... କ'ଣ କହିଲେ ?

କିନ୍ତୁ ଆପଣମାନେ କେହି ମୋ' ଅବସ୍ଥା କଥା ଟିକିଏ ହେଲେ ଚିନ୍ତା କରୁନାହାନ୍ତି । ...ହଁ, ସେ ସନ୍ଧ୍ୟା ପ୍ଲେନ୍‌ରେ ଦିଲ୍ଲୀ ଯାଇଛନ୍ତି । ...ମୋତେ ଟିକେ ସମୟ ଦିଅନ୍ତୁ । ବଞ୍ଚିବାକୁ ଦିଅନ୍ତୁ । ...କ'ଣ କହିଲେ ? ଆଜି ? ...କିନ୍ତୁ ମୁଁ ଯେ ଅଣନିଃଶ୍ୱାସୀ ହୋଇଯାଉଛି ।

ଆଉ କିଛି ଶୁଭିଲା ନାହିଁ ।

ସତ୍ୟବ୍ରତ ବୁଝିପାରିଲେ ନାହିଁ ଭିତରେ ଫୋନ୍‌ଟା କିଏ ଧରିଛି । ହୁଏତ ମନ୍ଦିରା ଦେବୀ, ନତୁବା ରଞ୍ଜିତା । ଏ ଘରେ ଫୋନ୍ ଧରିଲା ଭଳି ତୃତୀୟ ବ୍ୟକ୍ତି ତ କେହି ନାହାନ୍ତି ।

ସେ ଆହୁରି ଟିକେ କାନ ଡେରିଲେ ଭିତରର କଥା ଶୁଣିବା ପାଇଁ । ଆଉ କିଛି ଶୁଭିଲା ନାହିଁ । ଅନ୍ଧକାର ଘର ଭିତରୁ କିଛି ଦିଶିଲା ବି ନାହିଁ ।

ସେ ପାଦ ଚିପି ଚିପି ଶିଡ଼ି ପାଖକୁ ଫେରିଆସୁଥିଲେ ।

ହଠାତ୍ ସେଇ ଘରର ଲାଇଟ୍‌ଟା ଜଳିଉଠିଲା । ଝରକା ଦରଜା ଖୋଲିଗଲା । ସତ୍ୟବ୍ରତ ଚାହିଁ ଦେଖିଲେ, ଘର ଭିତରେ ସ୍ୱୟଂ ମନ୍ଦିରା ଦେବୀ ।

ସତ୍ୟବ୍ରତ ଶିଡ଼ି ପାହାଚ ଦେଇ ଉପରକୁ ଉଠି ଯାଉଥିଲେ । କିନ୍ତୁ ମନ୍ଦିରା ଦେବୀ ପଛରୁ ଡାକିଲେ ।

ସତ୍ୟବ୍ରତ ଲେଉଟି ଆସିଲେ ।

ମନ୍ଦିରା ଦେବୀ କହିଲେ ଆସନ୍ତୁ । ମୋତେ କିଛି ଭଲ ଲାଗୁନାହିଁ । ମୁଁ ଦରଜା ବନ୍ଦକରି ଘର ଅନ୍ଧକାର କରି ଏଇଠି ଟିକିଏ ଶୋଇଥିଲି ।

ରଞ୍ଜିତା ?

ସେ ଉପରେ ଅଛି । ତା'ର ବନ୍ଧୁ ଜଣେ ଦି' ଜଣ କିଏ ଆସିଥିଲେ । ବୋଧହୁଏ ଚାଲିଗଲେଣି । ଆପଣ ଏତେବେଳଯାଏ କୁଆଡ଼େ ଯାଇଥିଲେ ?

ଟିକିଏ କାମ ଥିଲା । ମିଷ୍ଟର ଶ୍ରୀବାସ୍ତବ କ'ଣ ଦିଲ୍ଲୀ ଚାଲିଯାଇଛନ୍ତି ?

ହଁ, ସେ ସନ୍ଧ୍ୟାବେଳେ ଚାଲିଗଲେ । କେବେ ଫେରୁଛନ୍ତି କେଜାଣି ! ମୋତେ ଏ ଜଞ୍ଜାଳ ସବୁକିଛି ଭଲ ଲାଗୁନାହିଁ । ଦିନକୁଦିନ ମୁଁ ଏକ ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହେବାପରି ଲାଗୁଛି । ଆପଣ ମୋତେ ଟିକିଏ ସାହାଯ୍ୟ କରିବେ ମିଷ୍ଟର ମହାପାତ୍ର ? ମନ୍ଦିରା ଦେବୀଙ୍କ କଣ୍ଠସ୍ୱର ଯେପରି ଥରିଉଠୁଥିଲା ।

ସତ୍ୟବ୍ରତ ମହାପାତ୍ର କହିଲେ ଆପଣ ଏପରି ବିଚଳିତ ହେଉଛନ୍ତି କାହିଁକି ମନ୍ଦିରା ଦେବୀ ! ଦୁନିଆରେ ଘଟଣା ଦୁର୍ଘଟଣା ଅନେକ ଘଟେ । ସେଥିପାଇଁ ବିବ୍ରତ ହେଲେ ଚଳିବ କିପରି ?

: ମୁଁ ସେଇ ରଞ୍ଜୁ କଥା ଭାବୁଛି ମିଷ୍ଟର ମହାପାତ୍ର । ବିଚାରି ପିଲାଦିନୁ ମା'କୁ ହରାଇ ଥିଲା । ଜୀବନଟା ତା'ର ଆରମ୍ଭ ହୋଇଛି ମାତୃ ସ୍ନେହ ନପାଇ । ଯେତେବେଳେ ପାଇଲା, ସେତେବେଳେ ସେ ବିପଦଗ୍ରସ୍ତ । ମୋତେ କିଛି ଭଲ ଲାଗୁନାହିଁ ।

ସତ୍ୟବ୍ରତ କୌଣସି ଉତ୍ତର ଦେଲେ ନାହିଁ ।

ମନ୍ଦିରା ବି ଚୁପ୍‌ଚାପ୍ ବସି ରହିଥିଲେ ।

ହଠାତ୍ ପୁଣିଥରେ ଟେଲିଫୋନ୍‌ଟା ବାଜିଉଠିଲା ।

ମନ୍ଦିରା ଦେବୀ ରିସିଭରଟା ଉଠାଇବାକୁ ହାତଟା ପ୍ରସାରିତ କରି ପୁଣି ଗୋଟେଇ ନେଲେ ।

: ଆପଣ ଫୋନ୍‌ଟା ଧରନ୍ତୁ ମିଷ୍ଟର ମହାପାତ୍ର । ଯଦି ମୋତେ କେହି ଖୋଜେ କହିବେ ମୁଁ ଘରେ ନାହିଁ ।

ସତ୍ୟବ୍ରତ ରିସିଭରଟା ଉଠାଇଲେ ।

: ହ୍ୟାଲୋ ?

ନା ଫୋନ୍‌ଟା ମନ୍ଦିରା ଦେବୀଙ୍କର ନୁହେଁ । ସ୍ୱୟଂ ରଙ୍ଗନାଥ ଶ୍ରୀବାସ୍ତବଙ୍କର ।

ସତ୍ୟବ୍ରତ ବାରଣ କରିଦେଲେ । ମିଷ୍ଟର ଶ୍ରୀବାସ୍ତବ ଘରେ ନାହାନ୍ତି । ରିସିଭରଟା ରଖିଦେଇ ଉଠି ଠିଆ ହେଲେ ।

: ଆସୁଛି ମନ୍ଦିରା ଦେବୀ ।

: ଆସନ୍ତୁ । ମୁଁ ଯାଉଛି ଆପଣଙ୍କ ପଛେ ପଛେ ।

: ମୁଁ କିନ୍ତୁ ଆଜି ଏଠାରେ ରହିବି ନାହିଁ । ବାହାରକୁ ଚାଲିଯିବି । ମୋର ଗୋଟାଏ ଜରୁରୀ କାମ ଅଛି ।

: କ'ଣ କହିଲେ ? ଆପଣ ରହିବେ ନାହିଁ ? ମନ୍ଦିରା ଦେବୀଙ୍କ କଣ୍ଠସ୍ୱର ଯେପରି କମ୍ପିଉଠିଲା । ସେ ଆକୁଳ ଆଖିରେ ସତ୍ୟବ୍ରତଙ୍କ ମୁହଁକୁ ନୀରବରେ ଅନାଇ ରହିଲେ ।

: ଆପଣ କ'ଣ ଭୟ କରୁଛନ୍ତି ?

: ନା, ଭୟ ଠିକ୍ ନୁହେଁ । କିପରି ଏକ କରୁଣ ରାଗିଣୀ ମୋ' ଅନ୍ତର ଭିତରେ ଘୂରିବୁଲୁଛି, ମୋର ମନେହେଉଛି ମୁଁ ଯାହା ପାଇଛି ତାହା ମୋର ନୁହେଁ, ମୁଁ ଯାହା କରୁଛି ସବୁ ଅନ୍ୟ ପାଇଁ, ମୋର ନିଜର ସ୍ଥିତି କିଛି ନାହିଁ, ବିସ୍ମୃତି କିଛି ନାହିଁ । ମୁଁ ଯେପରି ଗୋଟାଏ ଚାବିଦିଆ କଣ୍ଢେଇ । ଯିଏ ଯେତେବେଳେ ପାରିଲା, ଚାବିଦେଇ ଛାଡ଼ିଦେଲା, ଚାବି ଥିବାଯାଏ ମୁଁ କେବଳ ନାଚି ନାଚି ଅନ୍ୟକୁ ଆନନ୍ଦ ଦେଲି । କୁହନ୍ତୁ ତ ମିଷ୍ଟର ମହାପାତ୍ର, ଏଇଟା କ'ଣ ଜୀବନ ?

ସତ୍ୟବ୍ରତ ମହାପାତ୍ର ମନ୍ଦିରା ଦେବୀଙ୍କ ମୁହଁରୁ ଏପରି ଏକ ପ୍ରଶ୍ନର ଅବତାରଣା ଆଶା କରି ନ ଥିଲେ । ସେ କିଛି ସମୟ ନୀରବ ରହି କହିଲେ ଦେଖନ୍ତୁ ମନ୍ଦିରା ଦେବୀ, ସେଇଟା ଆପଣଙ୍କର ପାରିବାରିକ ସମସ୍ୟା । ମୁଁ ଜାଣେ ମିଷ୍ଟର ଶ୍ରୀବାସ୍ତବ ଖୁବ୍ ଭଲ ଲୋକ । ସେ ଆପଣଙ୍କୁ ବିଶ୍ୱାସ କରନ୍ତି । ଦାମ୍ପତ୍ୟ ଜୀବନରେ କଳହ ନ ଥିଲେ ଜୀବନ ସୁଖମୟ ହୁଏ ନାହିଁ ବୋଲି ମୁଁ ଶୁଣିଛି । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ଠିକ୍ ହୋଇଯିବ ।

ମନ୍ଦିରା ଦେବୀ ଆଉ କିଛି କହିଲେ ନାହିଁ ।
ଆଖି ବୁଜି କ'ଣ ଯେପରି ଗଭୀର ଚିନ୍ତା କରୁଥିଲେ ।
ସତ୍ୟବ୍ରତ ଉଠି ଠିଆ ହେଲେ ।
ମନ୍ଦିରା ଦେବୀ ନୀରବ ।
ସତ୍ୟବ୍ରତ ଘରୁ ବାହାରି ଚାଲିଗଲେ ।

ସତ୍ୟବ୍ରତ ଫେରି ଯାଉଥିଲେ ।

ଲନ୍ ଉପରେ ଧୀରପଦଚାଳି ସେ ଗେଟ୍ ବାହାରକୁ ଯିବା ପୂର୍ବରୁ ଥରେ ପଛକୁ ଫେରିଚାହିଁଲେ । ଶ୍ରୀବାସ୍ତବଙ୍କର ବିରାଟ ପ୍ରାସାଦଟା ଅନ୍ଧକାର ଭିତରେ ଠିଆହୋଇଛି । କେଉଁଠି କିଛି ଗୋଳଚହଳ ନାହିଁ । ଶାନ୍ତ, ନିସ୍ତବ୍ଧ ।

ସତ୍ୟବ୍ରତ ପୁଣି ପାଦ ପକାଇଲେ ଆଗକୁ ।

ଗେଟ୍ ପାଖରେ ଯାଇ ଠିଆ ହେଲେ ମୁହୂର୍ତ୍ତେ । ଦରବାନର ଷ୍ଟୁଲଟା ଖାଲିପଡ଼ିଛି । ସେ ଚାହିଁଲେ ତା'ର ଛୋଟ ଘରଟି ଭିତରକୁ । ଅନ୍ଧକାର । ହୁଏତ ଦରବାନ ଶୋଇପଡ଼ିଲାଣି । ତା'ହେଲେ କ'ଣ କରିବାକୁ ହେବ ?

ନା ଆଜି ଏ ଘର ଛାଡ଼ି ଯିବା ହୁଏତ ଉଚିତ ହେବନାହିଁ । ସତ୍ୟବ୍ରତ ଭାବିଲେ ଟିକିଏ । ତାଙ୍କ ଅନୁମାନ ଯଦି ସତ୍ୟ ହୁଏ, ତେବେ ଏ ଘରେ ଆଜି ନିଶ୍ଚୟ ଗୋଟାଏ ଦୁର୍ଘଟଣା ଘଟିବ । କିନ୍ତୁ ଏହି ଦୁର୍ଘଟଣାର ନାୟକ ସମ୍ବନ୍ଧରେ ସତ୍ୟବ୍ରତ ସ୍ଥିର ନିଶ୍ଚିତ ହୋଇପାରୁ ନଥିଲେ ।

ସତ୍ୟବ୍ରତ ପୁଣି ପାଦ ଲେଉଟାଇଲେ ପଛକୁ । ତାଙ୍କୁ ଆଜି ଗୋପନରେ କାହାର ପ୍ରତୀକ୍ଷାରେ ବସିରହିବାକୁ ହେବ । କାହାର ? ଘଟଣାଟା ଏତେ ଦ୍ରୁତ ଗତିରେ ଘଟିବାକୁ ଯାଉଛି ଯେ ତାଙ୍କୁ ଚିନ୍ତା କରିବାକୁ ବା ସ୍ଥିର ନିଶ୍ଚିନ୍ତରେ ପହଞ୍ଚିବାକୁ ସମୟ ମିଳୁ ନାହିଁ ।

ସେ ଧୀରେଧୀରେ ପାଦ ଚିପିଚିପି ଫେରିଗଲେ ତାଙ୍କ ପାଇଁ ନିର୍ଦ୍ଧାରିତ ରୁମ୍‌କୁ । ସେଇଠି ବସି ସେ ପ୍ରତୀକ୍ଷା କରିବେ । ରଙ୍ଗନାଥ ଶ୍ରୀବାସ୍ତବ ଘରେ ନାହାନ୍ତି । ଯାହା ଘଟିବାର ଆଜି ହୁଏତ ନିଶ୍ଚୟ ଘଟିଯିବ ।

ଘରର ଦରଜାଟା ବନ୍ଦ କରିଦେଇ ସେ ଚୁପ୍‌ଚାପ୍ ଅନ୍ଧକାରରେ ଠିଆହୋଇ ରହିଲେ ଝରକା ପାଖରେ ।

କ୍ରମଶଃ ରାତ୍ରି ଗଭୀର ହେବାକୁ ଲାଗିଲା ।

ସବୁଆଡୁ ସବୁ ଆଲୋକ ଲିଭିଗଲା ।

ସତ୍ୟବ୍ରତ ଚୁପ୍‌ଚାପ୍ ଠିଆହୋଇ ରହିଥିଲେ । କାହାର ପ୍ରତୀକ୍ଷାରେ ?

ସେ ଥରେ ଯାଇ ରଞ୍ଜିତାର ଦୁଆରେ ହାତମାରି ଦେଖିଲେ । ଭିତରୁ ବନ୍ଦ ହୋଇଛି । ପୁଣି ସେ ଫେରିଆସିଲେ ନିଜ ଘରକୁ ।

ପୁଣି ପ୍ରତୀକ୍ଷା ।

ଘଡ଼ିରେ ବାରଟା ବାଜିଲା, ଗୋଟାଏ ବାଜିଲା । ରାତ୍ରିର ଗଭୀର ଅନ୍ଧକାର ଭିତରେ ସମସ୍ତେ ହଜିଗଲେ । କିନ୍ତୁ ସତ୍ୟବ୍ରତଙ୍କ ହୃତ୍‌ସ୍ପନ୍ଦନ ବଢ଼ି ଉଠୁଥିଲା । ସେ ଆଉ ସ୍ଥିରହୋଇ ଏକା ଜାଗାରେ ଠିଆ ହୋଇପାରୁ ନ ଥିଲେ । କାନ ଠିଆକରି ରଖିଥିଲେ କ'ଣ ଗୋଟାଏ ଶବ୍ଦ ଶୁଣିବା ପାଇଁ ।

ଖୁବ୍ ଧୀରେ ଠୁକ୍‌କରି କ'ଣ ଗୋଟାଏ ଶବ୍ଦ ହେଲା । ଦୋତାଲାରେ, ଅଳ୍ପ ଦୂରରେ କେଉଁଠି ।

ସତ୍ୟବ୍ରତ ଚଞ୍ଚଳ ହୋଇଉଠିଲେ ।

ସେ ଧୀରେ ଦରଜା ଖୋଲି ବାହାରକୁ ବାହାରିଲେ । ଚାରିଆଡ଼କୁ ଚାହିଁଲେ । କେହି କୁଆଡ଼େ ନାହିଁ ।

ଆହୁରି କିଛି ସମୟ ଅପେକ୍ଷା କଲେ ।

ପାଦ ଟିପିଟିପି ବାହାରିଗଲେ ବାହାରକୁ ।

ରଞ୍ଜିତା ଘରର ଦରଜା ଭିତରକୁ ଠେଲି ଦେଖିଲେ, ଖୋଲିଗଲା ।

ଆଶ୍ଚର୍ଯ୍ୟ ! ସତ୍ୟବ୍ରତ ଚମକି ଉଠିଲେ । ଘଣ୍ଟାକ ପୂର୍ବରୁ ସେ ଦେଖିଥିଲେ ଦରଜା ବନ୍ଦ ଥିଲା, ଅଥଚ...

ସତ୍ୟବ୍ରତ ଘର ଭିତରକୁ ପଶିବେ କି ନାହିଁ ଚିନ୍ତା କରୁଥିଲେ ।

ତାଙ୍କର ମନେହେଲା, ଘର ଭିତରେ କିଏ ଯେପରି କଇଁକଇଁ ହୋଇ କାନ୍ଦୁଛି । କିଏ ରଞ୍ଜିତା ନୁହେଁ ତ ?

ସତ୍ୟବ୍ରତ ଦରଜା ଠେଲି ଭିତରକୁ ପଶିବେ, ହଠାତ୍ କିଏ ଭିତରୁ ବାହାରି ଆସିଲା । ସତ୍ୟବ୍ରତଙ୍କ ଦେହରେ ଧକ୍‌କା ଲାଗିବା ମାତ୍ରେ ସେ ତାକୁ ଜାବୁଡ଼ି ଧରିଲେ ।

କିଏ ?

ସତ୍ୟବ୍ରତ ଅବାକ ହୋଇ ଦେଖିଲେ ତ୍ରସ୍ତା ହରିଣୀପରି ସତ୍ୟବ୍ରତଙ୍କ ହାତରୁ ମୁକ୍ତି ପାଇବା ପାଇଁ ଛଟପଟ ହୋଇ, ସତ୍ୟବ୍ରତଙ୍କୁ ଟାଣି ଟାଣି ନେଇ ପଳାଉଛି ସ୍ୱୟଂ ମନ୍ଦିରା ।

ମନ୍ଦିରା ଶ୍ରୀବାସ୍ତବ ତାଙ୍କ ଦେହରେ ସମସ୍ତ ଶକ୍ତି ପ୍ରୟୋଗ କରି ସତ୍ୟବ୍ରତଙ୍କୁ ଟାଣି ଟାଣି ଘେନିଆସିଲେ ଶିଡ଼ି ମୁଣ୍ଡର ଘର ପର୍ଯ୍ୟନ୍ତ ଏବଂ ଘର ଭିତରେ ପଶିଯାଇ ଭୋ ଭୋ ହୋଇ କାନ୍ଦି ଉଠିଲେ ।

ଆପଣ ମୋତେ ବଞ୍ଚାନ୍ତୁ ମିଷ୍ଟର ମହାପାତ୍ର । ଆପଣ ମୋତେ ସାହାଯ୍ୟ କରନ୍ତୁ । ମୁଁ ଆଉ ପାରୁ ନାହିଁ । ନା ମୁଁ ପାରିବି ନାହିଁ ।

ସତ୍ୟବ୍ରତ ଅବାକ ହୋଇଯାଉଥିଲେ ।

ମନ୍ଦିରା ଦେବୀ କ'ଣ କହୁଛନ୍ତି ?

ମନ୍ଦିରା ଦେବୀ ଏଥର ସତ୍ୟବ୍ରତ ମହାପାତ୍ରଙ୍କ ପାଦଯୋଡ଼ାକ ଧରି ଆହୁରି ଜୋର୍‌ରେ କାନ୍ଦିଉଠିଲେ । ଆପଣ ମୋତେ ବଞ୍ଚାନ୍ତୁ ମିଷ୍ଟର ମହାପାତ୍ର । ମୁଁ ସ୍ୱାମୀ ସନ୍ତାନ ଧରି ବଞ୍ଚି ରହିବାକୁ ଚାହେଁ । ମୋତେ ଆପଣ ମୋର ସ୍ୱାମୀ ସନ୍ତାନ ଫେରାଇ ଦିଅନ୍ତୁ । ମୁଁ ଆପଣଙ୍କ ପାଖରେ ଚିରଋଣୀ ହୋଇରହିବି ।

ଘଟଣା କ'ଣ ମନ୍ଦିରା ଦେବୀ ?

ଆପଣ ତଳକୁ ଚାଲନ୍ତୁ । ଆପଣଙ୍କୁ ମୁଁ ସବୁ କହିବି । ଆଉ ମୁଁ ପାରୁ ନାହିଁ । ନା, ନା, ଏହାପରେ ମୁଁ ପାଗଳୀ ହୋଇଯିବି ।

ସତ୍ୟବ୍ରତ ମହାପାତ୍ର ମନ୍ଦିରା ଦେବୀଙ୍କ ସହିତ ଓହ୍ଲାଇଗଲେ ତଳକୁ । ସେଇ ଘରକୁ, ଯେଉଁ ଘରେ ବସି ସେ ଟେଲିଫୋନ କରୁଥିଲେ ।

ଘରର ନୀଳଆଲୋକଟି ଜଳାଇ ଗୋଟିଏ ସୋଫା ଉପରେ ବସୁବସୁ କହିଲେ: ଆପଣ ବସନ୍ତୁ ମିଷ୍ଟର ମହାପାତ୍ର । ମୁଁ ଜାଣେ ଆପଣ ମୋ' ସମ୍ବନ୍ଧରେ ସମସ୍ତ ତଥ୍ୟ ସଂଗ୍ରହ କରିସାରିଲେଣି । ମୁଁ କିନ୍ତୁ ଯାହା ଚାହିଁ ନ ଥିଲି, ଆପଣ ବିଶ୍ୱାସ କରନ୍ତୁ, ମୁଁ ମୋଟେ ଯାହା ଚାହିଁ ନ ଥିଲି । ମୁଁ ଜଣେ ନାରୀ, ଚାହିଁଥିଲି ଗୋଟିଏ ଆଶ୍ରୟ ଆଉ ମାତୃତ୍ୱ । ସେ କିନ୍ତୁ ମୋତେ ପ୍ରତାରିତ କଲା । ମୋର ସର୍ବନାଶ କରି ଏବେ ବି ସେ ନିଶ୍ଚିନ୍ତ ହୋଇପାରି ନାହିଁ ।

ଆପଣ କା' କଥା କହୁଛନ୍ତି ମନ୍ଦିରା ଦେବୀ ? ରଙ୍ଗନାଥ ଶ୍ରୀବାସ୍ତବ ମୁଁ ଶୁଣିଛି ଖୁବ୍ ଭଲ ଲୋକ । ସେ ଆପଣଙ୍କର ସର୍ବନାଶ କରିବେ, ଏ କଥା ମୁଁ କାହିଁକି ଚିନ୍ତା କରିପାରୁ ନାହିଁ । ସତ୍ୟବ୍ରତ ଶାନ୍ତସ୍ୱରରେ କହିଲେ ।

ମନ୍ଦିରା ଦେବୀ ଏତେ ଦୁଃଖରେ ବି ହସିଉଠିଲେ । କହିଲେ: ଆପଣ ମୋତେ ପରିହାସ କରୁଛନ୍ତି ମିଷ୍ଟର ମହାପାତ୍ର । ଆପଣ ସବୁ ଜାଣିଛନ୍ତି, ଏପରିକି ଆପଣ ଏହା ମଧ୍ୟ ଜାଣିଛନ୍ତି ଯେ ରଙ୍ଗନାଥ ଶ୍ରୀବାସ୍ତବ ମୋର ଚତୁର୍ଥ ସ୍ୱାମୀ ।

ଚତୁର୍ଥ ସ୍ୱାମୀ ? ସତ୍ୟବ୍ରତ ମହାପାତ୍ର ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କରିଥିଲେ ।

ହଁ ଚତୁର୍ଥ ସ୍ୱାମୀ । ମୋର ଦ୍ୱିତୀୟ ସ୍ୱାମୀ ଥିଲେ ଜନ୍ମେଜୟ ତ୍ରିପାଠୀ । ସେ ଥିଲେ କାନପୁରର ଜଣେ ବିଶିଷ୍ଟ ବ୍ୟବସାୟୀ । ତାଙ୍କ ସହିତ ମୁଁ ତିନି ବର୍ଷ ଘର ସଂସାର କରିଥିଲି । ସେ ମୋତେ ଅକୁଣ୍ଠ ସ୍ନେହଦାନ କରିଥିଲେ । କିନ୍ତୁ ବଦଳରେ ମୁଁ ତାଙ୍କୁ କ'ଣ ଦେଇଥିଲି ଜାଣନ୍ତି ? ଅବିଶ୍ୱାସ, ଶେଷରେ ମୃତ୍ୟୁଦଣ୍ଡ !

ମାନେ ? ସତ୍ୟବ୍ରତ ଉତ୍କଣ୍ଠିତ ହୋଇ ପ୍ରଶ୍ନ କରିଥିଲେ ।

ମୃତ୍ୟୁଦଣ୍ଡ ମାନେ ବୁଝିପାରୁ ନାହାନ୍ତି ? ମୁଁ ତାଙ୍କୁ ଚକ୍ରାନ୍ତ କରି ହତ୍ୟା କରିଥିଲି ।

ଉଦ୍ଦେଶ୍ୟ ?

ଉଦ୍ଦେଶ୍ୟ ଗୋଟାଏ ଥିଲା । ମୋର ନୁହେଁ, ମୋର ପ୍ରଭୁର । ଯାହାର ଆଜ୍ଞାରେ ମୁଁ ପରିଚାଳିତ ହେଉଥିଲି ।

ସେ ପୁଣି କିଏ ?

: ସେ ମୋ' ଜୀବନଆକାଶର ଧୂମକେତୁ । ମୋତେ ଯିଏ ଆଶ୍ରୟ ଦେଇଥିଲା, ମୋତେ ଯିଏ ଆଶା ଦେଇଥିଲା । ସୁନାର ସଂସାରଟିଏ ଗଢ଼ି ତୋଳିବା ପାଇଁ ମୋ' ମନରେ ସ୍ୱପ୍ନ ସଞ୍ଚାର କରିଥିଲା, ସେଇ ନରାଧମ, ମୋ' ଜୀବନର ଦୁଷ୍ଟଗ୍ରହ, ମୋର ପ୍ରଥମ ସ୍ୱାମୀ । ସେ ଯେ ତା'ର ଉଦ୍ଦେଶ୍ୟ ସାଧନ ପାଇଁ ମୋତେ ଏପରି ଜଘନ୍ୟ ଭାବରେ ବ୍ୟବହାର କରିବ, ସେ କଥା ମୁଁ ଯେତେବେଳେ ଜାଣିପାରିଲି, ସେତେବେଳକୁ ମୁଁ ଜଣେ ଖୁନୀ ଆସାମୀ । ସେତେବେଳକୁ ସେ ମୋ' ହାତରେ ଗୋଟାଏ ଖୁନ୍ କରାଇସାରିଛି ଏବଂ ସମାଜ ଆଖିରେ ପୋଲିସ ଆଖିରେ ମୁଁ ଜଣେ ଖୁନୀ । ସେଇ ନରାଧମ ନରୋତ୍ତମ ଦାସ ପେଟ ଭିତରେ ଯେ ଏତେ ଚକ୍ରାନ୍ତ ଭରି ରଖିଥିଲା, ମୁଁ ତା' ପ୍ରସ୍ତାବ ଶୁଣି ଅବାକ ହୋଇଯାଇଥିଲି ।

ମୁଁ ଯେତେବେଳେ ଖୁନୀ ଆସାମୀ ହୋଇ ଅନ୍ଧକାରରେ ଲୁଚିଲୁଚି ବୁଲୁଥିଲି, ସେତେବେଳେ ସିଙ୍ଗାପୁରର ଗୋଟାଏ ଦାମୀ ହୋଟେଲରେ ରହୁଥିଲୁ ମୁଁ ଆଉ ମୋର ନରାଧମ ସ୍ୱାମୀ ନରୋତ୍ତମ ଦାସ । ସେଇ ହୋଟେଲରେ ଜନ୍ମେଜୟ ତ୍ରିପାଠୀ ସହିତ ମୋର ପରିଚୟ କରାଇଦେଲା ନରୋତ୍ତମ ଦାସ । ମୁଁ ତା'ର ଏକମାତ୍ର ଭଉଣୀ ହିସାବରେ ।

ମୋର ରୂପଯୌବନରେ ମୁଗ୍ଧ ହୋଇଥିଲେ ଜନ୍ମେଜୟ ତ୍ରିପାଠୀ । ଦିନ ପରେ ଦିନ, ରାତି ପରେ ରାତି ମୋତେ ଜନ୍ମେଜୟ ତ୍ରିପାଠୀ ସହିତ ଅଭିନୟ କରିଯିବାକୁ ହୋଇଥିଲା ନରୋତ୍ତମ ଦାସଙ୍କ ନିର୍ଦ୍ଦେଶରେ । ନରୋତ୍ତମ ଦାସଙ୍କର ଉଦ୍ଦେଶ୍ୟ ସାଧନର ସେଇ ଦିନଟି ଉପସ୍ଥିତ ହେଲା, ଯେଉଁଦିନ ଜନ୍ମେଜୟ ତ୍ରିପାଠୀ ଆକୁଳ ହୋଇ ମୋର ଦେହ କାମନା କରିଥିଲେ ।

ମୁଁ ଦେହଦାନ କରିଥିଲି ।

ଏବଂ ସେଇ ଦେହଦାନର ସୁଯୋଗକୁ ଅପେକ୍ଷା କରି ରହିଥିଲା ନରୋତ୍ତମ ଦାସ ଏବଂ ତା'ର ସାଙ୍ଗ ସାଥୀମାନେ ।

ଜନ୍ମେଜୟ ତ୍ରିପାଠୀ ପଛେଇ ଯାଇ ନ ଥିଲେ ।

ସେ ମୋତେ ତାଙ୍କର ସ୍ତ୍ରୀ ଭାବରେ ଗ୍ରହଣ କରିନେଇଥିଲେ ।

ମୋର ଦ୍ୱିତୀୟ ଥର ପାଇଁ ବିବାହ ସମ୍ପନ୍ନ ହୋଇଥିଲା ଜନ୍ମେଜୟ ତ୍ରିପାଠୀଙ୍କ ସହିତ । ମୋର ଭାଇ ହିସାବରେ ନରୋତ୍ତମ ଦାସ ମୋ' ସଙ୍ଗେସଙ୍ଗେ ଛାଇପରି ଲାଗି ରହିଥିଲେ ।

ଜନ୍ମେଜୟ ତ୍ରିପାଠୀ କିନ୍ତୁ ମୋତେ ଅବିଶ୍ୱାସ କରି ନ ଥିଲେ । ନିଜର

ବିବାହିତା ସ୍ତ୍ରୀ ପରି ସେ ମୋତେ ଗ୍ରହଣ କରି ନେଇଥିଲେ । ସ୍ନେହ ଦେଇଥିଲେ ଏବଂ ମୋର ଆଦରଯତ୍ନ ପାଇବା ପାଇଁ ବ୍ୟାକୁଳ ହୋଇ ଛୁଟି ଆସୁଥିଲେ କର୍ମକ୍ଷେତ୍ରରୁ ।

ସେହିପରି ଏକ ବର୍ଷ ଅତିବାହିତ ହୋଇଗଲା ।

ନରୋତ୍ତମ ଦାସ ବେଳେ ବେଳେ କାନପୁର ଆସେ ଏବଂ ମୋତେ ନାନା ପ୍ରକାର ଉପଦେଶ ଦେଇଯାଏ । ଥରେ ସେ ଆସି ଜନ୍ମେଜୟ ତ୍ରିପାଠୀଙ୍କୁ କହିଲା ଯେ, ତା'ର ଜଣେ ବନ୍ଧୁ ଇନ୍‌ସୁରେନ୍‌ସ ଏଜେଣ୍ଟ ଅଛନ୍ତି । ସେ କିଛି କେସ୍ ଚାହାନ୍ତି ।

ଜନ୍ମେଜୟ ତ୍ରିପାଠୀ ରାଜି ହୋଇଗଲେ । ଦୁଇ ବର୍ଷ ଭିତରେ ସେ ପ୍ରାୟ ନିଜ ଜୀବନର ପଚିଶ ଲକ୍ଷ ଟଙ୍କାର ଜୀବନ ବୀମା କରାଇଲେ ସେଇ ଏଜେଣ୍ଟ ପାଖରେ ଏବଂ ସବୁ ପଲିସିର ନୋମିନି ହେଲି ମୁଁ ।

ଦିନ ଗଡ଼ି ଚାଲିଥିଲା ।

ମୁଁ ଭାବିଥିଲି ନରୋତ୍ତମ ଦାସ ସତରେ ହୁଏତ ମୋର ମଙ୍ଗଳ ପାଇଁ ଏହିପରି ଏକ ବ୍ୟବସ୍ଥା କରିଦେଇଛି । ବେଳେବେଳେ କୃତଜ୍ଞତାରେ ମୋ' ମୁଣ୍ଡ ନଇଁ ପଡୁଥିଲା ନରୋତ୍ତମ ଦାସ ପାଖରେ ।

କିନ୍ତୁ ହଠାତ୍ ଦିନେ ନରୋତ୍ତମ ଦାସ ବ୍ୟସ୍ତବିବ୍ରତ ହୋଇ ମୋ' ପାଖରେ ଆସି ଦୀର୍ଘଶ୍ୱାସ ପକାଇ, କାନ୍ଦ କାନ୍ଦ ହୋଇ କହିଲା: ମାନି, ତୋ'ର ସଂସାର ସରିଗଲା ଲୋ ! ଜନ୍ମେଜୟ ତ୍ରିପାଠୀ ଏକ୍‌ସିଡେଣ୍ଟରେ ହସପିଟାଲରେ ମୃତ୍ୟୁବରଣ କରିଛନ୍ତି ।

ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ ।

ଯେତେବେଳେ ବୁଝିପାରିଲି, ସେତେବେଳକୁ ସତରେ ମୋର ସର୍ବନାଶ ହୋଇଯାଇଥିଲା ।

ତା'ପରେ କିଛି ଦିନ ପରେ ଯେତେବେଳେ ଇନ୍‌ସୁରେନ୍‌ସ କମ୍ପାନୀ ଜନ୍ମେଜୟ ତ୍ରିପାଠୀଙ୍କ ଡେଥ୍‌କ୍ଲେମ ହିସାବରେ ମୋ' ହାତରେ ପଚିଶ ଲକ୍ଷ ଟଙ୍କାର ଗୋଟିଏ ଚେକ୍ ପ୍ରଦାନ କଲେ, ସେତେବେଳେ ଯାଇ ମୁଁ ବୁଝିଲି ଯେ ଏହା ନରୋତ୍ତମ ଦାସର ଚକ୍ରାନ୍ତ । ଜନ୍ମେଜୟ ତ୍ରିପାଠୀଙ୍କୁ ହତ୍ୟା କରାହୋଇଛି !

କିନ୍ତୁ ସେତେବେଳକୁ ଆଉ ମୋର କିଛି ଉପାୟ ନ ଥିଲା । ଜନ୍ମେଜୟ ତ୍ରିପାଠୀଙ୍କ ଘରକୁ ଯିବାର ମଧ୍ୟ ମୋର ସାହସ ନ ଥିଲା । କାରଣ ତାଙ୍କର ନିଜ ସ୍ତ୍ରୀ, ପିଲା ଓ ମାଆ, ସେମାନେ କେହି ମୋର ଅସ୍ତିତ୍ୱର କଥା ଜାଣି ନ ଥିଲେ । ଫଳରେ ମୁଁ ପୁଣି ନରୋତ୍ତମ ଦାସର ଶିକାର ହେଲି । ସେ ମୋ' ହାତରୁ ପଚିଶ ଲକ୍ଷ ଟଙ୍କାର ଚେକ୍ କାଢ଼ି ନେଲା ।

ମଝିରେ ଗୋଟିଏ ବର୍ଷ ଅତିବାହିତ ହୋଇଗଲା ମହାଆନନ୍ଦରେ ।

ନରୋତ୍ତମ ଦାସ ସହିତ ମୁଁ ପୁଣି ଘୂରି ବୁଲିଲି ନାନା ସହର ବନ୍ଦରରେ ।

ଏଥର ନରୋତ୍ତମ ଦାସ ଯାହାକୁ ଖାପଚରେ ପକାଇଲା ସେ ଜଣେ ବୟସ୍କ

ଲୋକ । ବମ୍ବେରେ ତାଙ୍କ ସହିତ ଦେଖା । ସେହି ଭଦ୍ରଲୋକଙ୍କ ସହିତ ନରୋତ୍ତମ ଦାସ ମୋତେ ଯେଉଁଦିନ ଜୁହୁ ବିଚ୍‌ରେ ସାକ୍ଷାତ କରାଇଲା, ମୋତେ କହିଲା, ଏ ଜଣେ ବଡ଼ ବ୍ୟବସାୟୀ ।

ଭଦ୍ରଲୋକଙ୍କ ନାମ ସୁନ୍ଦର ଦାସ ସରାଓଗୀ ।

ବିପତ୍ନୀକ । କିନ୍ତୁ ପ୍ରଚୁର ସମ୍ପତ୍ତିର ମାଲିକ । ତାଙ୍କର ପୁଅଝିଅମାନେ ବଡ଼ ହୋଇ କଲେଜରେ ପଢୁଛନ୍ତି ।

ସୁନ୍ଦର ଦାସ କିନ୍ତୁ ମୋ' ରୂପଲାବଣ୍ୟରେ ମୁଗ୍ଧ ହୋଇଗଲେ ।

ପୁଣି ମୁଁ ହେଲି ନରୋତ୍ତମ ଦାସର ଭଉଣୀ ଏବଂ ସୁନ୍ଦର ଦାସ ହେଲେ ମୋର ତୃତୀୟ ସ୍ୱାମୀ ।

ସୁନ୍ଦର ଦାସ ମୋତେ ବହୁତ ଯତ୍ନରେ ରଖିଥିଲେ । ମୋ' ପାଇଁ ଅଲଗା ଫ୍ଲାଟ ଭଡ଼ା ନେଇଥିଲେ । ଚାକର ଚାକରାଣୀ ଖଞ୍ଜିଥିଲେ । ଗୋଟାଏ ମଟର ଗାଡ଼ି ଦେଇଥିଲେ । ସପ୍ତାହରେ ଦୁଇଦିନ ଆସୁଥିଲେ ମୋ' ଫ୍ଲାଟକୁ । ମୋର ଦେହ ଥିଲା ତାଙ୍କର ଏକମାତ୍ର ଆକର୍ଷଣ ।

ନରୋତ୍ତମ ଦାସ ଏଠାରେ ମଧ୍ୟ ସେହି ଏକା ଉପାୟ ଅବଲମ୍ବନ କଲା । ସୁନ୍ଦର ଦାସ ତିରିଶ ଲକ୍ଷ ଟଙ୍କାର ଇନ୍‌ସୁରେନ୍‌ସ କଲେ । ମୋ' ନାଁରେ ନୋମିନି ହେଲା । ଠିକ୍ ବର୍ଷକ ପରେ ସୁନ୍ଦର ଦାସ ଏକ୍‌ସିଡେଣ୍ଟରେ ପ୍ରାଣ ହରାଇଲେ ! ଏଥର ମୁଁ ଇନ୍‌ସୁରେନ୍‌ସ କମ୍ପାନୀରୁ ପାଇଲି ଷାଠିଏ ଲକ୍ଷ ଟଙ୍କାର ଚେକ । କାରଣ ସୁନ୍ଦର ଦାସଙ୍କର ପଲିସି ହୋଇଥିଲା 'ଏକ୍‌ସିଡେଣ୍ଟ ବେନିଫିଟ୍‌ର' ।

ପୁଣି ମୋତେ ବମ୍ବେ ଛାଡ଼ିବାକୁ ହେଇଥିଲା ନରୋତ୍ତମ ଦାସ ସହିତ ।

ଠିକ୍ ବର୍ଷକ ପରେ ମୋର ଚତୁର୍ଥ ସ୍ୱାମୀ ହେଲେ ରଙ୍ଗନାଥ ଶ୍ରୀବାସ୍ତବ ।

ମନ୍ଦିରା ଶ୍ରୀବାସ୍ତବ ଏକାନିଃଶ୍ୱାସରେ ସବୁ କଥା କହି ପକାଇ ନୀରବ ହେଲେ ।

ସତ୍ୟବ୍ରତ କେବଳ ଅବାକ୍ ହୋଇ ଶୁଣୁଥିଲେ ମନ୍ଦିରା ଦେବୀଙ୍କ ଜୀବନ ବୃତ୍ତାନ୍ତ । ଏପରି ଅପରିକଳ୍ପନୀୟ ଘଟଣା ଯେ ପୃଥିବୀରେ ଘଟିପାରେ, ସତ୍ୟବ୍ରତ ବିଶ୍ୱାସ କରିପାରୁ ନ ଥିଲେ ।

ନୀରବତା ଭିତରେ କିଛି ସମୟ ଅତିବାହିତ ହୋଇଗଲା ।

ସତ୍ୟବ୍ରତ କହିଲେ   ହୁଁ, ବର୍ତ୍ତମାନ ବି ନରୋତ୍ତମ ଦାସ ସେହି ଏକ ଉପାୟରେ ରଙ୍ଗନାଥ ଶ୍ରୀବାସ୍ତବଙ୍କୁ ଫାନ୍ଦରେ ପକାଇଛି । ସବୁ କାମ ଶେଷ । ଏଥର ଜାଲ ଟାଣିବା କଥା ; କ'ଣ କହୁଚନ୍ତି ମନ୍ଦିରା ଦେବୀ ?

ମନ୍ଦିରା ଦେବୀ କୌଣସି ଉତ୍ତର ଦେଇପାରିଲେ ନାହିଁ । କେବଳ ଭୋ ଭୋ ହୋଇ କାନ୍ଦି ଉଠିଲେ ।

ସତ୍ୟବ୍ରତ କହିଲେ  ମୁଁ ଯଦିଓ ଆପଣଙ୍କର ପୂର୍ବ ବୃତ୍ତାନ୍ତ ସବୁ ଜାଣି ନ ଥିଲି, ତଥାପି ଅନୁମାନ କରିପାରିଥିଲି ଯେ, ରଙ୍ଗନାଥ ଶ୍ରୀବାସ୍ତବଙ୍କ ବିରୁଦ୍ଧରେ ଗୋଟାଏ କିଛି ଷଡ଼ଯନ୍ତ୍ର ହେଉଛି ଏବଂ ସେ ଷଡ଼ଯନ୍ତ୍ରରେ ଆପଣ ସଂଶ୍ଳିଷ୍ଟ । ରଙ୍ଗନାଥ ଶ୍ରୀବାସ୍ତବ ପଚାଶ ଲକ୍ଷ ଟଙ୍କାର ପଲିସି କରି ଆପଣ ଓ ରଞ୍ଜିତା ଦୁହିଁଙ୍କ ନାମରେ ନୋମିନି କରିଥିବା କଥା ମୁଁ ଜାଣିଛି । ସେଇଥିପାଇଁ ଖାଲି ରଙ୍ଗନାଥ ଶ୍ରୀବାସ୍ତବଙ୍କୁ ହତ୍ୟା କଲେ ପୂରା ପଚାଶ ଲକ୍ଷ ଟଙ୍କା ଆପଣ ପାଇପାରିବେ ନାହିଁ । ସେଥିରୁ ଅଧେ ଭାଗ ପାଇବ ରଞ୍ଜିତା । ତେଣୁ ପୂରା ପଚାଶ ଲକ୍ଷ ଟଙ୍କା ପାଇବାକୁ ହେଲେ ପ୍ରଥମେ ରଞ୍ଜିତାକୁ ହତ୍ୟା କରିବାକୁ ହେବ, ତା'ପରେ ମିଷ୍ଟର ଶ୍ରୀବାସ୍ତବ ନରୋତ୍ତମ ଦାସଙ୍କ ଶିକାର ହେବେ । ଏଇ ପରିକଳ୍ପନା ତ ?

ହଁ ମିଷ୍ଟର ମହାପାତ୍ର । ଆପଣ ଠିକ୍ ଅନୁମାନ କରିପାରିଛନ୍ତି । ମୁଁ କିନ୍ତୁ ଏହା ଆଉ ଚାହେଁ ନାହିଁ । ଆପଣ ମୋତେ ସାହାଯ୍ୟ କରନ୍ତୁ । ସମୟ ଆଉ ହାତରେ ଅଳ୍ପ, ଠିକ୍ ତିନିଟା ବେଳକୁ ସେ ଆଜି ନିଶ୍ଚୟ ଆସିବ ଏବଂ ନିଜ ହାତରେ ରଞ୍ଜିତାର ଗଳା ଚିପି ହତ୍ୟା କରିବ ।

ସତ୍ୟବ୍ରତ ହାତଘଡ଼ିକୁ ଚାହିଁ ଦେଖିଲେ ଦୁଇଟା ବାଜି ଯାଇଛି । ପ୍ରକୃତରେ ସମୟ ଆଉ ଅଳ୍ପ ଅଛି । ନରୋତ୍ତମ ଦାସକୁ ଧରିବାକୁ ହେଲେ, ଆଗରୁ ଟିକିଏ ପ୍ରସ୍ତୁତି ଦରକାର । ମନ୍ଦିରା ଦେବୀଙ୍କୁ କହିଲେ : ଠିକ୍ ଅଛି, ଆପଣଙ୍କ ପ୍ରୋଗ୍ରାମ ଅନୁସାରେ ଆପଣ ଆଗେଇ ଯାଆନ୍ତୁ । ମୁଁ ରଞ୍ଜିତାକୁ ରକ୍ଷା କରିବି ।

ମନ୍ଦିରା ଦେବୀ ଯେପରି ସତ୍ୟବ୍ରତ ମହାପାତ୍ରଙ୍କୁ ବିଶ୍ୱାସ କରିପାରୁ ନ ଥିଲେ । ସେ କରୁଣ ନିବେଦନ କଲା ପରି କହିଲେ  ଦେଖନ୍ତୁ ମିଷ୍ଟର ମହାପାତ୍ର । ଆପଣ ମୋର ଏକମାତ୍ର ଭରସା ।

ସତ୍ୟବ୍ରତ ମହାପାତ୍ର ଟେଲିଫୋନ ରିସିଭର ଉଠାଇ ଥାନାକୁ ଡାଏଲ କଲେ । ଇନିସପେକ୍ଟରଙ୍କ ସହିତ କିଛି ସମୟ କଥାବାର୍ତ୍ତା ହେବା ପରେ ମନ୍ଦିରା ଦେବୀଙ୍କୁ କହିଲେ  ପ୍ରୋଗ୍ରାମଟା ଆପଣଙ୍କର କାଲି ରାତିପରି ତ ?

କାଲି ରାତିପରି ମାନେ ?

କାଲି ଯେପରି ନରୋତ୍ତମ ଦାସ କଳାପୋଷାକରେ ଅଙ୍ଗ ଆବୃତ କରି ଆସିଥିଲା ଏବଂ ଘରପଛ ଆଡ଼ର ଲୁହା ଶିଡ଼ି ଦେଇ ଉପରକୁ ଉଠିଥିଲା । ତା'ପରେ ଆପଣ ରଞ୍ଜିତାର ଦୁଆର ଖୋଲିଦେଇ ଧୀରେଧୀରେ ତଳକୁ ଓହ୍ଲାଇ ଯାଇଥିଲେ ।

ମନ୍ଦିରା ଦେବୀ ଅବିଶ୍ୱାସ୍ୟ ଦୃଷ୍ଟିରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲେ ।

ମୁଁ ଜାଣେ ମନ୍ଦିରା ଦେବୀ । ମୋତେ ଆପଣ ସବୁ ଲୁଚେଇବାକୁ ଚେଷ୍ଟା କରିଥିଲେ ବି କିଛି ଲୁଚି ନଥାନ୍ତା । ଆପଣ ସବୁ କଥା ସ୍ୱୀକାର କରିଯାଇଛନ୍ତି ଯେତେବେଳେ ଏବଂ ମୋର ସାହାଯ୍ୟ ଲୋଡ଼ିଛନ୍ତି ମୁଁ ନିଶ୍ଚୟ ଆପଣଙ୍କୁ ସାହାଯ୍ୟ

କରିବି । କିନ୍ତୁ ସେହି ନର-ପିଶାଚ ନରୋତ୍ତମ ଦାସକୁ ମୁଁ କ୍ଷମା କରିପାରିବି ନାହିଁ ।

ଆପଣ, ମାନେ ଆପଣ ନରୋତ୍ତମ ଦାସକୁ ଆଗରୁ ଚିହ୍ନି ଥିଲେ ? ମନ୍ଦିରା ଦେବୀଙ୍କ କଣ୍ଠ ଥରି ଉଠୁଥିଲା ।

ନା, ଆଗରୁ ନୁହେଁ, ଆଜି ଚିହ୍ନିଲି । ଆଉ ଡେରି କରନ୍ତୁ ନାହିଁ । ଆପଣ ଏଥର ନିର୍ଦ୍ଧାରିତ ସ୍ଥାନକୁ ଚାଲିଯାଆନ୍ତୁ ।

ରଞ୍ଜିତାର ଶୋଇବା ଘର ଭିତରେ ସତ୍ୟବ୍ରତ ମହାପାତ୍ର ଯାଇ ଅନ୍ଧକାର ଭିତରେ ଦେହ ଲୁଚାଇ ଚୁପ୍‌ଚାପ୍ ଠିଆ ହୋଇଥିଲେ । ଘଡ଼ିରେ ଠିକ୍ ତିନିଟା ବାଜିବା କ୍ଷଣି ଦରଜାଟି ଧୀରେଧୀରେ ଖୋଲିଗଲା ଏବଂ ଗୋଟାଏ ଭାରି ପାଦର ଶବ୍ଦ ଭିତରକୁ ମାଡ଼ିଆସିଲା । ପାଞ୍ଚ ସେକେଣ୍ଡ, ଦଶ ସେକେଣ୍ଡ । ରଞ୍ଜିତା ଶେଯ ପାଖରେ ଗୋଟିଏ ଛୋଟ ଗୋଲାକୃତି ଆଲୋକର ଶିଖା ଫୁଟିଉଠିଲା ।

ସତ୍ୟବ୍ରତ ଦେଖିଲେ ଦୁଇଟି ସୁଦୃଢ଼ ହାତ ଲମ୍ବିଯାଉଛି ରଞ୍ଜିତାର ଗଳା ପାଖକୁ ।

ହଠାତ୍ ଘରର ଆଲୋକ ଜଳିଉଠିଲା ଏବଂ ସତ୍ୟବ୍ରତଙ୍କ ଦୃଢ଼କଣ୍ଠର ନିର୍ଦ୍ଦେଶ ଶୁଣାଗଲା ହ୍ୟାଣ୍ଡସ୍ ଅପ୍ !

କଳାପୋଷାକରେ ଆବୃତ ସେହି ଲୋକଟି ଥକ୍କା ହୋଇ ଠିଆ ହୋଇଗଲା । ବୋଧହୁଏ ସତ୍ୟବ୍ରତ ମହାପାତ୍ରଙ୍କ ହାତର ଉଦ୍ୟତ ରିଭଲଭରଟି ଦେଖି ସେ ହାତ ଦୁଇଟି ଟେକିବାକୁ ବାଧ୍ୟ ହୋଇଥିଲା ।

ମୁହୂର୍ତ୍ତକ ପରେ ପୋଲିସ ଇନିସପେକ୍ଟର ଘର ଭିତରକୁ ପଶିଆସିଲେ ଏବଂ ଦୁଇଜଣ କନେଷ୍ଟବଲ ଯାଇ ସେହି କଳାପୋଷାକ ଆବୃତକାରୀର ହାତ ଦୁଇଟି ଧରି ନେଲେ ।

ଗୋଳମାଳ ଭିତରେ ରଞ୍ଜିତାର ନିଦ ଭାଙ୍ଗିଗଲା । ସେ ଅବାକ୍ ହୋଇ ଅନାଇ ରହିଲା ସମସ୍ତଙ୍କୁ ।

ସତ୍ୟବ୍ରତ ପାଦେପାଦେ କରି ଆଗେଇଯାଇ ସେହି କଳାପୋଷାକରେ ଅଙ୍ଗ ଆବୃତକାରୀ ଲୋକଟି ପାଖରେ ପହଞ୍ଚି ମୁହଁରୁ କଳା କନା ଖଣ୍ଡିକ ଟାଣି ଦେଉ ଦେଉ କହିଲେ ମିଷ୍ଟର ଉପାଧ୍ୟାୟ, ଆପଣ ବି ଭାବି ନ ଥିଲେ କି ମୁଁ ବି ଭାବି ନ ଥିଲି ଏତେ ଶୀଘ୍ର ପୁଣି ଥରେ ଆପଣ ମୋ' ଭିତରେ ଭେଟ ହୋଇଯିବ ବୋଲି ।

ଲୋକଟି ସତ୍ୟବ୍ରତଙ୍କ ମୁହଁକୁ ସ୍ତବ୍ଧ ହୋଇ ଚାହିଁ ରହିଲା ।

ସତ୍ୟବ୍ରତ ମହାପାତ୍ର କହିଲେ ହଁ ମୁଁ ସେଇ ଲୋକ ଆଜି ସନ୍ଧ୍ୟାବେଳେ ଯାହା ସହିତ ଏୟାରପୋର୍ଟରେ ଦେଖା ହୋଇଥିଲା, କିନ୍ତୁ ଆପଣ ନିଶ୍ଚୟ ମିଷ୍ଟର ଉପାଧ୍ୟାୟ ନୁହନ୍ତି, ଆପଣ ଯେ ନରୋତ୍ତମ ଦାସ ମୁଁ ଆପଣଙ୍କୁ ଚିହ୍ନି ସାରିଛି । କାଲି ସକାଳେ ଦେଶସାରା ଆପଣଙ୍କ କୀର୍ତ୍ତି ପ୍ରଚାରିତ ହେବ ।

ଦୁଇଟି କଳା କଳା ଲାଜୁରା ଆଖି ।

ଗୋଟିଏ ସୁନ୍ଦର ହସିଲା ମୁହଁ । ମଧୁର, କମନୀୟ ।

ଆଖିର ଚାହାଣିରେ ଯୁଗଯୁଗର ପ୍ରତୀକ୍ଷା ପୂରି ରହିଚି । ଚାହିଁଲେ ଚାହିଁବାକୁ ମନ ହେଉଚି । ଆଖି ଲେଉଟାଇ ଆଣି ହେଉନାହିଁ ସେହି ଅପରୂପ ମୁଖମଣ୍ଡଳ ଉପରୁ । ଆହୁରି, ଆହୁରି ଦେଖିବାକୁ ମନ ହେଉଚି । ଯୁଗଯୁଗ ଧରି ଯଦି ସେହି ମୁଖମଣ୍ଡଳଟିକୁ ଚାହିଁଚାହିଁ ରହି ହୁଅନ୍ତା, ଆଉ ସେହି କଳା କଳା ଆଖି ଦୁଇଟିରେ ଆଖି ମିଳେଇ ହୁଅନ୍ତା, ତେବେ ଜଗତର କୌଣସି ଦୁଃଖ ଅନୁଭବ କରି ହୁଅନ୍ତା ନାହିଁ । ଆଃ... କି ସୁନ୍ଦର ସେ କଳା କଳା ଆଖି ଦୁଇଟି ।

ସଞ୍ଜୟ ଚାହିଁ ରହିଥିଲା । ଆଖିରେ ତାର ପଲକ ପଡୁ ନ ଥିଲା । ଏଡ଼େ ସୁନ୍ଦର ଏଡ଼େ ନିଟୋଳ ମୁଖ ମଣ୍ଡଳ ସେ କ'ଣ କେବେ କଳ୍ପନା କରିପାରିଥାନ୍ତା !!

ସଞ୍ଜୟ ଆହୁରି ଭଲକରି ଚାହିଁଲା । କପାଳରେ ବିନ୍ଦୁ ବିନ୍ଦୁ ଚନ୍ଦନର ଟୋପା । ଅବଶ୍ୟ ଅସ୍ପଷ୍ଟ । ହୁଏତ ଚନ୍ଦନ ବିନ୍ଦୁଗୁଡ଼ିକ ପୋଛି ଦିଆହୋଇଚି, ଅଥବା କପାଳରୁ ଝାଳ ବହି ବିନ୍ଦୁଗୁଡ଼ିକ ଲିଭି ଲିଭି ଯାଇଚି ।

ଆହୁରି ଭଲ ଭାବରେ, ଆହୁରି ନିବିଡ଼ ଭାବରେ ସଞ୍ଜୟର ଚାହିଁବାକୁ ଇଚ୍ଛା ହେଉଥିଲା । ତରୁଣୀଟି କିନ୍ତୁ ବାହାରକୁ ଚାହିଁ ବସିଥିଲା । ବେଳେବେଳେ, ଯେତେବେଳେ ଆଖିଯୋଡ଼ିକ ଫେରେଇ ଆଣୁଥିଲା, ସଞ୍ଜୟ ଆଖି ସହିତ ମିଶି ଯାଉଥିଲା । ଲାଜରେ ଚାହାଣି ତାର ନଇଁ ଯାଉଥିଲା । ସଞ୍ଜୟ କିନ୍ତୁ ନିର୍ବିକାର ।

ମେଲ ଟ୍ରେନ୍ ଛୁଟି ଚାଲିଥିଲା । ବାହାରେ ବୃକ୍ଷଲତା, ଖାଲବିଲ ଯେପରି ଧାଁ ଦଉଡ଼ ଲଗେଇଥିଲେ । ତରୁଣୀଟି ସେଇଆଡ଼େ ଚାହିଁ ରହି ବସିଥିଲା । ସଞ୍ଜୟ କିନ୍ତୁ ନିଦରୁ ଉଠିଲାବେଳୁ ତା ଆଡ଼େ ନିର୍ଲଜ୍ଜଙ୍କ ପରି ଅନାଇ ରହିଥିଲା ।

କମ୍ପାଟମେଣ୍ଟରେ ଅନ୍ୟ ଯେଉଁ ତିନି ଚାରିଜଣ ସହଯାତ୍ରୀ ଥିଲେ, ସେମାନେ ନିଶ୍ଚିନ୍ତରେ ଶୋଇରହିଥିଲେ । କାହାରି ନିଦ୍ରାଭଙ୍ଗ ହୋଇ ନ ଥିଲା ।

ସଞ୍ଜୟ ଖୋର୍ଦ୍ଧାରୋଡରୁ ଟ୍ରେନରେ ଉଠି ଅଳ୍ପ ସମୟ ପରେ ଶୋଇପଡ଼ିଥିଲା । ଏହି ତରୁଣୀଟି ଯେ କେଉଁଠୁ ଉଠିଥିଲା, ସେ କଥା ସଞ୍ଜୟକୁ ଜଣା ନ ଥିଲା । ଆଜି ସକାଳୁ ନିଦ୍ରାଭଙ୍ଗ ସଙ୍ଗେସଙ୍ଗେ ସେ ଯାହାକୁ ଦର୍ଶନ କଲା, ଜୀବନ ତା'ର ସାର୍ଥକ ହୋଇଗଲା ବୋଧହୁଏ !!

|| ଜୀବନ୍ତ ପଦାର୍ଥ ||
**ସ୍ପନ୍ଦନ**

ମେଲଟ୍ରେନ୍ ଛୁଟି ଚାଲିଥିଲା । ହୁଏତ ଆଉ କେତେ ଘଣ୍ଟା ପରେ ସେମାନେ ହାବଡ଼ା ଷ୍ଟେସନରେ ପହଞ୍ଚିଯିବେ । ଯେ ଯୁଆଡ଼େ ଚାଲିଯିବେ ନିଜ ନିଜ ଗନ୍ତବ୍ୟ ସ୍ଥଳୀକୁ । ଏହି ତରୁଣୀଟି ମଧ୍ୟ ନିଜର ଲକ୍ଷ୍ୟସ୍ଥଳକୁ ଚାଲିଯିବ । ଆଉ ସଞ୍ଜୟର ମନ ଭିତରେ ଏ ଯେଉଁ ଅପରୂପ ଚିତ୍ରପଟଟି ଅଙ୍କିତ ହୋଇ ରହିଗଲା, କ'ଣ କରିବ ସେ !

ସଞ୍ଜୟର ଇଚ୍ଛା ହେଉଥିଲା ତରୁଣୀଟିର ପରିଚୟ ପଚାରିବ । କିନ୍ତୁ କେଜାଣି କାହିଁକି ସାହସ କରିପାରୁ ନଥିଲା ।

ମେଲଟ୍ରେନ୍‌ଟି ଅବିରାମ ଗତିରେ ଛୁଟି ଚାଲିଥିଲା ।

ଆହୁରି କିଛି ସମୟ ପରେ, ସଞ୍ଜୟ ନିଜର ଲେଦର ସୁଟ୍‌କେସ୍ ଖୋଲି ପେଷ୍ଟ ଓ ବ୍ରସ୍ ବାହାର କଲା । ଲାଟରିନ୍ ଯିବା ତା'ର ଏକାନ୍ତ ପ୍ରୟୋଜନ ହୋଇପଡ଼ିଛି। ତରୁଣୀଟି କିନ୍ତୁ ନିର୍ବିକାର । ସେ କେଜାଣି କାହିଁକି ଆଗପରି ଆଉ ରହିରହି ସଞ୍ଜୟ ଆଡ଼େ ଚାହୁଁ ନାହିଁ । ବାହାରେ ପ୍ରକୃତିର ବିଚିତ୍ର ଦୃଶ୍ୟ ଦେଖିବାରେ ସେ ଯେପରି ଆତ୍ମହରା ହୋଇପଡ଼ିଛି ।

ସଞ୍ଜୟ ଭଲ ଭାବରେ ଥରେ ତରୁଣୀଟି ଆଡ଼େ ଚାହିଁ ଲାଟରିନ୍ ଆଡ଼େ ଆଗେଇଗଲା । ଫେରି ଆସିଲେ ନିଶ୍ଚୟ ସେ ତା' ସହିତ ଗଳ୍ପ ଆରମ୍ଭ କରିବ । ଆଉ କିଛି ହେଉ ନ ହେଉ, ସେ ତରୁଣୀଟିର ପରିଚୟ ପଚାରିବ । କେଉଁଠୁ ଆସିଲା, କେଉଁଠାକୁ ଯିବ । କୌଣସି ଅସୁବିଧାର ସମ୍ମୁଖୀନ ହୋଇ ଘରୁ ବାହାରି ଆସିଛି କି କ'ଣ, ସବୁ କଥା ପଚାରି ବୁଝିବ । ଆଉ ଏଗୁଡ଼ିକ ଏପରି କୌଣସି ଦୋଷାବହ କଥା ନୁହେଁ, ଯାହା ପାଇଁ ସେ ତା' ଉପରେ ଅସନ୍ତୁଷ୍ଟ ହେବ ।

ସଞ୍ଜୟ ଲାଟ୍‌ରିନ୍ ଭିତରେ ପଶି ଅନେକ କଥା ଭାବୁଥିଲା । କ'ଣ ଆଉ ହୋଇପାରେ ! ତା'ର ବୟସ କେତେ ବା ଆଉ ହେବ ! ଖୁବ୍ ଜୋର କୋଡ଼ିଏ ଏକୋଇଶ । ସାଙ୍ଗ ନାହିଁ, ସାଥୀ ନାହିଁ । ଏକାଏକା ସେ ଯାଉଛି କୁଆଡ଼େ ! କପାଳରେ ଚନ୍ଦନବିନ୍ଦୁ । ଅସ୍ପଷ୍ଟ ହେଲେ ବି ପୂରା ବାରି ହେଉଚି । ବିବାହ ବେଦୀରୁ ଉଠି ଆସିନାହିଁ ତ !

କିଏ ଜାଣେ ! ସଞ୍ଜୟ ଖୋଲାଖୋଲି ତାକୁ ପଚାରିବ । ଦୋଷ କ'ଣ ! ଏପରି ବି ତ ହୋଇପାରେ କାହାରି ପ୍ରରୋଚନାରେ ପଡ଼ି ସେ ଘର ଛାଡ଼ି ପଳାଇ ଯାଉଛି । ତା' ବୋଲି ଏକା ? ଏକା ନ ହୋଇ ବି ପାରେ । ତା' ସାଙ୍ଗ ଜଣକ ହୁଏତ ଅନ୍ୟ କୌଣସି କମ୍ପାର୍ଟମେଣ୍ଟରେ ବସିରହିଛି । କାଳେ କିଏ ଚିହ୍ନା ଜଣାଲୋକ ଦେଖା ହୋଇଯାଇପାରେ ଭାବି ସେ ଲୁଚି ଲୁଚି ଚାଲିଛି ।

ଯାହା ହେଉ, ତରୁଣୀଟିର ଆଖିଯୋଡ଼ିକ ସଞ୍ଜୟ ମନରେ ଗୋଲକଧନ୍ଦା ସୃଷ୍ଟି କରି ଦେଇଥିଲା । ଜୀବନରେ କେବେ ସେ ଏପରି ଏକ ଲାଜୁରା ମୁହଁ ସଂଗରେ ଏପରି ଶୀତଳ ଚାହାଣି ଦେଖିନାହିଁ । ସେ ଚାହାଣିରେ ଏତେ ଅନ୍ତରଙ୍ଗତା ପୂରି ରହିଚି ଯେ... କ'ଣ ସମସ୍ତଙ୍କ ପାଇଁ ନା ଏକା ସଞ୍ଜୟ ପାଇଁ ?

କିଏ ଜାଣେ ଭଗବାନ ତା' ପାଇଁ ସେହି ଆଖି ଦୁଇଟି ପଠାଇଛନ୍ତି, ଦିନ ରାତି ସଞ୍ଜୟର ଗତିବିଧି ଉପରେ ପହରା ଦେବାକୁ । ଏହିପରି ଅନାବନା ଭାବନାରେ ସଞ୍ଜୟ ଅନ୍ତର ଭିତରଟା ପୁଲକିତ ହୋଇଉଠିଥିଲା । ଯେପରି ହେଉ ସେ ତରୁଣୀଟି ସହିତ ବନ୍ଧୁତ୍ୱ ସ୍ଥାପନ କରିବ ।

ସଞ୍ଜୟ ଅନୁଭବ କଲା, ହଠାତ୍ ଯେପରି ଟ୍ରେନର ଗତି ଶିଥିଳ ହୋଇଆସୁଛି । କାହିଁକି ? ନିକଟରେ ତ କୌଣସି ଷ୍ଟେସନ ଥିବାର କଥା ନୁହେଁ । ହେଲା କ'ଣ ! ତରୁଣୀଟି କୌଣସି ବିପଦରେ ପଡ଼ିଲା କି ! ସେ ଯଥା ସମ୍ଭବ ଶୀଘ୍ର ମୁହଁ ଧୋଇ ପକାଇ ଲାଟରିନ୍‌ରୁ ବାହାରକୁ ଛୁଟିଆସିଲା । ସେତେବେଳକୁ ଟ୍ରେନଟା ସମ୍ପୂର୍ଣ୍ଣ ରୂପେ ଠିଆହୋଇ ଯାଇଥିଲା ।

—

କିନ୍ତୁ ତରୁଣୀଟିର ଆସନ ଶୂନ୍ୟ ଯେ !

ତେବେ, ତେବେ କ'ଣ ସେ କମ୍ପାର୍ଟମେଣ୍ଟରୁ ଡେଇଁ ପଡ଼ି ଆତ୍ମହତ୍ୟା କରିଚି ? ତା' ନହେଲେ ଟ୍ରେନ ବା ଅଟକିଲା କାହିଁକି ? ସଞ୍ଜୟ ମନରେ କେବଳ ସେହି ତରୁଣୀଟି ପକ୍ଷ ବିସ୍ତାର କରି ରହିଥିଲା । ସେ ବିବ୍ରତ ଓ ଚଞ୍ଚଳ ହୋଇଉଠିଲା । ଦରଜା ଖୋଲି ତଳକୁ ଓହ୍ଲାଇ ପଡ଼ିଲା । ଦେଖିଲା, ଲୋକମାନେ ଟ୍ରେନର ପଛ ଆଡ଼କୁ ଧାଁ ଦଉଡ଼ କରୁଛନ୍ତି ।

ହୁଏତ କୌଣସି ଦୁର୍ଘଟଣା ଘଟିଛି । ସଞ୍ଜୟ ସେଇଆଡ଼େ ଛୁଟିଲା ।

ପ୍ରକୃତରେ ଗୋଟାଏ ଦୁର୍ଘଟଣା ଘଟିଥିଲା ।

ଜଣେ କେହି ଟ୍ରେନରେ କଟି ଯାଇଥିଲା । ଏପରି ଭାବରେ ସେ ଖଣ୍ଡଖଣ୍ଡ ହୋଇ ଯାଇଥିଲା ଯେ ଆସାମୀକୁ ଚିହ୍ନିବାର ଉପାୟ ନ ଥିଲା । କେବଳ ମାଂସଗୁଡ଼ାକ ଟ୍ରେନ ଲାଇନର ଚାରିଆଡ଼େ ଲାଗି ରହିଥିଲା । ଆଉ କୌଣସି ଅବୟବର ସତ୍ତା ମିଳୁ ନ ଥିଲା । ଖଣ୍ଡିଏ ଶାଢ଼ିରୁ ସାମାନ୍ୟ ଅଂଶ ଟ୍ରେନ ଚକ ପାଖରେ ଥିବା ଗୋଟିଏ ସ୍ପ୍ରିଙ୍ଗରେ ଗୁଡ଼େଇ ହେଇଯାଇଥିଲା । କେବଳ ସେଇଥିରୁ ମନେ ହେଉଥିଲା, ଆସାମୀଟି ଗୋଟିଏ ନାରୀ । ତା'ଛଡ଼ା ଚିହ୍ନିବାର ଆଉ କୌଣସି ଉପାୟ ନ ଥିଲା ।

ସଞ୍ଜୟ ଶାଢ଼ିର ଏକାଂଶ ଦେଖିବା କ୍ଷଣି ତା' ପିଞ୍ଜରା ଥରେଇ ଗୋଟାଏ ଦୀର୍ଘନିଃଶ୍ୱାସ ବାହାରି ପଡ଼ିଲା । ତା'ର ମନେ ହେଲା, ସେଇ ତରୁଣୀଟି । ହୁଏତ ସେ ଆତ୍ମହତ୍ୟା କରିଛି । ତା'ଛଡ଼ା ଆଉ କ'ଣ ହୋଇପାରେ ? ସେ ତ ନିରାପଦରେ ବସି ରହିଥିଲା । ଖସି ପଡ଼ିବାର କୌଣସି ସମ୍ଭାବନା ନଥିଲା ।

ସଞ୍ଜୟ ଫେରିଆସୁଥିଲା ।

ହୃଦୟରେ ଯେପରି ତା'ର ଗଭୀର ବେଦନା ଜାତ ହୋଇଥିଲା । ମନେ ମନେ ସେ ଭାବୁଥିଲା, ହୁଏତ ତରୁଣୀଟି ଏପରି ଆତ୍ମହତ୍ୟା ପାଇଁ ସେ ନିଜେ ଦାୟୀ ।

କାରଣ ସେ ଯଦି ଲାଟରିନ୍‌କୁ ଯାଇ ନ ଥାନ୍ତା, ତେବେ ତରୁଣୀଟି ଟ୍ରେନରୁ ଡେଇଁପଡ଼ିବାର ସୁଯୋଗ ପାଇ ନ ଥାନ୍ତା ।

ଆଃ... ସେହି କଳାକଳା ଲାଜୁରା ଆଖିଯୋଡ଼ିକ !!

ସଞ୍ଜୟ ଦେହରେ ଶିହରଣ ଖେଳିଗଲା ।

ସେ ପୁଣି ଯାଇ ନିଜର କମ୍ପାର୍ଟମେଣ୍ଟରେ ବସିଲା । ସହଯାତ୍ରୀ ତିନିଜଣ ସେତେବେଳେ ଯାଏ ଆରାମରେ ଶୋଇଥିଲେ ।

ସଞ୍ଜୟର ଆଖିପଡ଼ିଲା ତରୁଣୀଟି ବସିଥିବା ସିଟ୍ ତଳେ ।

ଗୋଟିଏ ଛୋଟ ଚମଡ଼ା ସୁଟ୍‌କେସ । କାହାର ? ସେ କ୍ଷିପ୍ର ହସ୍ତରେ ସେଇଟିକୁ ଉଠାଇ ଆଣିଲା । ଖୁବ୍ ଛୋଟ । କିନ୍ତୁ ଯଥେଷ୍ଟ ଓଜନ ।

ସଞ୍ଜୟ ଚାରିଆଡ଼େ ଥରେ ଆଖି ବୁଲେଇ ଆଣିଲା । ସହଯାତ୍ରୀମାନେ ଶୋଇଛନ୍ତି । ସେ ସୁଟ୍‌କେଶଟି ଖୋଲିବାକୁ ଚେଷ୍ଟା କଲା । ସହଜରେ ଖୋଲିଗଲା । ସଞ୍ଜୟ ସ୍ତବ୍ଧ ହୋଇ ଦେଖିଲା, କେବଳ ସୁନା ଅଳଙ୍କାରରେ ବାକ୍ସଟି ଭର୍ତ୍ତି । ଉପରେ ଖଣ୍ଡିଏ ଶାଢ଼ି ଓ ଗୋଟିଏ ବ୍ଲାଉଜ । ସବୁ ଅଳଙ୍କାରଗୁଡ଼ିକ ନୂତନ ପରି ମନେ ହେଉଥିଲା ।

ବିଚାରୀ ହତଭାଗିନୀ ! ହୁଏତ ତା'ରି ପାଇଁ ସେ ଆତ୍ମହତ୍ୟା କରିବାକୁ ବାଧ୍ୟ ହୋଇଥିଲା । ସଞ୍ଜୟ ବେଶି ସମୟ ବାକ୍ସଟି ଖୋଲା ରଖିବାକୁ ସାହସ କରିପାରିଲା ନାହିଁ । ବନ୍ଦକରି ରଖିବାକୁ ଯାଉଥିଲା, କିନ୍ତୁ କ'ଣ ଭାବି ପୁଣି ଖୋଲିଲା ଏବଂ ସୁଟ୍‌କେଶ ଭିତରେ ଥିବା ମଖମଲ କନାର ପକେଟ ଭିତରେ ହାତ ଭରିଲା । କେତେ ଖଣ୍ଡ ଦଶଟଙ୍କିଆ ନୋଟ ସହ ଖଣ୍ଡିଏ ଲେଖା କାଗଜ ବାହାରି ଆସିଲା । ସଞ୍ଜୟ ଟଙ୍କାତକ ଯଥା ସ୍ଥାନରେ ରଖିଦେଇ, କାଗଜଟି ଖୋଲି ପଢ଼ିଲା ।

ମା !

ମୁଁ, କାହାରି ଦୋଷ ଦେଉ ନାହିଁ । ସବୁ ମୋର ଭାଗ୍ୟ ଉପରେ ଛାଡ଼ି ଦେଉଛି । ତମେମାନେ ସମସ୍ତେ ମିଶି ଯେଉଁ ଅବସ୍ଥାର ସୃଷ୍ଟି କଲ, ସେଥିରେ ମୋର ବଞ୍ଚି ରହିବା ନ ରହିବା ସମାନ ମନେକରି ମୁଁ ଘର ଛାଡୁଛି । ମୁଁ ଜାଣେ ବର ଆସି ଫେରିଯିବ । କିନ୍ତୁ ବର ଆସି ପହଞ୍ଚିଲା ବେଳକୁ ମୁଁ ତମ ସମସ୍ତଙ୍କ ଅକ୍ତ୍ୟାର ବାହାରକୁ ଚାଲିଯାଇଥିବି । ମୋତେ ଆଉ କେହି ଖୋଜିବ ନାହିଁ । କାରଣ ଏ ଜୀବନରେ ଆଉ କାହାରି ସହିତ କେବେ ଦେଖା ହେବ ନାହିଁ । ମୁଁ ଚାଲିଲି ।

ସଞ୍ଜୟ ଚିଠିଟି ପଢ଼ିଲା । ମାତ୍ର କେତୋଟି ଧାଡ଼ି ଭିତରେ ତରୁଣୀଟିର ମର୍ମବେଦନା ଫୁଟିଉଠିଛି । ବାବା ମା' ତା' ମତ ବିରୁଦ୍ଧରେ ତା'ର ବିବାହ ଠିକ୍ କରିଥିଲେ । ଯା' ଫଳରେ ସେ ଘର ଛାଡ଼ି ଚାଲି ଆସିଥିଲା । କିନ୍ତୁ ସେ ତ ଆତ୍ମହତ୍ୟା କରିପାରି ନ ଥାନ୍ତା ! ଦୁନିଆରେ ତା'ର ବଞ୍ଚି ରହିବାର କ'ଣ କୌଣସି ପନ୍ଥା ନ ଥିଲା ?

ସଞ୍ଜୟ ଜାଣିପାରୁ ନ ଥିଲା, ଯେଉଁ ଚିଠିଖଣ୍ଡିକ ସେ ମା'କୁ ଲେଖିଥିଲା, ସେ ଖଣ୍ଡିକ ଏଇ ସୁଟ୍‌କେଶ ଭିତରକୁ ଆସିଲା କିପରି ? ହୁଏତ ସେ ଘରେ ରଖି ଆସିବାକୁ ସମୟ ପାଇ ନାହିଁ କିମ୍ବା ସୁଯୋଗ ହୋଇନାହିଁ । ଯାହା ହେଉ, ସଞ୍ଜୟ ଚିଠିଟି ଯଥା ସ୍ଥାନରେ ରଖି ସୁଟ୍‌କେଶଟି ବନ୍ଦକରି ପୂର୍ବ ସ୍ଥାନରେ ରଖିଦେଲା । ଏତେ ଗୁଡ଼ାଏ ସୁନା ଅଳଙ୍କାର ! ଏହିପରି ଏହିଠାରେ ପଡ଼ି ରହିବ !! ତରୁଣୀଟି ସୁଟ୍‌କେଶ ଭିତରେ ଏପରି କୌଣସି ପରିଚିତ ଛାଡ଼ି ଯାଇ ନାହିଁ, ଯାହା ଦ୍ୱାରା ସଞ୍ଜୟ ତା'ର ବାପ ମା'ଙ୍କ ନିକଟରେ ପହୁଞ୍ଚାଇ ପାରିବ । ସେ ବଡ଼ ଚିନ୍ତିତ ହୋଇପଡ଼ିଥିଲା ।

ଦୁଇଟି କଳାକଳା ଲାଜୁରା ଆଖି !

ସଞ୍ଜୟର ରହିରହି ମନେ ପଡ଼ିଯାଉଥିଲା । ଦେହରେ ଶିହରଣ ଖେଳି ଯାଉଥିଲା । ହତଭାଗିନୀ ! କିନ୍ତୁ ତା'ର ଏହି ଆତ୍ମହତ୍ୟା ପାଇଁ ଦାୟୀ କିଏ ? ସଞ୍ଜୟ ନିଜକୁ ଦୋଷୀ ମନେ କରୁଥିଲା । ସେ ଯଦି ସିଟ୍ ଛାଡ଼ି ଅନ୍ୟତ୍ର ଯାଇ ନ ଥାନ୍ତା !!

ପୁଣି ଟ୍ରେନ ଚାଲିବାକୁ ଆରମ୍ଭ କରିଦେଲା ।

ସକାଳର ଶିରୀଶିରୀ ପବନ ବାଜି ସଞ୍ଜୟର ଆଖିଦୁଇଟି ମୁଦ୍ରିତ ହୋଇଆସୁଥିଲା । ସେ ତରୁଣୀଟି କଥା ଚିନ୍ତା କରୁ କରୁ କେତେବେଳେ ତା' ଆଖିରେ ନିଦ ଘାରି ଯାଇଥିଲା ।

ହଠାତ୍ ଟ୍ରେନ ଏକ ବିକଟ ଚିତ୍କାର କରି କୌଣସି ଏକ ସ୍ଥାନରେ ଅଟକି ଗଲା । ସଞ୍ଜୟର ନିଦ ଭାଙ୍ଗିଗଲା । ସେ ଆଖି ମଳି ଚାହିଁଲା । ଆହୁରି ଭଲ ଭାବରେ ଚାହିଁ ଦେଖିଲା, ସାମ୍ନା ସିଟ୍‌ଟିରେ ପୂର୍ବର ସେହି ତରୁଣୀଟି ବସିରହିଛି !

ସଞ୍ଜୟ ଆଖିକୁ ବିଶ୍ୱାସ କରିପାରିଲା ନାହିଁ ।

ତେବେ, ତେବେ କ'ଣ ସେ ଆତ୍ମହତ୍ୟା କରିନାହିଁ ? ତା'ହେଲେ ଦୀର୍ଘ ସମୟ ଧରି ସେ ଯାଇଥିଲା କୁଆଡ଼େ ?

କମ୍ପାର୍ଟମେଣ୍ଟରେ ଅନ୍ୟାନ୍ୟ ସହଯାତ୍ରୀମାନେ ଉଠି ସାରିଥିଲେ । ସେମାନଙ୍କ ଭିତରୁ କେହି କେହି ରହିରହି ତରୁଣୀଟି ଆଡ଼କୁ ଚାହୁଁଥିଲେ ।

ତରୁଣୀଟି କିନ୍ତୁ ଝରକା ବାହାରକୁ ଚାହିଁ ଖୋଲାପ୍ରାନ୍ତରର ନଗ୍ନରୂପ ଦେଖୁଥିଲା ହୁଏତ ! ଅଥବା ନିଜର କୃତକର୍ମ କଥା ଚିନ୍ତା କରି ଅନୁତାପ କରୁଥିଲା । ଅଥବା...

ଟିକେ ଶୁଣିବେ କି ?

ସଞ୍ଜୟ କ'ଣ ପଚାରୁଥିଲା ଭୁଲିଗଲା ।

ତରୁଣୀଟି ପୁଣି ମୁହଁ ଫେରାଇ ନେଲା ।

ଟ୍ରେନ ଚାଲିଥିଲା । ଦିନର ଆଲୋକରେ ସମଗ୍ର କମ୍ପାର୍ଟମେଣ୍ଟଟି ଆଲୋକିତ ହୋଇଉଠୁଥିଲା । କିନ୍ତୁ ସଞ୍ଜୟର ମନରୁ ଅନ୍ଧକାର ଘୁଞ୍ଚି ନ ଥିଲା ।

ଆପଣ କେଉଁଠାକୁ ଯିବେ ? ସଞ୍ଜୟ ପୁଣି ପଚାରିଲା ।

ଏଥର ତରୁଣୀଟି ଆଉ ମୁହଁ ଫେରାଇଲା ନାହିଁ । ହୁଏତ ସଞ୍ଜୟର ଏହି ଡାକ ତା'ର କର୍ଣ୍ଣକୁହରରେ ପ୍ରବେଶ କରିପାରିଲା ନାହିଁ ।

ସଞ୍ଜୟ ନୀରବ ରହିଲା ଏବଂ ସିଗାରେଟରେ ଅଗ୍ନି ସଂଯୋଗ କରି ସ୍ଥାନଟିକୁ ଧୂମାୟିତ କରିବାରେ ଲାଗିଲା ।

ତା'ପରେ ସବୁ ଚୁପ୍‌ଚାପ୍ ।

ଗାଡ଼ି ଯାଇ ହାବଡ଼ା ଷ୍ଟେସନରେ ପହଞ୍ଚିଲା ।

ପ୍ଲାଟଫର୍ମରେ ଗାଡ଼ି ବନ୍ଦ ହେଉ ନ ହେଉଣୁ ତରୁଣୀଟି ଦରଜା ଖୋଲି ବାହାରି ଗଲା । ସଞ୍ଜୟ କିନ୍ତୁ ଡେରି କଲା ନାହିଁ । ତରୁଣୀଟି ସମ୍ବନ୍ଧରେ ତା' ମନରେ ଅଜସ୍ର କୌତୂହଳ ବସା ବାନ୍ଧି ରହିଥିଲା ।

କେଉଁଆଡ଼େ ଯିବ ! କାହା ପାଖକୁ ଯିବ ସେ ତରୁଣୀଟି ?

ପ୍ଲାଟଫର୍ମର ଭିଡ଼ ଠେଲି ତରୁଣୀଟି ଆଗେଇ ଚାଲିଥିଲା । ରହି ରହି କାହାକୁ ଚାହୁଁଥିଲା । ପୁଣି ଆଗେଇ ଚାଲିଥିଲା ।

ହଠାତ୍ ଗୋଟାଏ ଜାଗାରେ ଠିଆ ହୋଇପଡ଼ିଲା । ବିପରୀତ ଦିଗରୁ ସାହେବୀ ପୋଷାକ ପରିହିତ ଗୋଟିଏ ସୁଦର୍ଶନ ଯୁବକ ତରୁଣୀ ଆଗରେ ଆସି ଠିଆ ହୋଇଗଲା । କହିଲା  ମାଳା ତମେ ଆସିଚ ? ମୋର କିନ୍ତୁ ବିଶ୍ୱାସ ନଥିଲା । ତମ ଟେଲିଗ୍ରାମଟି ପାଇ କରି ମଧ୍ୟ ବିଶ୍ୱାସ କରିପାରୁ ନ ଥିଲି । ମୋର ଆଜି ପରମ ସୌଭାଗ୍ୟର ଦିନ !

ମାଳାର ସମଗ୍ର ଦେହମୁହଁରେ ଆନନ୍ଦର ପ୍ଲାବନ ଖେଳି ଯାଇଥିଲା, ସେ ଯେପରି ଆଶ୍ରା ପାଇଛି । ଆଉ ତା'ର ଚିନ୍ତା ନାହିଁ । ସେହିପରି ଭାବ ଦେଖାଇ କହିଲା: ତମେ ଜାଣ ମୋହନ, ମୋର ଇଚ୍ଛା ବିରୁଦ୍ଧରେ କେହି ଗଲେ ମୁଁ ତାକୁ କ୍ଷମା କରିପାରେ ନାହିଁ । ପ୍ରତିଶୋଧ ମୁଁ ନିଜ ଉପରେ ସବୁଦିନ ନେଇଥାଏ । ତମେ କ'ଣ ମୋତେ ଆଶ୍ରୟ ଦେଇପାରିବ ନାହିଁ ?

: ମୋର ତ ଏଇଟା ପରମ ସୌଭାଗ୍ୟ ମାଳା । ନିଜକୁ ମୁଁ ଧନ୍ୟ ମନେକରୁଛି ।

ଦୁହେଁ କଥାବାର୍ତ୍ତା ହୋଇ ଆଗେଇ ଚାଲିଥିଲେ ।

ମୋହନ ମାଳା ହାତରୁ ଛୋଟ ସୁଟ୍‌କେଶଟି ନେଇ ନିଜେ ଧରିଥିଲା । ସଞ୍ଜୟ ଠିକ୍ ସେମାନଙ୍କ କଥା ଶୁଣି ପାରିଲା ଭଳି ଦୂରତ୍ୱ ବଜାୟ ରଖି ଚାଲିଥିଲା ।

ଆଉ, ଘରେ କେହି ବାଧା ଦେଲେ ନାହିଁ ? ମୋହନ ପଚାରିଲା ।

ସେ ଅନେକ କଥା ମୋହନ, ବହୁ ସାଧ୍ୟ ସାଧନା ପରେ ମୋତେ ଘର ଛାଡ଼ି ଆସିବାକୁ ପଡ଼ିଲା । ଅନ୍ୟ ଏକ ସମୟରେ ସବୁ କଥା କହିବି ।

ଦୁହେଁ ଭିଡ଼ ଭିତରେ ଆଗେଇ ଚାଲିଥିଲେ ।

ପ୍ଲାଟଫର୍ମ ପାରିହୋଇ ସେମାନେ ଯେତେବେଳେ ବାହାରକୁ ଚାଲିଗଲେ, ସଞ୍ଜୟ ଦେଖିଲା ସେମାନେ ଯାଇ ଗୋଟିଏ ପ୍ରାଇଭେଟ୍ କାର୍‌ରେ ଉଠିବସିଲେ । ମୋହନ ନିଜେ ଚାଳକ ସ୍ଥାନରେ ବସି ଗାଡ଼ିରେ ଷ୍ଟାର୍ଟ ଦେଲା ।

ସଞ୍ଜୟ ନିରୁପାୟ ହୋଇପଡ଼ିଲା । ଏମାନଙ୍କ ସନ୍ଧାନ ନେବାକୁ ହେଲେ, ସଞ୍ଜୟ ମୋହନର ଗାଡ଼ି ପଛରେ ଛୁଟିବାକୁ ପଡ଼ିବ । ତା' ନ ହେଲେ ସେ ହୁଏତ ଜୀବନରେ କେବେ ଆଉ ତରୁଣୀଟିର ସନ୍ଧାନ ପାଇବ ନାହିଁ ।

ସଞ୍ଜୟ ଟ୍ୟାକ୍‌ସି ପାଇଁ ଛୁଟିଥିଲା ।

ପାଇଗଲା ଗୋଟାଏ ।

ଟ୍ୟାକ୍‌ସି ଚାଳକକୁ ମୋହନର ଗାଡ଼ିକୁ ଦେଖାଇ ପିଛା କରିବାକୁ କହିଲା । ଚାଳକଟି ଥରେ ସଞ୍ଜୟ ଆଡ଼େ ଚାହିଁ ନିଜ କର୍ତ୍ତବ୍ୟରେ ଲାଗିପଡ଼ିଲା ।

ମୋହନର ଗାଡ଼ି ପଛେ ପଛେ ସଞ୍ଜୟର ଟ୍ୟାକସି ଛୁଟି ଚାଲିଥିଲା ।

ମୋହନ ଆଉ ମାଳା ! କ'ଣ ଏ ଦୁହିଁଙ୍କର ସମ୍ବନ୍ଧ ? ମାଳା ବିବାହ ବେଦୀରୁ ଉଠି ଚାଲିଆସିଛି ମୋହନ ପାଖକୁ । ନିଶ୍ଚୟ ମୋହନ ଉପରେ ତା'ର ପୂର୍ଣ୍ଣ ଭରସା ଅଛି ମନେହେଉଛି । ମୋହନ ଜଣେ ଧନୀ ସନ୍ତାନ । ହୁଏତ କଲିକତାରେ ତା'ର ବ୍ୟବସାୟ ଅଛି । ସେ ଏଠାରେ ପ୍ରତିଷ୍ଠିତ । କିନ୍ତୁ ସଞ୍ଜୟ କାହିଁକି ତାଙ୍କ ପଛରେ ଛୁଟିଛି ?

ଦୁଇଟି କଳା କଳା ଲାଜୁରା ଆଖି । ସଞ୍ଜୟ ସେହି ଆଖି ଦୁଇଟିର ମାୟା ଛାଡ଼ିପାରୁ ନଥିଲା । ରହି ରହି ତା' ଦେହରେ ଶିହରଣ ଖେଳି ଯାଉଥିଲା । ଏଡ଼େ ଲୋଭନୀୟ ସେ ଆଖିଦୁଇଟି, ଏତେ ଆକର୍ଷଣୀୟ ସେ ଲାଜୁରା ଚାହାଣି !! ସଞ୍ଜୟ ଯୁଗଯୁଗ ଧରି ସେହି ଆଖିଦୁଇଟି ଆଡ଼େ ଚାହିଁ ବସି ରହିପାରନ୍ତା ।

ଟ୍ୟାକ୍‌ସିଟା ଗୋଟାଏ ଜାଗାରେ ଅଟକିଗଲା । ସଞ୍ଜୟର ଧ୍ୟାନ ଭଙ୍ଗ ହେଲା । ଆଗରେ ଖଣ୍ଡେ ଦୂରରେ ମୋହନର ଗାଡ଼ି ଠିଆ ହୋଇଥିଲା । ବାଁ ପାଖରେ ଗୋଟାଏ ପ୍ରକାଣ୍ଡ କୋଠା । ହୋଟେଲ ପାରାଡାଇଜ୍ । ମୋହନ ମାଳାର ସେହି ଛୋଟିଆ ବାକ୍‌ସଟି ଧରି ହୋଟେଲ ପାରାଡାଇଜ୍ ଭିତରକୁ ପଶିଲା । ପଛେପଛେ ମାଳା ଚାଲିଥିଲା ।

ସଞ୍ଜୟ କିଛି ସମୟ ଟ୍ୟାକ୍‌ସିରେ ବସି ରହି ସେମାନଙ୍କ ଗତିବିଧି ଲକ୍ଷ୍ୟ କରୁଥିଲା । ସେମାନେ ହୋଟେଲ ଭିତରକୁ ଚାଲିଯିବା ଉତ୍ତାରୁ ଟ୍ୟାକ୍‌ସିରୁ ଓହ୍ଲେଇ ସଞ୍ଜୟ ଫୁଟ୍‌ପାଥରେ ଅପେକ୍ଷା କଲା । ସେ ଭାବୁଥିଲା, ସେମାନେ ହୁଏତ ଏଇକ୍ଷିଣା ଫେରିଆସିବେ । କାରଣ ଫୁଟ୍‌ପାଥ ପାର୍ଶ୍ୱରେ ମୋହନର ଗାଡ଼ିଟା ଅପେକ୍ଷା କରି ଠିଆ ହୋଇଥିଲା ।

ପ୍ରାୟ ଅଧଘଣ୍ଟା ପରେ ମୋହନ ଫେରିଲା, କିନ୍ତୁ ଏକା । ମାଳା ତା'ହେଲେ ରହିଲା ହୋଟେଲ ପାରାଡାଇଜ୍‌ରେ ।

ମୋହନ ଯାଇ ଗାଡ଼ିରେ ବସିଲା । ଷ୍ଟାର୍ଟ ଦେଇ ଚାଲିଗଲା ସଞ୍ଜୟ ଆଗରେ । ସେ କିନ୍ତୁ ଅନ୍ୟମନସ୍କ ହୋଇ ଚିନ୍ତା କରୁଥିଲା, ମାଳା ତା'ହେଲେ ରହିଲା ହୋଟେଲ ପାରାଡାଇଜ୍‌ରେ !! ଆଉ ସେ, ସେ ରହିବ କେଉଁଠି ?

ଦୁଇଟି କଳାକଳା ଲାଜୁରା ଆଖି !!

ସଞ୍ଜୟ ଦେଇଆଡ଼େ ଟାଣି ହୋଇଗଲା ।

ସେ ମଧ୍ୟ ପାଦ ବଢ଼େଇଲା ହୋଟେଲ ପାରାଡାଇଜ୍ ଆଡ଼େ ।

---

ହୋଟେଲ ପାରାଡାଇଜ୍ ପାର୍କଷ୍ଟ୍ରୀଟ୍ ଅଞ୍ଚଳରେ ଏକ ପ୍ରଥମ ଶ୍ରେଣୀର ହୋଟେଲ । ସେ ହୋଟେଲରେ ଯେଉଁମାନେ ଯାଇ ଉଠୁଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ବଡ଼ଲୋକ । ଭାରତ ଓ ଭାରତ ବାହାରର ବହୁ ଲୋକଙ୍କର ଭିଡ଼ ସେହି ହୋଟେଲରେ ଲାଗି ରହିଛି । ସଞ୍ଜୟ ଇତି ପୂର୍ବରୁ ଏପରି କୌଣସି ହୋଟେଲରେ କେବେ ରହି ନ ଥିଲା । ତେଣୁ ତାକୁ ଏଠିକାର କାଇଦା କଟକଣା ଟିକିଏ ଅଲଗା ଲାଗୁଥିଲା ।

ସଞ୍ଜୟ ହୋଟେଲର ଦୋତାଲାରେ ଘର ପାଇଥିଲା । ମାଳା ମଧ୍ୟ ରହିଥିଲା ସେହି ଦୋତାଲାରେ । କିନ୍ତୁ ଦୁହିଁଙ୍କର ବ୍ୟବଧାନ ଥିଲା ବହୁତ ବେଶୀ । ସଞ୍ଜୟ ଦୋତାଲାରେ ପ୍ରଥମ ରୁମ୍‌ରେ ରହିଥିଲା ଏବଂ ମାଳା ଥିଲା ଶେଷ ରୁମ୍‌ରେ । ତେବେ ସଞ୍ଜୟକୁ ଗୋଟାଏ ସୁବିଧା ଥିଲା, ଦୋତାଲାର ପ୍ରତ୍ୟେକ ଅଧିବାସୀ ତା'ରି ଦୁଆର ଦେଇ ଯାତାୟତ କରିବେ । ସଞ୍ଜୟ ଇଚ୍ଛା କଲେ ଘରେ ବସି ବସି ପ୍ରତ୍ୟେକଙ୍କ ଗତିବିଧି ଲକ୍ଷ୍ୟ କରିପାରିବ ।

ସଞ୍ଜୟ ହୋଟେଲରେ ପହଞ୍ଚି ନିଜର ନିତ୍ୟକୃତ୍ୟ ଶେଷ କରିବା ପୂର୍ବରୁ ମାଳାର ଅବସ୍ଥାନ ସମ୍ବନ୍ଧରେ ସମସ୍ତ ବିବରଣୀ ସଂଗ୍ରହ କରି ନେଇଥିଲା । ତା'ପରେ ନିତ୍ୟକୃତ୍ୟ ଶେଷ କରି ଟିକିଏ ବିଶ୍ରାମ କରିବାକୁ ଯାଉଛି, ଦେଖିଲା ମୋହନ ସଙ୍ଗରେ ଆଉ ଜଣେ ଲୋକକୁ ଧରି ମାଳାର ରୁମ୍ ଆଡ଼େ ଯାଉଛି । ଅନ୍ୟ ଜଣକର ପୋଷାକ ପରିପାଟୀରୁ ମନେ ହେଉଥିଲା, ସେ ଜଣେ କୌଣସି ବଡ଼ ଧରଣର ବ୍ୟବସାୟୀ ଏବଂ ଅଣଓଡ଼ିଆ ।

ସେମାନେ କଥାବାର୍ତ୍ତା ହୋଇ ଚାଲିଗଲେ । ସଞ୍ଜୟ କିଛିକ୍ଷଣ ସେମାନଙ୍କ ଗତିପଥକୁ ଅନାଇ ରହି ନୀରବରେ ଚିନ୍ତା କରୁଥିଲା । ମୋହନ ଲୋକଟି କିଏ ? ସେ ଜଣେ ଓଡ଼ିଆ ଲୋକ, ଏହା ସତ୍ୟକଥା । କିନ୍ତୁ ମାଳା ସହିତ ତା'ର ସମ୍ବନ୍ଧ କ'ଣ ? ମାଳାର କୌଣସି ଆତ୍ମୀୟଜନ ? ତା'ହେଲେ ମାଳା ତା' ପାଖକୁ ଅଭୟ ଆଶ୍ରୟ ପାଇଁ ଛୁଟି ଆସିଲା ନାହିଁକି ?

ସଞ୍ଜୟର ମନେ ହେଉଥିଲା, ସେ ଉଠିଯାଇ ମାଳା ରୁମ୍ ପାଖରେ ଠିଆହୋଇ ସେମାନଙ୍କ କଥାବାର୍ତ୍ତା ଶୁଣିବ । ମାତ୍ର କାର୍ଯ୍ୟତଃ ତାହା ମୋଟେ ସମ୍ଭବ ନୁହେଁ । କାରଣ ଭଦ୍ରତାର ସୀମା ଲଙ୍ଘନ କରାହେବ । ତେବେ ମୋହନ ସମ୍ବନ୍ଧରେ କେତେକ ଖବର ସଂଗ୍ରହ କରିବାକୁ ହେବ । କିନ୍ତୁ କିପରି ? ହୁଏତ ମାଳାର ଅଜାଣତରେ ମୋହନ ସହିତ ବନ୍ଧୁତା ସ୍ଥାପନ କରିବାକୁ ହେବ, ନତୁବା...

ସଞ୍ଜୟ ନିଜ ରୁମ୍‌ରୁ ବାହାରି ଦୁଆରେ ତାଲା ବନ୍ଦ କଲା । ଧୀରେ ଧୀରେ ଶଙ୍ଖ ମଲମଲ ପଥରର ସିଡ଼ିବାଟେ ଓହ୍ଲେଇଗଲା ତଳକୁ । ମୋହନର ଗାଡ଼ି ହୁଏତ ହୋଟେଲ ପାର୍ଶ୍ୱ ଫୁଟ୍‌ପାଥ ଉପରେ ପ୍ରତୀକ୍ଷା କରିଥିବ । କାଳେ ଯଦି ମୋହନର ଡ୍ରାଇଭର ଗାଡ଼ିରେ ଥାଏ !!

କିନ୍ତୁ ସଞ୍ଜୟ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ଖଣ୍ଡିଏ ହେଲେ ଗାଡ଼ି ହୋଟେଲ ପାରାଡାଇଜ୍‌ର ଫୁଟ୍‌ପାଥରେ କାହାରିକୁ ଅପେକ୍ଷା କରିନାହିଁ ।

ସଞ୍ଜୟ ନିରାଶ ହେଲା ନାହିଁ । ସେ ମୋହନର ପ୍ରତ୍ୟାବର୍ତ୍ତନ ଯାଏ ଫୁଟ୍‌ପାଥରେ ଅପେକ୍ଷା କରି ଠିଆ ହୋଇଥିଲା । ଭାବିଥିଲା, ମୋହନ ଏଥର ବୋଧହୁଏ ମାଳାକୁ ସଙ୍ଗରେ ଧରି ଫେରିବ ।

ମାତ୍ର ତା' ଅନୁମାନ ସତ୍ୟ ହେଲାନାହିଁ । ମୋହନ ଏବଂ ତା'ର ବନ୍ଧୁ ହସି ହସି ଫେରୁଥିଲେ । ସଞ୍ଜୟ ଲକ୍ଷ୍ୟ କଲା ଏବଂ କିଛି ନ ଜାଣିଲା ପରି ସେମାନଙ୍କ ପଛେପଛେ ଜଣେ ସାଧାରଣ ପଥଚାରୀ ପରି ଆଗେଇ ଚାଲିଲା ।

ମୋହନ ଏବଂ ତା'ର ବନ୍ଧୁ ପାର୍କଷ୍ଟ୍ରୀଟରୁ ବାହାରି ଚୌରଙ୍ଗୀର ଫୁଟ୍‌ପାଥ୍ ଧରି ଏସ୍‌ପ୍ଲାନେଡ ଆଡ଼କୁ ପଦଯାତ୍ରା କରୁଥିଲେ । ସଞ୍ଜୟକୁ ସୁବିଧା ହେଲା । ସେ ତାଙ୍କ ପଛେପଛେ ସେମାନଙ୍କ କଥା ଶୁଣି ଶୁଣି ଆଗେଇ ଚାଲିଥିଲା ।

ମୋହନର ବନ୍ଧୁ କହୁଥିଲା ତୁମର ତୁଳନା ହୁଏ ନାହିଁ । ତମପରି ଆଉ ଜଣେ ଦି'ଜଣ କରିତ୍‌କର୍ମା ଲୋକ ଯଦି ଆମ ସଙ୍ଗରେ ଥାଆନ୍ତେ, ତା'ହେଲେ, ଆମର ଚିନ୍ତା କିଛି ନ ଥାନ୍ତା ।

ନା, ରାଜେଶ । ସମସ୍ତେ ଆମ ଦଳର ଗୋଟିଏ ଗୋଟିଏ ଜୁଏଲ । ମାଳା ମୋର ପିଲାଦିନର ସାଙ୍ଗ । ସେ ମୋତେ ବିଶ୍ୱାସ କରେ । ମୋ' ପାଇଁ ସେ ସ୍ୱପ୍ନ ଦେଖେ । ସେଇ ଭରସାରେ ସେ ଘର ଛାଡ଼ିଛି । ଅବଶ୍ୟ ମୋ' ପ୍ରାଣରେ ତା'ପାଇଁ ବିନ୍ଦୁଏ ଦୁର୍ବଳତା ନାହିଁ । ଆଶା କରୁଛି, ମୁଁ ତାକୁ ଆମ କାମରେ ଲଗାଇ ପାରିବି । ମୋହନ କହିଲା ।

ମାଳା କିନ୍ତୁ ଆମ ଦଳରେ ଯୋଗଦେଲେ ବଡ଼ ବଡ଼ ଶିକାର ଧରିହୁଅନ୍ତା । ତା'ର ଗ୍ରାମ୍ୟ ସୌନ୍ଦର୍ଯ୍ୟ ଏପର୍ଯ୍ୟନ୍ତ ଅମଳିନ ରହିଚି । କିନ୍ତୁ ଗୋଟାଏ କଥା କ'ଣ ଜାଣ ମୋହନ ? ମାଳାପରି ଝିଅମାନେ ଖୁବ୍ ସେଣ୍ଟିମେଣ୍ଟାଲ ହୁଅନ୍ତି । ସେ ତୁମକୁ ଭଲପାଏ, ତମ ଭରସାରେ ଘର ଛାଡ଼ିଛି । କାହିଁକି ? ତମ ସହିତ ଘର କରିବା

ପାଇଁ । ସେ ଯଦି ଜାଣିପାରେ ତମେ ତାଙ୍କୁ ନିଜର ନ କରି ଦଳର କାର୍ଯ୍ୟରେ ଲଗାଇବାକୁ ଯାଉଛ, ତା'ହେଲେ ସେ ଜଳିଉଠିବ । ତମକୁ ଦଂଶନ କରିବ ।

ସଞ୍ଜୟ ହସିଉଠି କହିଲା : ତା'ର ଭଲମନ୍ଦ ନିଜେ ସେ ଯଦି ନ ବୁଝିବ, ତା'ହେଲେ ଜଳିପୋଡ଼ି ମରିବ । ମୁଁ ଶିକାରୀ । ଶିକାର କରିବା ମୋର ଧର୍ମ । ମୋ' ପାଖରୁ ଆନ୍ତରିକତା ଖୋଜିଲେ କେତେ ଟିକିଏ ପାଇବ ।

ସେମାନେ ଆଗେଇଥିଲେ । ସଞ୍ଜୟ ମଧ୍ୟ ସେମାନଙ୍କ ପଛେପଛେ ଚାଲିଥିଲା । ଲିଣ୍ଡସ ଦେ ଷ୍ଟ୍ରୀଟ ଭିତର ଦେଇ ସେମାନେ ହଗ୍ ମାର୍କେଟ ଭିତରେ ପଶିଲେ । ସଞ୍ଜୟ ମଧ୍ୟ ପଛେପଛେ ଚାଲିଥିଲା । ଗୋଟିଏ ଜୁଏଲାରୀ ଦୋକାନ ଭିତରେ ସେମାନେ ପଶିଯିବାରୁ ସଞ୍ଜୟ ବାହାରେ କେବଳ ଠିଆହୋଇ ରହିଲା । ଭିତରେ ପ୍ରବେଶ କରିବାର ଉପାୟ ନ ଥିଲା ।

କାହିଁକି ସେମାନେ ଜୁଏଲରୀ ଦୋକାନ ମଧ୍ୟରେ ପ୍ରବେଶ କଲେ ? ମାଳା ପାଇଁ କ'ଣ କୌଣସି ଅଳଙ୍କାର କିଣିବା ଉଦ୍ଦେଶ୍ୟରେ ! କିମ୍ବା ମାଳା ପାଖରେ ଯେଉଁ ଅଳଙ୍କାର ଥିଲା, ସେଇଥିରୁ କିଛି ଆଣି ଏଠାରେ ବିକ୍ରୟ କରିବା ଉଦ୍ଦେଶ୍ୟରେ ଭିତରେ ପଶିଛନ୍ତି ?

ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ମୋହନ ଓ ତା'ର ବନ୍ଧୁ ଭିତରୁ ବାହାରି ଆସିଲେ । ମୋହନ ହାତରେ ଗୋଟିଏ ସୁନ୍ଦର ଗହଣା ବାକ୍ସ, ବୋଧହୁଏ ମୋହନ ମାଳା ପାଇଁ କିଛି ଅଳଙ୍କାର କିଣି ଆଣିଲା ।

ମୋହନର ବନ୍ଧୁ ଟ୍ୟାକ୍ସି ପର୍ଯ୍ୟନ୍ତ ଆସି ମୋହନ ଠାରୁ ବିଦାୟ ନେଲା । ସେ ଖଣ୍ଡିଏ ଟ୍ୟାକ୍ସିରେ ବସି ନିଜର ଗନ୍ତବ୍ୟ ସ୍ଥଳକୁ ଯାତ୍ରା କଲା । ମୋହନ କେତୋଟି ମୁହୂର୍ତ୍ତ ଚୁପ୍‌ଚାପ୍ ଠିଆହୋଇ ଗହଣା ବାକ୍ସଟି ଖୋଲି ଥରେ ଦେଖିଲା, ତା'ପରେ ବନ୍ଦକରି ଖଣ୍ଡିଏ ଟ୍ୟାକ୍ସିକୁ ହାତଠାରି ଡାକିଲା । ସଞ୍ଜୟ ସେହି ଟ୍ୟାକ୍ସିଟି ପାଖରେ ଠିଆ ହୋଇଥିଲା । ଟ୍ୟାକ୍ସି ଡ୍ରାଇଭର ଟ୍ୟାକ୍ସିରେ ଷ୍ଟାର୍ଟ ଦେବାକ୍ଷଣି ସଞ୍ଜୟ ହଠାତ୍ ନଇଁପଡ଼ି ଡ୍ରାଇଭର କାନରେ କ'ଣ କହିଲା ଏବଂ ଦରଜା ଖୋଲି ଡ୍ରାଇଭରର ବାଁ ପାଖରେ ଉଠିବସିଲା !

ଟ୍ୟାକ୍ସି ଯାଇ ମୋହନ ଠିଆ ହୋଇଥିବା ସ୍ଥାନରେ ପହଞ୍ଚିଗଲା । ମୋହନ ଦରଜା ଖୋଲି ଟ୍ୟାକ୍ସିରେ ବସିଲା । ସେ ଖୁବ୍ ଅନ୍ୟମନସ୍କ ଥିଲାପରି ମନେ ହେଉଥିଲା । ଡ୍ରାଇଭର ଗନ୍ତବ୍ୟ ସ୍ଥାନ କଥା ପଚାରିବାରୁ, ମୋହନ କହିଲା, ପାର୍କସର୍କସ ।

କେବଳ ଟ୍ୟାକ୍ସି ଶବ୍ଦକରି ଚାଲିଲା । ତା'ଛଡ଼ା ସମସ୍ତେ ନୀରବରେ ବସିଥିଲେ । ସଞ୍ଜୟ ବେଳେ ବେଳେ ରହି ରହି ପଛକୁ ଚାହୁଁଥିଲା, କିନ୍ତୁ ମୋହନ ଧ୍ୟାନମଗ୍ନ ପରି ମନେ ହେଉଥିଲା ।

ଏକ ସମୟରେ ମୋହନ ସ୍ୱପ୍ନରୁ ଉଠିଲା ପରି କହିଲା ଯହାଁ ରୋକୋ ।

ଟ୍ୟାକ୍ସି ଅଟକିଲା ! ମୋହନ ପକେଟରୁ ଖଣ୍ଡେ ପଚାଶ ଟଙ୍କାର ନୋଟ

ବାହାର ଜରି ଡ୍ରାଇଭର ହାତକୁ ବଢ଼େଇ ଦେଇ ଗୋଟିଏ ଘରୁ ଗଳି ମଧ୍ୟରେ ପ୍ରବେଶ କଲା । ସଞ୍ଜୟ ମଧ୍ୟ ଡ୍ରାଇଭର ହାତକୁ ପଚାଶ ଟଙ୍କାର ଖଣ୍ଡିଏ ନୋଟ ବଢ଼ାଇ ଦେଇ ମୋହନର ପଛେପଛେ ଆଗେଇଲା ।

ଖୁବ୍ ବେଶି ଦୂର ନୁହେଁ । ଗୋଟିଏ ସୁନ୍ଦର ଦୋତାଲା କୋଠା । ମୋହନ ଯାଇ କୋଠାର କଲିଂ ବେଲ ଟିପିଲା । କିଛି ସମୟ ପରେ ଗୋଟିଏ ସୁନ୍ଦର ଆଙ୍ଗ୍ଲୋ ତରୁଣୀର ମୁହଁ ବାରଣ୍ଡାରେ ଦେଖାଗଲା । ସେ ତଳକୁ ଚାହିଁ ଏବଂ ମୋହନକୁ ଦେଖି ଆନନ୍ଦରେ ଯେପରି ଗଦ୍ ଗଦ୍ ହୋଇଉଠିଲା । କ୍ଷିପ୍ର ଗତିରେ ଛୁଟିଆସି ଦୁଆର ଫିଟେଇଦେଲା । ମୋହନ ସଙ୍ଗେସଙ୍ଗେ ଭିତରେ ଅଦୃଶ୍ୟ ହୋଇଗଲା ।

ତା' ପରେ ସଞ୍ଜୟ ପ୍ରାୟ ଦୁଇଘଣ୍ଟା କାଳ ସାମ୍ନାରେ ଥିବା ଗୋଟିଏ ଛୋଟ ରେଷ୍ଟୁରେଣ୍ଟରେ ବସି ଅପେକ୍ଷା କଲା । କିନ୍ତୁ ସେ କୋଠାର ଦରଜା ଆଉ ଖୋଲିଲା ନାହିଁ । କିମ୍ବା ବାରଣ୍ଡାରେ କୌଣସି ମୁଖର ଦର୍ଶନ ମିଳିଲା ନାହିଁ ।

ସଞ୍ଜୟ ସେହି ରେଷ୍ଟୁରେଣ୍ଟ ବୟଙ୍କ ଠାରୁ କୋଠାଟିର ଅଧିବାସୀ ସମ୍ବନ୍ଧରେ ଯାହା ଜାଣିଲା, ସେଥିରେ ଗୋଟିଏ ଆଙ୍ଗ୍ଲୋଇଣ୍ଡିଆନ ପରିବାର ବାସ କରନ୍ତି । ଭଦ୍ରଲୋକ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ । ତାଙ୍କର ଏକମାତ୍ର କନ୍ୟା— ସେ ଜଣେ ଉଚ୍ଚଦରର ନର୍ତ୍ତକୀ । ଗୃହସ୍ୱାମୀ ପ୍ରାୟ ସବୁବେଳେ ବାହାରେ ବାହାରେ ବୁଲନ୍ତି । ମା' ଓ ଝିଅ ଦୁହେଁ ଏଠାରେ ବାସ କରନ୍ତି । ସେ କୋଠାକୁ ଅନେକ ସମୟରେ ବହୁଲୋକ ଯିବାଆସିବା କରିବାର ଦେଖାଯାଇଥାଏ ।

ସଞ୍ଜୟ ତା'ପରେ ଆହୁରି ଅଧଘଣ୍ଟାଏ ଅପେକ୍ଷା କଲା । ମାତ୍ର ମୋହନର ଛାୟା ପର୍ଯ୍ୟନ୍ତ ଆଉ ସେ ଦେଖିବାକୁ ପାଇଲା ନାହିଁ । ତେଣୁ ଧୀରେଧୀରେ ସେ ସ୍ଥାନ ତ୍ୟାଗ କରିବାକୁ ସ୍ଥିର କଲା । ଏବଂ ଉଠି ଠିଆହେଲା ମଧ୍ୟ । ମୋହନ ସମ୍ବନ୍ଧରେ ଗୋଟିଏ ଝାପ୍‌ସା ଧାରଣା ମନରେ ପୋଷଣ କରି ସଞ୍ଜୟ ଫେରିଆସି ଗୋଟିଏ ଟ୍ୟାକ୍‌ସିରେ ବସିଲା ।

ଧୀରେଧୀରେ ହୁଏତ ମୋହନର ସ୍ୱରୂପ ଦିନେନାଦିନେ ଆବିଷ୍କୃତ ହେବ, କିନ୍ତୁ ବିଚାରୀ ମାଳା !

ଦୁଇଟି କଳାକଳା ଲାଜୁରା ଆଖି ।

ଗୋଟିଏ ସୁନ୍ଦର ନିଟୋଳ ମୁହଁ !!

ସଞ୍ଜୟର ସେହି ଆଖିଯୋଡ଼ାକ ମନେପଡ଼ିଗଲେ ସେ ଆତ୍ମହରା ହୋଇପଡୁଥିଲା । ଯେପରି କୋଟିକୋଟି ଯୁଗର ତପସ୍ୟା ପରେ ସେ ପାଇଛି ସେ ଆଖି ଦୁଇଟି । ସେ ସେଇ ଆଖି ଦୁଇଟିକୁ ଚାହିଁ ଚାହିଁ ବସିରହନ୍ତା, ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଏବଂ ଯୁଗ ପରେ ଯୁଗ ବିତିଯାଆନ୍ତା । ସଞ୍ଜୟ ସେହିପରି ଚାହିଁ ବସିଥାଆନ୍ତା ସେହି ଆଖିଯୋଡ଼ାକ ଆଡ଼େ !

ଆଉ ଏହି ମୋହନ, ଯାହା ପାଖରେ ଆସି ଆଶ୍ରୟ ନେଇଛି ମାଳା ତା'ର ଆଚରଣରେ ଯେପରି...

ସଞ୍ଜୟର ଭାବନା ଆଉ ଆଗେଇ ପାରିଲା ନାହିଁ, ସେ ଆସି ହୋଟେଲ ପାରାଡାଇଜ୍ ନିକଟରେ ପହଞ୍ଚି ଯାଇଥିଲା ।

ମୋହନ ସମ୍ବନ୍ଧରେ ତା' ମନରେ ଯେଉଁ ଏକ ଝାପ୍‌ସା ଧାରଣା ଜନ୍ମିଥିଲା, ସେଥିରେ ସଞ୍ଜୟ ମନେମନେ କିପରି ବିଚଳିତ ହୋଇଉଠିଥିଲା । କେବଳ ମାଳା ପାଇଁ । ମାଳା ଯେ ମୋହନ ପାଖକୁ ଆସି ଭଲକରି ନାହିଁ, ସେ କେବଳ ଚିନ୍ତା କରୁଥିଲା ।

ମୋହନ ହୋଟେଲ ପାରାଡାଇଜ୍‌ରେ ପହଞ୍ଚି ଧୀରେଧୀରେ ମାଳାର ରୁମ୍ ଆଡ଼କୁ ଆଗେଇ ଯାଇଥିଲା । ମାଳା ସହିତ କଥାବାର୍ତ୍ତା କରି ତା' ସମ୍ବନ୍ଧରେ ଅନେକ କଥା ଜାଣିବା ପାଇଁ ସଞ୍ଜୟ ମନରେ କୌତୂହଳ ସୃଷ୍ଟି ହୋଇଥିଲା ।

କିନ୍ତୁ ମାଳାର ରୁମ୍ ଭିତରୁ ବନ୍ଦ ହୋଇଥିଲା ।

ସଞ୍ଜୟ ବାହାରେ ଅପେକ୍ଷା କଲା । ଡାକିବ ନା ନାହିଁ ? ମାଳା ସହିତ ଦେଖାହେଲେ ସେ ନିଶ୍ଚୟ ଚିହ୍ନିପାରିବ । ହୁଏତ ତା' ମନରେ ସଞ୍ଜୟ ପ୍ରତି ସନ୍ଦେହ ଜନ୍ମିପାରେ । ସେ ମୋହନକୁ ସଞ୍ଜୟ ସମ୍ବନ୍ଧରେ ସତର୍କ କରେଇଦେଇପାରେ । ତା'ହେଲେ ସବୁ ସମ୍ଭାବନା ବ୍ୟର୍ଥ ହୋଇଯିବ ।

ସଞ୍ଜୟ ଫେରିଆସିଲା । ବରଂ ମାଳାର ଅଜାଣତରେ ମୋହନ ସହିତ ବନ୍ଧୁତା ସ୍ଥାପନ କଲେ ଦୁହିଁଙ୍କୁ ବିଶ୍ଳେଷଣ କରିବାର ସୁଯୋଗ ସେ ପାଇବ । ଅନ୍ୟମନସ୍କ ଭାବରେ ସଞ୍ଜୟ ଫେରିଆସୁଥିଲା ।

ବାଟରେ ଧକ୍‌କା ଲାଗିଲା ଜଣେ ଭଦ୍ରଲୋକ ସହିତ ।

ଭଦ୍ରଲୋକଙ୍କ ହାତରୁ ସିଗାରେଟ୍ ଟିଣଟିଏ ଖସିପଡ଼ିଲା ଏବଂ ସିଗାରେଟ୍‌ଗୁଡ଼ିକ ବିଞ୍ଚି ହୋଇପଡ଼ିଲା । ସଞ୍ଜୟ 'ସରି' କହି 'ଫ୍ଲୋର' ଉପରୁ ସିଗାରେଟ୍‌ଯାକ ଗୋଟେଇ ଟିଣରେ ଭରିବାରେ ଲାଗିଲା ।

ଭଦ୍ରଲୋକ ଜଣକ ସଞ୍ଜୟକୁ ସାହାଯ୍ୟ କଲେ ।

ସଞ୍ଜୟ ସିଗାରେଟ ଟିଣଟି ଭଦ୍ରଲୋକଙ୍କ ହାତକୁ ବଢ଼ାଇ ଦେଲା ।

ସେ ଧନ୍ୟବାଦ ଦେଇ ଆପ୍‌ଣା ରୁମ୍‌କୁ ଫେରିଯାଉଥିଲେ । ସଞ୍ଜୟ କହିଲା କ୍ଷମା କରିବେ, ଆପଣ ବୋଧହୁଏ ଏହି ଫ୍ଲୋରରେ ରହୁଛନ୍ତି ।

ହଁ, ଭଦ୍ରଲୋକ ସ୍ମିତ ହସିଲେ ।

ଆପଣଙ୍କ ନାଁ ଟା...

: ଜର୍ଜ ଗୋମେସ୍ । ଭଦ୍ରଲୋକ ଟିକିଏ ଠିଆହେଲେ ଏବଂ ପକେଟରୁ ଖଣ୍ଡିଏ ଭିଜିଟିଂ କାର୍ଡ ବାହାର କରି କହିଲେ, ଏହି କାର୍ଡରେ ମୋର ରୁମ୍ ନମ୍ବର ଏବଂ ଅଫିସ ଠିକଣା ସବୁ ଅଛି । ଆପଣ ବୋଧହୁଏ ଏ ହୋଟେଲରେ ନୂତନ ?

-ହଁ ।

କୌଣସି ଦରକାର ହେଲେ ଆପଣ ମୋ' ରୁମ୍‌କୁ ଆସିପାରନ୍ତି ।

ଧନ୍ୟବାଦ କହି ସଞ୍ଜୟ କାର୍ଡଟି ଉପରେ ଆଖି ବୁଲେଇ ନିଜ ରୁମ୍ ଆଡ଼େ ପାଦ ବଢ଼େଇଲା ।

ଜର୍ଜ ଗୋମେସ୍ ।

ନାଁଟା କିପରି ଖାପଛଡ଼ା ମନେ ହେଲା ସଞ୍ଜୟକୁ । ପ୍ରୋପ୍ରାଇଟର ଗୋମାସ୍ ଏଣ୍ଡ କମ୍ପାନୀ । ଠିକଣା ଡାଲହୌସୀ ସ୍କୋୟାରରେ । ସଞ୍ଜୟ କାର୍ଡଟି ଦେଖୁ ଦେଖୁ ନିଜ ରୁମ୍ ପାଖରେ ପହଞ୍ଚିଲା ।

---

ଦୁଇଟି କଳାକଳା ଲାଜୁରା ଆଖି ।

ସଞ୍ଜୟ ଆଡ଼େ ଚାହିଁରହିଥିଲା ଅତି ଆକୁଳରେ । ଆଖିର ଭାଷାରେ ପୂରି ରହିଥିଲା ଗଭୀର ବେଦନା । ଯେପରି ବହୁ ନିଷ୍ପେଷଣ ସହି ସେ ତା'ର ସହିବାର ସମସ୍ତ ଶକ୍ତି ହରାଇଛି । ବର୍ତ୍ତମାନ ସେ କୁଟାଖିଏକୁ ବି ଆଶ୍ରୟ କରିବାର ଅପେକ୍ଷା କରିରହିଛି ।

ସଞ୍ଜୟ ଧୀରେ ଧୀରେ ଆଗେଇ ଗଲା ।

କ'ଣ ହେଲା ମାଳା ? ତମ ଆଖିରେ ଯେ ଅଶ୍ରୁ । ବେଦନା ଭାରରେ ତୁମେ ଭାଙ୍ଗିପଡ଼ିବ କ୍ଷଣକେ । କ'ଣ ହେଲା ତୁମର ?

ମାଳା ଆଉ ଆତ୍ମସମ୍ବରଣ କରିପାରିଲା ନାହିଁ । ସଞ୍ଜୟ ଛାତିରେ ମୁହଁ ଗୁଞ୍ଜି ଭୋ ଭୋ ହୋଇ କାନ୍ଦି ଉଠିଲା ।

ସଞ୍ଜୟ ଦୁଇ ହାତରେ ମାଳାକୁ ଭିଡ଼ି ଆଣିଲା ନିଜର ଛାତି ଉପରକୁ ।

ସା'ବ୍ ! ସାବ୍ ଚା' ।

ବୟର ଡାକ ଶୁଣି ସଞ୍ଜୟର ନିଦ୍ରାଭଙ୍ଗ ହେଲା । ମାଳାର ସୁନ୍ଦର ଓ କମନୀୟ ରୂପ ବଦଳରେ ସେ ଆଖି ଆଗରେ ଦେଖିଲା ଗୋଟିଏ ରୁକ୍ଷ ମୁହଁ । ସମଗ୍ର ଅବୟବରେ ଚପକନ୍ ଓ ମୁଣ୍ଡରେ ପଗଡ଼ି ।

ସଞ୍ଜୟର ମନଟା ବିଗିଡ଼ିଗଲା । ଆଉ ଯାହା ହେଉ ନ ହେଉ, ସେ ଗୋଟାଏ ସୁଖସ୍ୱପ୍ନ ଦେଖାରୁ ବଞ୍ଚିତ ହେଲା ।

ସେ ବୟଠାରୁ ହୁଏତ ଏହାର ପ୍ରତିଶୋଧ ନେଇଥାଆନ୍ତା । ମାତ୍ର ସେତିକିବେଳେ ଘରେ ପ୍ରବେଶ କଲେ ଜର୍ଜ ଗୋମେସ୍ । ସଞ୍ଜୟ ଆଶ୍ଚର୍ଯ୍ୟ ହେଲା । ସଙ୍ଗେ ସଙ୍ଗେ ଉଠିବସିଲା ବିଛଣାରୁ ।

ଜର୍ଜ ଗୋମେସ୍ ରୁମ୍‌ରେ ପ୍ରବେଶ କରି ଗୋଟିଏ ଚେଆର ଅଧିକାର କରି ବସିଲେ ଏବଂ କହିଲେ କ୍ଷମା କରିବେ, ଆପଣଙ୍କ ନାଁଟା ସେତେବେଳେ ପଚାରି ପାରି ନଥିଲି ।

ସଞ୍ଜୟ ଚଉଧୁରୀ ।

ଧନ୍ୟବାଦ ।

ଜର୍ଜ ଗୋମେସ୍ ଉଠୁଥିଲେ !

ସଞ୍ଜୟ କହିଲା ବସନ୍ତୁ ମିଃ ଗୋମେସ୍ । ମୋ' ରୁମ୍‌କୁ ଆସିଛନ୍ତି ଯେତେବେଳେ, ଅନ୍ତତଃ କପେ ଚା', ଖଣ୍ଡେ ଟୋଷ୍ଟ...

ଆପଣ ମୋତେ ମିଃ ଗୋମେସ୍ ବୋଲି ନ ଡାକିଲେ ଚଳିବ । କେବଳ ଜର୍ଜ କହିଲେ ଯଥେଷ୍ଟ ହେବ । କାରଣ ଜାଣନ୍ତି ତ, ଆଜିକାଲି ଦୁନିଆରେ କାର୍ଯ୍ୟ ଏତେ ବଢ଼ିଯାଇଛି ଯେ, ସେଇ ତୁଳନାରେ ସମୟ ଅତି କମ୍ । ସଂକ୍ଷେପରେ ସବୁ କାମ କରିବାକୁ ହେବ । ମିଷ୍ଟର ଗୋମେସ୍ କହି ଆପଣ ଯେତେ ସମୟ ନଷ୍ଟ କରିଥାଆନ୍ତେ, ଜର୍ଜରେ ତା'ଠାରୁ କମ୍ ସମୟ ଲାଗିବ ।

ଚା' ଖାଇବା ପାଇଁ ସଞ୍ଜୟକୁ ଆଉ ଅନୁରୋଧ କରିବାକୁ ପଡ଼ି ନ ଥିଲା । ଜର୍ଜ ଗୋମେସ୍ ଟୋଷ୍ଟରେ ଜେଲି ଲଗାଇବାକୁ ଆରମ୍ଭ କରିଦେଇଥିଲେ ଏବଂ ପରେ ପରେ ଅମ୍‌ଲେଟ୍ ପ୍ଲେଟ୍‌ରେ ମରିଚ ଗୁଣ୍ଡ ଛିଞ୍ଚିଲେ ।

ସଞ୍ଜୟ ମନେମନେ ଖୁବ୍ ଖୁସି ହେଲା । ହୋଟେଲ ପାରାଡାଇଜ୍ ପରି ଏକ ବିରାଟ ହୋଟେଲରେ ନିଃସଙ୍ଗ ଭାବରେ କଟାଇବାକୁ ଅତି ଖରାପ ଲାଗୁଥିଲା । ଜର୍ଜ ଗୋମେସ୍‌ଙ୍କ ପରି ଜଣେ ସ୍ଥାନୀୟ ଲୋକ ସହିତ ବନ୍ଧୁତା ସ୍ଥାପନର ସୁଯୋଗ ପାଇ ସଞ୍ଜୟ ଖୁସି ହୋଇଯାଇଥିଲା ।

ଜର୍ଜ ଗୋମେସ୍ ସମସ୍ତ ପଦାର୍ଥ ଖାଇସାରି ତଉଲିଆରେ ମୁହଁ ପୋଛୁଥିଲେ ।

ଆଉ କିଛି ଅଣେଇବି ଆପଣଙ୍କ ପାଇଁ ?

ନା, ଧନ୍ୟବାଦ । ମୋ' ହାତରେ ଆଉ ସମୟ ନାହିଁ । ଚା' ମୁଁ ଅନ୍ୟତ୍ର ଖାଇବି । ପୁଣି ଦେଖାହେବ ମିଃ ଚଉଧୁରୀ ।

ଜର୍ଜ ଗୋମେସ୍ ଉଠି ଠିଆହେଲେ ଏବଂ ସଙ୍ଗେସଙ୍ଗେ ହାତଘଣ୍ଟାକୁ ଚାହିଁ, ଏକ ପ୍ରକାର ଛୁଟିବାକୁ ଲାଗିଲେ ।

ସଞ୍ଜୟ ଗୋମେସ୍‌ଙ୍କର ଏପରି ଖାପଛଡ଼ା ରୀତି ଦେଖି ସ୍ତବ୍ଧ ହୋଇଯାଇଥିଲା । ସେ ଧୀରେଧୀରେ ବିଛଣାରୁ ଉଠି ମୁହଁହାତ ଧୋଇବା ପାଇଁ ବାଥ୍‌ରୁମ୍‌କୁ ଉଠିଗଲା ।

ଜର୍ଜ ଗୋମେସ୍ !

ନାଁ ସହିତ ଚରିତ୍ରର ମେଳ ଯଥେଷ୍ଟ ।

ସଞ୍ଜୟ ଆଉଥରେ ଚା' ଓ ଜଳଖିଆ ମଗେଇ ଖାଇବା ଶେଷ କଲା । ମନେମନେ ପ୍ରତୀକ୍ଷା କରିଥିଲା ମୋହନକୁ । ତା'ର ଧାରଣା ଥିଲା ମୋହନ ନିଶ୍ଚୟ ମାଳା ଘରକୁ ଆସିବ ଏବଂ ସେମାନେ ସାଙ୍ଗହୋଇ ବୁଲି ବାହାରିବେ ।

କିନ୍ତୁ ଅବଶେଷରେ ସନ୍ଧ୍ୟା ଗଡ଼ିଗଲା । ତଥାପି ମୋହନ ଆସିଲା ନାହିଁ । ସଞ୍ଜୟ କ'ଣ କରିବ ଠିକ୍ କରିପାରୁ ନଥିଲା । ଗୋଟିଏ ଘରେ ଜଣକ ପ୍ରତୀକ୍ଷାରେ ବସି ରହିବା କି ଯେ ଯନ୍ତ୍ରଣା, ପ୍ରଥମେ ସେଦିନ ସେ ଅନୁଭବ କଲା ।

ଯେତେବେଳେ ସାତଟା ବାଜିଲା, ସଞ୍ଜୟ ଆଉ ଧୈର୍ଯ୍ୟ ରଖିପାରିଲା ନାହିଁ । ପୋଷାକପତ୍ର ପିନ୍ଧି ବାହାରକୁ ବାହାରିଲା । କୁଆଡ଼େ ନ ଗଲେ ମଧ୍ୟ ପାର୍କରେ ଟିକିଏ ବସିଆସିଲେ ମନର ପରିବର୍ତ୍ତନ ହେବ ।

ରୁମ୍‌ରେ ଚାବି ବନ୍ଦ କଲା ।

ମୋହନ ଆସି ମାଳାକୁ ତା' ଅଲକ୍ଷ୍ୟରେ ନେଇ ଯାଇନାହିଁ ତ ! ସଞ୍ଜୟ ମନରେ ସନ୍ଦେହ ଜାଗିଲା ।

ସଞ୍ଜୟ ପାଦେପାଦେ କରି ମାଳା ରୁମ୍‌ଆଡ଼େ ଆଗେଇଗଲା ।

ଏଥର ମଧ୍ୟ ରୁମ୍‌ଟି ଭିତରୁ ବନ୍ଦ ।

ନା, ମାଳା ଭିତରେ ଅଛି ଏବଂ ହୁଏତ ନିରୋଳାରେ ଶୋଇଶୋଇ ତା' କୃତକର୍ମ କଥା ଭାବୁଛି ।

ସଞ୍ଜୟ ଫେରିଆସିଲା ।

ଆଉ କୁଆଡ଼େ ନ ଚାହିଁ ସିଧାସଳଖ ସିଡ଼ି ବାଟେ ତଳକୁ ଓହ୍ଲାଇ ଆସିଲା ।

ଆରେ ଚଉଧୁରୀ ଯେ, କ'ଣ ସାନ୍ଧ୍ୟଭ୍ରମଣରେ ବାହାରିଲେ ?

ସଞ୍ଜୟ ବୁଲି ଅନେଇଲା, ଜର୍ଜ ଗୋମେସ୍ ।

: ହ୍ୟାଲୋ ଜର୍ଜ ! ସଞ୍ଜୟ ଉଲ୍ଲସିତ ହୋଇ କରମର୍ଦ୍ଦନ କରିବାକୁ ଯାଉଥିଲା ।

କିନ୍ତୁ ଜର୍ଜ ଗୋମେସ୍ କହିଲେ: ମୋ' ହାତରେ ସମୟ ଖୁବ୍ ଅଳ୍ପ ଚଉଧୁରୀ । ସାନ୍ଧ୍ୟଭ୍ରମଣରେ ଯଦି ବାହାରିଥାନ୍ତି, ମୋ' ସହିତ ଆସିପାରନ୍ତି । ମୁଁ ଆପଣଙ୍କୁ ଏପରି ଏକ ସ୍ଥାନକୁ ନେଇଯିବି, ଏପରି ଏକ ସ୍ଥାନକୁ ନେଇଯିବି...

ଗୋମେସ୍ କଥା ଶେଷ ନ କରି ପୁଣି କହିଲେ ସମୟ ଖୁବ୍ ଅଳ୍ପ । ଦୁନିଆରେ ବହୁ କାର୍ଯ୍ୟ ମୋ' ପାଇଁ ବାକି ପଡ଼ିଚି । ତେଣୁ କ୍ଷମା କରିବେ । ସମୟକୁ ମୁଁ ମୋଟେ ଫାଙ୍କି ଦେଇପାରିବି ନାହିଁ ।

ପ୍ରତ୍ୟେକ ମଣିଷ ଆପଣଙ୍କ ପରି ସମୟାନୁବର୍ତ୍ତୀ ହେବା ଉଚିତ ଜର୍ଜ, କାରଣ ଯୁଗ ବଦଳିଛି, ଦୃଷ୍ଟିଭଙ୍ଗୀ ବଦଳିଛି, ସଭ୍ୟତା ମଧ୍ୟ ବଦଳିଛି - ତେଣୁ ସଭ୍ୟସମାଜ ସହିତ ସମତାଳରେ ଆଗେଇବାକୁ ହେଲେ, ଆପଣଙ୍କ ପରି...

ଆପଣ ଠିକ୍ କହିଛନ୍ତି ଚଉଧୁରୀ । ଜର୍ଜ ଗୋମେସ ଛୁଟିଆସି ସଞ୍ଜୟର

ପିଠି ଆପୁଡ଼େଇଲେ । ମୁଁ ଚାହେଁ ଆପଣଙ୍କ ପରି ସମସ୍ତେ ମୋତେ ଅନୁକରଣ କରନ୍ତୁ । ତା'ହେଲେ ଦେଶର ସମସ୍ୟା ସଂକ୍ଷିପ୍ତ ହୋଇଯିବ ।

ଗୋମେସ ସିଗାରେଟ ଟିଣ ଖୋଲି ସଞ୍ଜୟ ଆଡ଼କୁ ଦେଖାଇଲେ ।

ଧନ୍ୟବାଦ । ସଞ୍ଜୟ ଗୋଟିଏ ସିଗାରେଟ ଗ୍ରହଣ କଲା ।

ଆସନ୍ତୁ, ଗୋମେସ ସଞ୍ଜୟକୁ ଡାକିଲେ ।

କୁଆଡ଼େ ?

ସାନ୍ଧ୍ୟଭ୍ରମଣରେ ବାହାରିବେ ନାହିଁ ?

ସଞ୍ଜୟ କୌଣସି ଉତ୍ତର ଦେବା ଆଗରୁ ଖଣ୍ଡିଏ ଚକଚକିଆ କାର୍ ଆସି ହୋଟେଲ ଦୁଆରମୁହଁ ଫୁଟ୍‌ପାଥରେ ଭିଡ଼ିଲା । ସଞ୍ଜୟର ଆଖିଯୋଡ଼ାକ ଉଜ୍ଜ୍ୱଳ ହୋଇଉଠିଲା । ମୋହନ କାର୍‌ରୁ ଓହ୍ଲାଉଥିଲା ।

ସଞ୍ଜୟ ଆଶାୟୀ ନୟନରେ ସେଇ ଆଡ଼କୁ ଚାହିଁରହିଲା ।

ମୋହନ ସେମାନଙ୍କ ପାଖଦେଇ ଗଲାବେଳେ ଗୋମେସ ମୋହନକୁ ହାତ ଉଠାଇ ଅଭିବାଦନ ଜଣାଇଲେ । ମୋହନ ପ୍ରତ୍ୟାଭିବାଦନ ଜଣାଇ ମୁହୂର୍ତ୍ତେ ଠିଆ ହୋଇପଡ଼ିଲା ଏବଂ ସଞ୍ଜୟ ଆଡ଼େ ଆଡ଼ ଆଖିରେ ଥରେ ଚାହିଁ କହିଲା ସବୁ ଭଲ ତ ?

ନିଶ୍ଚୟ, ନିଶ୍ଚୟ ! ଆଉ କ'ଣ କୌଣସି ବଡ଼ ଶିକାର...

ମୋହନ ସାମାନ୍ୟ ଟିକିଏ ହସିଦେଇ ଚାଲିଗଲା । ଗୋମେସଙ୍କ କଥା ମଧ୍ୟ ସମାପ୍ତ ହେଲା ନାହିଁ । ସେ ମୋହନର ଯିବା ପଥକୁ ଅନେଇଥିଲେ ।

ତା'ପରେ ଜର୍ଜ ! ଆପଣଙ୍କର ଡେରି ହେଉନାହିଁ ? ଆପଏଣ୍ଟମେଣ୍ଟ କେତେଟାରେ ?

ଜର୍ଜ ଗୋମେସ ଘଡ଼ିକୁ ଚାହିଁ ବିଚଳିତ ହୋଇପଡ଼ିଲେ. ଆସନ୍ତୁ, ଆସନ୍ତୁ ଚଉଧୁରୀ, ଅନେକ ଡେରି ହୋଇଗଲା ।

ସଞ୍ଜୟ ପ୍ରତିବାଦ ନ କରି ଗୋମେସଙ୍କ ପଛେପଛେ ଚାଲିବାକୁ ଲାଗିଲା ।

ସେ ଫୁଟ୍‌ପାଥ ଉପରେ ଖୁବ୍ କ୍ଷିପ୍ର ପାଦ ଚାଲି ଆଗେଇ ଚାଲିଥିଲେ । ସଞ୍ଜୟ ତାଙ୍କ ପାଦ ସହିତ ପାଦ ମିଳେଇ ଚାଲିପାରୁ ନଥିଲା !

ହଠାତ୍ ଗୋମେସଙ୍କ ପାଦ ଗୋଟିଏ 'କାଫେ' ନିକଟରେ ଶିଥିଳ ହୋଇଗଲା । ସଞ୍ଜୟ ତାଙ୍କ ନିକଟରେ ପହଞ୍ଚିବାରୁ ସେ କହିଲେ, କଫି ପାଇଁ ଏ କାଫେଟା ଏ ଅଞ୍ଚଳରେ ବିଖ୍ୟାତ ।

ଚେଷ୍ଟ କରିବା ଚାଲନ୍ତୁ ! ସଞ୍ଜୟ କହିଲା ।

ଗୋମେସ ବିନା ପ୍ରତିବାଦରେ ସୁଇଂଡୋର୍ ଖୋଲି ଭିତରକୁ ପଶିଲେ ।

ଭିତରେ ଲୋକ ଗହଳି ଯଥେଷ୍ଟ ଥିଲା । ଗୋମେସ ଏକ କେବିନର ଦୁଆର ଠେଲି ଭିତରେ ପ୍ରବେଶ କଲେ । ପଛେପଛେ ସଞ୍ଜୟ ।

ଜଣେ ମହିଳା ଆସି ଠିଆ ହେଲା ।

ଗୋମେସ ଖାଦ୍ୟପଦାର୍ଥର ତାଲିକା ଦେଖି, ସଞ୍ଜୟ ସହିତ ପରାମର୍ଶ କରି ମହିଳାଟିକୁ ଅର୍ଡର ଦେଲେ ।

ସଞ୍ଜୟକୁ ସ୍ଥାନଟି କିପରି ଟିକିଏ ଅଡୁଆଅଡୁଆ ଲାଗୁଥିଲା । ଏଠାରେ ମହିଳାମାନେ ପରିଚାରିକା କାର୍ଯ୍ୟ କରୁଥିଲେ । ବୋଧହୁଏ ସେଇଥିପାଇଁ କାଫେଟିରେ ଅପେକ୍ଷାକୃତ ବେଶୀ ଭିଡ଼ ହେଉଥିଲା ।

ଆପଣଙ୍କୁ କାଫେଟି କିପରି ମନେହେଉଛି ? ଗୋମେସ ପଚାରିଲେ ।

ମନ୍ଦ ନୁହେଁ । ସଞ୍ଜୟ କହିଲା ।

ଗୋମେସ ପୁଣି ସିଗାରେଟ ଟିଣ ଖୋଲିଲେ ଏବଂ ଆରମ୍ଭ କଲେ   ମୋର ଏ କାଫେଟି ଖୁବ୍ ପ୍ରିୟ । ଆଜକୁ ପାଞ୍ଚ ସାତବର୍ଷ ହେବ ମୁଁ ଏ କାଫେକୁ ପ୍ରାୟ ଆସେ । ମ୍ୟାନେଜର ଠାରୁ ଆରମ୍ଭ କରି ତଳିଆ କର୍ମଚାରୀ ଯାଏ ସମସ୍ତେ ମୋତେ ଚିହ୍ନନ୍ତି ଏବଂ ସମ୍ମାନ କରନ୍ତି ।

ଦୁଇଜଣ ପରିଚାରିକା କଫି ଓ ଜଳଖିଆ ଧରି କେବିନ ମଧ୍ୟରେ ପ୍ରବେଶ କଲେ ।

ଗୋମେସ ଏକପ୍ରକାର ସେମାନଙ୍କ ହାତରୁ ଜଳଖିଆତକ ଟାଣିନେଇ ସଙ୍ଗେ ସଙ୍ଗେ ଖାଇବାକୁ ଆରମ୍ଭ କରିଦେଲେ ।

ସଞ୍ଜୟ କିଛି ସମୟ ଗୋମେସଙ୍କ ଆଡ଼େ ଅନେଇ ରହି ଧୀରେଧୀରେ ଆରମ୍ଭ କଲା   ଆଚ୍ଛା ଜର୍ଜ ! ମୋହନକୁ ଆପଣ ଭଲ ଭାବରେ ଚିହ୍ନନ୍ତି ।

ମୋହନ ! କିଏ ମୋହନ ? ଗୋମେସ୍ ମୁହୂର୍ତ୍ତେ ଚୁପ୍ ରହି ଏବଂ ସଞ୍ଜୟ ଆଡ଼େ କଣେଇ ଚାହିଁ ପୁଣି ଖାଇବାକୁ ଆରମ୍ଭ କରିଦେଲେ ।

ଆମେ ଆସିଲାବେଳେ ହୋଟେଲ ପାରାଡାଇଜ୍ ତଳେ ଯେଉଁ ଭଦ୍ରଲୋକଙ୍କ ସହିତ ଭେଟ ହୋଇଥିଲା ।

ଓଃ ! ମୋହନ ମହାପାତ୍ର ! ସେ ଜଣେ ବିରାଟ ଧନୀଲୋକ । ଏଠାରେ ତାଙ୍କର ବଡ଼ ବ୍ୟବସାୟ ଅଛି ।

ଆପଣଙ୍କର ତାଙ୍କ ସହିତ ଆନ୍ତରିକତା ଅଛି ? ସଞ୍ଜୟ ପଚାରିଲା ।

ଜର୍ଜ ଗୋମେସଙ୍କ ମୁହଁରେ ଏକ ବିଚିତ୍ର ହସ ଫୁଟିଉଠିଲା ।

ସେ କହିଲେ: କୌଣସି ବଡ଼ ଲୋକଙ୍କ ସହିତ କାହାରି ଆନ୍ତରିକତା ଜମିପାରେ ? ଆପଣ ଯଦି ତାହା ଭାବୁଥାଆନ୍ତି, ତେବେ ଭୁଲ୍ କରୁଛନ୍ତି । କାରଣ ବଡ଼ ଲୋକମାନେ ଯାହାକୁ ଆନ୍ତରିକତା ବୋଲି ଦେଖେଇ ହୁଅନ୍ତି, ମୋ' ମତରେ ତାହା କେବଳ ଛଳନା ଛଡ଼ା ଅନ୍ୟ କିଛି ହୋଇନପାରେ । ତେଣୁ ମୋହନ ସହିତ ଆନ୍ତରିକତା ଜମିବାର ସୁଯୋଗ କାହିଁ ?

ସଞ୍ଜୟ ଗୋମେସ ମୁହଁରୁ କେବଳ ତତ୍ତ୍ୱ ଶୁଣି ନିରାଶ ହୋଇପଡ଼ୁଥିଲା । ସେ ମୋହନକୁ ଛାଡ଼ି ଗୋମେସ ସଙ୍ଗରେ ଆସିଥିଲା ମୋହନ ସମ୍ବନ୍ଧରେ କିଛି ତଥ୍ୟ ସଂଗ୍ରହ କରିବା ପାଇଁ । ଗୋମେସ ଏ କ'ଣ କହୁଛି ?

ଗୋମେସ ପେଟଭରି ଭୋଜନ କରିସାରିଥିଲେ । କଫି ପାତ୍ରରୁ କଫି ଢାଳିବା ପାଇଁ ହାତ ବଢ଼ାଇଲେ ।

ଆଚ୍ଛା, ମୋହନ ମହାପାତ୍ରଙ୍କ ବ୍ୟବସାୟ ସମ୍ବନ୍ଧରେ ଆପଣଙ୍କର କିଛି ଧାରଣା ଅଛି ? ସଞ୍ଜୟ ପୁଣି ପଚାରିଲା ।

ଯଥେଷ୍ଟ ଅଛି । ହୋଟେଲ ପାରାଡ଼ାଇଜ୍‌ରେ ବାରମାସ ପାଇଁ ଗୋଟାଏ ରୁମ୍ ରିଜର୍ଭ କରିରଖିବା ଖେଳଘର କଥା ନୁହେଁ । ଖୁବ୍ ବଡ଼ ବ୍ୟବସାୟୀ ନ ହେଲେ, ସମସ୍ତଙ୍କ ପକ୍ଷରେ ଏହା ସମ୍ଭବ ହୁଏ ନାହିଁ ।

ଗୋମେସ ନିର୍ବିକାର ଚିତ୍ତରେ କଫି ପିଇଲେ ।

ତା'ପରେ ? ସଞ୍ଜୟ ପଚାରିଲା ।

: ତା'ପରେ ଆଉ କ'ଣ ? ବ୍ୟବସାୟ ଚାଲିଚି । ମୋହନ ବଢ଼ିଚାଲିଚି । ବୁଦ୍ଧି ଆଉ ପଇସା ଏ ଦୁଇଟା ମିଶିଗଲେ ଯାହା ହୁଏ, ମୋହନର ସେଇଆ ହେଇଚି ।

ନା, ମୁଁ କ'ଣ କହୁଥିଲି କି, ମୋହନର ହୋଟେଲ ପାରାଡାଇଜ୍‌ରେ ବାରମାସ ଯେଉଁ ଘରଟି ରିଜର୍ଭ କରାହେଇ ରହିଛି ସେଥିରେ କ'ଣ ହୁଏ ?

ଗୋମେସ କଫିରେ ଆଉ ଟିକିଏ ଦୁଧ ଢାଳିଲେ । ଚିନି ବା ଅଧ ଚାମଚ ପକାଇ ଗୋଳାଉ ଗୋଳାଉ ସଞ୍ଜୟ ଆଡ଼େ ଶାନ୍ତ ଚାହାଣିରେ ଅନାଇ କହିଲେ : ସେ ରିଜର୍ଭ ଘରେ କ'ଣ ହୁଏ ତା' ବି ଆପଣଙ୍କୁ କହି ଦେବାକୁ ହେବ ! ଆପଣ ଯଦି ଏତେ ନିର୍ବୋଧ, ଏ ରାଜ୍ୟକୁ ଆସିଛନ୍ତି କାହିଁକି ?

ସଞ୍ଜୟ ଟିକିଏ ଲଜ୍ଜିତ ହେଲା । ଆଖି ଦୁଇଟା ତଳକୁ ନୋଇଁ କହିଲା  ନା ନା ମୁଁ କ'ଣ କହୁଥିଲି କି...

ଆପଣ କ'ଣ ଆଉ କହିବେ । ଆପଣ ଯାହା କହିବେ ମୋତେ ଜଣାଅଛି । ତେବେ ଏତିକି ଜାଣିରଖନ୍ତୁ ମୋହନର ଗତିବିଧି ଆଡ଼େ ଆପଣ ବିଶେଷ ଦୃଷ୍ଟି ଦେବେ ନାହିଁ । ତା'ର ଆନ୍ତର୍ଜାତିକ ବଜାର ସହିତ ଯୋଗାଯୋଗ ଅଛି । ସେ ଚାହିଁଲେ ଆପଣଙ୍କର ଯଥେଷ୍ଟ କ୍ଷତି ସାଧନ କରିପାରେ । ହୋଟେଲ ପାରାଡାଇଜ୍‌ରେ ମୋହନର କାହିଁକି ରୁମ୍ ରିଜର୍ଭ ଅଛି ଏବଂ ସେ ରୁମ୍ ଭିତରେ କିଏ ରୁହେ, କାହିଁକି ରୁହେ, ଏସବୁ ସମ୍ବନ୍ଧରେ ମଧ୍ୟ କୌଣସି କୌତୂହଳ ପ୍ରକାଶ କରିବେ ନାହିଁ ! ବନ୍ଧୁ ହିସାବରେ ମୁଁ ଆପଣଙ୍କୁ ସାବଧାନ କରାଇଦେଉଛି ।

କହିସାରି କଫି କପ୍‌କ ସେ ଏକାଥରେ ପିଇଦେଲେ ।

ପୁଣି ପରିଚାରିକାଟି କେବିନରେ ପ୍ରବେଶ କଲା । ଏଥର ସେ ବିଲ ଆଣିଥିଲା । ଟେବୁଲ ଉପରେ ରଖିଦେଇ ଗୋଟିଏ କୋଣକୁ ଠିଆହେଲା ।

ସଞ୍ଜୟର କଫି ପିଆ ଶେଷ ହୋଇ ନଥିଲା । ଜର୍ଜ ଗୋମେସ କିନ୍ତୁ ଉଠି ଠିଆ ହୋଇପଡ଼ିଲେ । କହିଲେ କ୍ଷମା କରିବେ ଚଉଧୁରୀ ! ମୋ' ପକ୍ଷରେ ଆଉ ସମୟ ନଷ୍ଟ କରିବା ଆଦୌ ସମ୍ଭବ ନୁହେଁ । ଆପଣ କଫି ପିଇସାରି ହୋଟେଲକୁ ଫେରିଯାଆନ୍ତୁ । ରାତିରେ ପୁଣି ଦେଖାହେବ ।

ସଞ୍ଜୟ କିଛି କହିବା ପୂର୍ବରୁ ଜର୍ଜ ଗୋମେସ ପରିଚାରିକାଟି ମୁହଁରେ ଆଙ୍ଗୁଳି ବୁଲେଇ ଦେଇ କେବିନ୍‌ର ବାହାରକୁ ଚାଲିଗଲେ । ସଞ୍ଜୟ ଗୋମେସଙ୍କ ଯିବା ପଥରୁ ଆଖି ଫେରାଇ ଆଣି ପରିଚାରିକାଟିକୁ ଚାହିଁଲେ । ସ୍ମିତ ହସି ପରିଚାରିକାଟି କହିଲା ଆପଣଙ୍କର ଆଉ କିଛି ଲାଗିବ ?

ନା, ଧନ୍ୟବାଦ ।

ସଞ୍ଜୟ ମନିବ୍ୟାଗ ଖୋଲିଲା ଏବଂ ନୋଟ କେଇଟି ପରିଚାରିକାଟି ହାତକୁ ବଢ଼େଇ ଦେଲା । ଆଉ ମୁହୂର୍ତ୍ତେ ଅପେକ୍ଷା ନକରି ସଞ୍ଜୟ ଉଠି ଠିଆହେଲା ।

ତା'ହେଲେ ? ସେ କ'ଣ ବ୍ୟର୍ଥ ହେବ ?

ମୋ' ନାଁ ଲିଲି ।

ପଛରୁ ପରିଚାରିକାଟି କହିଲା: ଆଉ ଯେତେବେଳେ ଆପଣ ଏଠାକୁ ଆସିବେ, ମୋ' ନା ଧରି କହିଲେ, ମୁଁ ଆପଣଙ୍କ ସେବା କରିବି ।

ସଞ୍ଜୟ ବୁଲି ଚାହିଁଲା । ଲିଲି ମୁହଁରେ ସ୍ମିତହସ ଟିକକ ଲାଗି ରହିଥିଲା । ସେ ମୁହୂର୍ତ୍ତେ ଠିଆହୋଇ ଲିଲିକୁ ପାଦଠାରୁ ମୁଣ୍ଡଯାଏ ଥରେ ଅନାଇ ଯାଇ ପଚାରିଲା ତମେ ଜର୍ଜ ଗୋମେସଙ୍କୁ ଚିହ୍ନ ?

ନିଶ୍ଚୟ ଚିହ୍ନେ । ସେ ଆମ କାଫେର ଜଣେ ପୁରୁଣା ଖର୍ଦ୍ଦାର ।

ସଞ୍ଜୟ ଆଉ କ'ଣ ପଚାରିବାକୁ ଯାଉଥିଲା, ମାତ୍ର କେବିନର ଦରଜା ଫାଙ୍କାରେ ଦେଖିଲା ମୋହନ ଓ ମାଳା ଦୁହେଁ ସାମ୍ନା କେବିନ ମଧ୍ୟରେ ପ୍ରବେଶ କଲେ । ସଞ୍ଜୟ ପୁଣି ଫେରିଆସି ଚେଆରରେ ବସିଲା ଏବଂ ପରିଚାରିକାକୁ କହିଲା ମୋତେ ଆଉ କପେ କଫି ପିଆଇ ପାରିବ ?

: ଜରୁର୍ ପାରିବି । ଆପଣଙ୍କ ସେବା କରିବା ହିଁ ତ ମୋର ଧର୍ମ !

ଲିଲି ଯେପରି କୃତ୍ୟକୃତ୍ୟ ହୋଇଯାଇଥିଲା । ସେ ମୁଗ୍ଧ ନେତ୍ରରେ ସଞ୍ଜୟ ଆଡ଼େ ମୁହୂର୍ତ୍ତେ ଚାହିଁ ରହି କହିଲା, କେବଳ କଫି ନା ଅନ୍ୟ କିଛି ?

ନା, କେବଳ କଫି ।

ସଞ୍ଜୟ ମନର ଭାବନା ଗୋଳମାଳିଆ ହୋଇଯାଇଥିଲା ।

ଲିଲି କିନ୍ତୁ ଯଥେଷ୍ଟ ଉତ୍ସାହ ପାଇଥିଲା । ସେ କେବିନ୍‌ରୁ କ୍ଷିପ୍ର ଗତିରେ ବାହାରି ଚାଲିଗଲା ।

ମୋହନ ତା'ହେଲେ ତାଙ୍କୁ ସଙ୍ଗରେ ଧରିଆସିଛି । କିନ୍ତୁ ଉପାୟ ଯେ କିଛି ନାହିଁ ! ଲିଲି କ'ଣ ତାଙ୍କୁ କିଛି ସାହାଯ୍ୟ କରିପାରିବ ?

ଲିଲି ଗୋଟାଏ ଟ୍ରେ' ହାତରେ ଧରି ପୁଣି କେବିନ ମଧ୍ୟରେ ପ୍ରବେଶ କଲା ।

କିନ୍ତୁ... ସଞ୍ଜୟ ଲିଲି ଆଡ଼କୁ ଚାହିଁପାରିଲା ନାହିଁ । ଏ କ'ଣ ! ଏଇ ମୁହୂର୍ତ୍ତକ ମଧ୍ୟରେ ଲିଲିର ବେଶବାସରେ ଏତେ ପରିବର୍ତ୍ତନ ! ଆଖିର ଚାହାଣିରେ ଏ କି କାମନାର ବହ୍ନି ! ଯା'ହେଉ...

ଲିଲି କଫି ପାତ୍ର ଟେବୁଲରେ ରଖି ସଞ୍ଜୟ ଦେହକୁ ଲାଗି ଠିଆହୋଇ କହିଲା

ମୁଁ କଫି ତିଆରି କରିଦେବି ?

ଦିଅ ।

ସଞ୍ଜୟ ଚେଆରଟା ସାମାନ୍ୟ ଟିକିଏ ଘୁଞ୍ଚେଇ ବସିଲା । କିନ୍ତୁ ଲିଲି ସେ ବ୍ୟବଧାନ ମୁହୂର୍ତ୍ତକ ମଧ୍ୟରେ ଦୂରକରି କହିଲା, ମୋତେ କୁଆଡ଼େ ଖୁବ୍ ଭଲ କଫିକରି ଆସେ ବୋଲି ସମସ୍ତେ କହନ୍ତି । କିନ୍ତୁ ମୁଁ କାହାରି କଥା ବିଶ୍ୱାସ କରିପାରେ ନାହିଁ । କାରଣ ଅନେକେ ମନରଖା କଥା କହନ୍ତି କି ନା ! ଆପଣ ପିଇ ଦେଖନ୍ତୁ ତ !

ସଞ୍ଜୟ କଫି କପରେ ଗୋଟିଏ ଚୁମ୍ବନ ଦେଇ କହିଲା: ଚମତ୍କାର ! ପ୍ରକୃତରେ ଅପୂର୍ବ ଟେଷ୍ଟ ହୋଇଛି । ଦେଖି ଦେଖି ତମ ହାତ !

ଲିଲି ତା'ର ପଳାଶ-କୋମଳ ହାତଟିକୁ ସଞ୍ଜୟ ଆଡ଼େ ବଢ଼ାଇଦେଇ ଆହୁରି ଟିକିଏ ସଞ୍ଜୟକୁ ଲାଗି ଠିଆହେଲା ।

ସଞ୍ଜୟ ଲିଲିର ହାତଟିକୁ ମେଲେଇ ଧରି ଦକ୍ଷ ହସ୍ତରେଖା ବିଶାରଦଙ୍କ ପରି କିଛି ସମୟ ଅନାଇରହି ଲିଲି ମୁହଁକୁ ଚାହିଁଲା ।

ଲିଲି ଅଳ୍ପଅଳ୍ପ ହସୁଥିଲା ।

ତମ ନାଁ ଲିଲି !

ହଁ ।

ତମେ ଏଇ କାଫେରେ କେତେଦିନ ହେବ କାମ କରୁଚ ?

ପ୍ରାୟ ଦୁଇବର୍ଷ ହେବ ।

ଏ ପର୍ଯ୍ୟନ୍ତ କିଛି ସୁବିଧା କରିପାରି ନାହଁ ?

ମାନେ ?

ମାନେ ଆଉ କ'ଣ । ଏଇ ଜୀବନର ଗୋଟାଏ ସୁଦୃଢ଼ ପଥ ଆବିଷ୍କାର । ଯେଉଁ ପଥଦେଇ ତମେ ସାରାଜୀବନ ଅବଲୀଳାକ୍ରମେ ହସିହସି ଆଗେଇ ଯାଇପାରିବ ।

ଲିଲିର ହସିଲା ମୁହଁଟି ମୁହୂର୍ତ୍ତକ ପାଇଁ ଝାଉଁଳି ପଡ଼ିଲା । ସେ ନୀରସ କଣ୍ଠରେ କହିଲା ସେ ସୌଭାଗ୍ୟ ହୁଏତ ମୋର ଆଉ ହେବ ନାହିଁ ।

କିଏ କହିଲା ହେବନାହିଁ ? ଅଲବତ୍ ତମେ ସୁଖୀ ହେବ । ତମ ହାତ

କହୁଛି । ତମେ ଯାହାଙ୍କୁ ଜୀବନସାଥୀ ରୂପେ ପାଇବ, ସେ ହେବ ଜଣେ ଦୁର୍ଦ୍ଦାନ୍ତ ଧନବାନ୍, ସୁପୁରୁଷ । ତମେ ତା'ରି ବାହୁଛାୟା ତଳେ ଅଭୟ ଆଶ୍ରୟ ପାଇବ ।

ଆପଣ ସତ କହୁଛନ୍ତି ? ମୁଁ କ'ଣ...

ହଁ ଲିଲି, ତମେ ସୁଖୀ ହେବ । ସ୍ୱାମୀସନ୍ତାନ ଧରି ମହାଆନନ୍ଦରେ ଦିନ କଟାଇବ । ତମ ହାତରେ ସେହିପରି ଲିଖନ ଅଛି ।

ତା'ପରେ ସଞ୍ଜୟ ଲିଲି ହାତକୁ ଚୁମ୍ବନ କରି, ଖଣ୍ଡିଏ ପାଞ୍ଚଶ ଟଙ୍କାର ନୋଟ ଧରାଇ ଦେଇ କହିଲା  ବକ୍‌ଶିଶ୍ । ବଦଳରେ ତୁମଠାରୁ କିଛି ଆଶା କରିପାରେ କି ?

ଓଃ, ନିଶ୍ଚୟ ନିଶ୍ଚୟ । ଲିଲି ନୋଟ୍ ଖଣ୍ଡିକ କ୍ଷିପ୍ର ହସ୍ତରେ ବ୍ଲାଉଜ ଭିତରେ ରଖୁରଖୁ କହିଲା । ଆଖିରେ ତା'ର ଫୁଟିଉଠିଥିଲା କାମନାର ଇଙ୍ଗିତ । ଲିଲି ପୁଣି ଥରେ ସଞ୍ଜୟ ଉପରେ ଦେହ ଭାର ନଦି ଦେବାକୁ ଯାଉଥିଲା କିନ୍ତୁ ସଞ୍ଜୟ ଉଠି ଠିଆହୋଇପଡ଼ିଲା ।

ଲିଲି ସଞ୍ଜୟର ହାତଧରି ଟାଣିଲା  ଆସନ୍ତୁ ।

କେଉଁଆଡ଼େ ?

ସଞ୍ଜୟ ବିସ୍ମିତ ବିସ୍ଫାରିତ ନେତ୍ରରେ ଚାହିଁଲା ।

: ଭିତରକୁ ଯିବା । ଆମ ବସ୍‌ଙ୍କ ସହିତ ଆପଣଙ୍କର ପରିଚୟ କରାଇଦେବି । ଭିତରେ ସବୁ ପ୍ରକାର ବ୍ୟବସ୍ଥା ଅଛି । ବସ୍ ଆପଣଙ୍କୁ ଦେଖିଲେ ଖୁସି ହେବେ ।

ନା ଆଜି ନୁହେଁ । ବରଂ କାଲି ଆସିବି । କିନ୍ତୁ ମୁଁ ଯେଉଁ କଥା କହୁଥିଲି ।

ଆଉ ଆପଣ କ'ଣ କହିଥିଲେ ?

ଶୁଣ, ସଞ୍ଜୟ ଉଠିଯାଇ କେବିନର ଦୁଆର ଦରମୁକୁଳା କରି ସାମ୍ନାର କେବିନକୁ ଆଙ୍ଗୁଳି ଦେଖାଇ କହିଲା, ଏଇ କେବିନରେ ଯେଉଁ ଭଦ୍ରଲୋକ ଅଛନ୍ତି, ତୁମେ ଯାଅ ଦେଖିଆସିବ, ତାଙ୍କୁ ଚିହ୍ନିଚ କି ନାହିଁ ।

: ଏଇ ସାମାନ୍ୟ କଥା !

ଲିଲି ମୁହଁରେ ହସର ଢେଉ ଛୁଟାଇ ବାହାରି ଚାଲିଗଲା ଏବଂ ଫେରିଆସି କହିଲା, ମହାପାତ୍ର ସାହେବ । ଆମର ବସ୍‌ଙ୍କର ବନ୍ଧୁ । ବହୁତ ବଡ଼ଲୋକ ।

ହୁଁ, ତାଙ୍କ ସଙ୍ଗରେ ସେ ଝିଅଟି କିଏ ?

ଲିଲି ହୋ ହୋ ହୋଇ ହସିଉଠିଲା । କହିଲା : ଆପଣ ଗୋଟିଏ ନିହାତି ସିଧା ଲୋକ ଦେଖୁଚି । ଏଠାକୁ କାହା ସହିତ କେଉଁ ଝିଅ ଆସେ ସେ ଖବର ନ ରଖିବା ହିଁ ଭଲ । କେବଳ ଆଭିଜାତ୍ୟର ଗୋଟାଏ ଲେଖା ମୋହର ଧିନା ସେମାନଙ୍କ ଦେହରେ ମରାହୋଇଛି, ତା' ନହେଲେ... ଛାଡ଼ନ୍ତୁ । ମୁଁ ଆପଣଙ୍କ ପାଇଁ ଆଉ କ'ଣ କରିପାରେ କୁହନ୍ତୁ । ସତ କହିବାକୁ ଗଲେ ଆପଣଙ୍କ ପରି ସରଳ ଲୋକ ଏସବୁ ସ୍ଥାନକୁ ନ ଆସିବା ହିଁ ଭଲ ।

ସଞ୍ଜୟ ଲିଲିର କଥା ଶୁଣି ଯେପରି ପ୍ରକୃତିସ୍ଥ ହେଲା । ସେ ଆଉ ମୁହୂର୍ତ୍ତେ ସେଇ କାଫେ ଭିତରେ ରହିବା ଉଚିତ ମନେକଲା ନାହିଁ । ବରଂ ଫୁଟପାଥିରେ ଠିଆହୋଇ ସେ ମାଳା ଆଉ ମୋହନକୁ ଅପେକ୍ଷା କରିବ ।

ସଞ୍ଜୟ ଲିଲି ମୁହଁକୁ ଚାହିଁ ଟିକିଏ ହସିଦେଲା । କହିଲା ମୁଁ ଆଜି ଯାଉଛି । କାଲି ହୁଏତ ଆସିବି ।

ନା ନା, ହୁଏତ ନୁହେଁ । ଆପଣ କାଲି ନିଶ୍ଚୟ ଆସିବେ । ପାରନ୍ତି ତ ଆଉ ଟିକିଏ ଡେରିକରି ଆସିବେ ।

ଆଉ ଟିକିଏ ଡେରି, କାହିଁକି ?

ମୋର ଛୁଟି ହୋଇଯିବ । ଆପଣଙ୍କୁ ସଙ୍ଗରେ ନେଇ ବୁଲି ବାହାରିବି । ଆପଣଙ୍କୁ ଏହି ରାତ୍ରିର କଲିକତା ବୁଲେଇ ବୁଲେଇ ଦେଖେଇବି । ଆପଣ ଦେଖିବେ ରାତ୍ରିର ଅନ୍ଧକାର ଭିତରେ ଏ ସହର କିପରି ଜୀବନ୍ୟାସ ପାଏ ।

**

---

ଦୁଇଟି କଳାକଳା ଲାଜୁରା ଆଖି ।

ଗୋଟିଏ ସୁନ୍ଦର ହସିଲା ମୁହଁ ।

ସଞ୍ଜୟ ଦେହରେ ଯେପରି ବିଦ୍ୟୁତ୍‌ପ୍ରବାହ ଖେଳିଯାଉଥିଲା ।

ଟ୍ୟାକ୍‌ସି ଛୁଟିଚାଲିଥିଲା ମେନ୍ ରୋଡ ଉପର ଦେଇ ପବନ ବେଗରେ । ଆଗରେ ଛୁଟିଥିଲା ମୋହନର ଦାମୀ କାର ଖଣ୍ଡିକ । ମାଳା ଓ ମୋହନ ଦୁହିଁଙ୍କ ଛଡ଼ା ଅନ୍ୟ କେହି ନ ଥିଲେ ସେ କାର୍‌ରେ ।

ସବୁଠାରୁ ସଞ୍ଜୟକୁ ଅବାକ୍ କରିଥିଲା, ମାଳାର ସେହି ଛୋଟ ଲେଦର ସୁଟ୍‌କେଶଟି । ହୋଟେଲରୁ ବାହାରିଲା ବେଳେ ମୋହନ ସେଇଟିକୁ ହାତରେ ଧରି ବାହାରିଥିଲା । ତା'ପରେ ସେମାନେ କାର୍‌ରେ ବସି ଛୁଟି ଚାଲିଥିଲେ ।

ଚାଳକ ଆସନରେ ନିଜେ ମୋହନ ବସିଥିଲା ଏବଂ ମୋହନ ପାଖକୁ ବସିଥିଲା ମାଳା ।

ରେଡ ରୋଡ ପାର ହୋଇ ସେମାନଙ୍କ ଗାଡ଼ି ଖିଦିରପୁର ଅଭିମୁଖରେ ମାଡ଼ି ଚାଲିଥିଲା ।

ସଞ୍ଜୟର ଟ୍ୟାକ୍‌ସି ମଧ୍ୟ ଛୁଟିଥିଲା ପଛେପଛେ ।

ଖିଦିରିପୁର ଟ୍ରାମଡିପୋ ପାଖରେ ଗୋଟିଏ ଛୋଟ ଦୋତାଲା କୋଠା ସାମ୍ନାରେ ମୋହନର ଗାଡ଼ି ଅଟକିଲା ।

ମୋହନ ଗାଡ଼ିରୁ ଓହ୍ଲାଇ ସେଇ କୋଠା ଦୁଆରେ କରାଘାତ କଲା ।

ଦରଜା ଖୋଲିଗଲା ଏବଂ ମୋହନ ଓ ମାଳା ଭିତରେ ପ୍ରବେଶ କଲେ ।

ସଞ୍ଜୟ କୋଠାଟାକୁ ଚାହିଁ ବାହାରେ ଠିଆହୋଇ ରହିଲା । ଦୋତାଲା ଉପରେ ସାନସାନ ପିଲାମାନଙ୍କର ଗହଳଚହଳ ଶୁଭୁଥିଲା ।

ସଞ୍ଜୟ ଫୁଟ୍‌ପାଥ ଉପରେ ପଦଚାରଣ କରୁଥିଲା ।

କିଛି ସମୟ ପରେ ପୁଣି ଘରର ଦରଜା ଖୋଲିଲା ଏବଂ ମୋହନ ଏକା ବାହାରି ଆସି ଯାଇ ଗାଡ଼ିରେ ବସିଲା ।

ସଞ୍ଜୟ ଠିକ୍ ସେତିକିବେଳେ ମୋହନ ସାମ୍ନାରେ ଆସି ଠିଆ ହେଲା ଏବଂ ନମସ୍କାର କଲା ।

ମୋହନ ପ୍ରତିନମସ୍କାର ଜଣାଇ କହିଲା ଆପଣଙ୍କୁ ମୁଁ କେଉଁଠି ଦେଖିଥିଲା ପରି ମନେହେଉଛି ।

ହଁ ଜର୍ଜ ଗୋମେସଙ୍କ ସହିତ ମୋତେ ଦେଖିଥିଲେ ।

ଇଉ ଆର୍ ରାଇଟ୍, କହି ମୋହନ ଗାଡ଼ିରେ ଷ୍ଟାର୍ଟ ଦେଲା ।

ଆପଣ କ'ଣ ପାର୍କଷ୍ଟ୍ରୀଟ୍ ଆଡ଼େ ଯିବେ ? ହଠାତ୍ ସଞ୍ଜୟ ପଚାରିଲା ।

ମୋହନ ଥରେ ସଞ୍ଜୟ ମୁହଁକୁ ଚାହିଁଲା ଏବଂ ଗାଡ଼ିର ଦରଜା ଖୋଲିଦେଇ କହିଲା ଆସନ୍ତୁ ।

ସଞ୍ଜୟ ଆଗ୍ରହରେ ଗାଡ଼ିକୁ ଉଠିଗଲା ।

ମୋହନ ଗାଡ଼ି ଛୁଟେଇଦେଲା ।

ଦୁହିଁଙ୍କ ମଧ୍ୟରେ ଦୀର୍ଘ ନୀରବତା ।

ତା'ପରେ ପ୍ରଥମ ମୋହନ ଆରମ୍ଭ କଲା ଆପଣ ଏଠାରେ କ'ଣ କରନ୍ତି ?

ବେକାର । ଜର୍ଜ ଗୋମେସଙ୍କ ଠାରୁ ଆପଣଙ୍କ ସୁଖ୍ୟାତି ଶୁଣିଛି । ଯଦି ସମ୍ଭବ ହୁଏ ମୋର କୌଣସି ଗୋଟାଏ ବ୍ୟବସ୍ଥା କରେଇ ଦେଇପାରିଲେ ଚିରଋଣୀ ରହନ୍ତି ।

ମୋହନ ଷ୍ଟିଅରିଂ ଉପରେ ହାତ ପକାଇ ବାହାରକୁ ଚାହିଁଥିଲା ।

ନିରୋଳା ନିର୍ଜନ ପଥ । ଗାଡ଼ିଟା ଆଗକୁ ଆଗକୁ ମାଡ଼ିଚାଲିଥିଲା ।

ମୋହନ ଆଉଥରେ ବୁଲି ଚାହିଁଲା ସଞ୍ଜୟ ଆଡ଼େ ।

ବ୍ୟବସ୍ଥା ମୁଁ କରିଦେଇପାରେ । କିନ୍ତୁ ତୁମେ କ'ଣ କରିପାରିବ ?

: ହଁ ପାରିବି ସାର୍ ! ଏପରି କୌଣସି କାର୍ଯ୍ୟ ନାହିଁ ଯାହା ମୁଁ କରିବାକୁ ଅସମର୍ଥ ହେବି । ଦରକାର ପଡ଼ିଲେ ଜୀବନ ପର୍ଯ୍ୟନ୍ତ ଆପଣଙ୍କ ପାଇଁ ଦେବାକୁ ପଛେଇବି ନାହିଁ ।

ମୋହନ ମନେମନେ ଟିକିଏ ହସିଲା ।

ତା'ପରେ ଗାଡ଼ିର ଗତି ଆରେଧୀରେ କମିଆସିଲା ଏବଂ ଗାଡ଼ିକୁ ସେ ବିପରୀତ ଆଡ଼କୁ ବୁଲେଇ କହିଲା କିନ୍ତୁ ଗୋଟାଏ ସର୍ତ୍ତ । ଯଦି ରାଜି ଥାଅ ମୁଁ ତୁମକୁ ଏଇକ୍ଷିଣା ସୁଯୋଗ ଦେଇପାରେ ।

ସଞ୍ଜୟ ପ୍ରଶ୍ନବାଚୀ ନୟନରେ ଅନାଇ ରହିଲା ।

ସର୍ତ୍ତ ହେଉଛି, ତୁମକୁ ଯାହା କରିବାକୁ କୁହାଯିବ ତୁମେ ବିନା ପ୍ରତିବାଦରେ ସମସ୍ତ ପାଳନ କରିଯିବ ଏବଂ ସେ କାର୍ଯ୍ୟ ସମ୍ବନ୍ଧରେ ଅନ୍ୟ କୌଣସିଠାରେ କିଛି କହିପାରିବ ନାହିଁ ।

ମୁଁ ଏକମାତ ସାର୍ । ସଞ୍ଜୟ ଉତ୍ତର ଦେଲା ।

ତୁମେ ବରଂ ଆଉ ଥରେ ଭାବି ଦେଖ । କାରଣ ଏ କାର୍ଯ୍ୟ ଅତ୍ୟନ୍ତ କଠିନ । ମୁଁ କେବଳ ଏସବୁ କ୍ଷେତ୍ରରେ ଉତ୍ସାହୀ ଯୁବକମାନଙ୍କୁ ସୁଯୋଗ ଦେଇଥାଏ ।

ମୁଁ ରାଜି ସାର୍ !

: ନା, ତୁମେ ଆହୁରି ଗଭୀର ଭାବରେ ଚିନ୍ତା କରି ଦେଖ । ତୁମକୁ ହୁଏତ ଖୁନ୍ କରିବାକୁ ପଡ଼ିପାରେ ।

ଖୁନ୍ ! ସଞ୍ଜୟର ସ୍ୱର ସାମାନ୍ୟ ଥରିଉଠିଲା । ତା'ପରେ ନିଜକୁ ସେ ସମ୍ଭାଳି ନେଇ କହିଲା, ସବୁ କାର୍ଯ୍ୟ ପାଇଁ ମୁଁ ପ୍ରସ୍ତୁତ ଅଛି ସାର୍ ।

: ହୁଏତ ତୁମର ସ୍ୱାଧୀନତା ଅପହରଣ କରାଯାଇପାରେ । ମୋହନ ସେହିପରି ଗମ୍ଭୀର ସ୍ୱରରେ କହିଲା ।

ତା' ମାନେ ?

ମାନେ ଆଉ କ'ଣ ? ତମ ଅନିଚ୍ଛାରେ ହୁଏତ କିଛି କାର୍ଯ୍ୟ କରିବାକୁ ପଡ଼ିପାରେ ।

ମୁଁ ରାଜି ଅଛି ସାର୍ ।

ଗାଡ଼ି ଛୁଟି ଚାଲିଥିଲା ରାସବିହାରୀ ଏଭିନିଉ ଆଡ଼େ । ମେନ୍ ରୋଡରୁ ସାମାନ୍ୟ ଛାଡ଼ି ଗୋଟିଏ ସରୁରାସ୍ତାରେ ଯାଇ ଗାଡ଼ି ଅଟକିଲା । ଗୋଟାଏ ତିନିତାଲା କୋଠା । ଗହଳଚହଳ ଯଥେଷ୍ଟ । ବାହାରେ ଗୋଟିଏ ଛୋଟ ସାଇନ୍ ବୋର୍ଡ, 'ଫାଉଣ୍ଟେନ କ୍ଲବ ।'

ମୋହନ ଗାଡ଼ିରୁ ଓହ୍ଲେଇ କହିଲା ତୁମେ ଏଇଠି ଅପେକ୍ଷା କର । କେହି ତୁମକୁ ଡାକିବାକୁ ଆସିଲେ, ତା' ସଙ୍ଗରେ ଯିବ ।

ସଞ୍ଜୟ ଗାଡ଼ିରେ ବସିରହିଲା ।

ମନ ଭିତରେ ତା'ର ଯଥେଷ୍ଟ ଭୀତିର ସଞ୍ଚାର ହୋଇଥିଲା । କ'ଣ ସେ କରିବାକୁ ଯାଉଛି ? ମୋହନର କଥାବାର୍ତ୍ତା ଓ ହାବଭାବରୁ ଯାହା ମନେହେଲା, ଲୋକଟି ମୋଟେ ସୁବିଧାର ନୁହେଁ । ତେଣୁ ତା' ସହିତ ସାଙ୍ଗହୋଇ...

ଇଉନିଫର୍ମ ପରିହିତ ଗୋଟିଏ ଲୋକ ଆସି ଗାଡ଼ିର ଦରଜା ଖୋଲି ଠିଆହେଲା

ଏବଂ ଗୋଟାଏ ଲମ୍ବା ସଲାମ ପକାଇ କହିଲା ଆଇଏ, ସାବ୍ ଆପକୋ ସଲାମ ଦିଏ ହେଁ ।

ସଞ୍ଜୟର ଆଉ ମନ ସ୍ଥିର କରିବାକୁ ସମୟ ନ ଥିଲା । ସଙ୍ଗେସଙ୍ଗେ ସେ ସିଟ୍‌ରୁ ଉଠି ବାହାରକୁ ଗୋଡ଼ ବଢ଼ାଇଲା ।

ଫାଉଣ୍ଟେନ କ୍ଲବରେ ବହୁ ନର-ନାରୀଙ୍କ ସମାଗମ ଦେଖାଯାଉଥିଲା । ଖିଆପିଆ, ମଉଜ ମଜଲିସ୍, ଗୋଳଚହଳ ପୂରି ରହିଥିଲା । ସଞ୍ଜୟ ଯେଉଁ ବାଟଦେଇ ଯାଉଥିଲା, ଦେଖୁଥିଲା ଦୁଇ ପାଖଯାକ ଅଫୁରନ୍ତ ଆନନ୍ଦର ଢେଉ ମାଡ଼ି ଚାଲିଛି ।

ଶେଷରେ ସଞ୍ଜୟ ଯାଇ ଯେଉଁଠି ଠିଆହେଲା, ସେ ସ୍ଥାନଟା ଏକାନ୍ତ ନିରୋଳା । ଅପେକ୍ଷାକୃତ ଅନ୍ଧକାର ମଧ୍ୟ । ଲୋକଟା ସଞ୍ଜୟକୁ ଗୋଟାଏ ଚେଆରରେ ବସିବାକୁ କହି ଦରଜା ଖୋଲି ଭିତରକୁ ଚାଲିଗଲା ।

କିଛି ସମୟ ପରେ ଜଣେ ସୁନ୍ଦରୀ ତରୁଣୀ ଆସି ସଞ୍ଜୟ ସାମନାରେ ଗୋଟିଏ ଚେଆର ଉପରେ ବସିଲା ଏବଂ ସଞ୍ଜୟ ଆଡ଼େ ମିଟ୍ ମିଟ୍ କରି କିଛି ସମୟ ଅନାଇ ରହିଲା ।

ସଞ୍ଜୟର ତରୁଣୀଟି ଆଡ଼େ ଚାହିଁବାର ଅଶେଷ ଆଗ୍ରହ ଥିଲେ ମଧ୍ୟ, ସେ ଆଗ୍ରହକୁ ଦମନ କରି ରଖିଥିଲା ।

ତରୁଣୀଟି ଆରମ୍ଭ କଲା : ଆପଣ ଏଠାରେ କାର୍ଯ୍ୟ କରିବାକୁ ରାଜି ଅଛନ୍ତି ?

ହଁ ।

: ଏଠାକାର ନିୟମ ହେଉଛି, ଆପଣଙ୍କୁ ଯାହା କରିବାକୁ ନିର୍ଦ୍ଦେଶ ଦିଆଯିବ, ଆପଣ ବିନା ପ୍ରତିବାଦରେ ତାହା ପାଳନ କରିବେ ।

: ମୁଁ ଜାଣେ ।

ବେଶ ଭଲ କଥା । ଆଉ ଶୁଣନ୍ତୁ ଆପଣ କାର୍ଯ୍ୟରେ ଯୋଗଦେବା ପରଠାରୁ ଆପଣଙ୍କର ସମସ୍ତ ସ୍ୱାଧୀନତା ଅପହରଣ କରାଯିବ ।

ମାନେ ?

: ମାନେ ଆପଣ ନିଜ ଇଚ୍ଛାରେ ଆଉ କିଛି କରିପାରିବେ ନାହିଁ । ଯାହା କରିବାକୁ ହେବ, ବା ଯେଉଁଆଡ଼େ ଯିବାକୁ ଚାହିଁବେ, ସବୁ ଅନୁମତି ନେଇ କରିବାକୁ ହେବ ।

ଯଦି କେବେ ଅମାନ୍ୟ କରାହୁଏ ?

ତରୁଣୀଟି ମୁହଁରେ ଏକ ଅପୂର୍ବ ହସ ଫୁଟିଉଠିଲା ।

ସେ କହିଲା ସେଥିପାଇଁ ଶାସ୍ତି ଅତି କଠିନ । ଆପଣ କୌଣସି ପ୍ରକାର ଫାଙ୍କି ଦେଇପାରିବେ ନାହିଁ । ହୁଏତ ଦରକାର ପଡ଼ିଲେ ଆପଣଙ୍କର ଜୀବନ ନାଶ କରାଯାଇପାରେ ।

ସଞ୍ଜୟ ନୀରବରେ ବସିଥିଲା ଏବଂ ତରୁଣୀଟି ମୁହଁକୁ ଚାହିଁବାର ସାହସ ହେଉନଥିଲା ।

ଏଥର ଆପଣଙ୍କ ମତାମତ ଜଣାନ୍ତୁ । ତରୁଣୀଟି କହିଲା ।

: ମୁଁ ଆପଣଙ୍କ ପ୍ରସ୍ତାବରେ ଏକମତ । ସଞ୍ଜୟ ଆଗପଛ କିଛି ବିଚାର ନ କରି ହଁ ଭରିଦେଲା ।

ତା'ହେଲେ ଆଜିଠାରୁ ମୁଁ ଆପଣଙ୍କ ନାମ ରେଜିଷ୍ଟ୍ରୀଭୁକ୍ତ କରିଦେଉଛି ।

ହଁ ।

ଆପଣ କିନ୍ତୁ ଆହୁରି ଥରେ ଭଲକରି ଚିନ୍ତା କରି ଦେଖନ୍ତୁ ।

ଦେଖିଛି ।

ବେଶ୍ । ଆଜିଠାରୁ ମନେରଖିବେ ଆପଣଙ୍କ ନାମ ହେଉଛି ରାଜା ।

ମୋ ନାଁ ରାଜା ? ସଞ୍ଜୟ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା ।

ତରୁଣୀଟି ସ୍ମିତ ହସି କହିଲା  ହଁ ଆପଣଙ୍କ ନାମ ରାଜା । ଆଉ ଗୋଟିଏ କଥା ମନେରଖନ୍ତୁ, ଆପଣ ଏହି ଦଳ ସମ୍ବନ୍ଧରେ କୌଣସି କଥା ଜାଣିବାକୁ ବେଶି ଆଗ୍ରହ ପ୍ରକାଶ କରିବେ ନାହିଁ । ଆପଣଙ୍କୁ ଯେତେବେଳେ ଯାହା କରିବାକୁ ନିର୍ଦ୍ଦେଶ ଆସିବ, ଆପଣ ତାହା ଅକ୍ଷରେ ଅକ୍ଷରେ ପାଳନ କରିଯିବେ । ଦଳର ଦଳପତି କିଏ ବା ଆଦେଶପତ୍ର କେଉଁଠୁ ଆସୁଛି, ସେ କଥା ଭୁଲରେ ବି ଜାଣିବାକୁ ଚେଷ୍ଟା କରିବେ ନାହିଁ । ମନେ ରହିଲା ?

ସଞ୍ଜୟ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ଆପଣଙ୍କର ମାସିକ ଦରମା ବର୍ତ୍ତମାନ ପାଇଁ ପଚିଶହଜାର ଟଙ୍କା ଧାର୍ଯ୍ୟ କରାହୋଇଛି ।

ସଞ୍ଜୟର ଦରମା ସମ୍ବନ୍ଧରେ କୌଣସି ପ୍ରକାର ଆଗ୍ରହ ବା ଅନାଗ୍ରହ ନ ଥିଲା । ତେଣୁ ସେ ଚୁପ୍‌ଚାପ୍ ବସିରହି ତରୁଣୀଟି ଆଡ଼େ ଚାହିଁଥିଲା ।

ଆପଣ ଏଥର ଯାଇପାରନ୍ତି । ତରୁଣୀଟି କହିଲା ।

କେଉଁଠାକୁ ? ସଞ୍ଜୟ ପଚାରିଲା ।

ଆପଣଙ୍କ ଇଚ୍ଛା ଯେଉଁଆଡ଼େ ହେଉଛି ।

କିନ୍ତୁ...

କିନ୍ତୁ କରିବାର କିଛି ନାହିଁ ରାଜା । ଏଠାରେ ଚାକିରି କଲେ ମଧ୍ୟ ଆପଣଙ୍କ ଗତି ସବୁବେଳେ ସ୍ୱାଧୀନ । କିନ୍ତୁ ଯେତେବେଳେ କୌଣସି କାର୍ଯ୍ୟର ଆଦେଶ ଆପଣଙ୍କ ଉପରେ ଦିଆଯିବ, ସେତିକିବେଳେ ଆପଣ ସଂପୂର୍ଣ୍ଣ ରୂପେ ପରାଧୀନ ହୋଇପଡ଼ିବେ । ଏପରିକି ଆପଣଙ୍କର ଗତିବିଧି ଲକ୍ଷ୍ୟ କରିବା ପାଇଁ ପଛେପଛେ ଲୋକ ରହିବେ । ତା'ପରେ କାର୍ଯ୍ୟ ହାସଲ ହୋଇଗଲେ ପୁଣି ଆପଣ ପୂର୍ବପରି ସ୍ୱାଧୀନ ହୋଇ ଘୂରିବୁଲିବେ ।

ସଞ୍ଜୟ ଉଠି ଠିଆହେଲା ।

ତରୁଣୀଟି ଆଡ଼େ ଚାହିଁବାର ସାହସ ବେ ସଂଗ୍ରହ କରିପାରିଥିଲା ।

ଗୋଟାଏ ପ୍ରଶ୍ନ, ସଞ୍ଜୟ ବିନୀତ ଭାବରେ କହିଲା ।

ହଁ ହଁ ପଚାରି ପାରନ୍ତି ।

ଆପଣଙ୍କ ନାଁଟା ଜାଣିବାରେ କୌଣସି ନିୟମ ଭଙ୍ଗ ହେବ କି ?

ଓଃ ନା ନା ରାଜା ! ଆପଣ ଯେତେଟା କଡ଼ାକଡ଼ି ଭାବୁଛନ୍ତି, ପ୍ରକୃତରେ ଏ ସଂସ୍ଥାର ନିୟମ ସେତେ କଡ଼ା ନୁହେଁ । ଆପଣ ଦେଖିବେ ସପ୍ତାହକ ପରେ ଆପଣ ଅଭ୍ୟସ୍ତ ହୋଇଯାଇଛନ୍ତି । ମୋ' ନାଁ ଜାଣିବାରେ ସଂସ୍ଥାର ନିୟମର କୌଣସି ବିରୁଦ୍ଧାଚରଣ ହେବନାହିଁ । ମୋତେ ମିସ୍ ଫ୍ଲୋରା ବୋଲି ଡାକନ୍ତି ।

ଏଇଟା କ'ଣ ଆପଣଙ୍କ ଅସଲ ନାମ ?

ମିସ୍ ଫ୍ଲୋରା ହସିଉଠିଲା : ତୁମେ ନିର୍ବୋଧ ରାଜା ! ଏଠାରେ ଅସଲ ନାମରେ କୌଣସି ମୂଲ୍ୟ ନାହିଁ । ହଁ କ୍ଷମା କରିବ ରାଜା ! ଆମ ଦଳରେ ସାମିଲ୍ ହୋଇଯିବା ପରେ ଆଉ 'ଆପଣ' ସମ୍ବୋଧନଟା ରୁହେ ନାହିଁ । କାରଣ 'ଆପଣ' ଶବ୍ଦଟା ନିଜ ନିଜ ଭିତରେ ଗୋଟାଏ ବଡ଼ ଛୋଟର ଗଣ୍ଡି ସୃଷ୍ଟି କରେ ବୋଲି ଆମ ଦଳପତିଙ୍କର ଧାରଣା । ତେଣୁ ତୁମେ ମୋତେ ଏଣିକି ତୁମେ ସମ୍ବୋଧନ କରିବ ।

ବେଶ୍ ! ମୁଁ ତା'ହେଲେ ଆଜି ଆସୁଛି ।

: ଶୁଭରାତ୍ରୀ ।

ମିସ୍ ଫ୍ଲୋରା ଉଠି ଠିଆ ହେଲା ।

ସଞ୍ଜୟ ଶୁଭରାତ୍ରି କହି ଆଗକୁ ପାଦ ବଢ଼ାଇଛି କି ନାହିଁ, ପଛରୁ ପୁଣି ଫ୍ଲୋରାର ଗଳା ଶୁଣି ଅଟକି ଗଲା ।

ଗୋଟାଏ କଥା ଭୁଲିଯାଇଛି ରାଜା । ତୁମକୁ ପ୍ରତିଦିନ ଠିକ୍ ରାତି ନଅଟା ବେଳେ ଏଠାକୁ ଥରେ ଆସିବାକୁ ହେବ । ମାନେ ତୁମେ ଏଇକ୍ଷଣି ଯେଉଁ ଚେଆରରେ ବସି ମୋ' ସହିତ ଗଳ୍ପ କରୁଥିଲ, ସେହି ଚେଆରରେ ଠିକ୍ ଦଶ ମିନିଟ୍ ବସି ରହି ତା'ପରେ ଉଠି ଚାଲିଯିବାକୁ ହେବ । ଏଇ ଦଶ ମିନିଟ୍ ତମର ହାଜିରା ବୋଲି ଧରିନେଇପାର । ଆଉ ଯଦି କୌଣସି ନିର୍ଦ୍ଦେଶ ଥାଏ, ତା'ହେଲେ ସେତିକିବେଳେ ତୁମକୁ ଜଣାଇ ଦିଆହେବ । ତୁମେ ସେଇ ନିର୍ଦ୍ଦେଶ ଅନୁସାରେ କାମ କରିବ ।

ଧନ୍ୟବାଦ ।

ତୁମର ଟଙ୍କାପଇସା କିଛି ଦରକାର ଅଛି ।

କି ଟଙ୍କା ?

ଯଦି ଅସୁବିଧାରେ ପଡ଼ିଥାଅ, ତେବେ ଆଡଭାନ୍ସ ନେଇପାର । ଆମ ସଂସ୍ଥାରେ ସେପରି ସୁବିଧା ମଧ୍ୟ ଅଛି । ତୁମେ ଦେଖିବ ଭଲ ଭାବରେ ରହିବା ପାଇଁ ମନୁଷ୍ୟର ଯେତେ ପ୍ରକାର ସୁବିଧା ସୁଯୋଗ ଦରକାର ସବୁ ଆମ ସଂସ୍ଥା ବ୍ୟବସ୍ଥା କରିଛି । ତୁମର କୌଣସି ଅସୁବିଧା ହେବନାହିଁ । ହଁ ଭଲ କଥା, ମନେପଡ଼ିଲା, ଆଜି ଏଠାରେ ଗୋଟାଏ ଭେରାଇଟି ସୋ'ର ପ୍ରୋଗ୍ରାମ ଅଛି, କେବଳ ସଦସ୍ୟମାନଙ୍କ

ପାଇଁ । ତମେ ସେଥିରେ ଯୋଗ ଦେଇପାର । ଅବଶ୍ୟ ରାତି ବାରଟାରେ ଆରମ୍ଭ ହେବ ।

ସଞ୍ଜୟ ମନରେ ହଠାତ୍ କିପରି ଏକ ପରିବର୍ତ୍ତନ ଦେଖାଦେଲା । ସେ ଉତ୍ସାହିତ ହେଲାପରି କହିଲା  ସତ କହୁଚ, ମୁଁ ଯୋଗଦେବାର ଅଧିକାର ପାଇବି ମିସ୍ ଫ୍ଲୋରା ?

: ନାଚ ଗୀତ ଉପରେ ତ ତମର ପ୍ରବଳ ଝୁଙ୍କ ଦେଖୁଛି ରାଜା । ମୁଁ ବି ତମରି ପରି ନାଚଗୀତର ନାଁ ଶୁଣିଲେ ଭୋକଶୋଷ ଭୁଲିଯାଏ । ତମେ ଆସ, ତା'ହେଲେ ସାଙ୍ଗହୋଇ ଦେଖିବା ।

: ମୋର ପରମ ସୌଭାଗ୍ୟ ମିସ୍ ଫ୍ଲୋରା !

ମିସ୍ ଫ୍ଲୋରା ମୁହଁ ଚିପି ହସୁଥିଲା ।

ମୁଁ ତେବେ ଆସୁଛି ।

ନା, ଅପେକ୍ଷା କର । ତମେ ନାଚଗୀତ ଦେଖିବାକୁ ହେଲେ ଗୋଟାଏ ପ୍ରବେଶପତ୍ରର ପ୍ରୟୋଜନ ହେବ । ମୁଁ ଆଣିଦେଉଛି ।

ମିସ୍ ଫ୍ଲୋରା ଗୋଟାଏ ସୁଇଂଡୋର ଠେଲି ଭିତରକୁ ଚାଲିଗଲା ।

ସଞ୍ଜୟ ଉଙ୍କିମାରି ଭିତରକୁ ଚାହିଁଲା । କିନ୍ତୁ ନିବିଡ଼ ଅନ୍ଧକାର । ତେଣୁ ବିଶେଷ କୌଣସି ଆଗ୍ରହ ପ୍ରକାଶ ନ କରି ସେ ନୀରବରେ ବସିରହିଲା ।

ମିସ୍ ଫ୍ଲୋରା ପ୍ରାୟ ପନ୍ଦର ମିନିଟ ପରେ ଫେରିଲା । କିନ୍ତୁ ଏ କ'ଣ, ବେଶ ପୋଷାକରେ ଯେ ସଂପୂର୍ଣ୍ଣ ପରିବର୍ତ୍ତନ ହୋଇଯାଇଛି । ଖାଲି ସେତିକି ନୁହେଁ, ମିସ୍ ଫ୍ଲୋରାକୁ ଏପରି ପୋଷାକରେ ମନେହେଉଛି, ଯେପରି ତା'ର ବୟସ ପନ୍ଦର ମିନିଟ ମଧ୍ୟରେ ଦଶବାର ବର୍ଷ କମିଯାଇଛି । ମନେହେଉଛି ଦେହରେ ଏଇ ସାମାନ୍ୟ ପୋଷାକ ଯେପରି ତା'ର ସମସ୍ତ ଅବୟବକୁ ଘୋଡ଼େଇ ରଖିବା ପାଇଁ ସମର୍ଥ ହେଉ ନାହିଁ ।

ଫ୍ଲୋରା ମୁହଁରେ ପୂର୍ବ ଅପେକ୍ଷା ସରଳ ହସ ଫୁଟିଥିଲା ।

ସଞ୍ଜୟ ଲାଜଲାଜ ହୋଇ ଫ୍ଲୋରା ଆଡ଼େ ଚାହୁଁଥିଲା । କାରଣ ଏପରି ଅର୍ଦ୍ଧଉଲଗ୍ନବେଶୀ କୌଣସି ଝିଅ ସହିତ ସେ ଆଜିଯାଏ ଏତେ ପାଖାପାଖି ବସି କଥାବାର୍ତ୍ତା କରି ନ ଥିଲା ।

ଫ୍ଲୋରା ସଞ୍ଜୟ ସାମନା ଚେଆର ଉପରେ ବସିପଡ଼ି, ଭ୍ୟାନିଟି ବ୍ୟାଗରୁ ଗୋଟିଏ ରେଶମି କନାର ଗୋଲାପ ଫୁଲ ବାହାରକରି ସଞ୍ଜୟ ଆଡ଼କୁ ବଢ଼ାଇ ଦେଇ କହିଲା : ତମେ ଆଜି ନାଚଗୀତ ଦେଖିଆସିବା ବେଳେ ଏଇଟିକୁ କୋଟ୍ କଲରରେ ଲଗାଇ ଆସିବ । ଖୁବ୍ ସାବଧାନ, ଏଇଟା ଯେପରି ହାତଛଡ଼ା ନ ହୁଏ । କାରଣ ଆଜିର ନୃତ୍ୟଗୀତଟା ଆମର ସଂପୂର୍ଣ୍ଣ ରୂପେ ସୀମିତ କି ନା, ସେଇଥିପାଇଁ ବହୁ ଅଶୋଭନ ଘଟଣା ବି ଅନେକ ସମୟରେ ଘଟିଯାଇଥାଏ । ସେଇଥିପାଇଁ ସଂପୂର୍ଣ୍ଣ ରୂପେ ଏହା ବାହାର ଲୋକ ପାଇଁ ନିଷିଦ୍ଧ ।

ସଞ୍ଜୟ କେବଳ ଫ୍ଲୋରା ଆଡ଼କୁ ଚାହିଁବା ପାଇଁ ଶକ୍ତି ସଞ୍ଚୟ କରୁଥିଲା । ଫ୍ଲୋରାର ସଦ୍ୟବିକଶିତ ଯୌବନର ଆଭା ଯେପରି ବେଶବାସର ଫାଙ୍କଦେଇ ଚହଟି ଉଠୁଥିଲା । ସଞ୍ଜୟର ଅମାନିଆ ଆଖିଦୁଇଟା ତା'ର କୌଣସି ଶାସନ ନ ମାନି ଫ୍ଲୋରାର ବସନ ଫାଙ୍କେ ଫାଙ୍କେ କ'ଣ ଯେ ଖୋଜି ବୁଲୁଥିଲା, ନିଜେ ସଞ୍ଜୟ ଜାଣିପାରୁ ନଥିଲା ।

ଆଚ୍ଛା ରାଜା, ତୁମେ ବର୍ତ୍ତମାନ କୁଆଡ଼େ ଯିବ ? ଫ୍ଲୋରା ଠିଆହୋଇ ପ୍ରଶ୍ନ କଲା ।

କୁଆଡ଼େ ହେଲେ ଯିବି । କାରଣ ବାରଟା ବାଜିବାକୁ ଆହୁରି ପୂରା ତିନି ଘଣ୍ଟା ବାକି ଅଛି ।

ମୁଁ ମଧ୍ୟ ଯାଉଛି । ମୋର ଡିଉଟି ଶେଷ ହୋଇଛି । ଯଦି ମୋ' ଯିବା ବାଟରେ ତୁମ ଘର ପଡ଼ନ୍ତା, ତା'ହେଲେ ତୁମକୁ ମଝିରେ ଓହ୍ଲେଇ ଦେଇଯାଆନ୍ତି ।

ତମେ କେଉଁଆଡ଼େ ଯିବ ? ସଞ୍ଜୟ ପଚାରିଲା ।

ଟାଲିଗଞ୍ଜ ।

ବ୍ୟାଡ୍‌ଲକ୍, ସଞ୍ଜୟ କହିଲା । ରାଜାର ପଥ ଠିକ୍ ବିପରୀତ ଦିଗରେ ।

ସେଥିରେ କ'ଣ ଅଛି ! ଆରେ ଆସନା ! ମୁଁ ତୁମକୁ ଛାଡ଼ିଦେଇ ଆସିବି । କାର୍ ମୋର ନୁହେଁ କି ପେଟ୍ରୋଲ ପାଇଁ ମୁଁ ପଇସା ଦେଉନାହିଁ । ତେଣୁ ସୌହାର୍ଦ୍ଦ୍ୟ ଦୃଷ୍ଟିରୁ...ଫ୍ଲୋରା ମୁହଁ ଚିପି ଚିପି ହସିଲା ।

ସଞ୍ଜୟ ଉଠି ଠିଆହେଲା ।

ଫ୍ଲୋରାର ସାନିଂଧ୍ୟରେ ସେ କିପରି ଅଭିଭୂତ ହୋଇପଡ଼ିଥିଲା । ଆପତ୍ତି କଲା ନାହିଁ । ଫ୍ଲୋରାର ପଛେ ପଛେ ସିଡ଼ିରୁ ଓହ୍ଲେଇ ଗଲା ।

କାର୍‌ରେ ବସିଲା । ଫ୍ଲୋରା ବସିଲାବେଳେ ଅସାବଧାନତା ବଶତଃ ସଞ୍ଜୟ ଉପରେ ନଦି ହୋଇପଡ଼ିଲା । ନିଃସଙ୍କୋଚରେ ପୁଣି ସଜାଡ଼ି ହୋଇ ବସିଲା ଫ୍ଲୋରା । ସଞ୍ଜୟର ଦେହମନରେ କିନ୍ତୁ କିପରି ଏକ ବ୍ୟତିକ୍ରମ ଦେଖାଯାଇଥିଲା । ସେ ଧୀରେ ଧୀରେ ଜଡ଼ ପାଲଟି ଯାଉଥିଲା ।

ତା'ପରେ ରାଜା କୁହ ଏଥର ।

କ'ଣ କହିବି ?

ଗୋଟାଏ କଥା ମନେ ରଖ ରାଜା. ତମେ ବର୍ତ୍ତମାନ ସଂପୂର୍ଣ୍ଣ ରୂପେ ସ୍ୱାଧୀନ, ମୁଁ ମଧ୍ୟ । କାରଣ ମୋ' ଉପରେ କୌଣସି କାମର ଦାୟିତ୍ୱ ନାହିଁ ।

ତା'ହେଲେ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେଇପାରିବ ? ସଞ୍ଜୟ କହିଲା ।

ପ୍ରଶ୍ନଟା ଶୁଣେ ?

ମୋହନ, ତମ ସଂସ୍ଥାରେ ମୋହନର ରୋଲ୍ କ'ଣ ?

ଭୁଲ କରନି ରାଜା ! ସଂସ୍ଥା ସମ୍ବନ୍ଧରେ କୌଣସି କଥାବାର୍ତ୍ତା ସବୁବେଳେ ବେଆଇନୀ । ତେଣୁ ମୋହନ ସମ୍ବନ୍ଧରେ କୌଣସି କଥା ଜାଣିବାର ଆଗ୍ରହ ପ୍ରକାଶ ମଧ୍ୟ ବେଆଇନୀ ।

ସଞ୍ଜୟ ନୀରବ ରହିଲା ।

ଆଜି ଆସୁଛ ରାଜା ? ଫ୍ଲୋରା ପଚାରିଲା ।

ଚେଷ୍ଟା କରିବି । ସଞ୍ଜୟ ଉତ୍ତର ଦେଲା ।

ନା ନା, ଚେଷ୍ଟା ଫେଷ୍ଟା ନୁହେଁ, ନିଶ୍ଚୟ ଆସିବ । ମୁଁ ତୁମକୁ ଅପେକ୍ଷା କରିଥିବି ।

ସଞ୍ଜୟ ନୀରବ ରହିଲା । କାର୍ ଚୌରଙ୍ଗୀ ବକ୍ଷରେ ଛୁଟି ଚାଲିଥିଲା । ଫ୍ଲୋରା ରହିରହି ସଞ୍ଜୟର ବିଷଣ୍ଣ ମୁଖମଣ୍ଡଳ ଆଡ଼େ ଚାହୁଁଥିଲା ।

ଏକ ସମୟରେ ସଞ୍ଜୟ କପାଳରେ ଫ୍ଲୋରା ତା'ର ଚମ୍ପକ ଆଙ୍ଗୁଳି ଚାଳି କହିଲା ଆଚ୍ଛା ରାଜା, ମୁଁ ତୁମକୁ ଗୋଟାଏ କଥା ପଚାରିପାରେ ?

ରାଜା ଉତ୍ସାହିତ ହୋଇ ଉଠିବସିଲା । କହିଲା : ଗୋଟାଏ କାହିଁକି ? ଅନେକ ପଚାର । ମୋତେ ଉତ୍ତର ନ ଦେବାପାଇଁ କିଛି ବାଧ୍ୟବାଧ୍ୟକତା ନାହିଁ କିମ୍ବା କେହି ମୋ' ବେକ କାଟିବାକୁ ଖଣ୍ଡାଧରି ଜଗିବସି ନାହିଁ ।

ଫ୍ଲୋରା ସେହିପରି ଶାନ୍ତ ସ୍ୱରରେ କହିଲା : ଆଚ୍ଛା ରାଜା, ସତ କହିଲ ତମେ କିଏ ?

ସଞ୍ଜୟ ହଠାତ୍ କେମିତି କାହିଁକି ଚମକି ଉଠିଲା, କହିଲା : ମୁଁ କିଏ ମାନେ ? ମୁଁ, ମୁଁ । ସଞ୍ଜୟ ଚଉଧୁରୀ ।

ଫ୍ଲୋରା ହସିଲା । କହିଲା : ତମେ ସଞ୍ଜୟ ଚଉଧୁରୀ ନୁହଁ । ରାଜା ଚଉଧୁରୀ । ସେ କଥା ମୁଁ କହୁନାହିଁ । ମୁଁ ତମୁକୁ ଦେଖିଲା ବେଳୁ କେବଳ ଗୋଟିଏ କଥା ଭାବୁଛି ।

ଫ୍ଲୋରା ନୀରବ ହୋଇଗଲା ।

କ'ଣ ଭାବୁଛ ? ମୋ' ସମ୍ବନ୍ଧରେ କିଛି ?

: ହଁ ତମରି କଥା । ମୁଁ ଭାବୁଛି ତମେ ଯିଏ ହୁଅ ପଛେ, ତମେ ଏ ଲାଇନ୍‌ର ଲୋକ ନୁହଁ । ଏତେ ସରଳ, ଏତେ ଉଜ୍ଜ୍ୱଳ ମୁଖ ଏ ଲାଇନ୍‌ରେ ମୁଁ ଦେଖିନାହିଁ ।

କୋଉ ଲାଇନ୍ କଥା ତମେ କହୁଚ ଫ୍ଲୋରା ।

ତମେ ବୁଝିବ ନାହିଁ ।

ଫ୍ଲୋରା ଆଉଟିକେ ସଞ୍ଜୟର ପାଖକୁ ଲାଗି ବସିଲା ।

ସଞ୍ଜୟ ଆଉ ଟିକେ ଦୂରକୁ ଘୁଞ୍ଚିଗଲା ।

କିଛି ସମୟର ନୀରବତା ପରେ ପୁଣି ଫ୍ଲୋରା ତୁଣ୍ଡ ଖୋଲିଲା, ତମେ ବିଶ୍ୱାସ କର ରାଜା, ମୋତେ ଏ ଜୀବନ କିନ୍ତୁ ଆଦୌ ଭଲ ଲାଗୁନାହିଁ । ମୁଁ ଚାହିଁଥିଲି ଗୋଟାଏ ସରଳ ସୁନ୍ଦର ଛୋଟ ଜୀବନ । କିନ୍ତୁ...

ବାଧା କିଏ ଦେଲା ? ସଞ୍ଜୟ ପଚାରିଲା ।

: ବାଧା ? ଫ୍ଲୋରା ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗକରି ମୁହୂର୍ତ୍ତେ ଚୁପ୍ ରହିଲା । ତା'ପରେ ଧୀରେଧୀରେ କହିଲା, ମୁଁ ଜାଣି ନ ଥିଲି ମୋର ଶେଷ ପରିଣତି ଏପରି ହେବ ବୋଲି ।

କ'ଣ ହେଲା ! ତମେ ତ ସୁଖରେ ଅଛ । ଜୀବନକୁ ଉପଭୋଗ କରି ଉଡ଼ିବୁଲୁଚ । ସେତେବେଳେ ତ ମୋତେ ଜୀବନ ତତ୍ତ୍ୱ ଶୁଣାଉଥିଲ ।

: ନ ଶୁଣାଇ ବାଟ ନାହିଁ ରାଜା । ମୋର ତମୁକୁ ଦେଖିଲାବେଳୁ ମନେହେଉଛି ତମୁକୁ ଅବାଟରେ ଚାଲିବାକୁ ମୁଁ ଦେବି ନାହିଁ । ତମେ ଫେରିଯାଅ ରାଜା ।

ଫ୍ଲୋରାର ସ୍ୱର କରୁଣ ଶୁଣା ଯାଉଥିଲା ।

କ'ଣ କହୁଚ ତମେ ? ମୋତେ ତୁମେ ଫେରାଇ ଦେବାକୁ ଚାହଁ ? କିନ୍ତୁ ଫ୍ଲୋରା, ମୋର ସେଇ ଦୁଇଟି କଳାକଳା ଲାଜୁରା ଆଖିର ଆବସ୍ଥା କ'ଣ ହେବ ? ସଞ୍ଜୟ ଗୋଟାଏ ଉଚ୍ଛ୍ୱାସରେ କଥାତକ କହିପକାଇ ପୁଣି ସ୍ଥିର ହୋଇଗଲା ।

ଦୁଇଟି କଳାକଳା ଲାଜୁରା ଆଖି ? କାହା କଥା ତମେ କହୁଚ ରାଜା ?

ରାଜା ଧରା ପଡ଼ିଯାଇଥିଲା । ଏଥର ସେ କଥାର ମୋଡ଼ ବଦଳାଇବାକୁ ଯାଇ ହସିଉଠିଲା ଖୁବ୍ ଜୋର୍‌ରେ । ଫ୍ଲୋରାର ବାଁ ହାତଟା ନିଜର ଛାତି ଉପରକୁ ଟାଣି ନେଉ ନେଉ କହିଲା  ଆଚ୍ଛା କୁହ ତ ଫ୍ଲୋରା ! ସେଇ କଳାକଳା ଲାଜୁରା ଆଖି ଦୁଇଟି କାହାର ?

ଫ୍ଲୋରା କହିଲା  ମୋତେ କିନ୍ତୁ ପ୍ରଥମ ଦର୍ଶନରେ ଏତେ ଭଲପାଇ ବସିବା ଭଲ ନୁହେଁ ରାଜା । ମୁଁ ଆଉ ପ୍ରେମିକା-ବଧୂ ହେବାର ଗୌରବ କୌଣସି ଦିନ ଅର୍ଜନ କରିପାରିବି ନାହିଁ । ତମେ କିନ୍ତୁ ଏବେ ବି ପବିତ୍ର, ସୁନ୍ଦର ହୋଇରହିଛ । ରାଜା ତମେ ଫେରିଯାଅ । ତମ ମନର ଆଶା, ଆକାଂକ୍ଷା ସବୁ ଏଠାରେ ମଉଳି ଝରିପଡ଼ିବ । ତମେ କୀଟଦ୍ରଷ୍ଟ ହେବ । ଅକାଳରେ ତମର...

ହଠାତ୍ ଖୁବ୍ ଜୋର୍‌ରେ ବ୍ରେକ୍ ଚାପିଧରିଲା ଫ୍ଲୋରା । ନ ହେଲେ ଗୋଟାଏ ଗାଡ଼ି ସଙ୍ଗରେ ଧକ୍‌କା ଲାଗିଯାଇ ଥାଆନ୍ତା ତାଙ୍କ ଗାଡ଼ିଟାର ।

ସଞ୍ଜୟ ବୁଝିପାରିଥିଲା ଫ୍ଲୋରା ଖୁବ୍ ଅନ୍ୟମନସ୍କ ହୋଇପଡ଼ିଚି । ସେ ବୁଝିପାରିଥିଲା ଫ୍ଲୋରାର ଦିନେ ଗୋଟିଏ ସରଳ କୋମଳ ହୃଦୟ ଥିଲା । ଏବେ ସୁଯୋଗ ପାଇଲେ ବେଳେବେଳେ ସେଇ ସରଳତା ଆଉ କୋମଳତା ଚେଇଁଉଠେ । ହୁଏତ ଫ୍ଲୋରା ତା' ଉଦ୍ଦେଶ୍ୟ ସାଧନରେ ସହାୟ ହୋଇପାରିବ । ସଞ୍ଜୟ କିପରି

କରୁଣ ଆଖିରେ ଚାହିଁଥିଲା । ଫ୍ଲୋରା କିନ୍ତୁ ଲଜ୍ଜିତ ହୋଇପଡ଼ିଥିଲା । ସେ ଯେ ଅତ୍ୟନ୍ତ ଅନ୍ୟମନସ୍କ ହୋଇଉଠିଛି, ସେ ତାହା ବୁଝିପାରି ସଂଗେସଂଗେ ପ୍ରସଙ୍ଗ ବଦଳାଇ ଥିଲା ।

: ସତ କହିଲ ରାଜା ! ମୋତେ ତୁମକୁ କିପରି ଲାଗୁଛି ? ମୁଁ ଗୋଟିଏ ଖୁବ୍ ଖରାପ ଝିଅ, ନା ରାଜା ?

ତମେ କେବେ ଖରାପ ନ ଥିଲ ଫ୍ଲୋରା । ଆଜି ବି ଖରାପ ହୋଇନାହିଁ । ମୋ' ଆଖିରେ କୌଣସି ଖରାପ ମଣିଷ ମୁଁ ଆଜିଯାଏ ଦେଖିନାହିଁ । ସଞ୍ଜୟ କହିଲା ।

: ରାଜା, ତମେ ପାର୍କଷ୍ଟ୍ରୀଟ୍‌ରେ ଓହ୍ଲେଇବ ତ ! ଏଇ ତ ପାର୍କଷ୍ଟ୍ରୀଟ୍ । ରାତିରେ ଆସୁଛ କିନ୍ତୁ !

ଫ୍ଲୋରା ସଞ୍ଜୟକୁ ଓହ୍ଲାଇ ଦେଇ ଚାଲିଯାଇଥିଲା ।

**

---

ସଞ୍ଜୟ ସେଦିନ ଠିକ୍ ରାତି ବାରଟାବେଳେ ଫାଉଣ୍ଟେନ୍ କ୍ଲବରେ ଉପସ୍ଥିତ ହୋଇଥିଲା ।

ଯେଉଁ ଆଭ୍ୟନ୍ତରୀଣ କକ୍ଷଟିରେ ନୃତ୍ୟଗୀତର ଆୟୋଜନ ହୋଇଥିଲା, ସଞ୍ଜୟକୁ ସେଠାକୁ ଜଣେ ଲୋକ ସଙ୍ଗରେ ନେଇ ଛାଡ଼ିଆସିଲା ।

କକ୍ଷଟିର ଦୁଆରେ ଦୁଇଜଣ ପ୍ରହରୀ ଠିଆ ହୋଇଥିଲେ । ସଞ୍ଜୟକୁ ସେମାନେ ଭିତରକୁ ପ୍ରବେଶାଧିକାର ଦେଉ ନ ଥିଲେ ।

ସଞ୍ଜୟର ମନେପଡ଼ିଲା ଫ୍ଲୋରା ଦେଇଥିବା ରେଶମୀ କନାର ଗୋଲାପ ଫୁଲ କଥା । ସେଇଟିକୁ କୋଟ୍ କଲରରେ ଲଗେଇବାକୁ ସେ ଭୁଲି ଯାଇଥିଲା । ଯେଉଁ ଦୁଇଜଣ ତା'ର ଗତିରୋଧ କରିଥିଲେ, ସେମାନଙ୍କୁ ରେଶମୀ ଗୋଲାପ ଫୁଲଟି କାଢ଼ି ସଞ୍ଜୟ ଦେଖାଇଲା ।

ଭିତରେ କିନ୍ତୁ କିଟିମିଟିଆ ଅନ୍ଧକାର ।

କେବଳ ଷ୍ଟେଜ୍ ଉପରେ ସ୍ୱଚ୍ଛ ଆଲୋକ ଦିଶୁଥିଲା । ବୋଧହୁଏ ସୋ' ଆରମ୍ଭ ହେବାକୁ ଯାଉଥିଲା ।

: ତୁମେ ଆସିଛ ରାଜା ! ମୁଁ କିନ୍ତୁ ଆଶା ହରେଇଥିଲି, ଚାଲିଆସ ହାତଧରି ।

ଅନ୍ଧକାରରେ ସଞ୍ଜୟ ଫ୍ଲୋରାର ସ୍ୱର ଶୁଣିପାରିଲା ଏବଂ ତା' ହାତ ଫ୍ଲୋରା ଧରିଥିବାର ସେ ଅନୁଭବ କଲା ।

ସଞ୍ଜୟ ଫ୍ଲୋରାର ପଛେପଛେ ଆଗେଇ ଚାଲିଥିଲା !

ଫ୍ଲୋରା ସଞ୍ଜୟକୁ ସିଡ଼ିରେ ଚଢ଼େଇ ସେଇ ଅନ୍ଧକାର ଭିତରେ ଉପରକୁ ନେଇ ଯାଉଥିଲା । ଧୀରେଧୀରେ ସଞ୍ଜୟର ଆଖି ଅନ୍ଧକାରକୁ ସହ୍ୟ କରିଆସୁଥିଲା ।

ହଠାତ୍ ଐକତାନର ବାଦନ ଆସି ସଞ୍ଜୟର କର୍ଣ୍ଣକୁହରରେ ପ୍ରବେଶ କଲା ।

ଫ୍ଲୋରା ସେତେବେଳେ ବାଲକୋନି ଉପରେ ଗୋଟିଏ କେବିନ୍‌ରେ ସଞ୍ଜୟକୁ ବସାଇ ନିଜେ ବସୁଥିଲା ।

ଐକତାନ ବାଦନ ପରେ ସମଗ୍ର ହଲ ମଧ୍ୟରେ ଏକ ସ୍ନିଗ୍ଧ ଆଲୋକ ଜଳିଉଠିଲା । କିନ୍ତୁ ସଞ୍ଜୟ ଫ୍ଲୋରା ଛଡ଼ା ଅନ୍ୟ କାହାରିକୁ ଦେଖିପାରୁ ନ ଥିଲା । ଅଦୂରରେ ଗୋଟାଏ ପ୍ରକାଣ୍ଡ ଷ୍ଟେଜ ଏବଂ ନିକଟରେ ହାସ୍ୟମୟୀ ଫ୍ଲୋରା ।

ତମେ ଆଶ୍ଚର୍ଯ୍ୟ ହୁଅ ନାହିଁ ରାଜା । ତମ ମୋ'ପରି ପ୍ରାୟ ଦୁଇଶହରୁ ଅଧିକ ଲୋକ ନୃତ୍ୟଗୀତ ଉପଭୋଗ କରିବା ପାଇଁ ଏହି ଗୃହରେ ଉପସ୍ଥିତ ରହିଛନ୍ତି । କିନ୍ତୁ ତୁମେ ନୂତନ । ତେଣୁ ସମସ୍ତଙ୍କୁ ଦେଖିବାର ସୌଭାଗ୍ୟ ତମର ନାହିଁ । ଏକା ତୁମେ କାହିଁକି, ତୁମପରି ବହୁତ ସଦସ୍ୟ ଅନ୍ୟ ସଦସ୍ୟ ସହିତ ଭେଟିବାର ସୁଯୋଗରୁ ବଞ୍ଚିତ ହୋଇଛନ୍ତି ।

ପୁଣି ଧୀରେଧୀରେ ଆଲୋକ ନିର୍ବାପିତ ହୋଇଆସିଲା ।

: ହେଇ ଦେଖ ଦେଖ ରାଜା ! ଏ ନୃତ୍ୟ ଆମ କ୍ଲବରେ ସଂପୂର୍ଣ୍ଣ ନୂତନ । ଏ ନର୍ତ୍ତକୀ ମଧ୍ୟ ନବାଗତା ।

ସଞ୍ଜୟ ସ୍ତବ୍ଧ ହୋଇ ଅନାଇ ରହିଲା ।

ଦୁଇଟି କଳାକଳା ଲାଜୁରା ଆଖି ।

କିଏ, କିଏ ଏହି ତରୁଣୀ ? ଯଦିଓ ପହରଣର ପ୍ରାଚୁର୍ଯ୍ୟରେ ମେକ୍‌ଅପର ଆବରଣ ତଳେ ଅସଲ ମଣିଷଟିକୁ ଚିହ୍ନିବାର ଉପାୟ ନାହିଁ, ତଥାପି, ତଥାପି...।

ସଞ୍ଜୟ ଟିକିଏ ଚଞ୍ଚଳ ହୋଇଉଠିଲା ।

ନର୍ତ୍ତକୀଟିର ନର୍ତ୍ତନ ଭଙ୍ଗୀରେ କୌଣସି ମାଦକତା ନ ଥିଲା । ତା' ମନରେ ଯେପରି ସୁଖ ନାହିଁ, ପାଦଯୋଡ଼ିକ ଯେପରି ଜଞ୍ଜିରରେ ବନ୍ଧା ହୋଇଛି । କିନ୍ତୁ ଆଖି ଯୋଡ଼ିକ !!

: ହୋପ୍‌ଲେସ୍ ! ଫ୍ଲୋରା ପାଟିକରି ଉଠିଲା । ଅସମ୍ଭବ । ଏହାଦ୍ୱାରା କାର୍ଯ୍ୟ ହାସଲ ଅସମ୍ଭବ ।

କିନ୍ତୁ କେତୋଟି ମୁହୂର୍ତ୍ତ ମାତ୍ର । ତା'ପରେ ନର୍ତ୍ତକୀର ଜଡ଼ତା ଯେପରି ଧୀରେ ଧୀରେ ଉଭେଇ ଗଲା । ପାଦ ତା'ର ସଚଳ ହେଲା । ମୁଦ୍ରା ତା'ର ଜୀବନ୍ୟାସ ପାଇଲା । ଫୁଲରେଣୁପରି ଝରଝର ହୋଇ ଝରିପଡ଼ିଲା ନୃତ୍ୟଛନ୍ଦ । ସେ ଉନ୍ମତ୍ତ, ସେ ପ୍ରମତ୍ତ ।

ଦର୍ଶକମଣ୍ଡଳୀ ସ୍ତବ୍ଧ !

ସମସ୍ତ ଗୁଞ୍ଜରଣ ବନ୍ଦ ହୋଇଗଲା ।

ଫ୍ଲୋରା ମଧ୍ୟ ଚକିତ ଚାହାଣିରେ ଚାହିଁରହିଲା ନର୍ତ୍ତକୀ ଆଡ଼େ ।

ଏକ ସମୟରେ ସଞ୍ଜୟ ହଠାତ୍ ଉଠି ଠିଆ ହୋଇଗଲା ।

ଫ୍ଲୋରା ସଞ୍ଜୟର ହାତ ଧରି ବସାଇଲା ।

କୁଆଡ଼େ ଯାଉଛ ?

ତୁମେ ଏହି ନର୍ତ୍ତକୀକୁ ଚିହ୍ନିଚ ଫ୍ଲୋରା ?

ନା, କିନ୍ତୁ କାହିଁକି ରାଜା ! ସେ କ'ଣ ମୋ' ଠାରୁ ଅଧିକ ସୁନ୍ଦରୀ ?

: ନା, ନା, ଫ୍ଲୋରା । ସେ କଥା ମୁଁ କହୁନାହିଁ । କିନ୍ତୁ ଏହି ଆଖିଦୁଇଟା ସହିତ ମୋର ଖୁବ୍ ନିବିଡ଼ ସମ୍ପର୍କ । ତୁମେ ଟିକିଏ ଗ୍ରୀନ୍ ରୁମ୍‌କୁ ମୋ' ସହିତ ଯାଇପାରିବ ଫ୍ଲୋରା ? ମୁଁ ଖାଲି ଜାଣିଆସିବି, ଏ ଝିଅଟି ସେହି କି ଅନ୍ୟ ଜଣେ ।

ମୁଁ ଦୁଃଖିତ ରାଜା ! ତୁମକୁ ସାହାଯ୍ୟ କରିପାରୁ ନାହିଁ । ଏଠାରେ କାହାରି ସମ୍ବନ୍ଧରେ କିଛି ଜାଣିବାର ଆଗ୍ରହ ସବୁବେଳେ ଦମନ କରିବାକୁ ହୋଇଥାଏ । ସେ କଥା ମୁଁ ତୁମକୁ ବହୁ ପୂର୍ବରୁ କହିଛି ।

ସଞ୍ଜୟ ତନ୍ମୟ ହୋଇ ନର୍ତ୍ତକୀର ଆଖିଯୋଡ଼ିକୁ ଚାହିଁଥିଲା ।

: ହଁ ହଁ, ସେଇ ଆଖି, ସେଇ ଭ୍ରୂ, ଠିକ୍ ସେହି କଳାକଳା ଲାଜୁରା ଆଖିଯୋଡ଼ିକ । ଶେଷରେ ମୋହନ କ'ଣ ମାଳାକୁ ଆଣି ଏହି କ୍ଲବରେ ନର୍ତ୍ତକୀ ରୂପେ ନିଯୁକ୍ତି ଦେଲା !!

ନୃତ୍ୟ ଶେଷ ହେଲା । ପୁଣି ସମଗ୍ର ହଲ୍‌ରେ ସ୍ନିଗ୍ଧ ଆଲୋକ ଜଳିଉଠିଲା । ସଙ୍ଗେସଙ୍ଗେ ନାସାରନ୍ଧ୍ରରେ ପ୍ରବେଶ କଲା ଏକ ମଧୁର ଗନ୍ଧ । ଆଃ... ସଞ୍ଜୟର ସମଗ୍ର ଶରୀରରେ କିପରି ଏକ ପୁଲକ ଖେଳିଗଲା : ସେ ଅବିଶ୍ୱାସ କଲାପରି ନାସା ରନ୍ଧ୍ରରେ ବାରମ୍ବାର ଗନ୍ଧ ଆହରଣ କଲା ।

ଫ୍ଲୋରା ସଞ୍ଜୟର ଭାବଭଙ୍ଗୀ ଦେଖି ବେଶ୍ କୌତୁକ ଅନୁଭବ କରୁଥିଲା । କହିଲା  ତମେ ଭୁଲ୍ କରୁଚ ରାଜା । ଯେଉଁ ଗନ୍ଧର ତରଙ୍ଗ ତମ ନାସିକା ସ୍ପର୍ଶ କରୁଚି, ତାହା ଏଇ ହଲ୍‌ରେ ସ୍ପ୍ରେ କରାହେଉଛି । ମୁଁ ତମକୁ କହୁ ନଥିଲି, ମଣିଷକୁ ସବୁ ପ୍ରକାର ସୁଖସମ୍ଭୋଗର ସୁବିଧା ଏଠାରେ ଦିଆଯାଇଥାଏ । କିନ୍ତୁ ଗୋଟାଏ ସର୍ତ୍ତରେ । ପ୍ରତ୍ୟେକଙ୍କୁ କର୍ତ୍ତବ୍ୟପରାୟଣ ହେବାକୁ ହିଁ ହେବ । ତା' ନହେଲେ...

ପୁଣି ଐକତାନ ବାଦନରେ ଫ୍ଲୋରାର କଥା ଅସମାପ୍ତ ରହିଗଲା ।

ଏଥର ଷ୍ଟେଜ୍‌ର ସାଜସଜ୍ଜା ସଂପୂର୍ଣ୍ଣ ବିଦେଶୀୟ ।

ଇସ୍...ସଞ୍ଜୟର ଆଖି ବିଷେଇ ଉଠିଲା । ଏଥର ଯେଉଁ ତରୁଣୀ କେତୋଟି ଷ୍ଟେଜ୍‌କୁ ଛୁଟି ଆସିଛନ୍ତି, ସେମାନଙ୍କୁ ଉଲ୍ଲଙ୍ଗୀ ନ କହି ଆଉ କ'ଣ କୁହାଯିବ ? କଟି ଦେଶରେ ଯେତେ ସମ୍ଭବ ଅଳ୍ପ ବସ୍ତ୍ର ଦିଆଯାଇପାରେ ତା'ର ବ୍ୟବସ୍ଥା ହୋଇଛି, ବକ୍ଷଦେଶ ଢାଙ୍କିବା ପାଇଁ ଆହୁରି କମ୍ ଚେଷ୍ଟା କରାଯାଇଛି ।

ସମଗ୍ର ହଲ ମଧ୍ୟରେ କିପରି ଏକ ଆନନ୍ଦର ଗୁଞ୍ଜରଣ ଖେଳିଯିବାକୁ ଲାଗିଲା ।

ଫ୍ଲୋରା କହିଲା  ଦେଖୁଚ ଦେଖୁଚ ରାଜା, ଏଇ ଆଗରେ ଯେଉଁ ଝିଅଟି, ସେ ହେଉଛି କଲିକତାର ଜଣେ ବିଶିଷ୍ଟ ନର୍ତ୍ତକୀ । ମିସ୍ ଜୁଲିଅସ୍, ଅବଶ୍ୟ ଆଙ୍ଗ୍ଲୋଇଣ୍ଡିଆନ । କିନ୍ତୁ ତା'ର ତୁଳନା ହୁଏ ନାହିଁ ।

ଧୀରେଧୀରେ ଜୁଲିଅସର ନର୍ତ୍ତନଭଙ୍ଗୀ ଉଦ୍ଧଟ ହୋଇଉଠୁଥିଲା ।

ବକ୍ଷଦେଶର ବନ୍ଧନୀ ଭେଦକରି ଜୁଲିଅସର ବକ୍ଷମଦିରା ଝରିପଡୁଥିଲା ।

ଧୀରେଧୀରେ ଦର୍ଶକମଣ୍ଡଳୀ ମଧ୍ୟରେ ଗୁଞ୍ଜରଣ ବଢ଼ିଉଠୁଥିଲା ।

ବାଦ୍ୟମନ୍ତ୍ର ଝଙ୍କାର ଆହୁରି ଉତ୍ତେଜକ ହୋଇଉଠୁଥିଲା । ଏକ ଉନ୍ମତ୍ତ ବାତାବାରଣ ସମଗ୍ର ଗୃହ ମଧ୍ୟରେ ସୃଷ୍ଟି ହୋଇଆସୁଥିଲା ।

ସଞ୍ଜୟ କାନରେ ସେ ସବୁ କିଛି ପ୍ରବେଶ କରୁନଥିଲା । ସେ କେବଳ ଭାବୁଥିଲା, ସେଇ ଦୁଇଟି କଳାକଳା ଲାଜୁରା ଆଖି କଥା ।

ଫ୍ଲୋରା କିନ୍ତୁ ରହି ରହି ଉଚ୍ଛ୍ୱସିତ ହୋଇଉଠୁଥିଲା । କେତେବେଳେ ସଞ୍ଜୟ ଉପରେ ନିଜର ଦେହଭାର ନଦି ଦେଇ କହୁଥିଲା  ଦେଖ ଦେଖ ରାଜା ! ଏପରି ସୁନ୍ଦର ନୃତ୍ୟ ପୂର୍ବରୁ ତୁମେ କେବେ ଦେଖିଥିଲ ?

ସଞ୍ଜୟ ପ୍ରକୃତରେ ଏପରି ନୃତ୍ୟ କେବେ ଦେଖି ନଥିଲା । କିନ୍ତୁ ଫ୍ଲୋରାର ଉଚ୍ଛ୍ୱସିତ ଆନନ୍ଦ ସହିତ ନିଜକୁ ସେ ମିଶେଇ ପାରୁନଥିଲା ।

ପୁଣି ଏକ ସମୟରେ ଘରର ସମସ୍ତ ଆଲୋକ ଜଳିଉଠିଲା ।

ଇଣ୍ଟରଭାଲ୍ ।

ଫ୍ଲୋରା ସଞ୍ଜୟର ହାତ ଧରି ଟାଣିଲା । ଆସ, ଟିକିଏ ବାହାରୁ ବୁଲିଆସିବା ।

ସଞ୍ଜୟ ଫ୍ଲୋରାର ପଛେ ପଛେ ଉଠିଗଲା ।

ସେ ଆଉ ଏକ ରୂପକଥା ।

ଗ୍ଲାସର ଠଣ୍ ଠଣ୍ ଏବଂ ସୋଡ଼ା ବୋତଲ ଖୋଲିବାର ଅପୂର୍ବ ଶବ୍ଦରେ କୋଠରିଟି କମ୍ପିଉଠୁଥିଲା । ସୁରା ଆଉ ସାକୀ । ଏକ ଅଭିନବ ବାତାବରଣ ମଝିରେ ସଞ୍ଜୟ ପଡ଼ିଯାଇ ନିଜକୁ ଅସହାୟ ମଣୁଥିଲା ।

ଫ୍ଲୋରା ସଞ୍ଜୟକୁ ଗୋଟିଏ ଟେବୁଲ ଉପରେ ବସାଇଦେଇ ଚାଲିଗଲା କେଉଁଆଡ଼େ । ତା'ପରେ ଅଳ୍ପ ସମୟ ପରେ ପୁଣି ସେ ଫେରିଆସିଲା । ହାତରେ ଗୋଟିଏ ବୋତଲ ।

ଟେବୁଲ ଉପରେ ସୋଡ଼ା ବୋତଲ ଓ ପାନପତ୍ର ସଜାହୋଇ ରଖାଯାଇଥିଲା । ଫ୍ଲୋରା ଠିପି ଖୋଲି ଦୁଇଟି ଗ୍ଲାସ ପୂର୍ଣ୍ଣ କଲା ।

ସଞ୍ଜୟର ଅନ୍ତରାତ୍ମା ଥରିଉଠିଲା ।

ଫ୍ଲୋରା ହସିଲା ।

କହିଲା ଏପରି ଜଡ଼ତା ଏଠାରୁ ପାଏନି ରାଜା ! ଗ୍ଲାସ ଉଠାଅ । ତମ ଗ୍ଲାସ ସହିତ ମୁଁ ଗ୍ଲାସ ଲଗେଇ ଆଜିର ଏହି ମଧୁର ସ୍ମୃତିକୁ ତୋଳିଧରେ ।

ସଞ୍ଜୟ କ୍ଷମା ମାଗିଲା । ସେ ପାରିବ ନାହିଁ, ନା ସେ ପାରିବ ନାହିଁ ।

ଫ୍ଲୋରା କିନ୍ତୁ ଛାଡୁଛି କେଉଁଠି ?

ନିଜ ଛାତି ଉପରକୁ ସଞ୍ଜୟକୁ ଆଉଜାଇ ଆଣିଲା ।

: ଏଇ ଟିକକ ରାଜା, ପିଇଦିଅ । ତମର କୌଣସି କ୍ଷତି ହେବ ନାହିଁ । କିଛି ସମୟ ପରେ ଦେଖିବ ସମସ୍ତ ଜଡ଼ତା କଟିଯାଇଛି । ତୁମେ ନବଜୀବନ ଲାଭ କରିଛ । ପିଇଦିଅ ରାଜା, ପିଇଦିଅ ।

ଫ୍ଲୋରା ଅଳ୍ପ ଅଳ୍ପ କରି ସଞ୍ଜୟକୁ ପିଆଇ ଦେଲା ।

ଆଉ ଟିକେ ରାଜା, ଆଉ ଟିକେ ।

ସଞ୍ଜୟ ହସିଲା । ମୁହଁରେ ତା'ର ଫୁଟିଉଠିଲା ଏକ ମଧୁର ଜ୍ୟୋତି । ନିଜେ ସେ ଗ୍ଲାସରେ ସୁରା ଢାଳି ଫ୍ଲୋରା ମୁହଁ ପାଖରେ ଧରି କହିଲା ଏଇ ଟିକକ ପିଇଦିଅ, ହଁ ପିଇଦିଅ କହୁଚି । ଅମାନିଆ ହେଲେ ଗାଳି ଖାଇବ ।

ଫ୍ଲୋରା ହାତ ବଢ଼େଇଲା ସଞ୍ଜୟ ହାତରୁ ପାନପାତ୍ର ନେବା ପାଇଁ ! କିନ୍ତୁ ସେ ମନାକଲା । କହିଲା : ମୁଁ ନିଜେ ପିଆଇ ଦେବି । ମୋ' ହାତରୁ ତମେ ପିଇଲେ ମୋତେ ଆନନ୍ଦ ଲାଗିବ ।

ଫ୍ଲୋରା ବାଧା ଦେଲା ନାହିଁ ।

ସଞ୍ଜୟ ଫ୍ଲୋରାକୁ ପିଆଇ ଦେଲା, ଫ୍ଲୋରା ପିଆଇଲା ସଞ୍ଜୟକୁ !

ଏହି ସମୟରେ ହଲର ଘଣ୍ଟା ବାଜିଉଠିଲା । ପୁଣି ସୋ' ଆରମ୍ଭ ହେବ । ଯେ ଯାହା ଜାଗାକୁ ଉଠିଯିବାକୁ ଲାଗିଲେ । ସଞ୍ଜୟ ଫ୍ଲୋରାର ହାତ ଧରି ଏକ ଅଭିନବ ଭଙ୍ଗୀରେ ହଲ୍ ଭିତରକୁ ଆଗଉଥିଲା ।

ଫ୍ଲୋରା ସଞ୍ଜୟକୁ ନେଇ ନିର୍ଦ୍ଧାରିତ ସ୍ଥାନରେ ବସିବାକ୍ଷଣି ହଲ୍‌ର ଆଲୋକ ଲିଭିଗଲା । ଷ୍ଟେଜ ଉପରେ ଜଳିଉଠିଲା ଏକ ଧୀର ଆଲୋକ । ସେହି ଆଲୋକ ଭିତରେ ଫୁଟିଉଠିଲା ଦୁଇଟି କଳାକଳା ଲାଜୁରା ଆଖି ।

ସଞ୍ଜୟ ତନ୍ମୟ ହୋଇ ଚାହିଁଥିଲା ସେଇଆଡ଼େ ।

ଫ୍ଲୋରା କହିଲା : ତମେ ନାଚ ଦେଖୁଥାଅ ରାଜା, ମୁଁ ଟିକିଏ ଆସୁଛି ।

ସଞ୍ଜୟ କାନରେ କିନ୍ତୁ ଫ୍ଲୋରାର କଥା ପ୍ରବେଶ କରିନଥିଲା । ସେ ଚାହିଁଥିଲା ସେଇ ନର୍ତ୍ତକୀଟି ଆଡ଼େ । ହଁ, ସେଇ ଆଖି, ସେଇ ମୁହଁ । ମାଳା, ନିଶ୍ଚୟ ଏ ମାଳା ଛଡ଼ା ଅନ୍ୟ କେହି ହୋଇ ନପାରେ । ସେ ଯେମିତି ହେଉ ଗ୍ରୀନ୍ ରୁମ୍‌ରେ ପାଇ ମାଳା ସହିତ ଭେଟ କରିବ । ମାଳାକୁ ଏତେ ନିକଟରେ ପାଇ ଅବହେଳାରେ ଆଉ ସେ ହାତମୁଠାରୁ ଛାଡ଼ିପାରିବ ନାହିଁ ।

ସଞ୍ଜୟ ଉଠିଲା ଚାରିଆଡ଼େ ଅନ୍ଧକାର । ସେଇ ଅନ୍ଧକାର ଭିତରେ ସେ

ପାଦେ ପାଦେ କରି ଆଗେଇଲା । କୁଆଡ଼େ ଗ୍ରୀନ୍ ରୁମ୍, କୁଆଡ଼େ ମେନ୍‌ଗେଟ୍ ସଞ୍ଜୟକୁ କିଛି ଜଣା ନ ଥିଲା । କିନ୍ତୁ ଚାଲିଥିଲା । ଏକ ସମୟରେ ଅନୁଭବ କଲା, କିଏ ଯେପରି ତା' ହାତ ଧରି କୁଆଡ଼େ ବାଟ କଢ଼େଇ ନେଇଯାଉଚି । ତା'ପରେ ତା'ର ମନେହେଲା ସେ ଯେପରି ପାହାଚ ପରେ ପାହାଚ ଅତିକ୍ରମ କରି ଆଗେଇ ଚାଲିଚି ।

ଦୁଇଟି କଳାକଳା ଲାଜୁରା ଆଖି ।

ଏଇଠି ଏଇ ଗ୍ରୀନ୍ ରୁମ୍ ଭିତରେ ଲୁଚି ରହିଚି । କେଉଁଠି ଗ୍ରୀନ୍ ରୁମ୍‌ଟା ?

ସଞ୍ଜୟ ଯାଇ ଗୋଟାଏ ଜାଗାରେ ଥକ୍‌କା ମାରି ଠିଆ ହୋଇଗଲା ।

ଭିତରୁ ଶୁଭୁଥିଲା କିଛି ମଧୁକଣ୍ଠର ଝଙ୍କାର । ଖୁବ୍ ମୃଦୁ ଆଲୋକ ଜଳୁଥିଲା ଭିତରେ । ଦୁଆର ବନ୍ଦ ଥିଲା ।

ସଞ୍ଜୟ କାନ ଠିଆକରି ଶୁଣିଲା ।

ମୃଦୁ ଗୁଂଜରଣ । ଥିରି ଥିରି ହସ ।

ତା'ହେଲେ ଠିକ୍ ଜାଗାରେ ପହଞ୍ଚିଛି ସଞ୍ଜୟ, ତା'ର ମନେହେଲା ଭିତରଟା ଗ୍ରୀନ୍ ରୁମ୍ । ମାଳା ଏହା ଭିତରେ ନୃତ୍ୟ ଶେଷ କରି ଫେରିଆସିଥିବ ନିଶ୍ଚୟ !

କବାଟରେ ହାତ ମାରିଲା ସଞ୍ଜୟ । ଠେଲିଲା ଟିକିଏ । ମନେହେଲା ଖୋଲା ଅଛି । କିନ୍ତୁ ଭିତରେ ଯଦି...

ପଛରୁ କାହାର ପାଦଶବ୍ଦ ଶୁଣିଲା ସଞ୍ଜୟ । କିଏ ହୁଏତ ଶିଡ଼ିରୁ ଓହ୍ଲଉଚି । ସଞ୍ଜୟ ଘୁଞ୍ଚିଗଲା ଟିକିଏ । ଲୁଚିପଡ଼ିଲା ଏକ ଉହାଡ଼ିଆ ଜାଗାରେ । ଜଣେ ଲୋକ ଶିଡ଼ିରୁ ଓହ୍ଲେଇ ଆସି ସେଇ ଦରଜା ଠେଲି ଭିତରେ ପଶିଲା । ମୁହୂର୍ତ୍ତକ ପରେ ଘର ଭିତରୁ ଭାସିଆସିଲା ନାରୀକଣ୍ଠର କଳରୋଳ । ସଞ୍ଜୟର ସାହସ ହେଲାନାହିଁ ଭିତରେ ପଶିବା ପାଇଁ । ନୀରବରେ ଠିଆହୋଇ ରହିଲା ଅନେକ ସମୟ ।

ଯେତେବେଳେ କେତୋଟି ପାଦଶବ୍ଦ ଏକା ସଙ୍ଗରେ ଘରଭିତରୁ ଭାସିଆସିଲା, ସେ ଝାପ୍‌ସା ଅନ୍ଧକାରରେ ଦେଖିଲା, ଜଣେ ସ୍ତ୍ରୀ ଓ ଜଣେ ପୁରୁଷ ସେଇ ଘରଭିତରୁ ବାହାରି ଶିଡ଼ିରେ ଉଠି ସିଧା ଉପରକୁ ଚାଲିଗଲେ ।

ଏଥର ସଞ୍ଜୟ ଆଉଥରେ ଆଗେଇ ଗଲା ସେଇ ଦୁଆର ପାଖକୁ । ଦୁଆରଟା ଟିକିଏ ଫାଙ୍କ୍ ଥିଲା । ଆଉ ଘର ଭିତରେ...

ହଁ ହଁ, ସେଇ କଳାକଳା ଲାଜୁରା ଆଖି ଯୋଡ଼ିକ । ମାଳା । ମାଳା ଡ୍ରେସିଂ ଟେବୁଲ ସାମ୍‌ନାରେ ବସି ଗୁଣଗୁଣୁ ଗୀତ ଗାଇ କପାଳରେ ଚନ୍ଦନ-ବିନ୍ଦୁ ଲଗାଉଚି । ବୋଧହୁଏ ପରବର୍ତ୍ତୀ ନୃତ୍ୟ ପାଇଁ ପ୍ରସ୍ତୁତ ହେଉଚି । ଦରଜା ଆଡ଼କୁ ପିଠିକରି ଦର୍ପଣକୁ ଚାହିଁ ବେଶ ହେଉଚି ମାଳା । ଦର୍ପଣ ଭିତରୁ ସ୍ପଷ୍ଟ ଫୁଟିଉଠୁଚି ତା'ର ସେହି କଳାକଳା ଆଖିଯୋଡ଼ିକ । କିନ୍ତୁ ତା'ପରେ ଦର୍ପଣରେ ଫୁଟିଉଠିଚି ମାଳା ଅଙ୍ଗ-

ଅବୟବର ଯେଉଁ ଛବି, ସେ ତ ପ୍ରାୟ ପୂରାପୂରି ନିରାବରଣ । କେବଳ ଶାଢ଼ି ଖଣ୍ଡେ ଅନାବନା ହୋଇପଡ଼ିଚି ମାଳାର ଦେହ ଉପରେ । ଦର୍ପଣ ଭିତରୁ ଫୁଟିଉଠୁଚି ମାଳାର ଏକ ଅନାଘ୍ରାତ ଯୌବନର କମନୀୟ ଛବି । ସଞ୍ଜୟ ଆଖିରେ ଏପରି ଏକ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ କେବେ ପରିସ୍ଫୁଟନ ହୋଇନଥିଲା । ସଞ୍ଜୟର ଚାହାଣି ଦର୍ପଣର ଲାଜୁରା ଆଖି ଦୁଇଟି ଆଡୁ ଯାଇ ଠୁଳ ହୋଇଥିଲା ନଗ୍ନବୁକୁର ଅକ୍ଷତ ସୌନ୍ଦର୍ଯ୍ୟ ଉପରେ ।

ତା' ଅଜାଣତରେ ସେ ଦରଜା ଖୋଲି ଧୀରେଧୀରେ ଆଗେଇଥିଲା ଦର୍ପଣର ସେଇ ପ୍ରତିଚ୍ଛବି ଆଡ଼କୁ ! ମାଳାକୁ ଏତେ ନିରୋଳାରେ ସେ ହୁଏତ ଆଉ କେବେ କେଉଁଠି ପାଇବ ନାହିଁ । ଆଜି ସେ, ହଁ ଆଜି ସେ...

ସେଇ ତରୁଣୀଟି କାନ୍ଧରେ ହାତ ଦୁଇଟି ଥାପି ବିକଳ କଣ୍ଠରେ ଡାକିଲା ମାଳା ! ମୁଁ ଆସିଚି । ମୁଁ, ମାନେ ମୁଁ...

ତରୁଣୀଟି ହଠାତ୍ ବିଦ୍ୟୁତ୍ ଚମକ ଖାଇଲାପରି ଉଠିପଡ଼ି ବୁଲି ଚାହିଁଲା । ଜଣେ ଅପରିଚିତ, ଅବାଞ୍ଛିତ ଲୋକ...

ସେ ଠାସ୍‌କରି ଗୋଟାଏ ଚାପୁଡ଼ା ସଞ୍ଜୟ ଗାଲରେ ବସାଇଦେଇ ଛୁଟି ପଳାଇଲା ବାଥ୍‌ରୁମ୍ ଭିତରକୁ ।

ସଞ୍ଜୟ ଅବାକ୍ ହୋଇ ଠିଆହୋଇ ପଡ଼ିଥିଲା । ଅସ୍ପଷ୍ଟ ଭାବରେ ଉଚ୍ଚାରଣ କରୁଥିଲା  ତେବେ କ'ଣ, ତେବେ କ'ଣ...

ନା ସେ ମାଳା ନୁହେଁ । ପଛଆଡୁ ପରିଚିତ କଣ୍ଠସ୍ୱର ଶୁଣି ସଞ୍ଜୟ ବୁଲି ଅନେଇଲା ।

ଫ୍ଲୋରା ଛୁଟି ଛୁଟି ଘର ଭିତରେ ପଶୁଚି : ନା ନା, ସଞ୍ଜୟ ସେ ତୁମର ମାଳା ନୁହେଁ । ତମେ ଭୁଲ୍ କରିଚ । ତମେ ଚାଲିଆସ । ମୁଁ ତୁମକୁ କହିଥିଲି ନା, ଏ ସ୍ଥାନ ବିପଦ-ସଂକୁଳ ।

ସଞ୍ଜୟ ଫ୍ଲୋରା ମୁହଁକୁ ନିର୍ବୋଧଙ୍କ ପରି ଚାହିଁ ଠିଆହୋଇ ରହିଥିଲା ।

ଫ୍ଲୋରା ହାତ ଧରି ଟାଣିଟାଣି ବାହାରକୁ ନେଇଗଲା ସଞ୍ଜୟକୁ ।

ତା'ପରେ ସେ କୁଆଡ଼େ ଗଲା, କ'ଣ କଲା, ଆଉ ନୃତ୍ୟ-ଗୀତରେ ଯୋଗ ଦେଇଥିଲା କି ନାହିଁ, କିଛି ତା'ର ମନେ ନଥିଲା ।

ପରଦିନ ଯେତେବେଳେ ତା'ର ଚେତା ହେଲା, ସେ ଦେଖିଲା - ଗୋଟିଏ ସଂକୀର୍ଣ୍ଣ ଘରେ ଏକ ଅପରିଷ୍କାର ବିଛଣା ଉପରେ ଶୋଇଛି । ଘରଟିରେ ନଗ୍ନ ଓ ଅର୍ଦ୍ଧନଗ୍ନ କେତେଖଣ୍ଡି ଛବି ଟଙ୍ଗା ହୋଇଛି । ଅସବାବପତ୍ର ମଧ୍ୟରେ ଦୁଇ ତିନୋଟି ବାକ୍ସ ଏବଂ ଗୋଟିଏ ଭଙ୍ଗା ଆଲମାରୀ ଦିଶୁଛି । ଘରଟିରୁ ଠାଏ ଠାଏ ଚୁନ-ବାଲି ସବୁ ଖସି ପଡ଼ିଲାଣି ।

କେଉଁଠି ସେ ?

ସଞ୍ଜୟ ବହୁ ଚେଷ୍ଟାକରି ମଧ୍ୟ ଗତରାତିର ଘଟଣା କିଛି ସ୍ମରଣ କରିପାରିଲା ନାହିଁ ।

ସେ ନିର୍ଜୀବଙ୍କ ପରି ସେହି ମଳିନ ଶଯ୍ୟା ଉପରେ ଶୋଇରହିଥିଲା ।

କିଏ ସେ ଏ ?

ଗୃହ ମଧ୍ୟରେ ଯେଉଁ ନାରୀଟି ପ୍ରବେଶ କଲା, ସଞ୍ଜୟର ମନେହେଲା ଏହି ନାରୀଟିକୁ ପୂର୍ବରୁ କେଉଁଠି ଯେମିତି ସେ ଦେଖିଛି । କିନ୍ତୁ କେଉଁଠି ?

ହଁ ଲିଲି । ଜର୍ଜ ଗୋମେସ୍ ସହିତ ସେଦିନ ଯେଉଁ କାଫେକୁ ସେ ଯାଇଥିଲା, ଲିଲି ସେଇ କାଫେର ପରିଚାରିକା ।

ଲିଲି ଧୀରେ ପାଖେଇ ଆସିଲା । ସଞ୍ଜୟ ଦେହରେ ହାତ ବୁଲାଇ ଡାକିଲା ବାବୁ, ବାବୁ !!

ସଞ୍ଜୟ କର ଲେଉଟାଇଲା । ବିସ୍ମିତ ହେଲାପରି ଚାହିଁଲା ।

କେଉଁଠି ମୁଁ?

ମୋ' ଘରେ ।

: ମୁଁ ଏଠାକୁ କିପରି ଆସିଲି ?

ଲିଲି ହସିଲା । କହିଲା  ସେସବୁ କଥା ପରେ ଜାଣିଲେ ମଧ୍ୟ ଚଳିବ । ଆପଣ ଉଠି ହାତମୁହଁ ଧୋଇପକାନ୍ତୁ ତ !

: କିନ୍ତୁ ଲିଲି ! ମୁଁ ଏଠାକୁ ଆସିବାର ରହସ୍ୟ ଜାଣି ନ ପାରିଲେ ତୁମ କଥା କିଛି ଶୁଣିବି ନାହିଁ ।

ସେ କାହାଣୀ ଅତି ସଂକ୍ଷେପରେ ଲିଲି କହିଲା : ପାର୍କଷ୍ଟ୍ରୀଟ୍ ମୋଡ଼ରେ ଆପଣ ଗୋଟାଏ ଲାଇଟ୍ ପୋଷ୍ଟକୁ ଜାବୁଡ଼ି ଧରି ଠିଆହୋଇ ରହିଥିଲେ । ସେତେବେଳକୁ ରାତି ତିନିଟା ।

ତା'ପରେ ?

: ମୁଁ ସେଇବାଟେ ଘରକୁ ଫେରୁଥିଲି । ହଠାତ୍ ଆପଣଙ୍କୁ ଦେଖି ଚିହ୍ନିପାରିଲି ଏବଂ ଆପଣଙ୍କ ଅବସ୍ଥା କଥା ଚିନ୍ତା କରି ସଙ୍ଗରେ ମୋ' ଘରକୁ ଘେନିଆସିଲି ।

: ହୁଁ । ସଞ୍ଜୟ ଗୋଟିଏ ଦୀର୍ଘ ନିଃଶ୍ୱାସ ତ୍ୟାଗକରି କହିଲା, ଫ୍ଲୋରା ତା'ହେଲେ ମୋତେ ପାର୍କଷ୍ଟ୍ରୀଟ୍ ମୋଡ଼ରେ ଛାଡ଼ିଦେଇ ଯାଇଥିଲା ।

କିଏ ? ଲିଲି ପଚାରିଲା ।

ସଞ୍ଜୟ ଆଉକିଛି ଉତ୍ତର ନ ଦେଇ ଉଠି ଠିଆହେଲା ଏବଂ ପଚାରିଲା ବାଥ୍‌ରୁମ୍‌ଟା କେଉଁଆଡ଼େ ?

ଲିଲି ସଞ୍ଜୟକୁ ଧରିଧରି ବାଥ୍‌ରୁମ୍ ଦୁଆର ଯାଏ ନେଇଗଲା ।

ସେତେବେଳଯାଏ ସଞ୍ଜୟ ସଂପୂର୍ଣ୍ଣ ରୂପେ ପ୍ରକୃତିସ୍ଥ ହୋଇନଥିଲା ।

ସଞ୍ଜୟ ତା' ଜଳଖିଆ ଖାଇସାରି ଆହୁରି ବହୁତ ସମୟ ସେଇ ଅପରିଚ୍ଛନ୍ନ ଜୀର୍ଣ୍ଣ ବିଛଣା ଉପରେ ଶୋଇରହିଲା ।

ଏକ ସମୟରେ ସେ ଲିଲିକୁ ଡାକି ପାଖରେ ବସାଇଲା ।

ତୁମେ ମିସ୍ ଫ୍ଲୋରାର ନାଁ ଶୁଣିଛ ?

କିଏ ସେ ? ଲିଲି ଓଲଟି ପ୍ରଶ୍ନ କଲା ।

ଆଚ୍ଛା ନର୍ତ୍ତକୀ ଜୁଲିଅସ୍ ?

: ହଁ ହଁ ଜାଣିଛି । ଲିଲି କହିଲା । ବିଶେଷ କୌଣସି ପ୍ରୋଗ୍ରାମ ହେଲେ ଆମ କାଫେକୁ ତାକୁ ନିମନ୍ତ୍ରଣ କରାହୁଏ ।

ତୁମେ ତା' ଠିକଣା ଜାଣିଛ ?

: ନମ୍ବରଟା ଠିକ୍ ମନେ ନାହିଁ, ତେବେ ମୁଁ ତା' ଘର ଦେଖିଛି । ଥରେ ତାକୁ ତା' ଘରେ ଛାଡ଼ି ଆସିବାର ଦାୟିତ୍ୱ ମୋ'ରି ଉପରେ ପଡ଼ିଥିଲା ।

ତା'ହେଲେ ତୁମକୁ ଏଇ ମୁହୂର୍ତ୍ତରେ ମୋ' ସହିତ ଯିବାକୁ ହେବ ଲିଲି ।

କେଉଁଠାକୁ ?

ନର୍ତ୍ତକୀ ଜୁଲିଅସ୍‌ର ଘରକୁ ।

କିନ୍ତୁ

ନା, ଆଉ କିନ୍ତୁ ନୁହେଁ ଲିଲି । ମୋତେ ଅନ୍ତତଃ ଏତିକି ସାହାଯ୍ୟ ତୁମକୁ କରିବାକୁ ହେବ । ବଦଳରେ ମୁଁ ତୁମକୁ...

ସଞ୍ଜୟ କଥା ଶେଷ କରିପାରିଲା ନାହିଁ । କାରଣ ଲିଲି ଘରୁ ବାହାରି ଯାଇଥିଲା ।

ଅଳ୍ପ ସମୟ ପରେ ସେ ପୁଣି ଘରେ ପ୍ରବେଶ କଲା ।

ଆସନ୍ତୁ । ମୁଁ କିନ୍ତୁ ଆପଣଙ୍କୁ ନର୍ତ୍ତକୀ ଜୁଲିଅସ୍‌ର ଘର ଦେଖାଇ ଦେଇ ଫେରିଆସିବି । କାରଣ ସେମାନେ ଆମଭଳି ନଗଣ୍ୟ ଜୀବଙ୍କୁ ଭୀଷଣ ଘୃଣା କରନ୍ତି । ଅଥଚ ନିଜେ...

ଲିଲି ମଧ୍ୟ କଥା ଶେଷ କଲା ନାହିଁ । ହୁଏତ ସଞ୍ଜୟକୁ ସେ ଯେତେ ଆପଣାର ମଣି କହିବାକୁ ଯାଉଥିଲା, ସେ ତେତେ ଆପଣାର ହୋଇ ନ ପାରେ । ତା'ଛଡ଼ା ଦିନେ ଦୁଇଦିନର ଚିହ୍ନାଜଣାରେ କାହାରିକୁ ବିଶ୍ୱାସ କରିବା ମଧ୍ୟ ଉଚିତ୍ ନୁହେଁ ।

ଟ୍ୟାକ୍‌ସି ଯାଇ ଯେଉଁଠି ଅଟକିଲା, ସଞ୍ଜୟକୁ ଆଉ ଚିହ୍ନେଇବାକୁ ପଡ଼ିଲା ନାହିଁ । ଏଟା ସେଇ କୋଠା । ଯେଉଁ କୋଠାକୁ ସେ ମୋହନ ପଛେପଛେ ଦିନେ ଆସି ଦୀର୍ଘ ସମୟ ଅପେକ୍ଷା କରିଥିଲା । ଏବଂ ଗୋଟିଏ ସୁନ୍ଦରୀ ଆଙ୍ଗ୍‌ଲୋ ତରୁଣୀ ସହିତ ମୋହନ ଅନ୍ତର୍ଦ୍ଧାନ ହୋଇଯାଇଥିଲା ।

ତା'ହେଲେ ଏ ସେଇ, ନର୍ତ୍ତକୀ ଜୁଲିଅସ୍ ।
ହୁଏତ ମୋହନର ଅନ୍ତରଙ୍ଗ ।
ଆଉ ବିଚାରୀ ମାଳା...

**

ଜର୍ଜ ଗୋମେସ୍ ସଞ୍ଜୟର ରୁମ୍ ଭିତରକୁ ପଶିଯାଇ କହିଲେ, : କାଲିଠାରୁ ମୁଁ ଆପଣଙ୍କୁ ଖୋଜି ଖୋଜି ହଇରାଣ ହୋଇଗଲିଣି । କୁଆଡ଼େ ଯେ ଆପଣମାନେ ଯାଆନ୍ତି, କ'ଣ ଯେ କରନ୍ତି କିଛି ବୁଝିବାର ଉପାୟ ନ ଥାଏ । ସମୟକୁ ଏପରି ନିର୍ଦ୍ଦୟ ଭାବରେ ହତ୍ୟା କଲେ ଚଳିବ କିପରି କୁହନ୍ତୁ ତ ?

ସଞ୍ଜୟ ବିଛଣାରୁ ଉଠି ବସିଲା ଏବଂ କହିଲା : ନା ନା ଜର୍ଜ, ସମୟ ମୁଁ ନଷ୍ଟ କରିନାହିଁ, କାମରେ ଯାଇଥିଲି । କାମ ତୁଟୁ ତୁଟୁ ଅନେକ ଡେରି ହୋଇଗଲା ।

ତା'ହେଲେ ମୋର କହିବାର କିଛି ନାହିଁ ଜର୍ଜ ଗୋମେସ୍ କହିଲେ ।

: ଆପଣ ବସନ୍ତୁ ଜର୍ଜ !

ନା ନା, ଚଉଧୁରୀ । ମୋ' ହାତରେ ବହୁତ କାମ । ସମୟ କିନ୍ତୁ ଢେର୍ କମ । ହେଇ ଦେଖୁ ନାହାନ୍ତି, ଚାରିଟା ବାଜିଗଲାଣି, ଆଉ ଦଶମିନିଟ୍ ପରେ ମୋର ଆପଏଣ୍ଟମେଣ୍ଟ ।

ଅନ୍ତତଃ ଚା' କପେ...

ସଞ୍ଜୟର କଥା ଶେଷ ହେଲାନାହିଁ । ଜର୍ଜ ଗୋମେସ୍ ଆସନ ଗ୍ରହଣ କଲେ । ସଞ୍ଜୟ ଉଠିଯାଇ ବୟକୁ ରାତ୍ରି ଭୋଜନ ଆଣିବାକୁ କହିଲା ।

ଜର୍ଜ ଗୋମେସ୍ କହିଲେ : ଆପଣଙ୍କ ପରି ଖୁବ୍ କମ୍ ବନ୍ଧୁ ମୁଁ ଜୀବନରେ ପାଇଚି ।

ସଞ୍ଜୟ କିନ୍ତୁ ଚିନ୍ତିତ ଦେଖାଯାଉଥିଲା ।

ଆଚ୍ଛା ଜର୍ଜ ! ଆପଣ ଲିଲିକୁ ନିଶ୍ଚୟ ଚିହ୍ନିଥିବେ ।

ଲିଲି ? ଜର୍ଜ ଗୋମେସ୍‌ଙ୍କ ସ୍ୱରରେ ଟିକିଏ ବିସ୍ମୟ ଫୁଟିଉଠିଲା ।

'ଇଭିନିଂ କାଫେ'ର ପରିଚାରିକା ।

ଓଃ, ହଁ ମନେପଡ଼ିଲା । କିନ୍ତୁ ଗୋଟାଏ କଥା ଆପଣ ସବୁବେଳେ ମନେରଖିବେ ଚଉଧୁରୀ । ସେଭଳି ଚରିତ୍ରର ଝିଅମାନଙ୍କ ନାମ କେବେ ମନେରଖିବାକୁ ଚେଷ୍ଟା କରିବେ ନାହିଁ । ଯେଉଁ କେତୋଟି ଘଣ୍ଟାର ଆଳାପ ପରିଚୟ, ହାସ୍ୟ ପରିହାସ, ସେତିକି ଯଥେଷ୍ଟ । ତା'ଠାରୁ ଅଧିକ ମୋଟେ ଆଗେଇବେ ନାହିଁ । ଲିଲି ମୋର ଅନେକ ଦିନର ପରିଚିତା, କିନ୍ତୁ ମୋ' ଜୀବନର କୌଣସି ମୁହୂର୍ତ୍ତରେ ତା' ଚିନ୍ତା

ମୋ' ଉପରେ ପ୍ରଭାବ ବିସ୍ତାର କରିନାହିଁ । ତା'ଛଡ଼ା ସମୟର ମୂଲ୍ୟ ମୋ' ପାଖରେ ଢେର୍ ବେଶୀ !

ସଞ୍ଜୟ କ'ଣ ଯେପରି କହିବା ପାଇଁ ଠିକ୍ ଭାବୁଥିଲା, କିନ୍ତୁ କିଛି ଆଉ କହିପାରିଲା ନାହିଁ ।

ଜର୍ଜ ଗୋମେସ୍ ପୂର୍ବପରି କହି ଚାଲିଥିଲେ, ଆପଣମାନେ ନବୀନ ଯୁବକ । ଦେଶର ଭବିଷ୍ୟତ । ସମୟକୁ ଯଦି ଧରି ରଖି କାମରେ ଲଗେଇ ପାରିବେ, ତେବେ ଆପଣମାନଙ୍କର ଉନ୍ନତି ହେବା ସଙ୍ଗେସଙ୍ଗେ ଦେଶର ଆଉ ଦଶର ମଧ୍ୟ ଉପକାର ହେବ । ଆଉ ଏଇ ଲିଲି, ଲୋଟସ୍, ଏମାନଙ୍କ ଚିନ୍ତାରେ ଯଦି ତନ୍ମୟ ହୋଇ ରୁହନ୍ତି...

ଦୁଇଜଣ ପରିଚାରିକା ଚା' ଆଉ ଜଳଖିଆ ଧରି ରୁମ୍ ଭିତରେ ପ୍ରବେଶ କଲେ ।

ଜର୍ଜ ଗୋମେସ୍‌ଙ୍କ ପାଟି ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲା ।

ତା'ପରେ ସେ ତାଙ୍କର ଅସମାପ୍ତ ବାକ୍ୟକୁ ସମାପ୍ତ କରିବାକୁ ଯାଇ କହିଲେ: ତା'ହେଲେ କାହାରି ମଙ୍ଗଳ ହେବ ନାହିଁ ।

ଆଉ କଥାବାର୍ତ୍ତା କିଛି ନାହିଁ । ଜର୍ଜ ଗୋମେସ ଟ୍ରେ'ଟା ଟାଣି ନେଇ ଟେବୁଲ ଉପରେ ରଖିଲେ । ନିଜ ହାତରେ ପ୍ଲେଟଗୁଡ଼ିକ କାଢୁକାଢୁ କହିଲେ : ଶୀଘ୍ର ଚଉଧୁରୀ । ଖାଇବା ପିଇବା ସମୟରେ କେବେ ଅବହେଳା କରିବେ ନାହିଁ । ସ୍ୱାସ୍ଥ୍ୟ ମଣିଷର ସମ୍ପଦ ଆଉ ସମୟ ବନ୍ଧୁ । ଏଇ ଦୁଇଟାର ସଦୁପଯୋଗ କରିପାରିଲେ ଆପଣ ଦେଖିବେ, ସବୁ ଦିଗରୁ ଆପଣଙ୍କର ଉନ୍ନତି ଘଟୁଛି ।

ତା'ପରେ ଦୀର୍ଘ ନୀରବତା ।

ଜର୍ଜ ଗୋମେସ୍ କେବଳ ଖାଇବାରେ ଲାଗିଥିଲେ ।

ସଞ୍ଜୟ ମଧ୍ୟ ଖଣ୍ଡେ ଟୋଷ୍ଟ ଗୋଟାଏ ପୋଚ୍ ଖାଇସାରି ଚା' କପ୍ ଆଡ଼େ ହାତ ବଢ଼ାଉଥିଲା ।

ଝରକା ଫାଙ୍କରେ ଦେଖିଲା, ମୋହନ ଏବଂ ତା' ସହିତ ଆଉ ଜୋଟିଏ ତରୁଣୀ ।

ସଞ୍ଜୟ ଦେହରେ ବିଦ୍ୟୁତ୍ ଖେଳିଗଲା ।

ଦୁହେଁ ହସି ହସି କଥାବାର୍ତ୍ତା ହୋଇ ଆଗେଇ ଆସୁଥିଲେ ।

ସଞ୍ଜୟ ସ୍ତବ୍ଧ ହୋଇ ସେଇଆଡ଼େ ଅନାଇଥିଲା ।

ଜର୍ଜ ଗୋମେସ୍ ସଞ୍ଜୟ ଆଡ଼େ ଚାହିଁ ହସିଉଠିଲେ । କହିଲେ, ନା ନା, ଆପଣଙ୍କ ଦ୍ୱାରା ଜଗତର କୌଣସି ଉପକାର ହେବ ନାହିଁ । ଖାଲି ପରଚର୍ଚ୍ଚା କରୁ କରୁ ସମସ୍ତ ଅମୂଲ୍ୟ ସମୟତକ ନଷ୍ଟ କରିଦେବେ ।

କିନ୍ତୁ ଜର୍ଜ ! ମୋହନ ସହିତ ପୁଣି ଯେ ଏକ ନବୀନ ତରୁଣୀ ?

ଗୋମେସ୍ ହସ ସମ୍ଭାଳି ପାରିଲେ ନାହିଁ । କହିଲେ  ବଡ଼ ବଡ଼ ସହରରେ, ବଡ଼ ବଡ଼ ଲୋକଙ୍କ ସଙ୍ଗେ ମିଶିବାକୁ ହେଲେ ସେମାନଙ୍କ କାର୍ଯ୍ୟକଳାପ ଆଡ଼କୁ ଆଦୌ ନଜର ଦେବେ ନାହିଁ । ଆପଣ ଦେଖିବେ ନାହିଁ କିଏ କେତୋଟି ତରୁଣୀଙ୍କୁ ଧରି ଘୂରି ବୁଲୁଛି, ଅଥବା କିଏ କେତୋଟି କନ୍ୟାଙ୍କୁ ପ୍ରଲୁବ୍ଧ କରି ଘରୁ କାଢ଼ି ଆଣୁଛି । କିଏ କେଉଁ ନାରୀର ସର୍ବସ୍ୱ ଲୁଣ୍ଠନ କରି ରିକ୍ତ ହସ୍ତରେ ଫେରେଇ ଦେଉଛି ଅଥବା କିଏ ଦଲାଲମାନଙ୍କ ଜରିଆରେ ତରୁଣୀମାନଙ୍କୁ ସଂଗ୍ରହ କରି ସେମାନଙ୍କ ସାହାଯ୍ୟରେ ଅର୍ଥ ଉପାର୍ଜନ କରୁଛି । ଆପଣ ସେଗୁଡ଼ା ମୋଟେ ଦେଖିବେ ନାହିଁ । ଦେଖିଲେ ମଧ୍ୟ ଆଖିବୁଜି ଦେବେ ।

: ଆଉ ଦେଖିବେ କ'ଣ ଜାଣନ୍ତି ? କାହାର କେତେ ଦାମି ମଟର ଅଛି, କିଏ କିପରି ସୁଟ୍ ପିନ୍ଧିଛି, କିଏ କେତେ ଘଣ୍ଟାରେ ସୁଟ୍ ବଦଳେଇ ପାରୁଛି ଇତ୍ୟାଦି ଇତ୍ୟାଦି । ଆଉ ଯଦି ଆପଣଙ୍କର ସେଭଳି କୌଣସି ବଡ଼ଲୋକ ସହିତ ବନ୍ଧୁତା ଥାଏ, ତା'ହେଲେ ଆପଣଙ୍କୁ କ'ଣ କରିବାକୁ ହେବ ଜାଣନ୍ତି ? କହିବାକୁ ହେବ, ଆପଣଙ୍କର ଏହି କାର୍‌ଟି ବୋଧହୁଏ ଭାରତବର୍ଷରେ ଏକମାତ୍ର ଦାମୀ କାର୍ । ଆପଣଙ୍କର ଏହି ସୁଟ୍‌କୁ ଦେଖି ଅମୁକ ନର୍ତ୍ତକୀ ଦୀର୍ଘ ସମୟ ଅପଲକ ନୟନରେ ଅନାଇ ରହିଥିଲା । ଆପଣଙ୍କ କୁକୁରଟା ଏତେ ଶିକାରୀ ଯେ ତା'ର ତୁଳନା ହୁଏ ନାହିଁ ।

ଜର୍ଜ ଗୋମେସ ଏଥର ଚା' କପ୍ ଉଠାଇଲେ ।

ସଞ୍ଜୟ ଘଡ଼ିକୁ ଚାହିଁଲା । ଜର୍ଜ ଗୋମେସ୍‌ଙ୍କ ଆପଏଣ୍ଟମେଣ୍ଟ ସମୟ ପନ୍ଦର ମିନିଟ୍ ହେବ ଅତିବାହିତ ହୋଇଗଲାଣି ।

ମୋହନ ସମ୍ବନ୍ଧରେ ଆଉ ଟିକିଏ ଜାଣିବା ପାଇଁ ସଞ୍ଜୟ ଆରମ୍ଭ କଲା : ଇତି ପୂର୍ବରୁ ମୋହନ ଯେଉଁ ତରୁଣୀଟିକୁ ଆଣି ଏହି ହୋଟେଲରେ ରଖିଥିଲା, ଆପଣ ବୋଧହୁଏ ଦେଖିଥିବେ ।

: ହୁଏତ ଦେଖିଛି, କିନ୍ତୁ ମୋ' ମନରେ କୌଣସି କୌତୂହଳ ଜାଗିନାହିଁ । ଲାଭ କ'ଣ ? ଯେଉଁଟା ଯାହାର ବ୍ୟବସାୟ, ସେ ସମ୍ବନ୍ଧରେ ଅନ୍ୟ ଜଣେ ହିସାବ ରଖିବା ଉଚିତ ନୁହେଁ ।

ମାନେ ? ସଞ୍ଜୟ ବିସ୍ମିତ ହୋଇ ପଚାରିଲା, ଆପଣ କ'ଣ କହିବାକୁ ଚାହାନ୍ତି ? ମୋହନ ତରୁଣୀମାନଙ୍କୁ ଆଣି ବ୍ୟବସାୟ କରେ ? ସେମାନେ କେହି ତା'ର ବନ୍ଧୁ ନୁହନ୍ତି ?

: ଆପଣ ଏ ସହରରେ ବର୍ତ୍ତମାନ ଶିଶୁ ଚଉଧୁରୀ ! ବଡ଼ଲୋକ ବୋଲାଉଥିବା ଲୋକଙ୍କ ସମ୍ପର୍କରେ ବେଶି କଥା ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତୁ ନାହିଁ । ତା'ହେଲେ ବିପଦରେ ପଡ଼ିବାର ସମ୍ଭାବନା ଅଛି ।

: କିନ୍ତୁ...

ନା, କିନ୍ତୁ ଫିନ୍ତୁ କିଛି ମୁଁ ଶୁଣିପାରିବି ନାହିଁ । ମୋ' ହାତରେ ବର୍ତ୍ତମାନ ସମୟ ଅଳ୍ପ, କାର୍ଯ୍ୟବହୁଳ । ସମ୍ଭବ ହେଲେ ଆପଣଙ୍କୁ ଦିନେ ସଙ୍ଗରେ ନେଇ ସେମାନଙ୍କ କାର୍ଯ୍ୟ କଳାପ ଦେଖାଇବି । ମୋର ଆପଏଣ୍ଟମେଣ୍ଟର ସମୟ ପ୍ରାୟ ହୋଇଆସିଲାଣି ।

ଜର୍ଜ ଗୋମେସ୍ ସିଗାରେଟ୍ ଟିଣ ଖୋଲି ସଞ୍ଜୟ ଆଡ଼େ ଦେଖାଇଲେ ।

ସଞ୍ଜୟ ଧନ୍ୟବାଦ ଦେଇ ଗୋଟିଏ ଗ୍ରହଣ କଲା ।

ଜର୍ଜ ଗୋମେସ୍ ରୁମ୍‌ରୁ ବାହାରିଗଲେ ।

କିନ୍ତୁ ଗୋମେସଙ୍କ କଥାଟା ସଞ୍ଜୟ ମନରେ କିପରି ପ୍ରତିକ୍ରିୟା ସୃଷ୍ଟି କଲା । ମଣିଷ ଚରିତ୍ରହୀନ ହୋଇପାରେ, ତା'ର ବହୁ ସଙ୍ଗିନୀ ଥାଇପାରନ୍ତି । କିନ୍ତୁ ନାରୀମାନଙ୍କୁ ନେଇ ବ୍ୟବସାୟ, ଏହା କିପରି କଥା ?

ସଞ୍ଜୟର ମୁଣ୍ଡଟା ଭାରାକ୍ରାନ୍ତ ହୋଇପଡ଼ିଲା ।

ମୋହନ ଫେରିଆସୁଥିଲା ।

ସଞ୍ଜୟ ନିଜ ରୁମ୍‌ରେ ବସିରହି ମୋହନର ଯିବା ପଥକୁ ଚାହିଁଥିଲା । ତା'ପରେ ସେ ଦୀର୍ଘ ସମୟ ନୀରବରେ ବସିରହିଲା । ତା' ମୁଣ୍ଡରେ କୌଣସି ଚିନ୍ତା ନ ଥିଲା କିମ୍ବା ଭାବନା ନ ଥିଲା ।

ହଠାତ୍ ରୁମ୍‌ର ଲାଇଟ୍‌ଟା ଜଳିଉଠିଲା ।

: ଆପଣ ଏତେବେଳଯାଏ ଅନ୍ଧକାରରେ ବସିଛନ୍ତି ? ବୟର ସ୍ୱର ଶୁଣାଗଲା ।

ସଞ୍ଜୟ ଉଠିଲା ଏବଂ ବେଶପୋଷାକ ପରିବର୍ତ୍ତନ କରି ରୁମ୍‌ରୁ ବାହାରକୁ ବାହାରିଲା ।

ମୋହନ ଯେଉଁ ରୁମ୍‌ରେ ମାଳାକୁ ଆଣି ରଖିଥିଲା, ସେଇ ରୁମ୍‌ରେ ହୁଏତ ଏହି ନୂତନ ତରୁଣୀଟିକୁ ଛାଡ଼ିଯାଇଛି ।

ସଞ୍ଜୟ ସେଇ ରୁମ୍ ଆଡ଼େ ଆଗେଇ ଗଲା । ରୁମ୍ ନମ୍ବର ୯୯ । କବାଟକୁ ସାମାନ୍ୟ ଠେଲିଲା, ଭିତରୁ ବନ୍ଦ ହୋଇଛି । ଡାକିବ ନା ନାହିଁ ? ଡାକିଲେ ନିଜକୁ କ'ଣ ବୋଲି ପରିଚୟ ଦେବ ? ମୋହନର ବନ୍ଧୁ କହିଲେ କ୍ଷତି କ'ଣ ?

ଦରଜାରେ କରାଘାତ କଲା ।

ଅଳ୍ପ ସମୟ ପରେ ଦରଜାଟି ଖୋଲିଗଲା ।

: କାହାକୁ ଖୋଜୁଛନ୍ତି ? ଏକ କୋମଳ କଣ୍ଠସ୍ୱର ସଙ୍ଗରେ ଗୋଟିଏ ସୁନ୍ଦର ମୁଖଶ୍ରୀ ବାହାରକୁ ବାହାରି ଆସିଲା ।

: ମିଃ ମହାପାତ୍ର । ମାନେ ମୋହନ ନାହିଁ ? ସଞ୍ଜୟ କହୁ କହୁ ଦରଜା ଠେଲି

ରୁମ୍ ଭିତରକୁ ପଶିଯାଇଥିଲା ଏବ ପୁଣି ଦରଜା ବନ୍ଦ କରୁ କରୁ କହିଲା, ମୋହନ ମୋର ବନ୍ଧୁ । ଏଠାରେ ତା' ସହିତ ଦେଖା ହେବାର କଥା । ଅବଶ୍ୟ ମୋର ଦଶ ପନ୍ଦର ମିନିଟ୍ ଡେରି ହୋଇଗଲା ।

କିନ୍ତୁ ସେ ତ ପ୍ରାୟ ଘଣ୍ଟାଏ ହେବ ବାହାରି ଗଲେଣି । ତରୁଣୀଟି ଗୋଟିଏ ସୋଫା ଉପରେ ବସୁ ବସୁ କହିଲା ।

ଆପଣ... ସଞ୍ଜୟ କିପରି ଅପ୍ରତିଭ ହେଲାପରି ନୀରବ ରହିଲା ।

ମୋ' ନାଁ ଶିପ୍ରା । ତରୁଣୀଟି ଉତ୍ତର ଦେଲା । କାଲି ମୋର ଗୋଟାଏ ଇଣ୍ଟରଭିଉ ଅଛି ।

ଓଃ ! ତା'ହେଲେ ମୋହନ ଏବେ ଆଉ ଏଠାକୁ ଆସିବାର ନାହିଁ ?

ସମୟ ପାଇଲେ ଆଉଥରେ ଆସିବେ ବୋଲି ମୋତେ କହିଯାଇଛନ୍ତି । ଆପଣଙ୍କର ଯଦି ବିଶେଷ ପ୍ରୟୋଜନ ଥାଏ, ତେବେ ନା ଠିକଣା ଦେଇଯାଆନ୍ତୁ, ସେ ଆସିଲେ ମୁଁ ତାଙ୍କୁ ଆପଣଙ୍କ କଥା କହିଦେବି ।

ସଞ୍ଜୟ ରହି ରହି ତରୁଣୀଟିର ମୁହଁକୁ ଚାହୁଁଥିଲା । ଲେଶମାତ୍ର ଦୁଃଖ ବା ହତାଶାର ଭାବ ସେଠି ଫୁଟିନାହିଁ । ବରଂ ଆଗ୍ରହ ଓ ଆନନ୍ଦର ଦୀପ୍ତି ରହି ରହି ଉକୁଚି ଉଠୁଛି ।

ଆଚ୍ଛା, ମୁଁ ତେବେ ଆସୁଛି ।

ଆପଣଙ୍କ ନାଁ ଠିକଣା କିଛି ରଖିଯିବେ ନାହିଁ ?

ନା, ମୋତେ ଆଜି ତା' ସହିତ ଦେଖା କରିବାକୁ ହେବ ।

ଆପଣ ଚା' ପିଇବେ ? ଶିପ୍ରା ପଚାରିଲା ।

ନା, ଧନ୍ୟବାଦ । ମୁଁ ଆସି ଆପଣଙ୍କୁ ବିରକ୍ତ କଲି, କ୍ଷମା କରିବେ ।

ଆହା, ଏ ଆପଣ କ'ଣ କହୁଛନ୍ତି । ଆପଣ ମିଃ ମହାପାତ୍ରଙ୍କର ବନ୍ଧୁ, ତା'ଛଡ଼ା ମୋତେ ବା ବିରକ୍ତ କ'ଣ କଲେ । ବରଂ ଏପରି କହି ମୋତେ କଷ୍ଟ ଦେଉଛନ୍ତି । ବସନ୍ତୁ, ମିଃ ମହାପାତ୍ର ହୁଏତ ଆସିପାରନ୍ତି ।

ସଞ୍ଜୟ ଟିକିଏ ଚିନ୍ତା କରି ଖଣ୍ଡିଏ ଚେଆର ଟାଣି ବସିଲା ।

: କ୍ଷମା କରିବେ ଶିପ୍ରା ଦେବୀ, ଆପଣ ବୋଧହୁଏ କଲିକତା ବାହାରୁ ଆସିଛନ୍ତି ? ସଞ୍ଜୟ କିପରି ପ୍ରଶ୍ନବାଚୀ ଦୃଷ୍ଟିରେ ଅନାଇ ରହିଲା ।

ଆପଣଙ୍କ ଅନୁମାନ ସତ୍ୟ ମିଃ...

ମୋ' ନାଁ ସଞ୍ଜୟ ଚଉଧୁରୀ ।

ହଁ ମିଃ ଚଉଧୁରି । ମୁଁ ଗୁଜରାଟରୁ ଆସିଛି । ମୋର ଅନେକ ଦିନରୁ ଏହିଭଳି ଏକ ଚାକିରୀ କରିବା ପାଇଁ ଅଶେଷ ଆଗ୍ରହ ଥିଲା । କିନ୍ତୁ ସୁଯୋଗ ମିଳୁ

ନ ଥିଲା । ହଠାତ୍ ସେଦିନ ଖବର କାଗଜରେ ଗୋଟାଏ ବିଜ୍ଞାପନ ଦେଖି ଆପ୍ଲାଇ କରି ଦେଇଥିଲି, ଭାବି ନଥିଲି ଇଣ୍ଟର୍‌ଭିଉ ପାଇଁ କଲ୍ ପାଇବି ।

ଚାକିରିଟା କେଉଁ ଧରଣର ?

ଅବଶ୍ୟ ଫିଲ୍ମ ଲାଇନ୍‌ର । କିନ୍ତୁ ସୁବିଧାରେ କରିପାରିଲେ ଭବିଷ୍ୟତ ଅଛି । ଆପଣଙ୍କ ସହିତ ପରିଚୟ ହେଲାଣି ଯେତେବେଳେ, ମୋ' ପାଇଁ ଆପଣ କ'ଣ ଟିକିଏ ଚେଷ୍ଟା କରିବେ ନାହିଁ ? ମାନେ ଇଣ୍ଟରଭିଉରେ ଯେପରି ପାସ୍ ହୋଇଯିବ, ସେଥିପାଇଁ ଆପଣ କ'ଣ ମୋ' ପାଇଁ ମିଷ୍ଟର ମହାପାତ୍ରଙ୍କୁ ଟିକେ କହିବେ ନାହିଁ ?

ଶିପ୍ରାର ଆଗ୍ରହ ଭାଙ୍ଗିଦେଲା ଭଳି ସାହସ ସଞ୍ଜୟର ନ ଥିଲା । କିନ୍ତୁ କି ଉତ୍ତର ଦେବ ସେ ? ନୀରବରେ ଚିନ୍ତା କରୁଥିଲା ।

: ଆପଣ କିଛି ମନେକରିବେ ନାହିଁ ମିଃ ଚଉଧୁରୀ । ଅବଶ୍ୟ ପ୍ରଥମ ପରିଚୟରେ ଆପଣଙ୍କୁ ଏପରି ଅନୁରୋଧ କରିବାଟା ମୋର ଅନ୍ୟାୟ ହୋଇଛି । ମୁଁ ସବୁବେଳେ ଟିକିଏ...

ନା ନା ଶିପ୍ରା ଦେବୀ ! ଆପଣଙ୍କ ପାଇଁ ମୁଁ ନିଶ୍ଚୟ ମୋହନକୁ କହିବି । କିନ୍ତୁ ଆପଣ ଯେତେଟା ଭାବୁଛନ୍ତି, ମୁଁ ମୋହନର ସେତେଟା ଅନ୍ତରଙ୍ଗ ନୁହେଁ । ତଥାପି ମୁଁ ଚେଷ୍ଟା କରିବି ।

ମୁଁ ଶୁଣିଥିଲି ଏଇ ପୋଷ୍ଟଟା ପାଇଁ ବହୁ ତରୁଣୀ ଆଜିଯାଏ ଇଣ୍ଟର୍‌ଭିଉ ଦେଇସାରିଲେଣି, କିନ୍ତୁ କାହାରିକୁ ନିୟୋଗ କରାହୋଇ ନାହିଁ । ତା' ମାନେ ସମସ୍ତେ ଫେଲ୍ କରିଛନ୍ତି ।

ଦେଖନ୍ତୁ ଆପଣଙ୍କ ଭାଗ୍ୟରେ କ'ଣ ଅଛି ।

ସବୁ ଭାଗ୍ୟ ମିଃ ଚଉଧୁରୀ, କିନ୍ତୁ ମୋ' ଭାଗ୍ୟ ଆଜିଯାଏ ମୋ' ସହିତ କେବେ ବିଟ୍ରେ କରିନାହିଁ ।

ମୁଁ ଆପଣଙ୍କ ସଫଳତା କାମନା କରୁଛି ।

ଖାଲି କାମନା କଲେ ହେବନାହିଁ ମିଃ ଚଉଧୁରୀ, ସହଯୋଗ କରିବାକୁ ହେବ ।

ଆପ୍ରାଣ ଚେଷ୍ଟା କରିବି ।

ସଞ୍ଜୟ ଉଠି ଠିଆ ହୋଇପଡ଼ିଥିଲା । କାରଣ ଶୀଘ୍ର ସେ ଶିପ୍ରା ରୁମ୍‌ରୁ ବାହାରି ଆସିବାକୁ ଚାହୁଁଥିଲା । କାଳେ ଯଦି ମୋହନ ଆସିଯାଏ ! ତା'ହେଲେ ତା'ର ସମସ୍ତ ଛଳନା ଧରାପଡ଼ିଯିବ ।

ଆଉ ଟିକେ ବସନ୍ତୁ ମିଃ ଚଉଧୁରୀ । ଶିପ୍ରା କହିଲା, ଏକାଏକା ବସିବାକୁ ମୋତେ ଭଲ ଲାଗୁନାହିଁ । ତା'ଛଡ଼ା ମନଟା ଏତେ ଚଞ୍ଚଳ ହୋଇପଡ଼ିଛି ଯେ କାଲି ଇଣ୍ଟରଭିଉ ନଯିବା ଯାଏ କିଛି ଭଲ ଲାଗିବ ନାହିଁ ।

ହୁଏ, ମଣିଷ ମନରେ ଯେତେବେଳେ ସ୍ୱପ୍ନ ଥାଏ, ଆଉ ସଫଳତାର

ସୁଯୋଗ ଘନେଇ ଆସୁଥାଏ, ସେତେବେଳେ ମଣିଷ ନିଜକୁ ଆୟତ୍ତ କରିପାରେ ନାହିଁ। ଆପଣଙ୍କ ଜୀବନରେ ସେହି ମୁହୂର୍ତ୍ତ ଆସିଛି । ଆଚ୍ଛା ମୁଁ ଆସୁଛି ।

ସଞ୍ଜୟ ଧୀରେଧୀରେ ବାହାରକୁ ବାହାରି ଆସିଲା ।

ଆପଣଙ୍କ ସହିତ ଆଉ ଦେଖା ହେବ ନାହିଁ ?

: ନିଶ୍ଚୟ ହେବ । ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ଆସିବି ।

ଶିପ୍ରା ମୁହଁରେ ଶୁଷ୍କ ହସ ଟିକିଏ ଫୁଟିଉଠିଲା । କହିଲା ସେ ତ ଆକାଶ କୁସୁମ ମିଃ ଚଉଧୁରୀ । ଯଦି ତୋଳି ନ ପାରେ ?

ପାରିବେ ଶିପ୍ରା ଦେବୀ ! ଆପଣଙ୍କ ପରି ଚତୁରୀ ଝିଅମାନେ ଯଦି ନ ପାରିବେ, ଆଉ ପାରିବ କିଏ ?

ସଞ୍ଜୟ ଚାଲି ଯାଉଥିଲା ।

ଶିପ୍ରା ଦୁଇହାତ ଯୋଡ଼ି ନମସ୍କାର ଜଣାଇଲା ।

ସଞ୍ଜୟ ପ୍ରତି ନମସ୍କାର କଲା ।

ରହସ୍ୟଘନ ପରିବେଶ ମଧ୍ୟରେ ସଞ୍ଜୟର ସମୟ କଟିବାକୁ ଚାହୁଁ ନ ଥିଲା ।

**

---

ରହି ରହି ମନେପଡ଼ି ଯାଉଥିଲା ମାଳା କଥା । କ'ଣ ହେଲା ତା'ର ପରିଣତି ! ବିଚାରୀ ହତଭାଗିନୀ । ବିବାହ ବେଦୀରୁ ଉଠିଆସିଥିଲା ମୋହନର ଅଭୟ ଆଶ୍ରୟ କାମନା କରି । କିନ୍ତୁ ଏଇ କ'ଣ ତା'ର ପରିଣତି !!

ରାତି ଘନେଇ ଆସୁଥିଲା ।

ସଞ୍ଜୟ ତା' ରୁମ୍‌ରେ ଶୋଇରହି ଆକାଶ ପାତାଳ ନାନା କଥା ଚିନ୍ତା କରୁଥିଲା । ନିଜେ ସେ କରିଛି କ'ଣ ! କାହିଁକି ବା ସ୍ୱପ୍ନର ଛାୟା ପଛରେ ସେ ଛୁଟିଛି !! ଯେତେ ବାଟ ଆଗେଇ ଆସିଲାଣି, ବର୍ତ୍ତମାନ ଆଉ ତା'ର ଫେରିଯିବାର ଉପାୟ ନାହିଁ । ସେ କ'ଣ ସାରାଜୀବନ ଗୋଟାଏ ଛାୟା ପଛରେ ଗୋଡ଼ାଉଥିବ ।

ଦିଆଲ ଘଡ଼ି ଆଠଟାରେ ସୂଚନା ଦେଲା ।

ସଞ୍ଜୟ ସଚେତନ ହୋଇଉଠିଲା ।

ଠିକ୍ ନଅଟାବେଳେ ଫାଉଣ୍ଡେନ କ୍ଲବକୁ ଯାଇ ହାଜିରା ଦେଇ ଆସିବାକୁ ହେବ । ଆଉ ମାଳା ! ତା' ସହିତ କ'ଣ ଏ ଜୀବନରେ ଦେଖା ହେବ ନାହିଁ ? ମୋହନ ମାଳାକୁ ନେଇ ଖିଦିରପୁର ଟ୍ରାମଡିପୋ ପାଖରେ ଯେଉଁଠି ରଖି ଆସିଥିଲା, ସେଠାକୁ ଯାଇ ଖୋଜିଲେ ହୁଏତ ଦେଖା ମିଳନ୍ତା । ଥରେ ଚେଷ୍ଟା କରିବ । ଆଉ

ଯାହା ହେଉ ନ ହେଉ, ମୋହନ ଯେ ମାଳାକୁ ଆନ୍ତରିକ ଭଲପାଏ, ତାହା ମୋଟେ ଠିକ୍ ନୁହେଁ । ମାଳା ମନରେ ଏହି ଅସତ୍ୟ ଧାରଣାଟା କି ରୂପ ପରିଗ୍ରହ କରିଛି କିଏ ଜାଣେ ।

ସଞ୍ଜୟ ପାରାଡାଇଜ୍ ହୋଟେଲରୁ ବାହାରି ପଡ଼ିଲା ।

ପ୍ରଥମେ ସେ ଖିଦିରପୁର ଯିବ । ତା'ପରେ ଫାଉଣ୍ଟେନ କ୍ଲବ ।

ଠିକ୍ ତଳେ ଫୁଟ୍‌ପାଥ ଉପରେ ଜର୍ଜ ଗୋମେସ୍‌ଙ୍କ ସହିତ ପୁଣି ଦେଖା ହୋଇଗଲା । ସେ ହୋଟେଲକୁ ଫେରୁଥିଲେ ।

ଅସମୟରେ କୁଆଡ଼େ ବାହାରିଲେ ଚଉଧୁରୀ ?

ଗୋଟାଏ ଜରୁରୀ କାର୍ଯ୍ୟରେ । ଆପଣ ଚାଲନ୍ତୁ, ମୁଁ ଏଇ ଅଳ୍ପ ସମୟ ମଧ୍ୟରେ ଫେରିଆସିବି ।

ଜର୍ଜ ଗୋମେସ ଆଉ ପାଟି ଫିଟେଇଲେ ନାହିଁ ।

ସଞ୍ଜୟ ଗୋଟାଏ ଟ୍ୟାକ୍‌ସି ଡାକି ବସିଲା ।

ଖିଦିରପୁର ଟ୍ରାମଡିପୋ ପାଖରେ ଯେଉଁ କୋଠାଘରେ ମାଳାକୁ ମୋହନ ଛାଡ଼ିଆସିଥିଲା, ସଞ୍ଜୟ ସେଇଠି ଓହ୍ଲେଇଲା ।

ସେଦିନ ଭଳି କୋଠାଟାରେ ଏତେ ଗହଳଚହଳ ଜଣାଯାଉ ନ ଥିଲା । ଦୋତାଲାର ବାରଣ୍ଡାରେ ଅଳ୍ପ ଆଲୋକ ଦେଖାଯାଉଥିଲା । ଦୁଆରେ କୋଲାପ୍‌ସିବ୍‌ଲ ଗେଟ୍‌ରେ ଗୋଟାଏ ତାଲା ପଡ଼ିଥିଲା ।

ସଞ୍ଜୟ ଗେଟ୍‌ଟାକୁ ଧରି ଦୁଇ ଚାରିଥର ହଲାଇଲା । କିନ୍ତୁ ଭିତରୁ କେହି ଆସିଲେ ନାହିଁ ବା କୌଣସି ଉତ୍ତର ଦେଲେ ନାହିଁ ।

ତା'ହେଲେ କୋଠାଟାରେ ବ'ଣ ବର୍ତ୍ତମାନେ କେହି ନାହାନ୍ତି ?

ସଞ୍ଜୟ ଫେରି ଯାଉଥିଲା ।

ଗୋଟାଏ ସୁନ୍ଦର କାର୍ ଆସି କୋଠା ନିକଟରେ ଠିଆହେଲା । ସଞ୍ଜୟ ବୁଲି ଅନେଇଲା । ସ୍ୱୟଂ ମୋହନ ଏବଂ ପଛେପଛେ ମାଳା ।

ସଞ୍ଜୟ ଆତ୍ମଗୋପନ କଲା । ମୋହନ ଆଗରେ ଉଭା ହେବା ପାଇଁ ସଞ୍ଜୟର ଉପାୟ ନଥିଲା ।

ମୋହନ ଓ ମାଳା କୋଠା ଭିତରେ ପ୍ରବେଶ କଲେ ।

ସଞ୍ଜୟର କରଣୀୟ ଆଉ କିଛି ନଥିଲା ! ସମୟ ମଧ୍ୟ ବଢ଼ି ଚାଲିଥିଲା । ତାକୁ ନଅଟାରେ ଯାଇ ଫାଉଣ୍ଟେନ୍ କ୍ଲବରେ ହାଜିରା ଦେବାକୁ ହେବ । ସଞ୍ଜୟ ଖଣ୍ଡିଏ ଟ୍ୟାକ୍‌ସିର ପ୍ରତୀକ୍ଷାରେ ଠିଆହେଲା ।

ସଞ୍ଜୟ ଫାଉଣ୍ଟେନ୍ କ୍ଲବର ନିର୍ଦ୍ଦିଷ୍ଟ ଚେଆରଟିରେ ନଅଟାରୁ ନଅଟା ଦଶ ମିନିଟ୍ ପର୍ଯ୍ୟନ୍ତ ବସିରହିଲା ।

ଗଭୀର ନିର୍ଜନତା

ଭାବିଥିଲା ହୁଏତ ଫ୍ଲୋରା ସହିତ ଦେଖା ହୋଇଯିବ ।

କିନ୍ତୁ କେହି ଆସିଲେ ନାହିଁ କିମ୍ବା କୌଣସି ନିର୍ଦ୍ଦେଶପତ୍ର ସଞ୍ଜୟ ପାଇଲା ନାହିଁ ।

ନଅଟା ଦଶ ମିନିଟ୍‌ରେ ତା'ର ଚେଆର ଛାଡ଼ିବାର କଥା । ସେ ଛାଡ଼ିଲା ମଧ୍ୟ । ଫେରିଆସିଲା ଫାଉଣ୍ଟେନ କ୍ଲବର ଗହଳି ଭିତରକୁ । ତଳ ତାଲାରେ, ବିରାଟ ହଲ ଘରଟାରେ ଜନଗହଳି ଭିତରେ ସେ ଗୋଟିଏ କୋଣକୁ ଖଣ୍ଡିଏ ଚେଆର ଉପରେ ଯାଇ ଚୁପ୍‌ଚାପ୍ ବସିଲା । ତାକୁ ଭଲ ଲାଗୁ ନ ଥିଲା ।

ବୟ ଆସି ଅର୍ଡର ପ୍ରତୀକ୍ଷାରେ ଠିଆହେଲା ।

କଫି ।

ସଞ୍ଜୟ ବୟଟିର ମୁହଁକୁ ଚାହିଁ କହିଲା ।

ହଲ୍ ଭିତର ଗହଳିଚହଳି, ହାସ୍ୟ ପରିହାସ, ରଙ୍ଗ ବେରଙ୍ଗର ନରନାରୀ, କାହାରି ଆଡ଼େ ସଞ୍ଜୟ ଚାହୁଁ ନ ଥିଲା । ସେ ଯେପରି ନିଜ ଭିତରେ ନିଜେ ନିମଗ୍ନ ହୋଇଯାଇଥିଲା ।

ହ୍ୟାଲୋ ଚଉଧୁରୀ । ଆପଣଙ୍କୁ ଏଠାରେ କିନ୍ତୁ ମୁଁ ଆଶା କରି ନ ଥିଲି ।

ସଞ୍ଜୟ ମୁହଁ ଟେକି ଚାହିଁଲା । ଟେବୁଲ ପାଖରେ ଠିଆହୋଇଛନ୍ତି ଜର୍ଜ୍ ଗୋମେସ ଏବଂ ଆଉ ଜଣେ ଅର୍ଦ୍ଧବୟସ୍କା ଭଦ୍ରମହିଳା ।

: ମୁଁ ପ୍ରଥମେ ଏହାଙ୍କ ସହିତ ଆପଣଙ୍କ ପରିଚୟ କରାଇ ଦିଏ । ୟା'ଙ୍କ ନାଁ ବାସବଦତ୍ତା । ମୋର ପି.ଏ. । ଆଜି ତାଙ୍କର ଜନ୍ମତିଥି । ବାଧ୍ୟକରି ମୋତେ ଏଠାକୁ ଟାଣିଆଣିଲେ । ମୋ' ହାତରେ ସମୟ ନ ଥିଲେ ମଧ୍ୟ ମୁଁ ବାଧ୍ୟ ହୋଇଆସିଲି ।

ସଞ୍ଜୟ ସେମାନଙ୍କୁ ବସିବା ପାଇଁ ଅନୁରୋଧ କଲା ।

ଦୁହେଁ ଦୁଇଖଣ୍ଡ ଚେଆର ଅଧିକାର କରି ବସିଲେ ।

ଜର୍ଜ ଗୋମେସ ପୁଣି ଆରମ୍ଭ କଲେ : ୟା'ଙ୍କ ନା ମିଃ ଚଉଧୁରୀ । ଆମରି ହୋଟେଲରେ ରୁହନ୍ତି । ମୋର ନୂତନ ବନ୍ଧୁ ।

ବାସବଦତ୍ତା ଓ ସଞ୍ଜୟ ମଧ୍ୟରେ ନମସ୍କାର ବିନିମୟ ହେଲା ।

ସଞ୍ଜୟ କହିଲା   କ'ଣ ଅଣେଇବି କୁହନ୍ତୁ ।

କ୍ଷମା କରିବେ । ବାସବଦତ୍ତା କହିଲା, ଆମେ ଏଇ ବର୍ତ୍ତମାନ ଭୋଜନ ପର୍ବ ଶେଷକରି ଫେରିଯାଉଥିଲୁ ।

ସଞ୍ଜୟ ଗୋମେସଙ୍କ ମୁହଁକୁ ଚାହିଁଲା ।

ମାତ୍ର କପେ କଫି ଅଣାନ୍ତୁ ।

ବାସବଦତ୍ତା ଘଡ଼ି ଦେଖିଲା ଏବଂ କହିଲା   ମୋତେ ଟିକିଏ ଛୁଟି ଦିଅନ୍ତୁ ଜର୍ଜ ! ରାତି ଅନେକ ହେଲାଣି । ମା'ଙ୍କ ଦେହ ଭଲ ନାହିଁ, ତେଣୁ...

ଓଃ ଇଏସ୍, ତୁମେ ଯାଅ । ସମୟକୁ ଏପରି ଅଯଥାରେ ନଷ୍ଟ କରିବାର ଅର୍ଥ କିଛି ହୁଏ ନାହିଁ ।

ବାସବଦତ୍ତା ଉଠି ଦୁଇଜଣଙ୍କୁ ନମସ୍କାର କରି ବାହାରିଗଲା ।

ବୁଝିଲେ ଚଉଧୁରୀ । ଝିଅଟି ଖାସା ଝିଅ । ଯେପରି କର୍ମଠ, ସେହିପରି ଭଦ୍ର । ମୋ' ପାଖରେ ପ୍ରାୟ ପାଞ୍ଚବର୍ଷ ହେବ କାମ କରୁଛି । ସମୟର ସଦୁପଯୋଗ ଯେପରି ସେ କରୁଛି, ଆପଣ ଆଶ୍ଚର୍ଯ୍ୟ ହେବେ ।

ବୟ କଫି ଆଣି ପ୍ରବେଶ କଲା ।

ସଞ୍ଜୟର ଆଉ କୌଣସି କଥା ଶୁଣିବାର ଆଗ୍ରହ ନ ଥିଲା ।

କିନ୍ତୁ ଗୋମେସ କଥାର ଉତ୍ତର ନ ଦେଲେ ଅଭଦ୍ରାମି ହେବ । ତେଣୁ ସେ କେବଳ ହଁ ହାଁ କହି କୌଣସି ପ୍ରକାର ଭଦ୍ରତା ରକ୍ଷା କରୁଥିଲା ।

ଆପଣ ଫାଉଣ୍ଟେନ କ୍ଲବର ସନ୍ଧାନ କିପରି ପାଇଲେ ?

: ଇମିତି ବୁଲୁବୁଲୁ ଚାଲିଆସିଥିଲି ।

ଠିକ୍ ସେତିକିବେଳେ ହଠାତ୍ ହଲ୍‌ରେ ଆଲୋକଗୁଡ଼ିକ ଲିଭିଗଲା । ସମବେତ କଣ୍ଠର କିପରି ଏକ ଭୟାର୍ତ୍ତ ଚିତ୍କାର ହଲ୍‌ଟାକୁ କମ୍ପମାନ କରିଦେଲା । ଗୋମେସ୍ ସଞ୍ଜୟର ହାତକୁ ଖୁବ୍ ଜୋର୍‌ରେ ଜାବୁଡ଼ି ଧରି ଠିଆହୋଇ ପଡ଼ିଲେ । ଏବଂ ସଙ୍ଗେସଙ୍ଗେ ସଞ୍ଜୟକୁ ଟାଣିଟାଣି ଆଉଏକ ସ୍ଥାନକୁ ନେଇଗଲେ ।

କ'ଣ ହେଲା ? କରେଣ୍ଟ ଫେଲ୍ କରିଛି ? ସଞ୍ଜୟ ପଚାରିଲା ।

ଆପଣ ଚୁପ୍‌ଚାପ୍ ମୋ' ସହିତ ଚାଲିଆସନ୍ତୁ ।

ଜର୍ଜ ଗୋମେସଙ୍କ କଣ୍ଠସ୍ୱର ଗମ୍ଭୀର ଶୁଣାଯାଇଥିଲା ।

ହଲ୍‌ରେ ନରନାରୀଙ୍କ ସମବେତ କଣ୍ଠର ଚିତ୍କାର ଶୁଣାଯାଉଥିଲା ।

ଦଳ ବାନ୍ଧି ସମସ୍ତେ ଏକା ସାଙ୍ଗରେ ବାହାରକୁ ବାହାରି ଯିବା ପାଇଁ ଚେଷ୍ଟା କରୁଥିଲେ ।

କେତୋଟି ମୁହୂର୍ତ୍ତ ମାତ୍ର ।

ତା'ପରେ ହଲ୍ ଘରେ ପୁଣି ଆଲୋକର ପ୍ଳାବନ ଖେଳିଗଲା । ସେତେବେଳକୁ ଗୋମେସ୍‌ଙ୍କ ସହିତ ସଞ୍ଜୟ ଗୋଟାଏ ଅପ୍ରଶସ୍ତ ଗଳିପଥରେ ଠିଆହୋଇଥିଲା ।

ଝାପ୍‌ସା ଆଲୋକର ମଳିନତା ଭିତରେ ସଞ୍ଜୟ ଗୋମେସ୍ ମୁହଁକୁ ପ୍ରଶ୍ନବାଚୀ ନୟନରେ ଅନାଇଥିଲା ।

ଗୋମେସ୍ ଇଙ୍ଗିତରେ ସଞ୍ଜୟକୁ ନୀରବ ରହିବାକୁ କହି ପଛେପଛେ ଅନୁସରଣ କରିବା ପାଇଁ କହିଲେ ।

ଗୋଟିଏ ଅପ୍ରଶସ୍ତ ପଥ ।

ଧୂଳିମାଟି ଓ ବୁଢ଼ିଆଣୀ ଜାଲରେ ପୂର୍ଣ୍ଣ ।

କିଛି ଦୂର ଆଗେଇବା ପରେ, ଗୋଟିଏ ଗୋଲେଇ ଲୁହାଶିଡ଼ି ନିକଟରେ ଯାଇ ସେମାନେ ପହଞ୍ଚିଲେ ।

ସଞ୍ଜୟ ଗୋମେସ୍‌ଙ୍କ କାନ ପାଖକୁ ମୁହଁ ନେଇ ପଚାରିଲା, କେଉଁଠାକୁ ଯାଉଛନ୍ତି ?

: ମୋହନ ସହିତ ଆପଣଙ୍କର ପରିଚୟ କରାଇଦେବି । ବଡ଼ଲୋକ ହେବାକୁ ହେଲେ ଆଜି କାଲି କ'ଣ କରିବାକୁ ହୁଏ, ମୁଁ ଆପଣଙ୍କୁ ଦେଖାଇଦେବି ।

ସଞ୍ଜୟ ନୀରବରେ ଗୋମେସଙ୍କୁ ଅନୁସରଣ କଲା ।

ସେଇ ଗୋଲେଇ ଲୁହାଶିଡ଼ିର ପାହାଚ ଅତିକ୍ରମ କରି ସେମାନେ ଉପରକୁ ଉଠୁଥିଲେ । କିଛି ଦୂର ଯିବା ପରେ ଏକ ପ୍ରଶସ୍ତ ବାରଣ୍ଡା ଉପରେ ଦୁହେଁ ପହଞ୍ଚିଲେ । ସାମନାରେ କାଚବାଡ଼ଯୁକ୍ତ ଗୋଟାଏ ଦରଜା ।

ଗୋମେସ ସଞ୍ଜୟଙ୍କୁ କାନ ପାଖରେ କହିଲେ : ଖୁବ୍ ସାବଧାନ, ଆପଣ ଏହି କାଚ ଉପରେ ଆଖିରଖି ଭିତରକୁ ଚାହାନ୍ତୁ । ଠିକ୍ ଏଇ ଜାଗାଟାରେ ଆଖି ରଖିବେ । ତା' ନହେଲେ ଭିତରର କୌଣସି ବସ୍ତୁ ଦେଖାଯିବ ନାହିଁ ।

ସଞ୍ଜୟ ଭିତରକୁ ଚାହିଁ ସ୍ତବ୍ଧ ହୋଇଗଲା ।

ଗୋଟାଏ ଅପୂର୍ବ ସାଜରେ ସଜ୍ଜିତ ଘର । ଘର ଭିତରେ ଆସବାବପତ୍ରର କଳନା କରିବା ସହଜ ନୁହେଁ । ଜଣେ ଲମ୍ବା ଲୋକ ଗୋଟିଏ ଟେବୁଲ ଉପରେ ଭରାଦେଇ ବସିଛି । ତା' ପାଖକୁ ମୋହନ ଏବଂ ଆଉ ଦି' ଜଣ ସ୍ତ୍ରୀ ଲୋକ । ସମସ୍ତେ ସେହି ଟେବୁଲ ଚାରି ପାଖରେ ଘେରିବସିଛନ୍ତି ।

ସେମାନଙ୍କ ମଧ୍ୟରେ କ'ଣ କଥାବାର୍ତ୍ତା ହେଉଛି ।

ଲମ୍ବା ଲୋକଟି ଟିକିଏ ଉତ୍ତ୍ୟକ୍ତ ଜଣାଯାଉଛି ।

ଟେବୁଲର ଗୋଟିଏ ପାର୍ଶ୍ୱକୁ ଏକ ଛୋଟ ଲେଦର ସୁଟ୍‌କେଶ ଥୁଆ ହୋଇଛି । କ'ଣ କଥାବାର୍ତ୍ତା ପରେ, ମୋହନ ସେଇ ଲେଦର ସୁଟ୍‌କେସ୍‌ଟି ଖୋଲିଲା ଏବଂ ତା' ଭିତରୁ ଗୁଡ଼ାଏ ଦାମି ଗହଣା ବାହାର କରି ଟେବୁଲ ଉପରେ ରଖିଲା ।

ସଞ୍ଜୟର ଦେହ ଶୀତେଇ ଉଠିଲା ।

ତା'ର ମନେହେଉଥିଲା, ଏଇ ଲେଦର ସୁଟ୍‌କେସ୍‌ଟି ମାଳାର ଏବଂ ଏହି ଗହଣାଗୁଡ଼ିକ ମଧ୍ୟ ତା'ରି । କାରଣ ସେ ଟ୍ରେନ୍‌ରେ ଏହି ସୁଟ୍‌କେସ୍‌ଟି ଦେଖିଥିଲା ଓ ଏହି ଗହଣାଗୁଡ଼ିକ ସହିତ ତା'ର ସାମାନ୍ୟ ପରିଚୟ ଅଛି ।

ଲମ୍ବା ଲୋକଟି ଗୋଟି ଗୋଟି କରି ଗହଣାଗୁଡ଼ିକ ପରୀକ୍ଷା କଲା । ତା'ପରେ ଗୋଟିଏ ସ୍ତ୍ରୀଲୋକକୁ କ'ଣ ନିର୍ଦ୍ଦେଶ ଦେଲା ।

ସ୍ତ୍ରୀଲୋକଟି ଉଠିଯାଇ ଘରର ଗୋଟାଏ ଲୁହାସିନ୍ଦୁକ ଖୋଲିଲା । ଗୋଟି ଗୋଟି କରି ଗହଣାଗୁଡ଼ିକ ନେଇ ତହିଁରେ ବନ୍ଦ କଲା ।

ମୋହନ ସେହି ଲମ୍ବା ଲୋକଟିକୁ କ'ଣ କହିଲା ।

ଲମ୍ବା ଲୋକଟି ହାତ ବଢ଼ାଇ ଅନ୍ୟ ସ୍ତ୍ରୀଲୋକଟିକୁ କ'ଣ ନିର୍ଦ୍ଦେଶ ଦେଲା । ସେ ସ୍ତ୍ରୀଲୋକଟି ଉଠି ଚାଲିଗଲା ।

ମୋହନ ଉଠି ଯାଉଥିଲା ।

କିନ୍ତୁ ତା'କୁ ବସିବା ପାଇଁ ଲମ୍ବା ଲୋକଟି ନିର୍ଦ୍ଦେଶ ଦେଲା ।

କିଛି ସମୟ ପରେ ଗୃହ ମଧ୍ୟରେ ଯିଏ ପ୍ରବେଶ କଲା, ସଞ୍ଜୟ ଦେଖିବା କ୍ଷଣି ଶିହରି ଉଠିଲା ।

ଶିପ୍ରା !

ଲମ୍ବା ଲୋକଟି ନିର୍ଦ୍ଦେଶରେ ଶିପ୍ରା ଗୋଟିଏ କୋଣକୁ ଖଣ୍ଡିଏ ଚେଆର ଉପରେ ବସିଲା ।

ଶିପ୍ରାର ଆଖିରେ ଆଶାର ରେଖା ଫୁଟିଉଠିଥିଲା ।

ଲମ୍ବା ଲୋକଟି ଶିପ୍ରା ଆଡ଼େ କିଛି ସମୟ ଅନାଇ ରହିଲା । ଗୃହ ମଧ୍ୟରୁ ଅନ୍ୟମାନେ ବାହାରକୁ ଚାଲିଯାଇଥିଲେ । ମୋହନ ତଳକୁ ମୁହଁପୋତି ନୀରବରେ ବସିରହିଥିଲା ।

ମୋହନ ଶିପ୍ରା ଆଡ଼େ ବୁଲି ଅନେଇଲା ଏବଂ ଲମ୍ବା ଲୋକଟି ଆଡ଼େ ହାତ ବଢ଼େଇ ଶିପ୍ରାକୁ କ'ଣ କହିଲା । ଶିପ୍ରା ହାତଯୋଡ଼ି ଲମ୍ବା ଲୋକଟିକୁ ନମସ୍କାର କଲା ।

ଦୁହିଁଙ୍କ ମଧ୍ୟରେ କେତେପଦ କଥାବାର୍ତ୍ତା ବିନିମୟ ପରେ ମୋହନ ଘରୁ ଉଠି ବାହାରକୁ ଚାଲିଗଲା ।

ଶିପ୍ରା ଓ ଲମ୍ବା ଲୋକଟି ନୀରବରେ ବସିରହିଲେ ।

ପ୍ରାୟ ଦଶମିନିଟ୍ ଅତିବାହିତ ହୋଇଗଲା ।

ପୁଣି ମୋହନ ଗୃହ ମଧ୍ୟରେ ପ୍ରବେଶ କଲା । ପଛେପଛେ ଆଉ ଦୁଇଜଣ ଲୋକ । ବେଶ୍ ସୁସ୍ଥସବଳ । ପୋଷାକ ପରିପାଟୀରେ ସମ୍ଭ୍ରାନ୍ତ । ଦୁହେଁ ଆସି ଲମ୍ବା ଲୋକଟିକୁ ଅଭିନନ୍ଦନ ଜଣାଇଲେ । ଦୁଇଟି ଚେଆର ଅଧିକାର କରିବସିଲେ । ମୋହନ ଶିପ୍ରା ଆଡ଼େ ହାତ ବଢ଼ାଇ ସେମାନଙ୍କୁ କ'ଣ କହିଲା ।

ଦୁଇଜଣଯାକ ଏକଲୟରେ ଶିପ୍ରା ଆଡ଼େ ଅନେଇ ରହିଲେ ।

ତା'ପରେ ଲମ୍ବା ଲୋକଟି ସହିତ କରମର୍ଦ୍ଦନ କଲେ ।

ସେ ଦୁଇଜଣଙ୍କ ମଧ୍ୟରୁ ଜଣେ ପକେଟରୁ ଖଣ୍ଡିଏ ଚେକ୍ ବହି ବାହାର କରି ଲେଖିଲେ ଏବଂ ଲେଖାସାରି ଚେକ୍‌ଖଣ୍ଡିକ ଲମ୍ବା ଲୋକଟି ହାତକୁ ବଢ଼ାଇଦେଇ ଶିପ୍ରା ଆଡ଼େ ଥରେ ଚାହିଁଲେ ! ତା'ପରେ ଦୁହେଁ ଉଠିଲେ ଏବଂ ଘରୁ ବାହାରକୁ ବାହାରି ଗଲେ ।

ଶିପ୍ରା କେବଳ ନୀରବରେ ବସି ରହିଥିଲା ।

ହୁଏତ ସେ ନିଜ କଥା ଚିନ୍ତା କରୁଥିଲା । ଇଣ୍ଟରଭିଉରେ ପାସ୍ କରିପାରିଲେ

ଏକ ସୁଦୃଢ଼ ଭବିଷ୍ୟତ ସେ ଗଠନ କରିପାରିବ । ଆଉ ସେଇ ଲମ୍ବା ଲୋକଟି ! ସେ କ'ଣ ଭାବୁଥିଲା...?

ସଞ୍ଜୟ କାହା ହାତର ସ୍ପର୍ଶ ପାଇ ଚମକିଉଠିଲା ।

ଜର୍ଜ ଗୋମେସ୍ ସଞ୍ଜୟ କାନ ପାଖରେ ମୁହଁ ରଖି କହିଲେ, ଏଥର ଚାଲିଆସ । ଅନେକ ସମୟ ହୋଇଗଲାଣି । ଏଠାରେ ବେଶି ସମୟ ରହିବା ଆଦୌ ନିରାପଦ ନୁହେଁ ।

କିନ୍ତୁ ସଞ୍ଜୟ ଶିପ୍ରାର ଶେଷ ପରିଣତି କ'ଣ ହେବ ଦେଖିବା ପାଇଁ ଅପେକ୍ଷା କରୁଥିଲା ।

ଜର୍ଜ ଗୋମେସ୍ ସଞ୍ଜୟକୁ ଆଉ ସେଠାରେ ରଖାଇ ଦେଲେ ନାହିଁ । ହାତ ଧରି ଟାଣୁଟାଣୁ ଚୁପିଚୁପି କହିଲେ ଗୋଟାଏ ଜାଗାରେ ଏତେ ସମୟ ଠିଆହେଲେ ଅନ୍ୟ ସବୁ ଜିନିଷ ଦେଖିବେ କେତେବେଳେ ।

ଜର୍ଜ ସେହି ଅନ୍ଧକାର ଶିଡ଼ିବାଟେ ସଞ୍ଜୟକୁ ଆଉ କିଛି ଦୂର ନେଇଯାଇ ଗୋଟିଏ ବନ୍ଦ ଘର ଦୁଆରେ ଠିଆ କରେଇଲେ । ପ୍ରଥମେ କାନ ପାତି ସେ କ'ଣ ଶୁଣିଲେ । ତା'ପରେ ଧୀରେ ଦରଜାଟି ଠେଲି ଟିକିଏ ଫାଙ୍କ୍ କରି ଚାହିଁଲେ । କ'ଣ ଭିତରେ ଦେଖିଲେ କେଜାଣି ହଠାତ୍ ସଞ୍ଜୟର ହାତ ଧରି, ଦରଜାଟା ଖୋଲିଦେଇ ଭିତରକୁ ଠେଲିଦେଇ, ଦରଜାଟା ବନ୍ଦ କରିଦେଲେ ।

ସଞ୍ଜୟ ସେହି ଅନ୍ଧକାର ଘର ଭିତରେ ପ୍ରଥମେ ହତଚକିତ ହୋଇପଡ଼ିଲା । ତା'ପରେ ଦରଜା ପାଖକୁ ଛୁଟିଯାଇ ଦରଜା ଠେଲିବା ମାତ୍ରକେ ବାହାରୁ ଗୋଟିଏ ଟର୍ଚ୍ଚ ଜର୍ଜ ଗୋମେସ୍ ସଞ୍ଜୟ ହାତରେ ଧରାଇ ଦେଇ ଥିରି ଥିରି କହିଲେ ଭୟର କିଛି କାରଣ ନାହିଁ । ମୁଁ ବାହାରେ ପହରା ଦେଉଛି । ଆପଣ ଶୀଘ୍ର ଶୀଘ୍ର କାମ ସାରନ୍ତୁ ।

ପୁଣି ଦରଜାଟା ବନ୍ଦ ହୋଇଗଲା ।

ଶୀଘ୍ର ଶୀଘ୍ର କି କାମ ସାରିବ ସଞ୍ଜୟ ?

ନିଜେ ସେ କିଛି ବୁଝିପାରିଲା ନାହିଁ । ତଥାପି ଟର୍ଚ୍ଚଟା ଜାଳି ଘର ଭିତରଟା ଦେଖିବାକୁ ଚେଷ୍ଟା କଲା । ଫାଙ୍କା ଘର । ଟେବୁଲ ଚେଆର କେଇଖଣ୍ଡ । ଗୋଟାଏ ଷ୍ଟିଲ୍ ଆଲମାରୀ ।

ସଞ୍ଜୟ କ'ଣ ଦେଖିବ ଏ ଘର ଭିତରେ ?

ହଠାତ୍ ତା'ର ଦୃଷ୍ଟିପଡ଼ିଲା ଆଲମାରୀର ଶେଷ ଭାଗକୁ । ଗୋଟିଏ ନାଲି ଆଲୋକ ଦପ୍ ଦପ୍ ହେଉଛି । ସଞ୍ଜୟ ଆକୃଷ୍ଟ ହୋଇ ସେଇ ଆଲୋକ ଆଡ଼େ ଆଗେଇ ଗଲା । ତା' ପାଖକୁ ଖଣ୍ଡେ ଚଉକା ନୀଳ କାଚ । ଠିକ୍ 'ମ୍ୟାଜିକ୍ ଆଇ' ସାଇଜ୍‌ର ।

ସଞ୍ଜୟ ଯାଇ ତା' ଡାହାଣ ଆଖିଟା ସେଇଠି ଲଗାଇ ଦେଲା । ତାକୁ ଦେଖାଗଲା ଆଉ ଗୋଟାଏ ହଲ୍‌ଘର ଭିତରେ ତିନିଜଣ ତରୁଣୀ ଓ ଦୁଇଜଣ ପୁରୁଷ ବସିରହିଛନ୍ତି । ସେମାନଙ୍କ ଭିତରୁ ଜଣେ ତା'ର ଚିହ୍ନା । ସେ ଜଣକ ଫ୍ଲୋରା । ପୁରୁଷଙ୍କ ଭିତରୁ ଜଣକ ମୁଣ୍ଡ ଚନ୍ଦା ଏବଂ ଆଉ ଜଣେ ବାବୁରୀବାଳ ରଖିଛି । ଚନ୍ଦାମୁଣ୍ଡ ଲୋକଟି ବାଙ୍ଗର । ବୟସ୍କ । ସେ ହାତ ଠାରି ଅନ୍ୟ ଲୋକଟିକୁ କ'ଣ କହିଲା ! ଲୋକଟି ଉଠିଯାଇ ଘରର ଗୋଟାଏ ଷ୍ଟିଲ ଆଲମାରୀ ଖୋଲିଲା । ସଞ୍ଜୟର ଆଖି ଝଲସିଗଲା । ସଂପୂର୍ଣ୍ଣ ଆଲମାରୀଟା କେବଳ ଆଗ୍ନେୟାସ୍ତ୍ରରେ ଭରା । ଲୋକଟି ଆଲମାରୀ ଭିତରୁ ଗୋଟିଏ ରିଭଲ୍‌ଭର୍ ଆଣି ଚନ୍ଦା ଲୋକଟିକୁ ଦେଲା । ସେ ରିଭଲ୍‌ଭର୍‌ର ଚେମ୍ବର ଖୋଲି ପରୀକ୍ଷା କଲା ଏବଂ ଡ୍ରୟାର ଟାଣି ତହିଁରେ ଗୁଳି ଭରିଲା । ତା'ପରେ ଫ୍ଲୋରା ଆଡ଼େ ଚାହିଁ କ'ଣ କହିଲା । ସେ ଆସନରୁ ଉଠିଯାଇ ଚନ୍ଦା ଲୋକଟି ସାମ୍ନାରେ ଠିଆହେଲା । ସେହି ଚନ୍ଦାଲୋକ ରିଭଲ୍‌ଭର୍‌ଟି ଫ୍ଲୋରା ହାତକୁ ବଢ଼ାଇ ଦେଇ, ତାକୁ କ'ଣ ନିର୍ଦ୍ଦେଶ ଦେଲା । ଫ୍ଲୋରା ଚାଲିଗଲା । ତା' ପଛେପଛେ ଅନ୍ୟ ତରୁଣୀ ଦୁଇଜଣ ମଧ୍ୟ ଉଠି ଚାଲିଗଲେ ।

ଚନ୍ଦା ଲୋକଟି ସେମାନଙ୍କ ଆଡ଼କୁ ଚାହିଁ ଟିକିଏ ହସିଲା । ସାଥୀଟିକୁ କ'ଣ କହିଲା ଏବଂ ଟେବୁଲ ସଂଲଗ୍ନ ଗୋଟାଏ ବୋତାମ ଚିପିଲା । ମୁହୂର୍ତ୍ତକ ପରେ ଆଉ ଜଣେ ଭୃତ୍ୟ ଶ୍ରେଣୀୟ ଲୋକ ସେ ଘରେ ପ୍ରବେଶ କଲା । ଚନ୍ଦା ଲୋକଟି ତାକୁ କ'ଣ ନିର୍ଦ୍ଦେଶ ଦେଲା ଏବଂ ସେ ବାହାରି ଚାଲିଗଲା ।

କେଇ ମିନିଟ୍ ପରେ ଦୁଇଜଣ ଲୋକ ଧରାଧରି କରି ଗୋଟାଏ ଲମ୍ବା ଭାରି ପଦାର୍ଥ ଆଣି ଗୋଟିଏ ଟେବୁଲ ଉପରେ ଶୁଆଇଦେଲେ । ସଞ୍ଜୟ ଚମକି ଉଠିଲା । କାହାର ମୃତଦେହ ନୁହେଁ ତ ?

ଚନ୍ଦା ଲୋକଟି ତା' ସହକର୍ମୀକୁ କ'ଣ ନିର୍ଦ୍ଦେଶ ଦେଲା । ସଙ୍ଗେ ସଙ୍ଗେ ସେ ସେଇ ଲମ୍ବା ପଦାର୍ଥଟି ଉପରୁ ଆବରଣ ଖୋଲିବା ପାଇଁ ଲାଗିପଡ଼ିଲା ।

ସଞ୍ଜୟର ଅନୁମାନ ଠିକ୍ । ପଦାର୍ଥଟା ଗୋଟାଏ ନରଦେହ । ନିଶ୍ଚିନ୍ତରେ ଶୋଇଛି । ମୃତ କି ଜୀବିତ ଜାଣିହେଉ ନାହିଁ । ମୁଖର ଆବରଣ ଖୋଲା ହୋଇନାହିଁ ।

ଏହାପରେ ଘର ଭିତରେ ଯିଏ ପ୍ରବେଶ କଲା, ମନେହେଲା ସେ ଜଣେ ଡାକ୍ତର । ପ୍ରଥମେ ଆସି ସେ ଲୋକଟିର ନାଡ଼ି ପରୀକ୍ଷା କଲେ । ତା'ପରେ ଛାତିରେ ଷ୍ଟେଥେସ୍କୋପ୍ ଲଗାଇ ପରୀକ୍ଷା କଲେ । ଯେତେବେଳେ ତା'ର ମୁହଁର ଆବରଣ ଉନ୍ମୋଚନ କଲେ, ସେ ଚମକି ଉଠିଲା । ଲୋକଟାକୁ ସେ ଚିହ୍ନିଚି । ମୋହନ ସହିତ

କେତେ ଥର ସେ ତାକୁ ଦେଖିଛି । କଥାବାର୍ତ୍ତାରୁ ମୋହନର ଖୁବ୍ ଅନ୍ତରଙ୍ଗ ପରି ମନେ ହୋଇଥିଲା । କିନ୍ତୁ ଆଜି ଲୋକଟାର ଏପରି ଅବସ୍ଥା...

ଡାକ୍ତର ହାତ ହଲେଇ ପାଖ ଲୋକଟାକୁ କ'ଣ କହିଲେ । ସେ ଯାଇ ଅନ୍ୟ ଏକ ଆଲମିରା ଖୋଲିଲା । ଛୁରୀ, କଇଞ୍ଚି ଇତ୍ୟାଦି ଅପରେସନ ଯନ୍ତ୍ରପାତି କେତେଗୁଡ଼ାଏ ବାହାର କରି ଗୋଟାଏ ଟ୍ରେ'ରେ ରଖିଲା ।

ଠିକ୍ ସେତିକିବେଳେ ସଞ୍ଜୟ ଅନୁଭବ କଲା, ତା' ମୁହଁକୁ ଚାପିଧରି କିଏ ଜଣେ ତାକୁ ଯେପରି ଖୁବ୍ ଜୋର୍‌ରେ ଟାଣି ଟାଣି ବାହାରକୁ ନେଇଯାଉଚି ।

: ମୁଁ ଜର୍ଜ । ଆପଣ ଚାଲିଆସନ୍ତୁ । ବର୍ତ୍ତମାନ ଅପରେସନ୍ ଆରମ୍ଭ ହୋଇଯିବ ।

ଅପରେସନ ?

: ହଁ ଅପରେସନ । ଜର୍ଜ ସଞ୍ଜୟକୁ ଟାଣିନେଇ ଗୋଟାଏ ଅନ୍ଧକାର ଜାଗାରେ ଠିଆ କରେଇ କହିଲେ, ଯେଉଁ ଲୋକଟି ଟେବୁଲ ଉପରେ ଶୋଇଛି ତା' ଦେହରେ ଅସ୍ତ୍ରୋପଚାର କରି, ଦେହ ଭିତରେ କେତେଖଣ୍ଡ ଡାଇମଣ୍ଡ ସେଟ୍ କରି ଦିଆହେବ । ତା'ପରେ ସିଲେଇ କରିଦିଆହେବ । କଷ୍ଟମସ୍‌କୁ ଫାଙ୍କି ଦେବାପାଇଁ ଏଇଟା ହେଉଛି ସର୍ବାଧୁନିକ ମେଥଡ୍ ।

ସଞ୍ଜୟ ଶିଡ଼ିରେ କାହାର ଭାରି ପାଦଶବ୍ଦ ଶୁଣିଲା ଏବଂ କିଛି ସମୟ ପରେ ଦେଖିଲା, ଗୋଟିଏ ଲମ୍ବା ଲୋକ ସେଇ ଘରର ଦରଜା ଖୋଲି ଭିତରକୁ ପଶୁଛି ।

ଜର୍ଜ ଗୋମେସ କହିଲେ ରିଙ୍ଗ୍ ମାଷ୍ଟର । ଏଇ ଘର ଭିତରେ ପଶି ଅପରେସନ କାର୍ଯ୍ୟକଳାପ ଅନୁଧ୍ୟାନ କରିବ । ଆଉ ଟିକିଏ ଡେରି ହୋଇଥିଲେ ଆପଣ ଧରା ପଡ଼ିଯାଇଥା'ନ୍ତେ ।

ସଞ୍ଜୟ ପ୍ରକୃତରେ ଅବାକ୍ ହୋଇଯାଇଥିଲା । ସେ ଚିନ୍ତା କରିପାରି ନ ଥିଲା, ମଣିଷର ଦେହ ଚିରି ଏପରି ଏକ ପଦ୍ଧତିରେ ମୂଲ୍ୟବାନ ପଦାର୍ଥ ଦେଶରୁ ବିଦେଶକୁ ପଠାଇ ଦିଆହେଉଛି ।

ଜର୍ଜ ଗୋମେସ୍ କହିଲେ : ଚାଲିଆସ ବନ୍ଧୁ ! ଏ ଦେଶଟା ନାମ ଭାରତବର୍ଷ । ସ୍ଥାନଟା କଲିକତା । ଆଉ ଏଠାକାର ବାସିନ୍ଦା ଦି'ଗୋଡ଼ିଆ ମଣିଷ । ନିଜ ଆଖିରେ ଦେଖିଲେ ତ ଏମାନଙ୍କ କାର୍ଯ୍ୟକଳାପ ? ସାଧୁ ସାବଧାନ ।

ପରଦିନ ପ୍ରତ୍ୟୁଷରୁ ସଞ୍ଜୟ ଯାଇ ୯୯ ନମ୍ବର ରୁମ୍‌ରେ କରାଘାତ କଲା ।

ଭିତରୁ ଗୁଣୁଗୁଣୁ ସ୍ୱରରେ ଗୀତ ଶୁଣାଯାଉଥିଲା ।

ଅଳ୍ପ ସମୟ ପରେ ଦରଜା ଖୋଲିଗଲା ।

ଆରେ, ମିଃ ଚଉଧୁରୀ ଯେ ! ଆସନ୍ତୁ ଆସନ୍ତୁ ! ସକାଳୁ ସକାଳୁ କିପରି ଚାଲିଆସିଲେ ?

ମୁଁ କହିଥିଲି ନା ଆପଣଙ୍କୁ ଅଭିନନ୍ଦନ ଜଣାଇବାକୁ ଆସିବି ।

କାଲି ମୋହନ ମୋତେ କହିଥିଲା । ଆପଣଙ୍କର ଇଣ୍ଟରଭିଉ କ'ଣ ଶେଷ ହୋଇଯାଇଛି ?

ନା, ଆଜି ହେବ । କିନ୍ତୁ ଗତକାଲି ପ୍ରାୟ ଅର୍ଦ୍ଧେକ ଶେଷ ହୋଇଯାଇଛି । ଯେଉଁମାନଙ୍କ ଫାର୍ମରେ ଚାକିରି ମିଳିବ, ସେମାନେ ଆସିଥିଲେ । ମନେହେଉଛି ସେମାନଙ୍କର ମତ ମୋ' ସପକ୍ଷରେ ।

ବେଶ୍ ବେଶ୍ ! ଆପଣଙ୍କର ସଫଳତା ମୁଁ କାମନା କରୁଛି ।

ମୋର ସୌଭାଗ୍ୟ । ଆପଣଙ୍କୁ କିନ୍ତୁ ଆଜି ଚା' ନ ଖୋଇ ଛାଡ଼ିବି ନାହିଁ ।

ସେଇଟା ମୋର ମଧ୍ୟ ସୌଭାଗ୍ୟ । ସଞ୍ଜୟ ହସିହସି ଉତ୍ତର ଦେଲା ।

ଆଉ କେତେକ ମାମୁଲି କଥାବାର୍ତ୍ତା ପରେ ସେଦିନର ଚା'ଖିଆ ପର୍ବ ଶେଷକରି ସଞ୍ଜୟ ନିଜ ରୁମ୍‌କୁ ଫେରିଆସି ଦେଖିଲା, ଜର୍ଜ ଗୋମେସ ଅପେକ୍ଷା କରିବସିଛନ୍ତି ।

ଆସନ୍ତୁ, ଆସନ୍ତୁ ଚଉଧୁରୀ ! ମୁଁ ଆପଣଙ୍କୁ ଦୀର୍ଘ ସମୟ ଧରି ଅପେକ୍ଷା କରି ବସିରହିଛି । ଅବଶ୍ୟ ଆପଣଙ୍କ ଅନୁପସ୍ଥିତିରେ ମୁଁ ଚା'ଖିଆ ପର୍ବ ଶେଷ କଲିଣି ।

: ଧନ୍ୟବାଦ ! କିନ୍ତୁ କାଲି ରାତିର ଘଟଣା ସମ୍ବନ୍ଧରେ କିଛି କହିଲେ ନାହିଁ ତ ?

ଏତେ ସହଜ କଥାଗୁଡ଼ାକ ଆପଣ ବୁଝିପାରୁ ନାହାନ୍ତି ?

ପୋଲିସ କ'ଣ ଏମାନଙ୍କୁ ଧରିପାରୁ ନାହିଁ ?

ପାରିବ ନାହିଁ । କିପରି ପାରିବ କୁହନ୍ତୁ ? ଯେଉଁମାନେ ଏହି ହୀନ ବ୍ୟବସାୟ କରୁଛନ୍ତି, ସେମାନଙ୍କର ସମାଜରେ ଯଥେଷ୍ଟ ପ୍ରତିପତ୍ତି ଅଛି । ତା'ଛଡ଼ା ଯେଉଁମାନଙ୍କୁ ନେଇ ସେମାନଙ୍କର ବ୍ୟବସାୟ ଚଳୁଚି, ସେମାନେ ସ୍ୱତଃପ୍ରବୃତ୍ତ ହୋଇ ଆସୁଛନ୍ତି । ଧରନ୍ତୁ କାଲି ରାତିର ଘଟଣା । ଯେଉଁ ଝିଅଟିକୁ ଆପଣ ସେ ଘରେ ଦେଖିଲେ, ସେ ଆସିଛି ଲୋଭନୀୟ ସର୍ତ୍ତରେ ଚାକିରି କରିବାକୁ ଇଣ୍ଟରଭିଉ ଦେବାପାଇଁ । ଏଣେ କିନ୍ତୁ ଟଙ୍କାର ଆଦାନପ୍ରଦାନ ଶେଷ ହୋଇଗଲାଣି ।

ମାନେ ?

ଯେଉଁମାନଙ୍କର ସେଇ ଝିଅକୁ ପ୍ରୟୋଜନ, ସେମାନେ ପସନ୍ଦ କରି ଟଙ୍କା ଆଡ୍‌ଭାନ୍‌ସ ଦେଇ ଚାଲିଗଲେଣି ।

ସଞ୍ଜୟ ସଂପୂର୍ଣ୍ଣ ଅବିଶ୍ୱାସ୍ୟ ଦୃଷ୍ଟିରେ ଗୋମେସ୍‌ଙ୍କ ମୁହଁକୁ ଅନାଇ ରହିଲା ।

ଆପଣ ଆଶ୍ଚର୍ଯ୍ୟ ହେବେ ନାହିଁ ମିଷ୍ଟର ଚଉଧୁରୀ । ଏଠାରେ ସବୁ ସମ୍ଭବ । ମଣିଷ ଏଠାରେ ଟଙ୍କା ପାଇଁ ନରହତ୍ୟା କରିବାକୁ ବି ପଛାଏ ନାହିଁ । ମୋ' ହାତରେ ଆଉ ସମୟ ନାହିଁ ! ମୁଁ ଆସୁଚି ଚଉଧୁରୀ । ଯଦି ସମ୍ଭବ ହୁଏ ଆଜି ସମୟ ଦେଖି ପୁଣି ଆପଣଙ୍କୁ ବଡ଼ଲୋକମାନଙ୍କ ବ୍ୟବସାୟ ସମ୍ବନ୍ଧରେ କିଛି କିଛି ପ୍ରତ୍ୟକ୍ଷ ଧାରଣା ଦିଆଇବି ।

ଆଉ ସେ ଯେଉଁ ଅପରେସନ ?

ସେ ସମ୍ବନ୍ଧରେ ଅନ୍ୟ ସମୟରେ କହିବି ।

ଜର୍ଜ ଗୋମେସ୍ ଆଉ ଅପେକ୍ଷା କଲେ ନାହିଁ ।

ସଞ୍ଜୟ କିନ୍ତୁ ମହାସମସ୍ୟାରେ ପଡ଼ିଗଲା ।

ବିଚାରୀ ମାଳା । ବିବାହ ବେଦୀରୁ ସେ ଉଠି ଚାଲିଆସିଛି । ହୁଏତ ମୋହନ ଉପରେ ସେ ପୂର୍ଣ୍ଣ ଭରସା କରିଆସିଥିଲା । ହୁଏତ ମୋହନଠାରୁ ସେ ତା'ର ଆଗାମୀ ଜୀବନରେ ପୂର୍ଣ୍ଣତା ପାଇଁ ନିଶ୍ଚିନ୍ତ ପ୍ରତିଶ୍ରୁତି ପାଇଥିଲା । ସେଥିପାଇଁ ସେ ଘରୁ ଗୋଡ଼ କାଢ଼ିଥିଲା । କିନ୍ତୁ ସେ ଆସି କେଉଁଠି ଧରା ଦେଇଛି ?

ସଞ୍ଜୟ ସ୍ମୃତିପଟରେ ଭାସିଉଠିଲା ଦୁଇଟି କଳା କଳାଲାଳୁରା ଆଖି ।

ନା ନା, ମାଳାକୁ ସେ ଉଦ୍ଧାର କରିବ । ନିଶ୍ଚୟ ଉଦ୍ଧାର କରିବ ।

ସଞ୍ଜୟ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି, ସିଧା ଓହ୍ଲେଇଗଲା ତଳକୁ ଏବଂ ତାକୁ ବର୍ତ୍ତମାନ ଯିବାକୁ ହେବ ମାଳା ପାଖକୁ । ତା' ସହିତ ସେ ଦେଖା କରିବ । ସମସ୍ତ କଥା ଖୋଲି କହିବ । ମାଳା ଏ କେତେ ଦିନ ଭିତରେ ମୋହନର ବ୍ୟବହାରରୁ ନିଶ୍ଚୟ ସବୁକଥା ବୁଝିସାରିଥିବ । ତା'ଛଡ଼ା ତା'ର ଅଳଙ୍କାରପତ୍ର ଯେ ମୋହନ ହାତ କରିସାରିଛି ।

ଟ୍ୟାକ୍‌ସି ଛୁଟିଥିଲା ଖିଦିରପୁର ଅଭିମୁଖେ ।

ସଞ୍ଜୟ ମୁଣ୍ଡ ଭିତରେ ଅନାବନା ଅନେକ ଭାବନା ବସା ବାନ୍ଧିଥିଲା ।

ରୁକିଏ ସର୍ଦ୍ଦାର୍‌ଜୀ !!

ଟ୍ୟାକ୍‌ସି ଅଟକିଲା । ସେଇ କୋଲାପ୍‌ସିବ୍‌ଲ ଗେଟ୍‌ରେ ତାଲା ପଡ଼ିଛି । ସଞ୍ଜୟ ଓହ୍ଲେଇଯାଇ ତାଲାକୁ ଚାହିଁ କିଛି ସମୟ ନୀରବରେ ଠିଆହୋଇ ରହିଲା ।

କ'ଣ କରିବ ? ମାଳା ସହିତ ତା'ର ସାକ୍ଷାତ ଯେ ଏକାନ୍ତ ପ୍ରୟୋଜନ ।

ଶେଷରେ ସଞ୍ଜୟ କୋଲାପ୍‌ସିବ୍‌ଲ ଗେଟ୍‌ଟାକୁ ଦୁଇ ହାତରେ ଧରି ହଲେଇବାକୁ ଲାଗିଲା ।

ଉପରୁ ଗୋଟିଏ ବୁଢ଼ୀ ଓହ୍ଲେଇ ଆସିଲା ! ଆଖିକୁ ତା'ର ଭଲ ଦିଶୁ ନ ଥିଲା ବୋଧହୁଏ ।

ଦରଜା ଖୋଲ, ସଞ୍ଜୟ କହିଲା ।

ବୁଢ଼ୀଟି ଗୋଟିଏ ଜାଗାରେ ଠିଆ ହୋଇଥିଲା । ହୁଏତ କାନକୁ ମଧ୍ୟ ଶୁଭୁ ନ ଥିଲା ।

ସଞ୍ଜୟ ବଡ଼ପାଟି କରି କହିଲା ଦରଜା ଖୋଲ ।

: କାହାକୁ ଡାକି ଦେବି ? ବୁଢ଼ୀ କହିଲା ।

ମାଳା ଦେବୀ ଅଛନ୍ତି ?

ନା; ଏଠି କୌଣସି ଦେବୀଫେବୀ ନାହାନ୍ତି । ତମେ କେଉଁଠୁ ଆସିଚ ?

ମୋହନ ମହାପାତ୍ରଙ୍କୁ ଚିହ୍ନ ? ସଞ୍ଜୟ ପଚାରିଲା ।

ବୁଢ଼ୀ ହାତ ହଲାଇ ମନା କରୁକରୁ ପୁଣି ଉପରକୁ ଉଠି ଚାଲିଗଲା ।

ସଞ୍ଜୟ ହତାଶ ହେଲା । ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି ପୁଣି ପଛକୁ ପାଦ ଫେରେଇଲା । ଫୁଟ୍‌ପାଥ୍ ଉପରେ ଜଣେ ଦୁଇଜଣ ଲୋକ ସଞ୍ଜୟ ଆଡ଼କୁ କିପରି ଏକ ବେଖାପ ଚାହାଣିରେ ଅନେଇ ରହିଥିଲେ ।

ମହାସମସ୍ୟା ତ !

ସଞ୍ଜୟ ଏଇ କୋଠାଟା ସମ୍ବନ୍ଧରେ କାହାକୁ ପଚାରିବ ? କ'ଣ ବା ପଚାରିବ ? କେହି ହୁଏତ ମାଳା ସମ୍ବନ୍ଧରେ ଏଠି କିଛି ଜାଣି ନ ଥିବେ ।

ସଞ୍ଜୟ ପାଖ ପାନଦୋକାନରୁ ଏକ ପ୍ୟାକେଟ୍ ସିଗାରେଟ୍ କିଣିବାକୁ ଯାଇ ଠିଆହେଲା ।

: ଆଚ୍ଛା, ଏଇ କୋଠାରେ କିଏ ରୁହେ କହିପାରିବ ? ସଞ୍ଜୟ ସିଗାରେଟ୍ କିଣିସାରି ଦୋକାନୀକୁ ପଚାରିଲା ।

ଦୋକାନୀଟି ସଞ୍ଜୟ ଉପରେ ଥରେ ଦୃଷ୍ଟି ବୁଲାଇ ନେଇ ମୃଦୁ ହସି କହିଲା ଆପଣ ଏ ଅଞ୍ଚଳରେ ରୁହନ୍ତି ନାହିଁ ବୋଧହୁଏ ।

ନା ।

: ସେଇଟା 'ମୀରା ମାସୀ'ଙ୍କ କୋଠା । ଏ ଅଞ୍ଚଳରେ ମୀରାମାସୀଙ୍କ କୋଠା ଖୁବ୍ ପ୍ରସିଦ୍ଧ । ଯାହାକୁ ପଚାରିବେ ସେ ଏହାର ବିବରଣୀ ଦେଇପାରିବ ।

ଦୋକାନୀଟି ଆଉ ଜଣେ ଗ୍ରାହକକୁ ପାନ ଦେଇସାରି ପୁଣି କହିଲା, : ଆପଣ ଏ ଅଞ୍ଚଳରେ ଅପରିଚିତ ହେଉଥିବେ, ସେଠାକୁ ନ ଯିବା ହିଁ ଭଲ ।

ସଞ୍ଜୟ ଆହୁରି ସନ୍ଦେହରେ ପଡ଼ିଲା । ସିଗାରେଟ୍ ପ୍ୟାକେଟ୍‌ର ଆବରଣ ଖୋଲୁଖୋଲୁ ଚିନ୍ତିତ ହୋଇପଡ଼ିଥିଲା । ମୀରା ମାସୀଙ୍କ କୋଠାର ପୁଣି ଇତିହାସ ଅଛି । ତା'ହେଲେ ସେ ଯେଉଁ ବୃଦ୍ଧାଙ୍କୁ ଭେଟିଲା, ନିଜେ କ'ଣ ସେଇ ମୀରା ମାସୀ ?

ସଞ୍ଜୟ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି ନୀରବରେ ଠିଆହୋଇ ଚିନ୍ତା କରୁଥିଲା ।

ଦୋକାନୀଟି ସଞ୍ଜୟକୁ ପାଖକୁ ଡାକିଲା । ପଚାରିଲା ଆପଣଙ୍କର ସେ କୋଠାରେ କାହା ସହିତ ପରିଚୟ ଅଛି ?

ନା, ତେବେ ଜଣକୁ ଖୋଜୁଥିଲି । କିନ୍ତୁ ତମଠାରୁ ଏହି କୋଠା ସମ୍ବନ୍ଧରେ ଯାହା ଇଂଗିତ ପାଇଲି, ମନେହେଉଛି... ଯେପରି ଏହା ଏକ ରହସ୍ୟମୟ କୋଠା ।

ରହସ୍ୟ କିଛି ନୁହେଁ ଆଜ୍ଞା । ମୀରା ମାସୀଙ୍କ ତତ୍ତ୍ୱାବଧାନରେ ଏଠାରେ କେତେଗୁଡ଼ିଏ ସୁନ୍ଦରୀ ଯୁବତୀ ଅଛନ୍ତି । ସେମାନେ କୁଆଡୁ ଆସନ୍ତି ଆଉ କୁଆଡ଼େ ଯାଆନ୍ତି ହୁଏତ କେହି କେହି କହିପାରିବେ ନାହିଁ । କିନ୍ତୁ ରାତି ବଢ଼ିଲେ ଦାମୀ ଦାମୀ ଗାଡ଼ି ଆସି ସେହି କୋଠା ଦୁଆରେ ଲାଗେ । ବଡ଼ ବଡ଼ ବାବୁମାନେ ସେଠାକୁ ଯାଆନ୍ତି । ତେଣୁ ଆମେ ସେ ସମ୍ବନ୍ଧରେ ମୁଣ୍ଡ ନ ଖେଳେଇଲେ ମଧ୍ୟ କିପରି ଗୋଟାଏ ଖରାପ ଧାରଣା ଆମ ମନ ମଧ୍ୟରେ ପୂରି ରହିଛି ।

ବୁଝିଲି ।

ସଞ୍ଜୟ ଆଉ ଅପେକ୍ଷା କଲାନାହିଁ । ସେଠାରୁ ସେ ଦ୍ରୁତପଦ ଚାଳି ଆଗେଇଗଲା ।

ମାଳା ତା'ହେଲେ କ'ଣ...

ନା, ସେ ଏଠାରୁ ଫେରିଯିବ । ମାଳା ଯଦି ଏଠାରେ ଥାଏ, ତା'ହେଲେ ତା' ସହିତ ଦେଖା ହେବା ଅସମ୍ଭବ ।

କିନ୍ତୁ ମାଳାକୁ ସେ ଉଦ୍ଧାର କରି ନ ପାରିଲେ ଯେ ଜୀବନରେ କେବେ ସେ ଆଉ ଶାନ୍ତି ଫେରିପାଇ ପାଇବ ନାହିଁ ।

ସଞ୍ଜୟ କେଉଁଠାକୁ ଯିବ ? କ'ଣ କରିବ ? କିଛି ସ୍ଥିର କରିପାରୁ ନ ଥିଲା । ମନେପଡ଼ିଲା ଜର୍ଜ ଗୋମେସ୍‌ଙ୍କ କଥା । ଏ କ୍ଷେତ୍ରରେ ସେ ତାଙ୍କରି ସାହାଯ୍ୟ ନେଲେ ହୁଏତ ମାଳାକୁ ଉଦ୍ଧାର କରିବା ପଥ ସୁଗମ ହୋଇଯିବ ।

ସଞ୍ଜୟ ବହୁ ଖୋଜାଖୋଜି ପରେ ଡାଲହାଉସୀ ଅଞ୍ଚଳରେ ଗୋଟାଏ ପୁରୁଣା କୋଠା ଭିତରୁ ଗୋମେସ୍ ଏଣ୍ଡ୍ କମ୍ପାନୀ ଆବିଷ୍କାର କଲା । ଖଣ୍ଡିଏ ଛୋଟଘର ; ଗୋଟିଏ ପୁରୁଣା ଟେବୁଲ । ଖଣ୍ଡିଏ କାଚ ଆଲମାରୀ । ସେହି ଆଲମାରୀ ଭିତରେ ଦଶପନ୍ଦରଟା ପୁରୁଣା ଘଡ଼ି । ଜର୍ଜ ଗୋମେସ ଟେବୁଲ ଉପରେ ବସି, ଗୋଟିଏ ଟାଇମ୍‌ପିସ୍ ଖୋଲି ଏକ ଦୃଷ୍ଟିରେ ସେଇଆଡ଼େ ଚାହିଁଥିଲେ । ସଞ୍ଜୟର ଉପସ୍ଥିତି ସେ ଅନୁଭବ କରିପାରି ନଥିଲେ ।

ସଞ୍ଜୟ ଜର୍ଜ ଗୋମେସ୍‌ଙ୍କର ଏହି ଦୀନତା ଦେଖି ଭିତରକୁ ପ୍ରବେଶ କରିବ କି ନାହିଁ ଚିନ୍ତା କରୁଥିଲା ; ହୁଏତ ଏହି ଅବସ୍ଥାରେ ଗୋମେସ୍‌ଙ୍କୁ ଭେଟିଲେ ତାଙ୍କ ମନରେ ଆଘାତ ଲାଗିବ । ଅଥବା...

ଜର୍ଜ ଗୋମେସ୍‌ଙ୍କ ଆଖି ସଞ୍ଜୟ ଉପରେ ପଡ଼ିବା ମାତ୍ରେ ସେ ଉଠି ଠିଆହୋଇ ପଡ଼ିଲେ  ଆରେ ଚଉଧୁରୀ ଯେ, ଆସନ୍ତୁ ଆସନ୍ତୁ । ଗୋମେସ୍ ଗୋଟାଏ ଝାଡ଼ଣ ବାହାର କରି ଖଣ୍ଡିଏ ଚେଆର ଝାଡ଼ିବାକୁ ଲାଗିଲେ ।

ସଞ୍ଜୟ ଧୀରେଧୀରେ ଗୃହ ମଧ୍ୟରେ ପ୍ରବେଶ କଲା ଏବଂ ଚେଆର ଅଧିକାର କରିବସିଲା ।

ଜର୍ଜ ଗୋମେସ୍ ଆରମ୍ଭ କଲେ  ଆପଣ ହୁଏତ ଜାଣି ନାହାନ୍ତି । କିନ୍ତୁ ଏକ ସମୟରେ ଗୋମେସ ଏଣ୍ଡ୍ କମ୍ପାନୀ ଏଇ ସମଗ୍ର କୋଠାଟାକୁ ଅଧିକାର କରିଥିଲା । ଆଜି ଆପଣ ଯାହା ଦେଖୁଛନ୍ତି, ତାହା ଗୋମେସ୍ କମ୍ପାନୀର କଂକାଳ ମାତ୍ର । ତା'ପରେ କୁହନ୍ତୁ, ଚା' ନା କଫି, କ'ଣ ଖାଇବେ ?

: ନା ଜର୍ଜ ! ସେ ସବୁ କିଛି ଆବଶ୍ୟକ ନାହିଁ । ଏଇଆଡ଼େ ଆସିଥିଲି, ଭାବିଲି ଆପଣଙ୍କ ଅଫିସ ଟିକିଏ ଦେଖିଯିବି ।

ଭଲ କଲେ । ଚାଲନ୍ତୁ, ଟିକିଏ କଫି ଖାଇଆସିବା । ଏ ଅଞ୍ଚଳରେ କ'ଣ ଭଲ ଦୋକାନଟିଏ ପାଇବେ ?

କହୁ କହୁ ଗୋମେସ୍ ଉଠି ଠିଆହେଲେ । ସଞ୍ଜୟ ମଧ୍ୟ ଉଠିଲା । ଗୋମେସ୍ ଘରର କବାଟ ବନ୍ଦକରି ଚାବି ପକାଇଲେ ।

ଆସନ୍ତୁ ଚଉଧୁରୀ ! ଆଜି ଆମର କୌଣସି କର୍ମଚାରୀ ଆସିନାହାନ୍ତି । ଯେଉଁ ଦୁଇ ତିନିଜଣ ପୁରୁଣା କର୍ମଚାରୀ ଅଛନ୍ତି, ସେମାନେ ମୋ' ସହିତ ଅସହଯୋଗ ଆରମ୍ଭ କରିଦେଲେଣି ; ଦରମା ବଢ଼ାଅ, ଭତ୍ତା ଦିଅ, ଘରଭଡ଼ା ଦିଅ ଏହିପରି ନାନା ଅଭିଯୋଗ ଆରମ୍ଭ କଲେଣି । କୁହନ୍ତୁ ଚଉଧୁରୀ, ଟଙ୍କା ଥିଲେ ସିନା ଦିଆଯିବ । ନ ଥିଲେ ଆସିବ କେଉଁଠୁ ? ଦିନକୁଦିନ ପରିସ୍ଥିତି ଯାହା ଦେଖାଦେଲାଣି; ସମସ୍ତ କର୍ମଚାରୀମାନଙ୍କୁ ଛଟେଇ କରିଦେଇ ନିଜ ହାତରେ ସବୁ କରିବାକୁ ହେବ ।

ସଞ୍ଜୟ ନୀରବରେ ଗୋମେସ୍‌ଙ୍କ କଥା ଶୁଣୁଥିଲା ।

ବୁଝିଲେ ନା ଚଉଧୁରୀ । ଏ ଅଞ୍ଚଳରେ ଏଇ ଯେତେ ସବୁ ଘଡ଼ି କମ୍ପାନୀ ଦେଖୁଛନ୍ତି, ଗୋମେସ୍ ଏଣ୍ଡ୍ କମ୍ପାନୀ ଅମଳରେ ଏ ସବୁ କିଛି ନ ଥିଲା । ଡାଲହାଉସୀ ସ୍କୋୟାର ଅଞ୍ଚଳରେ ଏକମାତ୍ର ପ୍ରସିଦ୍ଧ ଓ ବିଶ୍ୱାସଯୋଗ୍ୟ ପ୍ରତିଷ୍ଠାନ ଥିଲା ଗୋମେସ୍ ଏଣ୍ଡ୍ କମ୍ପାନୀ । ବିଦେଶର ବଡ଼ବଡ଼ ଘଡ଼ି ବ୍ୟବସାୟୀଙ୍କ ସହିତ ଯୋଗସୂତ୍ର ଥିଲା । ଦିନକୁ ହଜାରହଜାର ଟଙ୍କାର ବ୍ୟବସାୟ ହେଉଥିଲା । ଶହଶହ କର୍ମଚାରୀ ଦିନରାତି ଅକ୍ଳାନ୍ତ ପରିଶ୍ରମ କରି ଖଟୁଥିଲେ । ମୁଁ ନିଜେ ସେମାନଙ୍କୁ କାମ ଶିଖାଇ ତାଲିମ୍ କରିଥିଲି । ସମୟ ସହିତ ତାଳ ଦେଇ ସେମାନେ ଠିକ୍ ଆଗେଇ ଚାଲିଥିଲେ ।

ଗୁମ୍ ମାରି ଦଣ୍ଡେ ଅଟକି ରହିଲେ ଜର୍ଜ ଗୋମେସ୍ । ଆଖି ଆଗରେ ଯେମିତି ହଜାର ହଜାର ଘଡ଼ି.... କାନରେ ବାଜୁଚି ଟିକ୍‌ଟିକ୍ ଶବ୍ଦ ! ଏଥର ନୀରବତା ଭାଙ୍ଗି ସଞ୍ଜୟକୁ ସେ ପୁଣଇ କହିବାକୁ ଲାଗିଲେ  କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ମୋ' ଉପରେ ବଜ୍ରାଘାତ କଲା ।

ବିଦେଶର ସମସ୍ତ ମାଲ ଆସିବା ବନ୍ଦ ହୋଇଗଲା । ମୁଁ ମଧ୍ୟ ସେତେବେଳେ ଟିକିଏ ବିଚଳିତ ହୋଇପଡ଼ିଲି । ମୋର କର୍ମଚାରୀମାନେ ଭୟରେ ନିଜ ନିଜ ଘରକୁ ପଳେଇଲେ । ତା'ପରେ ସେମାନଙ୍କ ଭିତରୁ ଅଧିକାଂଶ ଆଉ ଫେରିଲେ ନାହିଁ । ଯୁଦ୍ଧ ପରେ ପରେ ବହୁ ଘଡ଼ି ଦୋକାନ ଏ ଅଞ୍ଚଳରେ ଖୋଲିଗଲା । ସେମାନେ ମୋର କର୍ମଚାରୀମାନଙ୍କୁ ବେଶୀ ଟଙ୍କାର ପ୍ରଲୋଭନ ଦେଖାଇ ନେଇଗଲେ । ଧୀରେ ଧୀରେ ମୋର ପତନ ଘଟିଲା । କିନ୍ତୁ ଗୋଟାଏ କଥା ମନେରଖିବେ ଚଉଧୁରୀ । ଯେଉଁ ପୁରୁଣା ପୁରୁଣା ଲୋକମାନେ ଏବେ ବଞ୍ଚି ରହିଛନ୍ତି, ସେମାନେ ଘଣ୍ଟା କିଣିବାକୁ ହେଲେ ବା ମରାମତି କରେଇବାକୁ ଥିଲେ ଗୋମେସ୍ କମ୍ପାନୀର ଦ୍ୱାରସ୍ଥ ନ ହୋଇ ରହିପାରିବେ ନାହିଁ । ଖାସ୍ ସେଇମାନଙ୍କ ମୁହଁକୁ ଚାହିଁ ମୁଁ ଆଜିଯାଏ ଏ ବ୍ୟବସାୟ ଚଳେଇ ଯାଉଛି । ନହେଲେ କେଉଁଦିନୁ ବନ୍ଦ କରିଦେଇ ସାରନ୍ତିଣି ।

ଗୋମେସ୍ ସଞ୍ଜୟକୁ ସଙ୍ଗରେ ନେଇ ଗୋଟିଏ ଅତି ସାଧାରଣ ଚା' ଦୋକାନରେ ପ୍ରବେଶ କଲେ । ଲମ୍ବା ଲମ୍ବା କାଠ ବେଞ୍ଚ୍ କେତୋଟି ପଡ଼ିଛି । ଘରଟା ଖୁବ୍ ପରିଷ୍କାର ପରିଚ୍ଛନ୍ନ ନୁହେଁ । ଟେବୁଲ ଉପରେ କାଚ ଗ୍ଲାସ, ମାଟି ଭାଣ୍ଡ, ଭଙ୍ଗା କପ୍ ସବୁ ଥୁଆ ହୋଇଛି । ଜଣେ ଦୁଇଜଣ ଲୋକ ବସି ଚା' ଖାଉଛନ୍ତି ।

ସଞ୍ଜୟ ଗୋଟିଏ ବେଞ୍ଚ ଉପରେ ଯାଇ ବସିପଡ଼ିଲା । ଗୋମେସ୍ ବସୁବସୁ କହିଲେ  ଜାଣିଲେ ଚଉଧୁରୀ ! ଏ ଅଞ୍ଚଳରେ ଯେତେଗୁଡ଼ିଏ ଚା' ଦୋକାନ ଅଛି, ଏଇ ଦୋକାନଟି ବେଷ୍ଟ ବୋଲି ମୁଁ ଧରି ନେଇଛି, ଅବଶ୍ୟ ସାଜସଜ୍ଜା ଦୃଷ୍ଟିରୁ ନୁହେଁ । କିନ୍ତୁ ପ୍ରିପାରେସନ ଚମତ୍କାର । ଏ ଦୋକାନର କଫି ହେଉଛି ଫାଷ୍ଟକ୍ଲାସ । ଆପଣ ଥରେ ପିଇଲେ ଆଉ ଭୁଲିପାରିବେ ନାହିଁ ।

ସଞ୍ଜୟ କହିଲା  ମୁଁ କେବଳ କଫି ଛଡ଼ା ଅନ୍ୟ କିଛି ଖାଇବି ନାହିଁ ଜର୍ଜ । ଏଇ ବର୍ତ୍ତମାନ ମୁଁ ଖାଇକରି ଆସୁଛି ।

ଏଠି ମଧ୍ୟ କଫିଛଡ଼ା ଆଉ ଭଲ ଜିନିଷ କିଛି ମିଳେ ନାହିଁ ।

ସଞ୍ଜୟ କଫି ପିଉଥିଲା, କିନ୍ତୁ କଫିର ଟେଷ୍ଟ କିଛି ସେ ବାରି ପାରୁ ନଥିଲା । ଜର୍ଜ ଗୋମେସ କିନ୍ତୁ କଫିର ପ୍ରଶସ୍ତି ଗାଇ ଚାଲିଥିଲେ । ସଞ୍ଜୟ ଭାବୁଥିଲା, କିପରି ସେ ଅସଲ କଥା ଆରମ୍ଭ କରିବ । ତା' ପକ୍ଷରେ ଏପରି ଭାବରେ ସମୟ ନଷ୍ଟ କରିବା ମଧ୍ୟ ଉଚିତ୍ ହେଉନାହିଁ । ଜର୍ଜ ଗୋମେସଙ୍କ କଥାବାର୍ତ୍ତା ଚାଲିଚଳନ ଯାହା, ସେଥିରେ ସେ ଯେ ସଞ୍ଜୟକୁ ବିଶେଷ ସାହାଯ୍ୟ କରିପାରିବେ, ତା' ବି ମନେହେଉ ନ ଥିଲା । ଗୋମେସ୍‌ଙ୍କର ସାମାନ୍ୟ ମୁଣ୍ଡଦୋଷ ଥିଲାପରି ସଞ୍ଜୟ ଅନୁଭବ କରୁଥିଲା ।

କଫି ପିଆ ଶେଷହୋଇ ସାରିଥିଲେ ମଧ୍ୟ, ସଞ୍ଜୟ ତା' ମନର ଅଭିବ୍ୟକ୍ତି ଜଣାଇପାରିଲା ନାହିଁ । ବିଶେଷ କ'ଣ କିଛି ଲାଭ ହେବ ଗୋମେସଙ୍କୁ କହି ? ବୋଧହୁଏ ନୁହେଁ । ତେଣୁ ଯେତେଟା ସମ୍ଭବ ନିଜେ କରିପାରିଲେ ଭଲ ।

ସଞ୍ଜୟ ଗୋମେସଙ୍କଠାରୁ ବିଦାୟ ମାଗିଲା ।

ଗୋମେସ୍ ଆଜି ବୋଧହୁଏ ତାଙ୍କର ସମୟାନୁବର୍ତ୍ତିତା ଭୁଲି ଯାଇଥିଲେ । ସେ ସଞ୍ଜୟକୁ ଛାଡ଼ିବା ପାଇଁ ଆଜି ଯେପରି ପ୍ରସ୍ତୁତ ନ ଥିଲେ ।

ଗୋମେସ୍ ଆରମ୍ଭ କଲେ : ଆଜି ମୋହନ ସହିତ ମୋର ଦେଖା ହୋଇଥିଲା ।

କେଉଁଠି ? ସଞ୍ଜୟ ପଚାରିଲା ।

ବାଟରେ । ମୁଁ ଅଫିସକୁ ଆସିଲାବେଳେ ହଠାତ୍ ଦେଖା ହୋଇଗଲା । ମୋତେ ସେ ନିଜେ କାର୍‌ରେ ଆଣି ଅଫିସରେ ଛାଡ଼ି ଦେଇଗଲେ ।

ହଠାତ୍ ଆପଣଙ୍କ ପ୍ରତି ଏତେ କରୁଣା ହେଲା କାହିଁକି ?

ତାଙ୍କର ଦରକାର ଥିଲା । ସେ ଗୋଟିଏ ଲୋକ ସମ୍ବନ୍ଧରେ ମୋତେ ପଚାରୁଥିଲେ । ତା'ର ଚାଲିଚଳଣ, ଆଚାର ବ୍ୟବହାର ଇତ୍ୟାଦି ଇତ୍ୟାଦି ।

ସଞ୍ଜୟର ଉତ୍ସାହ ଯେପରି ଟିକିଏ କମିଆସିଲା । ସେ ଭଗ୍ନସ୍ୱରରେ ପ୍ରଶ୍ନ କଲା

କେଉଁ ଲୋକ କଥା ?

କେଜାଣି ! ମୋତେ ସେ ପଚାରିଲେ, ମୁଁ ଚିହ୍ନିଚି ବୋଲି କହିଲି ଏବଂ ସଚ୍ଚରିତ୍ର, ସଜ୍ଜନ, ଇତ୍ୟାଦି ଇତ୍ୟାଦି ଯେତେ ପ୍ରକାର ବିଶ୍ଳେଷଣ ଅଛି ସବୁ ଲଗାଇ ଗୋଟାଏ ଲମ୍ବା ଚାରିତ୍ରିକ ସାର୍ଟିଫିକେଟ ଦେଲି ।

ସେ କିପରି କଥା । ଆପଣ ଲୋକଟାକୁ ଚିହ୍ନି ନାହାନ୍ତି, ଅଥଚ ତା' ସମ୍ବନ୍ଧରେ...

ଶୁଣ ଚଉଧୁରୀ ! ମୋର ଧର୍ମ ହେଉଛି, କାହାରି ଉପକାର ନ କରିପାରେ ପଛେ ଅପକାର କରିବି ନାହିଁ । ମୋହନ ମୋତେ କହିଲା, ଲୋକଟିକୁ ଥରେ ଦି' ଥର ସେ ମୋ' ସାଙ୍ଗରେ ଦେଖିଥିଲା, ତେଣୁ ସେ ଯେ ନିଶ୍ଚୟ ମୋର ଜଣେ କେହି ପରିଚିତ ଲୋକ ହୋଇଥିବ ସନ୍ଦେହ ନାହିଁ । ତେଣୁ ତା' ସମ୍ବନ୍ଧରେ ଗୋଟାଏ ଭଲ ଧାରଣା ଦେବାରେ କାର୍ପଣ୍ୟ ପ୍ରକାଶ କରିଥାଆନ୍ତି କାହିଁକି ?

ସଞ୍ଜୟ ମନେ ମନେ ନିଜ କଥା ଚିନ୍ତା କରୁଥିଲା । ହୁଏତ ମୋହନ ତା'ରି କଥା ଗୋମେସଙ୍କୁ ପଚାରୁଥିଲା ।

ମୋହନ ସହିତ ଆପଣଙ୍କର ସମ୍ପର୍କ କିପରି ?

ସଞ୍ଜୟ ପଚାରିଲା ।

ଖୁବ୍ ଭଲ । ତେବେ ସେ ଯେଉଁ କାର୍ଯ୍ୟରେ ଲିପ୍ତ ଥାଇ ଅର୍ଥ ଉପାର୍ଜନ କରୁଛି, ସେ ସମ୍ବନ୍ଧରେ ମୁଁ କିଛି ଜାଣେ ନାହିଁ ବୋଲି ତା'ର ଧାରଣା ।

ଆଚ୍ଛା ଜର୍ଜ ! ଧରନ୍ତୁ ମୋହନ ସହିତ ମୋର ପରିଚୟ ହେଲା ଏବଂ ସେ ପ୍ରବର୍ତ୍ତାଇଲା ତା' ଦଳରେ ଯୋଗ ଦେବାପାଇଁ । ହୁଏତ ଖୁବ୍ ଲୋଭନୀୟ ସର୍ତ୍ତ ମୋ' ଆଗରେ ରଖିଲା । ସେ କ୍ଷେତ୍ରରେ ମୋର କର୍ତ୍ତବ୍ୟ କ'ଣ ?

ଜର୍ଜ ଗୋମେସ ସଞ୍ଜୟ ମୁହଁକୁ କିଛି ସମୟ ଅପଲକ ନୟନରେ ଅନାଇ ରହି କହିଲେ  ଏହା ସଂପୂର୍ଣ୍ଣ ବ୍ୟକ୍ତିଗତ । ଏ ପ୍ରଶ୍ନର ଉତ୍ତର ମୁଁ ଦେବା ଉଚିତ ନୁହେଁ କିମ୍ବା ଆପଣ ମୋତେ ପଚାରିବା ଯୁକ୍ତିଯୁକ୍ତ ନୁହେଁ । ଛାଡ଼ନ୍ତୁ, ମୋ' ମତରେ ଜୀବନ ନିର୍ବାହ କରିବାପାଇଁ ସବୁବେଳେ କୌଣସି ସତ୍‌ପଥ ଅବଲମ୍ବନ କରିବା ଉଚିତ୍ । ଆଚ୍ଛା ! ପୁଣି ଦେଖାହେବ । ମୋ' ହାତରେ ସମୟ ଅତି ଅଳ୍ପ । ମୁଁ ଆସୁଛି ଚଉଧୁରୀ ।

ଜର୍ଜ ଗୋମେସ ଚାଲିଗଲେ ।

ସଞ୍ଜୟ ଗୋମେସଙ୍କର ଯିବା ପଥକୁ ଅନାଇ ଠିଆ ହୋଇଥିଲା ।

**

---

ଠିକ୍ ରାତି ନଅଟାବେଳେ ସଞ୍ଜୟ ଯାଇ ଫାଉଣ୍ଟେନ କ୍ଲବର ନିର୍ଦ୍ଦିଷ୍ଟ ଚେଆରଟି ଉପରେ ବସିଲା । ଭାବିଥିଲା, ଦଶମିନିଟ୍ ପରେ ତା'ର କର୍ତ୍ତବ୍ୟ ଶେଷ ହୋଇଯିବ ଏବଂ ସେ ବାହୁଡ଼ିଯିବ ।

ପାଞ୍ଚମିନିଟ୍ ଅତିବାହିତ ନ ହେଉଣୁ ଗୋଟିଏ ଲୋକ ଆସି ସଞ୍ଜୟ ଆଗରେ ଠିଆ ହେଲା ।

ସଞ୍ଜୟ ଚଞ୍ଚଳ ହୋଇଉଠିଲା ।

ଲୋକଟି କହିଲା  ମୋ' ସହିତ ଆସନ୍ତୁ ।

ସଞ୍ଜୟ କୌଣସି ପ୍ରତିବାଦ ନ କରି ଲୋକଟିର ପଛେ ପଛେ ଉଠିଲା । କିଛି ଦୂର ଗୋଟାଏ ଅନ୍ଧକାର ପଥଦେଇ ଯିବା ପରେ ଏକ ଆଲୋକିତ ସ୍ଥାନରେ ଠିଆ ହେଲା । ଲୋକଟି ଗୋଟାଏ ଦରଜା ଅଳ୍ପ ମେଲାକରି କହିଲା  ଭିତରକୁ ଯାଅ ।

|| ସନ୍ଧ୍ୟାନନ୍ଦରେଖା ||
|| ସ୍ପନ୍ଦନ ||

ସଞ୍ଜୟ ଭିତରେ ପ୍ରବେଶ କଲା ।

ସଙ୍ଗେସଙ୍ଗେ ଦରଜାଟି ବନ୍ଦ ହୋଇଗଲା ।

ସଞ୍ଜୟ ଘର ଭିତରେ ଦେଖିଲା, ଗୋଟିଏ ରିଭଲଭର୍‌ର ନଳୀ ତା'ରି ଆଡ଼କୁ ମୁହଁକରି ଅନାଇ ରହିଛି । ସେ ଶିହରିଉଠି ପଛକୁ ପାଦ ଫେରାଉଥିଲା ।

କିନ୍ତୁ ଏକ ନାରୀକଣ୍ଠର ହାସ୍ୟଧ୍ୱନି କୋଠାଟିକୁ ପ୍ରକଂପିତ କରିପକାଇଲା ।

ଧୀରେଧୀରେ କକ୍ଷଟି ଆଲୋକିତ ହୋଇଉଠିଲା ।

ସଞ୍ଜୟ ଦେଖିଲା ମିସ୍ ଫ୍ଲୋରା ହାତରେ ଗୋଟାଏ ରିଭଲଭର୍ ଧରି ଠିଆହୋଇଛି ।

ଭୟର କୌଣସି କାରଣ ନାହିଁ ରାଜା ! ମୁଁ ଫ୍ଲୋରା, ଚିହ୍ନିପାରୁ ନାହିଁ ?

ସଞ୍ଜୟ ପାଦେପାଦେ କରି ଆଗକୁ ବଢ଼ିଲା ।

ତମୁକୁ ରିଭଲଭର୍ ଚଳାଇ ଆସେ ରାଜା ?

ଫ୍ଲୋରା କୌତୁକମିଶା ସ୍ୱରରେ କହିଲା ।

ନା, ସଞ୍ଜୟ ସହଜ ଓ ଶାନ୍ତସ୍ୱରରେ ଉତ୍ତର ଦେଲା ।

ତୁମକୁ ତା'ହେଲେ ଶିଖିବାକୁ ପଡ଼ିବ । ଅବ୍ୟର୍ଥ ଲକ୍ଷ୍ୟ ହାସଲ କରିବାକୁ ହେବ ।

କାହିଁକି ?

ତା'ର ଉତ୍ତର ମୁଁ ଦେଇପାରିବି ନାହିଁ । ତମୁକୁ ଗୁଳି ଚାଳନା ଶିକ୍ଷା ଦେବାପାଇଁ ମୁଁ ନିର୍ଦ୍ଦେଶ ପାଇଛି ।

ଫ୍ଲୋରା ଆସି ସଞ୍ଜୟ ପାଖରେ ଠିଆହେଲା ଏବଂ ରିଭଲଭରଟି ତା' ଆଡ଼କୁ ବଢ଼ାଇ ଦେଇ କହିଲା ଏଇ ନିଅ, ଧର ।

ସଞ୍ଜୟର ହାତ ଥରିଉଠିଲା । ସେ ପାଖରେ ପଡ଼ିଥିବା ଖଣ୍ଡିଏ ଚେଆର ଉପରେ ବସିପଡ଼ିଲା ।

: ତମେ ଭୟ କରନି ରାଜା । କାମଟା ଖୁବ୍ ସହଜ । ମୁଁ ତୁମକୁ ଅଳ୍ପ ସମୟ ମଧ୍ୟରେ ଶିଖାଇ ଦେବି । ଏଇ ନିଅ, ଧର ।

ଫ୍ଲୋରା ସଞ୍ଜୟ ହାତରେ ରିଭଲଭରଟା ଗୁଞ୍ଜି ଦେଲା । ହାତ ଧରି ଟାଣି ଉଠାଇଲା ।

ଉଠ, ଠିଆ ହୁଅ ।

ସଞ୍ଜୟ ବାଧ୍ୟଶିଶୁଟି ପରି ଠିଆ ହେଲା ।

: ଦେଖୁଛ ? କେଇ ଗଜ ଦୂରରେ ଥିବା ସେଇ ରବର କଣ୍ଢେଇଟିକୁ ଦେଖୁଚ । ରିଭଲଭର ମୁହଁଟା ଠିକ୍ କଣ୍ଢେଇଟିର କପାଳକୁ ଲକ୍ଷ୍ୟ କର । ତା'ପରେ ରିଭଲଭର୍‌ର

ଘୋଡ଼ିଆ ଟିପ । କାମଟା ଅତି ସହଜ ରାଜା । ଥରେ ଲକ୍ଷ୍ୟ କରି ଦେଖ, ତା'ପରେ ଦେଖିବ ଆପଣାଛାଏଁ ତମର ଜଡ଼ତା କଟିଯାଇଛି ।

ସଞ୍ଜୟର ହାତ ସେତେବେଳଯାଏ ଥରୁଥିଲା ।

ଫ୍ଲୋରା ନିଜ ହାତରେ ସଞ୍ଜୟର ହାତକୁ ଜାବୁଡ଼ି ଧରି ରବର କଣ୍ଢେଇଟିର କପାଳକୁ ଲକ୍ଷ୍ୟ କଲା ଏବଂ ସଞ୍ଜୟକୁ ଘୋଡ଼ିଆ ଟିପିବାକୁ କହିଲା ।

ପୁଳାଏ ଧୂଆଁ, ଗୋଟାଏ ଆବାଜ ।

ସଞ୍ଜୟ ଦେଖିଲା ଠିକ୍ କଣ୍ଢେଇଟିର କପାଳ ଉଡ଼ିଯାଇଛି ।

ଫ୍ଲୋରା ସଞ୍ଜୟ ଆଡ଼େ ବିଜୟଦର୍ପରେ ଚାହିଁ କହିଲା : ଏଇଆ ତ ଦରକାର । ପୁଣି ପ୍ରସ୍ତୁତ ହୋଇଯାଅ ।

ଫ୍ଲୋରା ଆଉ ଗୋଟିଏ ରବର କଣ୍ଢେଇ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ରଖିଲା ।

ଏଥର ସଞ୍ଜୟ ନିଜେ ଲକ୍ଷ୍ୟ କରି ଗୁଳି ଚଳେଇଲା, କିନ୍ତୁ ଗୁଳିଟା ରବର କଣ୍ଢେଇ କପାଳରେ ନ ଭେଦି ବାହୁରେ ଭେଦିଲା ।

ଠିକ୍ ଅଛି ରାଜା ! ପୁଣି ଚେଷ୍ଟା କର । ପୁଣି ରବର କଣ୍ଢେଇର କପାଳ ଭେଦ କରିବାଯାଏ ଚଳେଇ ଯାଅ, ଚଳେଇ ଯାଅ ।

ଫ୍ଲୋରା ଥରକୁଥର ରିଭଲଭର୍‌ରେ ଗୁଳି ଭରି ଦେଉଥିଲା ଏବଂ ରବର କଣ୍ଢେଇକୁ ନିର୍ଦ୍ଦିଷ୍ଟ ସ୍ଥାନରେ ସଜାଡ଼ି ରଖିଦେଇ ଆସୁଥିଲା ।

ସଞ୍ଜୟର ଯେପରି ଧୀରେଧୀରେ ଆଗ୍ରହ ବଢ଼ି ଯାଉଥିଲା । ସତକୁସତ ତା' ଜଡ଼ତା କଟି କଟି ଆସୁଥିଲା ।

ଏକ ସମୟରେ ଫ୍ଲୋରା ହାତତାଳି ମାରି ନାଚିଉଠିଲା ।

ଏଇଥର ଭେଦିଚି ରାଜା ! ଠିକ୍ କପାଳରେ । ଆହୁରି ଚଳାଅ, ଚଳେଇ ଯାଅ ।

ସଞ୍ଜୟକୁ ଯେପରି ନିଶା ଘାରୁଥିଲା । ସାଫଲ୍ୟର ଆନନ୍ଦରେ ସେ ସତେକି ଉନ୍ମତ୍ତ ହୋଇଉଠୁଥିଲା ।

ଫ୍ଲୋରା ଗ୍ଲାସ ଭରି ପାନୀୟ ଆଣି ଟେବୁଲ ଉପରେ ରଖିଲା ।

ସଞ୍ଜୟର କପାଳରୁ ଝାଳ ପୋଛି ଫ୍ଲୋରା ପାଖରେ ବସାଇଲା । ଇଲେକ୍‌ଟ୍ରିକ୍ ଫ୍ୟାନର ସ୍ପିଡ଼୍ ବଢ଼ାଇ ଦେଲା ।

ପ୍ରକୃତରେ ସଞ୍ଜୟ ଏକପ୍ରକାର କ୍ଲାନ୍ତ ହୋଇପଡ଼ିଥିଲା ।

ଫ୍ଲୋରା ପାନୀୟ ଗ୍ଲାସଟି ସଞ୍ଜୟର ମୁହଁ ପାଖକୁ ଉଠାଇ ଧରି କହିଲା   ପିଇଦିଅ ରାଜା, ତମେ ଖୁବ୍ କ୍ଲାନ୍ତ ।

ସଞ୍ଜୟର ତୃଷା ଅପନୋଦନ ପାଇଁ ପାନୀୟ ଗ୍ଲାସଟି ଖୁବ୍ ସମୟୋପଯୋଗୀ ହୋଇଥିଲା ।

ତା'ପରେ ଫ୍ଲୋରାର ନିର୍ଦ୍ଦେଶରେ ଗୋଟିଏ ବୟ ଆଣି ଖାଦ୍ୟସାମଗ୍ରୀ

ହେଇଗଲା । ସଞ୍ଜୟ ଓ ଫ୍ଲୋରା ଦୁହେଁ ମିଶି ଖିଆପିଆ ଶେଷ କଲେ । ସଞ୍ଜୟର ଅଙ୍ଗପ୍ରତ୍ୟଙ୍ଗରେ କିପରି ଏକ ଉନ୍ମାଦନା ଜାଗି ଉଠୁଥିଲା । ଫ୍ଲୋରା ପୁଣି ପାନ-ପାତ୍ର ଭରି ସଞ୍ଜୟ ଆଡ଼କୁ ବଢ଼େଇ ଦେଲା, ଆଉ ସେ ଆପତ୍ତି କଲା ନାହିଁ ।

ଘରର ଆଲୋକ ଧୀରେଧୀରେ ମଳିନ ହୋଇଆସିଲା ।

ଗୁରୁଭୋଜନ ପରେ ସଞ୍ଜୟ ଆଖିକୁ ମଧ୍ୟ ତନ୍ଦ୍ରା ଘୋଟି ଆସୁଥିଲା ! ଫ୍ଲୋରା ଏହି ଅବସରରେ ଶୁଭରାତ୍ରି ଜଣାଇ ଗୃହରୁ ଅନ୍ତର୍ଦ୍ଧାନ ହୋଇଗଲା ।

ସଞ୍ଜୟ ସେଇ ଆରାମ ଚେଆର ଉପରେ ଶୋଇପଡ଼ିଥିଲା ।

ରାତ୍ରିର ଶେଷପ୍ରହରରେ ତା'ର ନିଦ୍ରାଭଙ୍ଗ ହେଲା । ଘରସାରା ସେହିପରି ମଳିନ ଆଲୋକ ବିଛାଡ଼ି ହୋଇପଡ଼ିଥିଲା । ସେ ଯେପରି ସ୍ୱପ୍ନରୁ ଉଠୁଥିଲା, ଦେହଟା ଖୁବ୍ ହାଲ୍‌କା ଲାଗୁଥିଲା ଏବଂ ମନଟା ପ୍ରଫୁଲ୍ଲ ଜଣାଯାଉଥିଲା ।

ସାମ୍‌ନା ଟେବୁଲ ଉପରେ ସେହି ରିଭଲଭରଟି ଥୁଆ ହୋଇଥିଲା ।

ଠିକ୍ ସେତିକିବେଳେ ଘରର କବାଟ ଖୋଲିବାର ଶବ୍ଦ ହେଲା । ସଞ୍ଜୟ ଭାବିଥିଲା ହୁଏତ ଫ୍ଲୋରା ଆସୁଛି, କିନ୍ତୁ ଗୃହ ମଧ୍ୟରେ ପ୍ରବେଶ କଲା ଆଉ ଜଣେ । ଲୋକଟି ଦେହଟାକୁ ଆବୃତ କରି ମୁହଁରେ ଗୋଟାଏ କଳାକନା ବାନ୍ଧିଥିଲା ।

ସଞ୍ଜୟ ସ୍ତବ୍ଧ ହୋଇ ସେଇଆଡ଼େ ଅନାଇ ରହିଲା ।

ବସ ରାଜା ! ଫ୍ଲୋରାଠାରୁ ତମର ପ୍ରଶଂସା ଶୁଣିଛି । ତୁମକୁ ଗୋଟାଏ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ଗ୍ରହଣ କରିବାକୁ ପଡ଼ିବ ।

ସଞ୍ଜୟ ଅନୁମାନ କଲା, ଲୋକଟି ବୋଧହୁଏ ଦଳପତି । ସେ ଗୋଟିଏ ଚେଆର ଉପରେ ବସି ନୀରବରେ ସମ୍ମତି ଜଣେଇଲା ।

ଆଗନ୍ତୁକଟି ସେହିପରି ଠିଆ ହୋଇଥିଲା । ଟେବୁଲ ଉପରେ ପଡ଼ିଥିବା ରିଭଲଭରଟି ଉଠାଇନେଇ ପକେଟରେ ଭରିଲା ଏବଂ ପକେଟରୁ ଆଉ ଗୋଟିଏ ରିଭଲଭର୍ ବାହାର କରି ସଞ୍ଜୟ ହାତକୁ ବଢ଼ାଇ କହିଲା ନିଅ, ଏଇଟା ତୁମର, ଲୋଡ଼େଡ଼ ଅଛି ।

ସଞ୍ଜୟ ହାତ ବଢ଼େଇ ଗ୍ରହଣ କଲା ।

ଲୋକଟି ଆଉଥରେ ପକେଟରେ ହାତ ଭରି, ବିଡ଼ାଏ ନୋଟ ବାହାର କରି ଟେବୁଲ ଉପରେ ରଖିଲା ଓ କହିଲା ଏତକ ତୁମର ମାସକର ଅଗ୍ରୀମ ଦରମା ।

ତା'ପରେ ସାମାନ୍ୟ ନୀରବତା ।

ତୁମେ ରୁହ କେଉଁଠି ? ଲୋକଟି ସଞ୍ଜୟକୁ ପଚାରିଲା ।

ସଞ୍ଜୟ ଇତସ୍ତତ ହୋଇ କହିଲା ହୋଟେଲ ପାରାଡାଇଜ୍‌ରେ ।

ବେଶ୍ ଏଥର କହୁଚି ଶୁଣ ! ଆଜି ଠିକ୍ ରାତି ଦଶଟା ବେଳେ ହୋଟେଲ

ପାରାଡାଇଜ୍ ତଳେ ଗୋଟିଏ କଳାରଙ୍ଗର ପ୍ରାଇଭେଟ କାର୍ ଯାଇ ଠିଆହେବ । ତୁମେ ସେତିକିବେଳେ ଯାଇ ସେହି କାର୍‌ରେ ବସିବ । ଚାଳକ ତୁମକୁ ନେଇ ଠିକ୍ ଜାଗାରେ ପହୁଞ୍ଚାଇ ଦେବ ଏବଂ ନିର୍ଦ୍ଦିଷ୍ଟ କକ୍ଷଟି ତୁମକୁ ଦେଖାଇ ଦେବ ।

ସଞ୍ଜୟ କେବଳ ସ୍ତବ୍ଧ ହୋଇ ଶୁଣି ଯାଉଥିଲା ।

ଲୋକଟି ଟିକିଏ ଅଟକିଯାଇ ପୁଣି କହିଲା : ସେହି କକ୍ଷରେ ଗୋଟିଏ ତରୁଣୀ ବାସ କରୁଛି । ତୁମର କାର୍ଯ୍ୟ ହେବ ତାକୁ ହତ୍ୟା କରିବା ।

ହତ୍ୟା ?

ସଞ୍ଜୟର ସମଗ୍ର ଶରୀରଟା ଯେପରି ଶୀତେଇ ଉଠିଲା !

ହଁ ହତ୍ୟା, ଲୋକଟି କହିଲା । ତୁମକୁ ମାତ୍ର ଦୁଇଦିନ ସମୟ ଦିଆହେଉଛି । ଆଜି ରାତିଠାରୁ ପହରିଦିନ ସୂର୍ଯ୍ୟାସ୍ତ ମଧ୍ୟରେ କାର୍ଯ୍ୟ ହାସଲ କରିବାକୁ ପଡ଼ିବ । କିନ୍ତୁ ଖୁବ୍ ସାବଧାନ ରାଜା । ନିଜକୁ ବଞ୍ଚେଇ, ଦଳକୁ ବଞ୍ଚେଇ କାର୍ଯ୍ୟ ହାସଲ କରିବାକୁ ହେବ । କିପରି ବା କେଉଁଠି ତୁମେ ସେହି ତରୁଣୀଟିକୁ ହତ୍ୟା କରିବ, ସେ ଦାୟିତ୍ୱ ତୁମର । ଆଉ ଯଦି ପ୍ରୟୋଜନ ମନେକର, ତେବେ ତୁମେ କାର୍‌ଟା ରଖିପାର । ଏହାଛଡ଼ା ତୁମେ ଆଉ ଆମଠାରୁ କୌଣସି ସହଯୋଗ ପାଇବ ନାହିଁ ।

ସଞ୍ଜୟର ବାକ୍‌ଶକ୍ତି ଯେପରି ଲୋପ ପାଇଯାଇଥିଲା । ସେ କେବଳ ନୀରବରେ ଠିଆହୋଇ ଲୋକଟିର କଥା ଶୁଣି ଯାଉଥିଲା ।

ମୁଁ ଯାଉଛି ରାଜା । ମୋର ଆଦେଶ ପାଳନ କରିବା ତୁମର କର୍ତ୍ତବ୍ୟ । ଆଶା କରୁଛି ତୁମେ କର୍ତ୍ତବ୍ୟରେ ଅବହେଳା କରିବ ନାହିଁ ।

ଲୋକଟି ଆଉ ମୁହୂର୍ତ୍ତେ ଅପେକ୍ଷା ନକରି କକ୍ଷ ତ୍ୟାଗ କଲା ।

ସଞ୍ଜୟ ସେହିପରି ଠିଆ ହୋଇଥିଲା । ତାକୁ ଚାରିଦିଗ ଅନ୍ଧାର ଦିଶୁଥିଲା । ହତ୍ୟା ! ତାକୁ ହତ୍ୟା କରିବାକୁ ପଡ଼ିବ । ପୁଣି ଗୋଟାଏ ତରୁଣୀକୁ । ସଞ୍ଜୟ ଆଦୌ ଭାବିପାରୁ ନଥିଲା । ସେ କ'ଣ ସ୍ୱପ୍ନ ଦେଖୁଛି ନା ବାସ୍ତବ ସହିତ ଏହି ଘଟଣାର କୌଣସି ସମ୍ପର୍କ ଅଛି !!

ଧୀରେଧୀରେ ସଞ୍ଜୟର ମୁଣ୍ଡଟା ଯେପରି ଭାରି ଲାଗୁଥିଲା । ଆଖି ଆଗରେ ସବୁ ଝାପ୍‌ସା ଦେଖାଯାଉଥିଲା । ହତ୍ୟା ! ଗୋଟିଏ ତରୁଣୀକୁ ହତ୍ୟା କରିବାକୁ ପଡ଼ିବ । ସଞ୍ଜୟ ଆଉ ଠିଆ ହୋଇପାରିଲା ନାହିଁ । ତା'ର ମୁଣ୍ଡଟା ବୁଲେଇ ଦେଲା । ସେ ପଡ଼ି ଯାଉଯାଉ ଟେବୁଲକୁ ଆଶ୍ରୟ କରି ଚେଆର ଉପରେ ବସିପଡ଼ିଲା ।

କେତେବେଳ କଟିଗଲା କେଜାଣି, କପାଳରେ କାହା ହାତର ସ୍ପର୍ଶ ପାଇ ସଞ୍ଜୟ ଆଖିମେଲି ଚାହିଁଲା ।

ମିସ୍ ଫ୍ଲୋରା । ଫ୍ଲୋରା ସଞ୍ଜୟର କପାଳରେ ଆଙ୍ଗୁଳି ସଞ୍ଚାଳନ କରୁଛି । ସାମ୍ନା କଫି କପ୍‌ରୁ ଧୂଆଁ ଉଠୁଛି ।

: ଉଠ ରାଜା । ରାତି ଅନେକ ବେଳୁ ପାହିଗଲାଣି । ପ୍ରାତଃକୃତ୍ୟ ଶେଷକରି

ସାମାନ୍ୟ ଟିକିଏ ଜଳଖିଆ ଖାଇନିଅ ତା'ପରେ ମୁଁ ତୁମକୁ ନେଇ ଛାଡ଼ିଦେଇ ଆସିବି ।

ସଞ୍ଜୟ କେବଳ ଫ୍ଲୋରା ମୁହଁକୁ ଥରେ ଚାହିଁଲା । ସେହିପରି ସରଳ ସ୍ମିତ ହସ ଖଣ୍ଡେ ଲାଗିରହିଛି ।

ସଞ୍ଜୟ ଉଠି ଠିଆହେଲା । ମୁହଁହାତ ଧୋଇବା ପାଇଁ ଫ୍ଲୋରା ବାଥ୍‌ରୁମ୍ ଦେଖାଇଦେଲା ।

ନୀରବରେ ଭୋଜନପର୍ବ ଶେଷ ହେଲା । ସଞ୍ଜୟ ଯେପରି ସତକୁସତ ବାକ୍‌ଶକ୍ତି ହରାଇ ବସିଛି ।

ଫ୍ଲୋରା କିନ୍ତୁ ସଞ୍ଜୟକୁ କହିବାକୁ ବାଧ୍ୟ କରିଥିଲା ।

: ତା'ପରେ ରାଜା । ଆଜି ସକାଳୁ ଗତ କାଲିର ଘଟଣା ତୁମକୁ ଦୁଃସ୍ୱପ୍ନ ପରି ଲାଗୁଥିବ, ନାଁ ! ଫ୍ଲୋରା ହସିଲା ।

ହଁ ଦୁଃସ୍ୱପ୍ନ ଫ୍ଲୋରା ! ଦୁଃସ୍ୱପ୍ନ ନ ହୋଇ ଆଉ କ'ଣ ହୋଇପାରେ ? ତମ ଦୟାରୁ ଆଜି ମୁଁ ଦଳପତିଙ୍କଠାରୁ କାର୍ଯ୍ୟର ଆଦେଶ ପାଇଛି । କ'ଣ ପାଇଛି ଜାଣ ଫ୍ଲୋରା ?

ସଞ୍ଜୟ ହୁଏତ ଆଉ ଟିକକରେ ସବୁ କହିପକାଇ ଥାଆନ୍ତା । ମାତ୍ର ଫ୍ଲୋରା ସଞ୍ଜୟ ମୁହଁରେ ହାତ ଚାପିଧରି କହିଲା ସାବଧାନ ରାଜା ! ଦଳପତିଙ୍କର ଆଦେଶ ସବୁବେଳେ ଗୁପ୍ତ ରଖିବାକୁ ହୁଏ । ତୁମେ ବାଚାଳତା କରନାହିଁ ରାଜା । ଦଳପତିଙ୍କ ଆଦେଶ ଗୁରୁମନ୍ତ୍ର ପରି ମନ ମଧ୍ୟରେ ରଖିବାକୁ ହୁଏ । ତା' ନ ହେଲେ ତୁମେ ମଧ୍ୟ ବିପଦରେ ପଡ଼ିବ ରାଜା ।

ଫ୍ଲୋରାକୁ ଉତ୍ତର ଦେବାପାଇଁ ସଞ୍ଜୟ ବୋଧହୁଏ ଭାଷା ଖୋଜି ପାଉ ନ ଥିଲା । କିନ୍ତୁ ଫ୍ଲୋରା ପୁଣି ଆରମ୍ଭ କଲା ଏଇଟା ତମର ସୌଭାଗ୍ୟ ରାଜା ! କୌଣସି ଲୋକକୁ ଦଳପତି ଏତେ ଶୀଘ୍ର ବିଶ୍ୱାସ କରି କାର୍ଯ୍ୟଭାର ଦେଇ ନ ଥିଲେ । ତମେ ଆସି ନୂତନ ରେକର୍ଡ ସୃଷ୍ଟି କରିଛି ।

ସଞ୍ଜୟର ଅନ୍ତରାତ୍ମା ଶିହରି ଉଠୁଥିଲା । ଫ୍ଲୋରାର ପ୍ରଶଂସାବାଣୀ ସଞ୍ଜୟକୁ ଛୁଞ୍ଚି ଫୋଡ଼ିଲା ପରି ଲାଗୁଥିଲା । ସେ ଭାବୁଥିଲା, ହୁଏତ ଦଳପତି ତାକୁ ଏତେ ଶୀଘ୍ର ବିଶ୍ୱାସ କରି ନ ଥିଲେ ଭଲହୋଇଥାଆନ୍ତେ ।

ଫ୍ଲୋରା ସଞ୍ଜୟର ମୌନବ୍ରତ ଭାଙ୍ଗିବା ପାଇଁ ତା' ଦେହରେ ହାତ ବୁଲେଇ କହିଲା ଆସ ରାଜା ! ତମର ଏହି ସୌଭାଗ୍ୟ ଉପଲକ୍ଷେ ଆମେ ଟିକିଏ ଆନନ୍ଦ କରିବା ।

ସଞ୍ଜୟର କିନ୍ତୁ ସମସ୍ତ ଆଗ୍ରହ ଯେପରି ଶେଷ ହୋଇଯାଇଥିଲା । ସେ ନୀରବରେ ଯନ୍ତ୍ରଚାଳିତ ପରି ଫ୍ଲୋରାର ପଛେପଛେ ଘରୁ ବାହାରିଗଲା ।

ପାରାଡାଇଜ୍ ହୋଟେଲରେ ସଞ୍ଜୟ ଯେତେବେଳେ ଯାଇ ପହଞ୍ଚିଲା ସେତେବେଳକୁ ଦିନ ଦଶଟା ବାଜି ଯାଇଥିଲା ।

ତା' ମନରେ ସମସ୍ତ ଆଗ୍ରହ ସମସ୍ତ ଉତ୍ସାହ ମରି ଯାଇଥିଲା ।

ସେ ନୀରବରେ ଯାଇ ଖଟ ଉପରେ ଶୋଇପଡ଼ିଲା । ଆଜି ରାତି ନଅଟାରେ ତାକୁ ବାହାରିବାକୁ ହେବ । କୌଣସି ଏକ ତରୁଣୀକୁ ହତ୍ୟା କରିବା ପାଇଁ ସେ ନିର୍ଦ୍ଦେଶ ପାଇଛି । କିନ୍ତୁ ଏହା କ'ଣ ତା' ଦ୍ୱାରା ସମ୍ଭବ ହେବ ?

କିନ୍ତୁ ଅନ୍ୟ ଉପାୟ ଯେ କିଛି ନାହିଁ ।

ଦଳପତିର ଆଦେଶ ଅମାନ୍ୟ କରିବା ଅର୍ଥ ନିଜେ ମୃତ୍ୟୁବରଣ କରିବା । କାହିଁକି ! କାହିଁକି ସେ ମୋହନକୁ ଅନୁରୋଧ କରିଥିଲା ତା'ପାଇଁ କୌଣସି ସୁବନ୍ଦୋବସ୍ତ କରାଇଦେବାକୁ !

ମାଳାକୁ ରକ୍ଷା କରିବାକୁ ଯାଇ ନିଜେ ସେ ଅରକ୍ଷଣୀୟ ହୋଇପଡ଼ିଛି । କିଏ ତାକୁ ରକ୍ଷା କରିବ ?

ଜର୍ଜ ଗୋମେସ ! ତାଙ୍କରି ଶରଣାପନ୍ନ ହେଲେ, ସେ କ'ଣ ତାକୁ ସତ୍‌ମାର୍ଗ ଦେଖାଇପାରିବେ ? କିନ୍ତୁ ଅସମ୍ଭବ । ଫ୍ଲୋରା କହୁଥିଲା, ଦଳପତିଙ୍କର ଶ୍ୟେନଦୃଷ୍ଟି ଏଡ଼େଇ ଆଜିଯାଏ କେହି ଖସିଯାଇ ପାରିନାହିଁ । ହୁଏତ କୌଣସି ଅଜ୍ଞାତ ରିଭଲଭର୍ କୌଣସି ଅତର୍କିତ ମୁହୂର୍ତ୍ତରେ ତା' ଛାତିରୁ ରକ୍ତ ନିଗାଡ଼ିନେବ ।

ସଞ୍ଜୟ ଆଉ ଭାବି ପାରିଲା ନାହିଁ ।

ମୁଣ୍ଡଟା ତା'ର ବାତ୍ୟାଚକ୍ର ପରି ଘୂରୁଥିଲା । ହେଲେ ତା'ର ଆଦୌ ବଳ ନ ଥିଲା । ଆସ୍ତେ ଆସ୍ତେ ଆଖି ଦୁଇଟି ଲାଗି ଲାଗି ଆସିଲା ।

ମଧ୍ୟାହ୍ନ ଭୋଜନ ପରେ ସଞ୍ଜୟ ଟିକିଏ ପ୍ରକୃତିସ୍ଥ ହୋଇଥିଲା । ମନର ଅସହାୟ ଭାବ ଧୀରେ କମି ଯାଇଥିଲା । ନୂଆ ଜୀବନର ମାର୍ଗରେ ଆଜି ତା'ର ପ୍ରଥମ ପଦକ୍ଷେପ । ହେଉ, କ୍ଷତି କ'ଣ । ଜୀବନର ଇଏ ବି ତ ଗୋଟାଏ ଦିଗ । ତା'ରି ପରି କେତେ ମଣିଷ ଜୀବିକା ନିର୍ବାହ କରିବା ପାଇଁ ବହୁ ଅଶୋଭନ କାର୍ଯ୍ୟ କରୁଛନ୍ତି । ଲୁଣ୍ଠନ, ହତ୍ୟା ଏଗୁଡ଼ା ତ ଆଜିକାଲି ଯୁଗର ନିତିଦିନିଆ ଘଟଣା । ଦେଖାଯାଉ । ଭାଗ୍ୟରେ ଯାହା ଥିବ । ସେଥିପାଇଁ କାତର ହେଲେ କୌଣସି ସୁଫଳ ହେବ ନାହିଁ । ଯଦି ଗୋଟାଏ ଝିଅକୁ ଉଦ୍ଧାର କରିବା ପାଇଁ ଆସି ନର୍କ ପଥରେ ତାକୁ ଆଗେଇବାକୁ ହୁଏ, ତା' ବି ହେଉ । ଶେଷରେ ସେ ତା'ର ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବ ତ !

ସଞ୍ଜୟ ମନେମନେ ନିଜକୁ ସଂଯତ କଲା ।

ରାତ୍ରିର ଅଭିଯାନ ପାଇଁ ସେ ବଳ ସଞ୍ଚୟ କରୁଥିଲା ।

ଧୀରେ ଧୀରେ ସନ୍ଧ୍ୟା ପାଖେଇ ଆସୁଥିଲା । ସଞ୍ଜୟର ମନ ଭିତରଟା କିପରି ଏକ ଅଜଣା ଆଶଙ୍କାରେ ନାଚି ଉଠୁଥିଲା ।

ଜର୍ଜ ଗୋମେସ ! ଆଜି କ'ଣ ସେ ଆସିନାହାନ୍ତି ? କାହିଁ ଏ ପର୍ଯ୍ୟନ୍ତ ତ ଆସିଲେ ନାହିଁ । ଅନ୍ତତଃ ଚା' କପେ କିମ୍ବା କଫି କପେ ଖାଇବା ପାଇଁ ତ ଆସିଥାଆନ୍ତେ । କିଏ ଜାଣେ ହୁଏତ ରୁମ୍‌ରେ କବାଟ କିଳି ଚୁପ୍‌ଚାପ୍ ବସି ସମୟ ସହିତ ମନର ଗତି ମିଳାଉଛନ୍ତି ।

ମନଟାକୁ ଟିକିଏ ଫୁର୍ତ୍ତି କରିବା ପାଇଁ ସଞ୍ଜୟ ଭାବିଲା, ଯାଇ ଜର୍ଜ ଗୋମେସଙ୍କ ସହିତ ଗଳ୍ପ କଲେ ଭଲ ହୁଅନ୍ତା ।

କିନ୍ତୁ ଶିପ୍ରା ଯେ ! ବେଶବାସ ସହିତ ମନର ଭାବ କିପରି ଉତ୍କଟ ହୋଇଉଠିଚି । ସଞ୍ଜୟକୁ ଦେଖିବା ମାତ୍ରେ ସେ ଛୁଟିଆସି ଏକ ପ୍ରକାର ଜାବୁଡ଼ି ଧରିଲା । ଟାଣିଟାଣି ନେଇଗଲା ନିଜର ରୁମ୍ ଭିତରକୁ । ଦୁଇ ହାତରେ ସଞ୍ଜୟର ଦୁଇ ବାହାକୁ ଧରି ଗୋଟିଏ ସୋଫା ଉପରେ ବସାଇ ଦେଇ କହିଲା  ଆଜି କିନ୍ତୁ ମୁଁ ଆପଣଙ୍କୁ ନ ଖୋଇ ଛାଡ଼ିବି ନାହିଁ ।

ଶିପ୍ରାର ଏହି ଉଚ୍ଛ୍ୱସିତ ଆନନ୍ଦ କଥା ସଞ୍ଜୟ ଅନୁମାନ କରିପାରୁଥିଲା । ଶିପ୍ରାର ଗୋଡ଼ ଯେପରି ତଳେ ଲାଗୁ ନ ଥିଲା । ମନ ଉଡ଼ି ବୁଲୁଥିଲା, ହୁଏତ ସ୍ୱର୍ଗର ନନ୍ଦନକାନନରେ ପାରିଜାତ ଚୟନ ପାଇଁ ।

ପରୀକ୍ଷାରେ ମୁଁ ଉତ୍ତୀର୍ଣ୍ଣ ହୋଇଛି ମିଃ ଚଉଧୁରୀ । ମୋର ଏହି ସାଫଲ୍ୟର କାହାଣୀ ଶୁଣିବା ପାଇଁ ଏହି ବିଦେଶରେ ଆପଣାର ହୋଇ କେହି ନାହିଁ । ତେଣୁ ଆପଣ ଆଜି ମୋର ସବୁଠାରୁ ଅନ୍ତରଙ୍ଗ ପରି ମନେହେଉଛନ୍ତି ।

ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି ଶିପ୍ରା ଦେବୀ, ଆପଣଙ୍କ ସାଫଲ୍ୟ କାମନା କରୁଛି ।

ଆହୁରି ଶୁଭ ଖବର ଅଛି ମିଃ ଚଉଧୁରୀ । ଆପଣଙ୍କୁ ନ ଜଣାଇଲେ ହୁଏତ ଅନ୍ୟାୟ ହେବ । ଖାଲି ମୁଁ ପରୀକ୍ଷାରେ ଯେ ଉତ୍ତୀର୍ଣ୍ଣ ହୋଇଛି ତାହା ନୁହେଁ, ସଙ୍ଗେ ସଙ୍ଗେ କାର୍ଯ୍ୟରେ ନିଯୁକ୍ତି ପାଇଛି ଆଉ ସେ କାର୍ଯ୍ୟ କ'ଣ ଜାଣନ୍ତି ?

ଶିପ୍ରା ପ୍ରଶ୍ନବାଚୀ ନୟନରେ ସଞ୍ଜୟ ମୁହଁକୁ ଚାହିଁ ମୃଦୁ ମୃଦୁ ହସୁଥିଲା । ସଞ୍ଜୟ ମନେ ମନେ ଶିପ୍ରାର ଦୁର୍ଭାଗ୍ୟ କଥା ଚିନ୍ତା କରି ବ୍ୟଥିତ ହେଉଥିଲା । କିଏ କହିପାରିବ ହୁଏତ ସେ ଆଜି ରାତି ଦଶଟାରେ ଯାଇ ଦେଖିବ ଶିପ୍ରାକୁ ହତ୍ୟା କରିବାପାଇଁ ସେ ନିର୍ଦ୍ଦେଶ ପାଇଚି । ଅଥବା...

ଶିପ୍ରା ବୋଧହୁଏ ସଞ୍ଜୟର ଏହି ନୀରବତା ସହ୍ୟ କରିପାରୁ ନ ଥିଲା । ତା' ମନର ଭାବ ବ୍ୟକ୍ତ କରିବା ପାଇଁ ସେ ଚଞ୍ଚଳ ହୋଇଉଠିଥିଲା । ସଞ୍ଜୟର ଭାବନାରେ ବାଧାଦେଇ କହିଲା  ମୁଁ ଜାଣେ ମୋର ଏତେବଡ଼ ଗୋଟାଏ ସୌଭାଗ୍ୟର କଥା ଆପଣ ଆଦୌ ଚିନ୍ତା କରିପାରିବେ ନାହିଁ । ମୋତେ ବି: କେ: ଫିଲ୍ମସର ଆଗାମୀ ଚିତ୍ର 'ତାଜମହଲ'ରେ ହିରୋଇନ୍ ପାଇଁ ମନୋନୟନ କରାହୋଇଛି ଏବଂ ଆଜି ରାତିରେ ମୁଁ କଲିକତା ଛାଡ଼ି ଆଗ୍ରା ଅଭିମୁଖେ ଯାତ୍ରା କରିବି । ଦୁଇଦିନ ପରେ ସେଠାରେ ଆଉଟ୍‌ଡୋର ସୁଟିଂ ଆରମ୍ଭ ହେବ । ଆଉ ସେହି ଚିତ୍ରର ହିରୋ କିଏ ଜାଣନ୍ତି ? ଦିଲୀପ୍ କୁମାର ।

ଶିପ୍ରା ଆଖିରୁ ଯେପରି ଆନନ୍ଦର ଝଲକ ଝରି ପଡୁଥିଲା । ମନେ ହେଉଥିଲା ତା' ଜୀବନର ଏହା ଯେପରି ଚରମ ସାର୍ଥକତା ।

କିନ୍ତୁ ହାୟରେ ବିଚାରୀ ହତଭାଗିନୀ !

ତାଜମହଲର ହିରୋଇନ୍‌କୁ କଲିକତା ଛାଡ଼ିଲେ ଯେ କେଉଁ ଅହିନର୍କରେ ଯାଇ ପଡ଼ିବାକୁ ହେବ ସେ କଥା ସଞ୍ଜୟ ଚିନ୍ତା କରିପାରୁ ନ ଥିଲା । ତା'ର ଏହି ଆଶା, ଏହି ଆନନ୍ଦ ସେତେବେଳେ କୁଆଡ଼େ ଯେ ଯିବ, ଶିପ୍ରା ହୁଏତ ଆଉ ଜୀବନଭରି ଖୋଜି ପାଇବ ନାହିଁ ।

ଶିପ୍ରା କିନ୍ତୁ ସଞ୍ଜୟର ଏହି ନୀରବତା ଆଦୌ ସହ୍ୟ କରିପାରୁ ନ ଥିଲା । କିପରି ଶ୍ଳେଷମିଶା ସ୍ୱରରେ କହିଲା  ଆପଣ କ'ଣ ମୋର ଏହି ସୌଭାଗ୍ୟ ସହ୍ୟ କରିପାରୁ ନାହାନ୍ତି ?

ନା ନା ଶିପ୍ରା ଦେବୀ ! ମୁଁ ଆପଣଙ୍କର ସାଫଲ୍ୟରେ ସବୁଠାରୁ ବେଶି ଖୁସି । ଆପଣ ଆଗ୍ରା ଗଲେ ମୁଁ ସେଠାରେ ଯାଇ ଆପଣଙ୍କ ସହିତ ଭେଟ କରିବି । କିନ୍ତୁ ଆପଣ କ'ଣ ସେତେବେଳେ ମୋତେ ଚିହ୍ନିପାରିବେ ଶିପ୍ରା ଦେବୀ ?

ଶିପ୍ରା ମୁହଁରେ ବଙ୍କିମ ହାସ୍ୟରେଖା ଫୁଟିଉଠିଲା ।

ସେ କିପରି ଓଠ ଚିପି ଏକ ଅଭିନବ ଠାଣିରେ କହିଲା  ଉଁ ହୁଁ, ମୋତେ ସେପରି ଭାବନ୍ତୁ ନାହିଁ ମିଃ ଚଉଧୁରୀ, ଅନ୍ତତଃ ଆଉ କାହା ପାଇଁ ହେଲେ ବି ଆପଣଙ୍କ ପାଇଁ ସବୁ ସମୟରେ ମୋତେ ଦେଖା କରିବାର ଦ୍ୱାର ଉନ୍ମୁକ୍ତ ରହିବ ।

ସଞ୍ଜୟ ହସିଉଠୁଥିଲା କିନ୍ତୁ ବହୁ କଷ୍ଟରେ ନିଜକୁ ସଂଯତ କରି କହିଲା  ତା'ହେଲେ ମୋର ସେଇଟା ପରମ ସୌଭାଗ୍ୟ ହେବ ଶିପ୍ରା ଦେବୀ । ବର୍ତ୍ତମାନ ମୁଁ ଆସୁଛି । ଆପଣଙ୍କ ଯିବା ପୂର୍ବରୁ ଆଉଥରେ ଆପଣଙ୍କ ସହିତ ଭେଟ କରିବି । ସେ ଉଠି ଠିଆ ହୋଇପଡ଼ିଲା ।

ଶିପ୍ରା କିନ୍ତୁ ବିଦାୟ ଦେବାକୁ ଯାଇ ହଠାତ୍ ସଚେତନ ହେଲା ପରି କହି ଉଠିଲା : ନା ନା, ଚଉଧୁରୀ । ଆପଣ ଯେ ଖାଇ ନାହାନ୍ତି । ମୁଁ ଏକଦମ୍ ଭୁଲିଯାଇଛି । ଆପଣଙ୍କୁ କିନ୍ତୁ ଆଜି ନ ଖୋଇ ଛାଡ଼ିବି ନାହିଁ ।

ସଞ୍ଜୟ ହସିହସି ଘରୁ ବାହାରି ଗଲା ।

ମୋର ଏ ପାଉଣା ଚିହିଲା ଶିପ୍ରା ଦେବୀ । ଆଜି ସବୁ ଯାହା ତୁଟେଇ ଦେବା ଉଚିତ ନୁହେଁ । ତା'ହେଲେ ପୁଣି ଆପଣଙ୍କ ନିକଟକୁ କେଉଁ ଦାବୀରେ ଯିବି ?

ଶିପ୍ରା ହସୁଥିଲା, କେବଳ ହସୁଥିଲା । ସେ ସାଫଲ୍ୟ ଅର୍ଜନ କରିଛି । ଯେଉଁ ଲକ୍ଷ୍ୟ ହାସଲ ପାଇଁ ଦେଶର ଶହଶହ ତରୁଣୀ ବ୍ୟର୍ଥ ହୋଇଛନ୍ତି, ସେଥିରେ ସେ ସଫଳତା ଅର୍ଜନ କରିଛି । ଏହା କ'ଣ କମ ଗୌରବର କଥା ! କହିଲା ମୋ'ଠାରେ ଦାବୀ ଆପଣଙ୍କର ସବୁଠାରୁ ବେଶି ମିଃ ଚଉଧୁରୀ । ଆପଣଙ୍କ କଥା ମୋର ସମଗ୍ର ଜୀବନ ମନେରହିବ ।

ସଞ୍ଜୟ ଆଉ କୌଣସି ଉତ୍ତର ଦେଲା ନାହିଁ ।

ଶିପ୍ରାର ଦୁର୍ଭାଗ୍ୟ କଥା ଚିନ୍ତା କରି ସେ ମ୍ରିୟମାଣ ହୋଇପଡ଼ିଥିଲା । ବର୍ତ୍ତମାନ ବି ସମୟ ଅଛି । ଇଚ୍ଛା କଲେ ଶିପ୍ରାକୁ ସେ ନରକଦ୍ୱାରରୁ ଭିଡ଼ି ଆଣିପାରନ୍ତା । କିନ୍ତୁ ସମ୍ଭବ ନୁହେଁ । ଶିପ୍ରା ମଧ୍ୟ ତା' ପ୍ରସ୍ତାବ ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନ ଥିବ । ବରଂ ସେ ଭାବିବ ସଞ୍ଜୟ ତା' ସୌଭାଗ୍ୟଲକ୍ଷ୍ମୀକୁ କାଢ଼ି ନେବା ପାଇଁ ଚକ୍ରାନ୍ତ କରୁଛି । ଛାଡ଼, ଚଳାପଥରେ ହୁଏତ ଇମିତି କେତେ ସୌଭାଗ୍ୟବତୀଙ୍କୁ ସେ ଭେଟିବ । ଯେଉଁମାନେ ନିଜ ପାଦରେ କୁଠାରାଘାତ କରି ନିଜର ସର୍ବନାଶ କରୁଥିବେ । କେତେଜଣଙ୍କୁ ବା ସେ ଉଦ୍ଧାର କରିପାରିବ ? ଫ୍ଲୋରା, ଲିଲି, ବାସବଦତ୍ତା ଏମାନେ କ'ଣ ଜଣେଜଣେ ସେହି ପଥର ଯାତ୍ରୀ ନୁହନ୍ତି ?

ଧେତ୍, ଏତେ ଚିନ୍ତା କଲେ ଶେଷକୁ ପାଗଳ ହୋଇଯିବାକୁ ପଡ଼ିବ । କିନ୍ତୁ ଜର୍ଜ ଗୋମେସ ଗଲେ କୁଆଡ଼େ ? ତାଙ୍କ ସହିତ ଅନ୍ତତଃ ଥରେ ପରାମର୍ଶ କରିଥିଲେ ଭଲ ହୋଇଥାଆନ୍ତା । କିନ୍ତୁ ଖୋଲାଖୋଲି ଭାବରେ ଯେ କିଛି କଥାବାର୍ତ୍ତା କରିହେବ ନାହିଁ ।

ଆଉ କେତୋଟି ଘଣ୍ଟା ମାତ୍ର । ତା'ପରେ ସଞ୍ଜୟକୁ ଏକ ସମ୍ପୂର୍ଣ୍ଣ ନୂତନ ପଥର ଯାତ୍ରୀ ହେବାକୁ ପଡ଼ିବ ।

ହତ୍ୟା !

ଖୁନ୍ !!

ସଞ୍ଜୟର ଅନ୍ତରାତ୍ମା କମ୍ପିଉଠିଲା । ସେ ନିଜ ରୁମ୍‌ର ଦରଜା ଭିତରୁ ବନ୍ଦକରି ଖଟ ଉପରେ ଶୋଇପଡ଼ିଲା ।

ମନକୁମନ ସେ କୌଣସି ପ୍ରକାର ସାନ୍ତ୍ୱନା ଦେଇପାରୁ ନ ଥିଲା । କାହିଁକି ସେ ଗଲା ଏଇ କୁଖ୍ୟାତ ଦଳ ସହିତ ଯୋଗ ଦେବାକୁ । ଯେଉଁଥିପାଇଁ ସେ ଯାଇଥିଲା, ସେ ବା ଗଲା କୁଆଡ଼େ ?

ସଞ୍ଜୟ ଯେତେ ପାଣି ଭିତରେ ପଶୁଛି, ପଙ୍କ ସେତେ ଘୁଞ୍ଚିଘୁଞ୍ଚି ଯାଉଛି ।

ଶେଷରେ କ'ଣ ତାଙ୍କୁ...

ଦରଜାରେ କିଏ କରାଘାତ କଲା ।

କିଏ ଆଉ ହୋଇପାରେ ? ସଞ୍ଜୟ ଉଠି ଠିଆ ହେଲା ।

ଖୋଲିବ ନା ନାହିଁ ? ହୁଏତ ଜର୍ଜ ଗୋମେସ ହୋଇଥିବେ । ତା'ଛଡ଼ା ଆଉ ଏଠାରେ ପରିଚିତ ଅଛି ବା କିଏ !

ପୁଣି କରାଘାତ ଶୁଣାଗଲା ।

ସଞ୍ଜୟ ଯାଇ ଦୁଆର ଖୋଲି ଦେଲା । ଏ ଯେ ଅଭାବିତ, ସଶରୀରରେ ଫ୍ଲୋରା ଉପସ୍ଥିତ ହୋଇଛି ।

ତୁମେ, ଫ୍ଲୋରା ତୁମେ ଏଠାରେ ଯେ !

ହଁ ଆସିଛି ରାଜା ! ମୋତେ କ'ଣ ଭିତରେ ପ୍ରବେଶର ଅନୁମତି ମିଳିବ ନାହିଁ ?

ଆରେ ଆସ ଆସ । ସଞ୍ଜୟ ଟିକିଏ ଲଜ୍ଜିତ ହେଲା ।

ଫ୍ଲୋରା କକ୍ଷ ମଧ୍ୟରେ ପ୍ରବେଶ କଲା ।

ତା'ପରେ, ହଠାତ୍ କ'ଣ ମନେକରି ? ଆଉ କ'ଣ କୌଣସି ନୂତନ ଆଦେଶ ବହନ କରିଆସିଛ ?

ନା ରାଜା ! ମୋତେ ତୁମେ କ'ଣ ଯେ ଭାବୁଚ ! ମୁଁ ଆସିଥିଲି ଏଠାରେ ଜଣେ ବନ୍ଧୁଙ୍କ ସହିତ ଦେଖା କରିବାକୁ । କିନ୍ତୁ ତୁମକୁ ଏହି ରୁମ୍ ଭିତରେ ପଶୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲି । ବନ୍ଧୁଙ୍କୁ ପଚାରିଲି । ସେ କହିଲେ, ତୁମେ କେତେ ଦିନ ହେବ ଏହିଠାରେ ରହୁଛ ।

ସଞ୍ଜୟ ଯେପରି ସ୍ୱସ୍ତିର ନିଃଶ୍ୱାସଟିଏ ପକାଇଲା ।

କ'ଣ କିଛି ଖାଇବ ?

: ଦରକାର ନାହିଁ ରାଜା । ମୁଁ ଏଇକ୍ଷିଣା ବନ୍ଧୁଙ୍କ ନିକଟରୁ ପେଟଭରି ଖାଇଆସିଛି । ବରଂ...ନା ଥାଉ, ଫ୍ଲୋରା କ'ଣ କହିବାକୁ ଯାଇ ଅଟକିଗଲା ।

କ'ଣ କୁହ ଫ୍ଲୋରା । ଅଟକିଲ କାହିଁକି ?

ମୁଁ କ'ଣ କହୁଥିଲି କି, ଗୋଟିଏ ପିକ୍‌ଚର ଦେଖିଗଲେ ହୁଅନ୍ତା । ଆଜି ମୋର ଟିକିଏ ସମୟ ଅଛି, ଅବଶ୍ୟ ତମର କ'ଣ କାମ ଅଛି କି ନାହିଁ ମୋତେ ଜଣା ନାହିଁ ।

ମନ୍ଦ ପ୍ରସ୍ତାବ ନୁହେଁ । ସଞ୍ଜୟ ଘଡ଼ିକୁ ଚାହିଁଲା, ମାଟିନ୍ ସୋ ଦେଖି ସେ ଅକ୍ଲେଶରେ ଫେରିଆସି ପାରିବ । ତା'ଛଡ଼ା ବିଛଣାରେ ଶୋଇଶୋଇ ନାନା ପ୍ରକାର ଦୁଶ୍ଚିନ୍ତାରେ ଘାଣ୍ଟି ହେବା ଅପେକ୍ଷା, ସିନେମା ହାଉସ୍‌ରେ ଦୁଇ ଅଢ଼େଇ ଘଣ୍ଟା କଟେଇ ଆସିବା ଭଲ ।

|| ଅନୁବାଦ ସାହିତ୍ୟ ||
|| ସ୍ପନ୍ଦନ ||

ମୁଁ ତମର ପ୍ରସ୍ତାବରେ ରାଜି ଫ୍ଲୋରା । କିନ୍ତୁ କି ପିକ୍‌ଚର ଦେଖିବା ?

ଚାଲ । ଲାଇଟ୍ ହାଉସ୍ ବା ମେଟ୍ରୋ ଏଇ ଦୁଇଟା ହାଉସ୍‌ରୁ ଗୋଟିକୁ ଯିବା, ଦୁଇଟାଯାକରେ ଭଲ ପିକ୍‌ଚର ଚାଲିଛି ।

ସଞ୍ଜୟ ଡ୍ରୟାର ଟାଣି କେଇଖଣ୍ଡ ନୋଟ୍ ବାହାର କରି ପକେଟରେ ଭରିଲା । ଦର୍ପଣ ସାମନାରେ ଠିଆହୋଇ ଟାଇଟା ଭିଡ଼ିଲା । ତା'ପରେ ପାନିଆରେ ମୁଣ୍ଡଟା କୁଣ୍ଡେଇ ଫ୍ଲୋରା ପାଖରେ ଆସି ଠିଆହେଲା ।

ମୁଁ ପ୍ରସ୍ତୁତ ଫ୍ଲୋରା ।

ସଞ୍ଜୟ ଚେଷ୍ଟା କରି ମନରୁ ଦୁଶ୍ଚିନ୍ତାଯାକ ଦୂରକୁ ଠେଲିଦେଉଥିଲା । ଆଉ ସେ ଯେ ଖୁବ୍ ଫୂର୍ତ୍ତିରେ ଅଛି ସେହିପରି ଭାବ ଫ୍ଲୋରା ଆଗରେ ଦେଖାଇବାକୁ ଚେଷ୍ଟା କରୁଥିଲା ।

ଫ୍ଲୋରା ଉଠି ଠିଆହୋଇ ପଡ଼ିଲା ।

ଚାଲ ରାଜା । ସମୟ ମଧ୍ୟ ହୋଇଆସିଲାଣି ।

ଦୁହେଁ ହାତ ଧରାଧରି ହୋଇ ରୁମ୍‌ରୁ ବାହାରିଗଲେ ।

ପ୍ରକୃତରେ ସଞ୍ଜୟର ମନ ଭିତରଟା ଧୀରେଧୀରେ ହାଲ୍‌କା ହୋଇଆସୁଥିଲା ।

ଯେଉଁ ଟ୍ୟାକ୍‌ସିରେ ଉଠିବା ପାଇଁ ସଞ୍ଜୟ ହାତ ଦେଖାଇଥିଲା, ସେହି ଟ୍ୟାକ୍‌ସିରୁ ଜର୍ଜ ଗୋମେସ ଓହ୍ଲେଇଲେ । ସଙ୍ଗରେ ସେ ଫ୍ଲୋରାକୁ ଦେଖି ଟ୍ୟାକ୍‌ସିର ଦରଜା ସେହିପରି ଖୋଲି ଧରି କହିଲେ, ଉଠନ୍ତୁ ମିସେସ୍...

ନା ମିସେସ୍ ନୁହେଁ, ମିସ୍ ଫ୍ଲୋରା ।

ଫ୍ଲୋରା ସେତେବେଳକୁ ଟ୍ୟାକ୍‌ସି ଭିତରକୁ ଉଠି ଯାଇଥିଲା ।

ଆପଣ ମଧ୍ୟ ଉଠନ୍ତୁ ଚଉଧୁରୀ । ସମୟ ହାତରେ ଖୁବ୍ କମ୍ ।

ସଞ୍ଜୟ ଉଠିଗଲା । ଗୋମେସ ଦରଜା ବନ୍ଦ କରିଦେଲେ, ଟ୍ୟାକ୍‌ସି ଫେଆର ଦେବାପାଇଁ ପକେଟରେ ହାତ ଭରୁଥିଲେ ।

ଆପଣ ଯାଆନ୍ତୁ ଜର୍ଜ ! ହାତରେ ଆଉ ସମୟ ନାହିଁ । ଫେଆରଟା ମୁଁ ଦେଇଦେବି ।

ଜର୍ଜ ଗୋମେସ ଚଳନ୍ତ ଟ୍ୟାକ୍‌ସିଟା ଅଦୃଶ୍ୟ ହେବାଯାଏ ଅନାଇ ଠିଆ ହୋଇଥିଲେ ।

ସମୟର ମୂଲ୍ୟ ତା'ହେଲେ ସମସ୍ତେ ବୁଝିବାକୁ ଆରମ୍ଭ କଲେଣି !!

ହୁଏତ ଜର୍ଜ ଗୋମେସ ଏହି କଥା ଠିଆହୋଇ ଚିନ୍ତା କରୁଥିଲେ ।

ଠିକ୍ ରାତି ଦଶଟାବେଳେ ସଞ୍ଜୟ ଧୀରେଧୀରେ ପାରାଡାଇଜ୍ ହୋଟେଲରୁ ତଳକୁ ଓହ୍ଲାଉଥିଲା ।

ପାଦଯୋଡ଼ିକ ତା'ର ରହିରହି ଥରିଉଠୁଥିଲା । ସେ ଆଜି ସମ୍ପୂର୍ଣ୍ଣ ଏକ ନୂଆ ପଥର ପଥିକ ହୋଇଛି । ଜୀବନର ଏହା ଏକ ସନ୍ଧିକ୍ଷଣ । କ'ଣ ତା' କପାଳରେ ଅଛି କିଏ ଜାଣେ ?

ଯେଉଁ ମୃତ୍ୟୁଗହ୍ବରକୁ ପାଦଯୋଡ଼ିକ ତା'ର ଟାଣି ନେଇଯାଉଛି, ସେଠାକୁ ନ ଯିବାର ଉପାୟ ନାହିଁ । ତା'ହେଲେ ମୃତ୍ୟୁର କାଳନାଗ ଯେକୌଣସି ମୁହୂର୍ତ୍ତରେ ତାକୁଇ ଦଂଶନ କରିବ ।

ସଞ୍ଜୟ ନିଜ ପାଦଶବ୍ଦ ଶୁଣି ନିଜେ ଚମକି ଉଠୁଥିଲା ।

ପକେଟରେ ହାତ ଭରି ଦେଖିଲା, ରିଭଲଭର୍‌ଟି ରହିଛି, ସେଇଟି ତା'ର ଏକମାତ୍ର ସହାୟ । ଯଦିଓ ସେଇଟି ତାକୁ ଦିଆହୋଇଛି ଆଉ ଗୋଟିଏ ଜୀବନ ସହିତ ରକ୍ତ-ହୋରି ଖେଳିବା ପାଇଁ, ତଥାପି ସଞ୍ଜୟର ଯେପରି ସେଇଟି ଏକମାତ୍ର ଆଶା ଭରସା ପରି ମନେହେଉଥିଲା ।

ସଞ୍ଜୟ ଫୁଟ୍‌ପାଥକୁ ଓହ୍ଲେଇ ଯାଇ ରାସ୍ତାକୁ ଚାହିଁଲା । କାହିଁ ସେଇ କଳା ରଙ୍ଗର ମଟରଗାଡ଼ି ଖଣ୍ଡିକ ? ନିଶ୍ଚୟ କେଉଁଠି ତା'ରି ପ୍ରତୀକ୍ଷାରେ ଠିଆହୋଇଚି ।

ଆଗକୁ ପଛକୁ ଚାହୁଁଚାହୁଁ ଜଣେ ଆସି ସଞ୍ଜୟ ପାଖରେ ଠିଆହେଲା ।

ଆସନ୍ତୁ । ଲୋକଟି ଡାକିଲା ।

କେଉଁଠାକୁ ?

ମୋ' ସହିତ ଚାଲିଆସନ୍ତୁ । ଗାଡ଼ିଟା ରାସ୍ତା ଆରପାଖରେ ଠିଆହୋଇଛି ।

ସଞ୍ଜୟ ଆଉ ଦ୍ବିଧା କଲା ନାହିଁ । ଭଗବାନଙ୍କ ନାମ ସ୍ମରଣ କରି ଲୋକଟି ପଛେପଛେ ଚାଲିଲା ।

ଗାଡ଼ିରେ ଉଠି ସେ କେଉଁବାଟେ ଦେଇ କେଉଁଠି ଆସି ପହଞ୍ଚିଲା, କିଛି ତା'ର ମନେ ନ ଥିଲା । ଡ୍ରାଇଭର ଯେତେବେଳେ ଦରଜା ଖୋଲି ସଞ୍ଜୟକୁ ପଦାକୁ ବାହାରିବାକୁ କହିଲା, ସେ ପ୍ରକୃତିସ୍ଥ ହୋଇ ଚାହିଁଲା, କୌଣସି ଏକ ସରୁଗଳି ମୁଣ୍ଡରେ ତା' ଗାଡ଼ିଟି ଠିଆହୋଇଛି ।

ସଞ୍ଜୟ ଛାତିରୁ ଯେପରି ଅତଡ଼ା ଖସିପଡ଼ିଲା । ଗାଡ଼ିରୁ ପଦାକୁ ବାହାରିଲା । ଡ୍ରାଇଭର କହିଲା : ମୋ' ସହିତ ଆସନ୍ତୁ । ମୁଁ ଆପଣଙ୍କୁ ଘର ଚିହ୍ନେଇ ଦେଇଆସିବି ।

ସେ ଡ୍ରାଇଭର୍‌ର ପଛେପଛେ କିଛି ଦୂର ଆଗେଇ ଯିବା ପରେ ଡ୍ରାଇଭର

ମୁଁ ତମର ପ୍ରସ୍ତାବରେ ରାଜି ଫ୍ଲୋରା । କିନ୍ତୁ କି ପିକ୍‌ଚର ଦେଖିବା ?

ଚାଲ । ଲାଇଟ୍ ହାଉସ୍ ବା ମେଟ୍ରୋ ଏଇ ଦୁଇଟା ହାଉସ୍‌ରୁ ଗୋଟିକୁ ଯିବା, ଦୁଇଟାଯାକରେ ଭଲ ପିକ୍‌ଚର ଚାଲିଛି ।

ସଞ୍ଜୟ ଡ୍ରୟାରୁ ଟାଣି କେଇଖଣ୍ଡ ନୋଟ୍ ବାହାର କରି ପକେଟରେ ଭରିଲା । ଦର୍ପଣ ସାମନାରେ ଠିଆହୋଇ ଟାଇଟା ଭିଡ଼ିଲା । ତା'ପରେ ପାନିଆରେ ମୁଣ୍ଡଟା କୁଣ୍ଡେଇ ଫ୍ଲୋରା ପାଖରେ ଆସି ଠିଆହେଲା ।

ମୁଁ ପ୍ରସ୍ତୁତ ଫ୍ଲୋରା ।

ସଞ୍ଜୟ ଚେଷ୍ଟା କରି ମନରୁ ଦୁଶ୍ଚିନ୍ତାଯାକ ଦୂରକୁ ଠେଲିଦେଉଥିଲା । ଆଉ ସେ ଯେ ଖୁବ୍ ଫୂର୍ତ୍ତିରେ ଅଛି ସେହିପରି ଭାବ ଫ୍ଲୋରା ଆଗରେ ଦେଖାଇବାକୁ ଚେଷ୍ଟା କରୁଥିଲା ।

ଫ୍ଲୋରା ଉଠି ଠିଆହୋଇ ପଡ଼ିଲା ।

ଚାଲ ରାଜା । ସମୟ ମଧ୍ୟ ହୋଇଆସିଲାଣି ।

ଦୁହେଁ ହାତ ଧରାଧରି ହୋଇ ରୁମ୍‌ରୁ ବାହାରିଗଲେ ।

ପ୍ରକୃତରେ ସଞ୍ଜୟର ମନ ଭିତରଟା ଧୀରେଧୀରେ ହାଲ୍‌କା ହୋଇଆସୁଥିଲା ।

ଯେଉଁ ଟ୍ୟାକ୍‌ସିରେ ଉଠିବା ପାଇଁ ସଞ୍ଜୟ ହାତ ଦେଖାଇଥିଲା, ସେହି ଟ୍ୟାକ୍‌ସିରୁ ଜର୍ଜ ଗୋମେସ ଓହ୍ଲେଇଲେ । ସଙ୍ଗରେ ସେ ଫ୍ଲୋରାକୁ ଦେଖି ଟ୍ୟାକ୍‌ସିର ଦରଜା ସେହିପରି ଖୋଲି ଧରି କହିଲେ, ଉଠନ୍ତୁ ମିସେସ୍...

ନା ମିସେସ୍ ନୁହେଁ, ମିସ୍ ଫ୍ଲୋରା ।

ଫ୍ଲୋରା ସେତେବେଳକୁ ଟ୍ୟାକ୍‌ସି ଭିତରକୁ ଉଠି ଯାଇଥିଲା ।

ଆପଣ ମଧ୍ୟ ଉଠନ୍ତୁ ଚଉଧୁରୀ । ସମୟ ହାତରେ ଖୁବ୍ କମ୍ ।

ସଞ୍ଜୟ ଉଠିଗଲା । ଗୋମେସ ଦରଜା ବନ୍ଦ କରିଦେଲେ, ଟ୍ୟାକ୍‌ସି ଫେଆର ଦେବାପାଇଁ ପକେଟରେ ହାତ ଭରୁଥିଲେ ।

ଆପଣ ଯାଆନ୍ତୁ ଜର୍ଜ ! ହାତରେ ଆଉ ସମୟ ନାହିଁ । ଫେଆରଟା ମୁଁ ଦେଇଦେବି ।

ଜର୍ଜ ଗୋମେସ ଚଳନ୍ତ ଟ୍ୟାକ୍‌ସିଟା ଅଦୃଶ୍ୟ ହେବାଯାଏ ଅନାଇ ଠିଆ ହୋଇଥିଲେ ।

ସମୟର ମୂଲ୍ୟ ତା'ହେଲେ ସମସ୍ତେ ବୁଝିବାକୁ ଆରମ୍ଭ କଲେଣି !!

ହୁଏତ ଜର୍ଜ ଗୋମେସ ଏହି କଥା ଠିଆହୋଇ ଚିନ୍ତା କରୁଥିଲେ ।

ଠିକ୍ ରାତି ଦଶଟାବେଳେ ସଞ୍ଜୟ ଧୀରେଧୀରେ ପାରାଡାଇଜ୍ ହୋଟେଲରୁ ତଳକୁ ଓହ୍ଲାଉଥିଲା ।

ପାଦଯୋଡ଼ିକ ତା'ର ରହିରହି ଥରିଉଠୁଥିଲା । ସେ ଆଜି ସମ୍ପୂର୍ଣ୍ଣ ଏକ ନୂଆ ପଥର ପଥିକ ହୋଇଛି । ଜୀବନର ଏହା ଏକ ସନ୍ଧିକ୍ଷଣ । କ'ଣ ତା' କପାଳରେ ଅଛି କିଏ ଜାଣେ ?

ଯେଉଁ ମୃତ୍ୟୁଗହ୍ୱରକୁ ପାଦଯୋଡ଼ିକ ତା'ର ଟାଣି ନେଇଯାଉଛି, ସେଠାକୁ ନ ଯିବାର ଉପାୟ ନାହିଁ । ତା'ହେଲେ ମୃତ୍ୟୁର କାଳନାଗ ଯେକୌଣସି ମୁହୂର୍ତ୍ତରେ ତାକୁଇ ଦଂଶନ କରିବ ।

ସଞ୍ଜୟ ନିଜ ପାଦଶବ୍ଦ ଶୁଣି ନିଜେ ଚମକି ଉଠୁଥିଲା ।

ପକେଟରେ ହାତ ଭରି ଦେଖିଲା, ରିଭଲଭରଟି ରହିଛି, ସେଇଟି ତା'ର ଏକମାତ୍ର ସହାୟ । ଯଦିଓ ସେଇଟି ତାକୁ ଦିଆହୋଇଛି ଆଉ ଗୋଟିଏ ଜୀବନ ସହିତ ରକ୍ତ-ହୋରି ଖେଳିବା ପାଇଁ, ତଥାପି ସଞ୍ଜୟର ଯେପରି ସେଇଟି ଏକମାତ୍ର ଆଶା ଭରସା ପରି ମନେହେଉଥିଲା ।

ସଞ୍ଜୟ ଫୁଟ୍‌ପାଥକୁ ଓହ୍ଲେଇ ଯାଇ ରାସ୍ତାକୁ ଚାହିଁଲା । କାହିଁ ସେଇ କଳା ରଙ୍ଗର ମଟରଗାଡ଼ି ଖଣ୍ଡିକ ? ନିଶ୍ଚୟ କେଉଁଠି ତା'ରି ପ୍ରତୀକ୍ଷାରେ ଠିଆହୋଇଚି ।

ଆଗକୁ ପଛକୁ ଚାହୁଁଚାହୁଁ ଜଣେ ଆସି ସଞ୍ଜୟ ପାଖରେ ଠିଆହେଲା ।

ଆସନ୍ତୁ । ଲୋକଟି ଡାକିଲା ।

କେଉଁଠାକୁ ?

ମୋ' ସହିତ ଚାଲିଆସନ୍ତୁ । ଗାଡ଼ିଟା ରାସ୍ତା ଆରପାଖରେ ଠିଆହୋଇଛି ।

ସଞ୍ଜୟ ଆଉ ଦ୍ୱିଧା କଲା ନାହିଁ । ଭଗବାନଙ୍କ ନାମ ସ୍ମରଣ କରି ଲୋକଟି ପଛେପଛେ ଚାଲିଲା ।

ଗାଡ଼ିରେ ଉଠି ସେ କେଉଁବାଟେ ଦେଇ କେଉଁଠି ଆସି ପହଞ୍ଚିଲା, କିଛି ତା'ର ମନେ ନ ଥିଲା । ଡ୍ରାଇଭର ଯେତେବେଳେ ଦରଜା ଖୋଲି ସଞ୍ଜୟକୁ ପଦାକୁ ବାହାରିବାକୁ କହିଲା, ସେ ପ୍ରକୃତିସ୍ଥ ହୋଇ ଚାହିଁଲା, କୌଣସି ଏକ ସରୁଗଳି ମୁଣ୍ଡରେ ତା' ଗାଡ଼ିଟି ଠିଆହୋଇଛି ।

ସଞ୍ଜୟ ଛାତିରୁ ଯେପରି ଅତଡ଼ା ଖସିପଡ଼ିଲା । ଗାଡ଼ିରୁ ପଦାକୁ ବାହାରିଲା । ଡ୍ରାଇଭର କହିଲା : ମୋ' ସହିତ ଆସନ୍ତୁ । ମୁଁ ଆପଣଙ୍କୁ ଘର ଚିହ୍ନେଇ ଦେଇଆସିବି ।

ସେ ଡ୍ରାଇଭରର ପଛେପଛେ କିଛି ଦୂର ଆଗେଇ ଯିବା ପରେ ଡ୍ରାଇଭର

ଆଉ ଏକ ଶାଖାଗଳି ଭିତରେ ପଶି ଗୋଟିଏ କୋଠା ଦୁଆର ମୁହଁରେ ଠିଆହେଲା । ଡ୍ରାଇଭର କହିଲା ଏହି କୋଠାର ଦୋତାଲାକୁ ଆପଣ ସିଧା ଉଠିଯାଇ ଦରଜାରେ ନକ୍ କରିବେ । ଏଥର ମୋ ଡିଉଟି ଶେଷ ହୋଇଛି ।

ଡ୍ରାଇଭର ଗୋଟିଏ ସାଲ୍ୟୁଟ ବଜେଇଲା ।

ସଞ୍ଜୟ ମୂକ ପାଲଟି ଯାଇଥିଲା । ଦୋତାଲା ଉପରେ ଯାଇ ସେ କାହାକୁ ଦେଖିବ । କ'ଣ କରିବ ? ସେ ବା ସଞ୍ଜୟକୁ କିପରି ଭାବରେ ଗ୍ରହଣ କରିବ । କିଏ ଜାଣେ ? ଯଦି ସେ ଘରକୁ ନ ଛାଡ଼େ ? ପୋଲିସରେ ଖବର ଦିଏ !! ତା'ହେଲେ...

: ହଁ ଗୋଟାଏ କଥା ଭୁଲିଯାଇଥିଲି । ଡ୍ରାଇଭରଟି ଫେରିଆସି କହିଲା ଗାଡ଼ି ଆପଣଙ୍କର ଆଉ ଦରକାର ହେବ ?

ସଞ୍ଜୟ କି ଉତ୍ତର ଦେବ ? କିଛି ଠିକ୍ କରି ନପାରି ମୁଣ୍ଡ ହଲାଇ ମନା କରିଦେଲା ।

ଡ୍ରାଇଭର ଆଉଥରେ ସାଲ୍ୟୁଟ ବଜେଇ ଚାଲିଗଲା ।

ଦୋତାଲାରେ ସେ ରୁହେ । ସଞ୍ଜୟକୁ ଦୋତାଲାରେ ଯାଇ ଦରଜାରେ ନକ୍ କରିବାକୁ ହେବ । ତା'ପରେ...? ତା'ପରର ଅବସ୍ଥା ସଞ୍ଜୟ ଆଉ ଭାବିପାରିଲା ନାହିଁ ।

ଗୋଟିଏ ପରେ ଗୋଟିଏ ପାହାଚ ଅତିକ୍ରମ କରି ସଞ୍ଜୟ ଦୋତାଲାରେ ଯାଇ ପହଞ୍ଚିଲା । କୋଠାଟି ବିଶେଷ ବଡ଼ ନୁହେଁ । କୋଡ଼ିଏ କି ପଚିଶଟି ପାହାଚ ଅତିକ୍ରମ କରି ସେ ଦୋତାଲାରେ ପହଞ୍ଚି ଯାଇଥିଲା । ମାତ୍ର ସେଇ ସେତିକି ପାହାଚ ଉଠିବା ପାଇଁ ସଞ୍ଜୟ ଧଇଁସଇଁ ହୋଇଉଠିଥିଲା । ତାକୁ ପନ୍ଦର ମିନିଟ୍‌ରୁ ଅଧିକ ସମୟ ଲାଗିଥିଲା ।

ଶେଷ ପର୍ଯ୍ୟନ୍ତ ସଞ୍ଜୟକୁ ଦରଜାରେ କରାଘାତ କରିବାକୁ ହିଁ ପଡ଼ିଲା ।

ଭିତରେ ଯେପରି ନୀରବତାର ରାଜତ୍ୱ । କାହାରି ସୋରଶବ୍ଦ ନାହିଁ ।

କେହି ହୁଏତ ଭିତରେ ନାହାନ୍ତି ଅଥବା ଶୋଇପଡ଼ିଛନ୍ତି ।

ସଞ୍ଜୟ ଆଉଥରେ ଟିକିଏ ଜୋର୍‌ରେ କରାଘାତ କଲା । କେଇ ମିନିଟ୍ ପରେ ଘର ଭିତରେ କେଉଁଠି ଯେପରି ଆଲୋକ ଜଳିଉଠିଲା । ତା'ପରେ କାହାର ଧୀର ପାଦ ଶବ୍ଦ । ଝଣ୍‌କରି ଜଞ୍ଜିର ଖୋଲିଗଲା । ଧୀରେ, ଖୁବ୍ ଧୀରେ ଦରଜାର ଦୁଆର ମୁକୁଳା ହେଉଥିଲା ।

କିଏ, କିଏ ଏହି ନାରୀ !!

ସଞ୍ଜୟର ସମସ୍ତ ଅଙ୍ଗପ୍ରତ୍ୟଙ୍ଗରେ ବିଦ୍ୟୁତ୍‌ପ୍ରବାହ ଖେଳିଗଲା !

ଦୁଇଟି କଳାକଳା ଲାଜୁରା ଆଖି ।

ଏ ଯେ ମାଳା !

ସଞ୍ଜୟ ଚିତ୍କାର କରି ଦୁଇହାତରେ ମାଳାକୁ ନିଜ ଛାତି ଉପରକୁ ଭିଡ଼ି ଆଣିବା ପାଇଁ ଚଞ୍ଚଳ ହୋଇଉଠିଥିଲା । କିନ୍ତୁ ବହୁ କଷ୍ଟରେ ନିଜକୁ ସେ ସମ୍ବରଣ କରି ମାଳାର କଳାକଳା ଆଖିଯୋଡ଼ିକୁ ଅନାଇ ରହିଲା ।

ମାଳା ଗୋଟିଏ ପଥରମୂର୍ତ୍ତି ! ହଁ ପଥର ମୂର୍ତ୍ତି ନୁହେଁ ତ ଆଉ କ'ଣ ! ତୁଣ୍ଡରେ ଭାଷା ନ ଥିଲା, ଆଖିରେ ଇଙ୍ଗିତ ନ ଥିଲା, ସେ ଠିଆ ହୋଇଥିଲା ସଞ୍ଜୟ ଆଡ଼କୁ ଚାହିଁ । କିନ୍ତୁ ଆଖିଯୋଡ଼ିକ ଏବି ବି ଅମଳିନ ରହିଥିଲା । ସେମିତି କଳାକଳା, ସେମିତି ଭାବବିହ୍ୱଳ ।

କେତୋଟି ମୁହୂର୍ତ୍ତ ମାତ୍ର ।

ତା'ପରେ ମାଳା କଥା କହିଲା  ହଁ ଏବେ ମୋର ମନେପଡ଼ିଚି । କ'ଣ ଭିତରକୁ ଆସିବେ ନା ମୋତେ ଆପଣଙ୍କ ସହିତ ବାହାରିବାକୁ ହେବ ?

ମାଳା କଣ୍ଠରୁ ଯେପରି ମଧୁ ଝରୁଥିଲା ।

ସଞ୍ଜୟ ସଚେତନ ହୋଇଉଠିଲା । ସେ ତା'ହେଲେ ମାଳାକୁ ହତ୍ୟା କରିବାର ନିର୍ଦ୍ଦେଶ ପାଇଛି ? ଯିଏ ତା' ଶୟନ ସ୍ୱପନ ଜାଗରଣର କାମ୍ୟ, ସେ ନିର୍ଦ୍ଦେଶ ପାଇଛି ସେଇଆକୁ ହତ୍ୟା କରିବା ପାଇଁ ? ଚମତ୍କାର ବିଧିର ବିଧାନ !

ମୁଁ ଭାରି କ୍ଳାନ୍ତ । ପୁଣି ମାଳା କହିଲା । ମୋତେ କ'ଣ କରିବାକୁ ହେବ କୁହନ୍ତୁ ।

ସଞ୍ଜୟ ମୁହଁରୁ ହୁଏତ ଭାଷା ମରିଯାଇଥିଲା ।

ସେ ମାଳାକୁ ଏପରି ଅପ୍ରତ୍ୟାଶିତ ଭାବରେ ଭେଟିବ ବୋଲି କଳ୍ପନା ସୁଦ୍ଧା କରିପାରି ନ ଥିଲା । ମାଳା କଥାରେ କୌଣସି ଉତ୍ତର ନ ଦେଇ ଯନ୍ତ୍ରଚାଳିତ ପରି ଗୃହ ମଧ୍ୟରେ ପ୍ରବେଶ କଲା । ମାଳା ଦରଜା ବନ୍ଦ କରି ସଞ୍ଜୟ ଆଡ଼େ ଆଉଥରେ ଚାହିଁ ଘର ଭିତରକୁ ଚାଲି ଯାଉଥିଲା ।

ମାଳା ଦେବୀ !

ସଞ୍ଜୟର କଣ୍ଠସ୍ୱର କିପରି ଥରିଉଠିଲା ।

କ'ଣ କୁହନ୍ତୁ ।

ମାଳା ଲେଉଟି ଆସି ବୈଠକଖାନାରେ ଗୋଟାଏ ସୋଫା ଉପରେ ବସିପଡ଼ିଲା ।

ଏଠାରେ ଆଉ କିଏ ଅଛନ୍ତି ?

: କେହି ନାହାନ୍ତି । ଯେଉଁ ଚାକରାଣୀଟି ଅଛି, ତା' କାନକୁ ଶୁଭେ ନାହିଁ କିମ୍ବା ଆଖିକୁ ଭଲ ଦିଶେ ନାହିଁ । ତେଣୁ ଆପଣ ନିର୍ଭୟରେ ଆପଣଙ୍କ ଇଚ୍ଛା ପ୍ରକାଶ କରିପାରନ୍ତି ।

ମୋହନ ଆସିଥିଲା ?

: ଆପଣ ଏଠାକୁ ମୋ' ଚାର୍ଯରେ ଆସିବା କଥା ତା'ଠାରୁ ମୁଁ ଶୁଣିଛି । କିନ୍ତୁ ମୁଁ ଭାବି ନ ଥିଲି ଆପଣ ସେଇ ହୋଇଥିବେ ବୋଲି ।

ମାନେ ? ସଞ୍ଜୟ ମାଳାର ଇଙ୍ଗିତ ବୁଝିପାରୁ ନଥିଲା ।

ମାଳା ଶୁଷ୍କ ହସ ଟିକେ ହସି କହିଲା ଭଲ ହେଲା, ଟ୍ରେନରେ ସାମାନ୍ୟ ପରିଚୟ ହୋଇଥିଲା, ତଥାପି ଏତିକି ସାନ୍ତ୍ୱନା ଯେ ଆପଣ ସଂପୂର୍ଣ୍ଣ ଅପରିଚିତ ନୁହନ୍ତି ।

କିନ୍ତୁ ମୁଁ ଯେ ଆପଣଙ୍କୁ ଏଠାରେ ଏପରି ଭାବରେ ଭେଟିବି, ବିଶ୍ୱାସ କରନ୍ତୁ, ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

କ୍ଷଣକ ପାଇଁ ମାଳାର କଳାକଳା ଆଖିଯୋଡ଼ିକ ଚଞ୍ଚଳ ହୋଇଉଠିଲା । ପୁଣି ସେହି ଶୁଷ୍କ ହାସ୍ୟରେଖା ଟିକେ ଫୁଟିଉଠିଲା । ଦୀର୍ଘ ନିଃଶ୍ୱାସଟିଏ ତ୍ୟାଗକରି ମାଳା କହିଲା ସବୁ ଭଗବାନଙ୍କର ଇଚ୍ଛା, ଛାଡ଼ନ୍ତୁ । ଏବେ କୁହନ୍ତୁ ମୁଁ ଆପଣଙ୍କୁ କ'ଣ ବୋଲି ସମ୍ବୋଧନ କରିବି ।

ମୋ' ନାଁ ସଞ୍ଜୟ ଚଉଧୁରୀ । ସଞ୍ଜୟ କହିଲା ।

କିନ୍ତୁ ମୋହନ ମୋତେ ଯେପରି ଅନ୍ୟ ଗୋଟିଏ ନାଁ କ'ଣ କହିଗଲା ।

ରାଜା ?

: ହଁ, ହଁ ରାଜା । ମୁଁ ଆପଣଙ୍କୁ ରାଜାଜୀ ବୋଲି ସମ୍ବୋଧନ କରିବି । କ'ଣ କହୁଛନ୍ତି ?

: ନା ନା ଆପଣ ମୋତେ ସଞ୍ଜୟ ବୋଲି ଡାକିଲେ ମୁଁ ବେଶି ଖୁସି ହେବି ।

ଦେଖନ୍ତୁ, ଆପଣଙ୍କୁ ଖୁସି କରିବା ପାଇଁ ମୁଁ ଉଦ୍ଦିଷ୍ଟ ନୁହେଁ, ବରଂ ଆପଣ ମୋତେ ଖୁସିରେ ରଖିବା ପାଇଁ ନିଯୁକ୍ତି ପାଇଛନ୍ତି । ତେଣୁ...

: କିନ୍ତୁ ମାଳାଦେବୀ ଆପଣ ବୁଝିପାରିବେ ନାହିଁ । ମୁଁ କିପରି ଜୀବନରୁ ପାଣି ଛଡ଼ାଇ ଆପଣଙ୍କ ପଦଚିହ୍ନ ଅନୁସରଣ କରିଚାଲିଛି । ଆପଣଙ୍କୁ ମୋତେ ବିଶ୍ୱାସ କରିବାକୁ ହେବ । ହଁ, ବିଶ୍ୱାସ କରିବାକୁ ହେବ ।

ସଞ୍ଜୟର କଣ୍ଠରେ ଦୃଢ଼ତା ଫୁଟିଉଠୁଥିଲା ।

ଆପଣ ମୋତେ ହସେଇଲେ ସଞ୍ଜୟବାବୁ ! ଏତେ ଦୁଃଖରେ ମଧ୍ୟ ମୁଁ ନ ହସି ରହିପାରୁ ନାହିଁ । ମୋହନଠାରୁ ଆପଣ କ'ଣ ମୋର ବେଶି ବିଶ୍ୱାସୀ ହୋଇପାରିବେ ?

ଆପଣ ଭୁଲ୍ କରନ୍ତୁ ନାହିଁ ମାଳାଦେବୀ । ଏଠାରେ ତୁଳନା ଦେଲେ ଚଳିବ ନାହିଁ । ବର୍ତ୍ତମାନ ଆପଣ ବାରୁଦ ଭଣ୍ଡାର ଭିତରେ ବାସ କରୁଛନ୍ତି, ଯେକୌଣସି ମୁହୂର୍ତ୍ତରେ ବିସ୍ଫୋରଣ ହୋଇପାରେ, ସେତେବେଳେ ଆପଣ ନିଜକୁ ବଞ୍ଚେଇବା ହୁଏତ ଆଉ ସମ୍ଭବ ହେବ ନାହିଁ ।

ମାଳା ସଞ୍ଜୟ ମୁହଁରୁ ଏପରି କଥା ଶୁଣିବ ବୋଲି ଆଶା କରିପାରି ନ ଥିଲା । ସଞ୍ଜୟ ଯେ ମାଳାପ୍ରତି ସହାନୁଭୂତି ପ୍ରକାଶ କରୁଛି ଏହା ଯେ କଳ୍ପନାତୀତ ! ମାଳା ନୀରବରେ ସଞ୍ଜୟ ମୁହଁକୁ ଅନାଇ ରହିଲା ।

ଆପଣଙ୍କୁ ମୋତେ ବିଶ୍ୱାସ କରିବାକୁ ହେବ ମାଳା ଦେବୀ । ଆପଣ ମୋତେ ବିଶ୍ୱାସ ନ କଲେ ମଧ୍ୟ ମୁଁ ଆପଣଙ୍କୁ ବାଧ୍ୟ କରିବି ବିଶ୍ୱାସ କରିବା ପାଇଁ । ଆପଣ ମୋହନ ଉପରେ ଆସ୍ଥା ସ୍ଥାପନ କରି ଘରୁ ସମସ୍ତ ସଂପର୍କ ଛିନ୍ନକରି ଆସି ଯେପରି ଅଠାକାଠିରେ ପଡ଼ିଛନ୍ତି କିନ୍ତୁ ମୁଁ ଦେଖୁଛି ଆପଣଙ୍କ ପ୍ରତି ଭଗବାନଙ୍କର ଅଶେଷ କରୁଣା । ସେ ମୋତେ ଆଣି ଆପଣଙ୍କ ନିକଟରେ ପହୁଞ୍ଚାଇଛନ୍ତି ।

ଆପଣଙ୍କ କଥାର ଅର୍ଥ ମୁଁ ଠିକ୍ ବୁଝିପାରୁ ନାହିଁ ସଞ୍ଜୟବାବୁ ।

ସଞ୍ଜୟ ସଜାଡ଼ି ହୋଇବସିଲା । ମାଳାର ଆଖିଦୁଇଟି ଆଡ଼େ ଅପଲକ ନୟନରେ ଅନାଇରହି କହିଲା : ଆପଣ ମୋତେ ଚିହ୍ନିଛନ୍ତି ମାଳା ଦେବୀ ?

: ସେଦିନ ଚିହ୍ନି ନ ଥିଲି । କିନ୍ତୁ ଆଜି ଚିହ୍ନୁଚି । ସବୁ ମୋର ଦୁର୍ଭାଗ୍ୟ । ଆଜି ଆପଣଙ୍କ ସହିତ ଆଉଥରେ ଦେଖା ହୋଇ ନ ଥିଲେ ଭଲ ହୋଇଥାଆନ୍ତା ।

ମୁଁ କିନ୍ତୁ ଆପଣଙ୍କୁ ଚିହ୍ନିଚି ମାଳା ଦେବୀ ।

ମାନେ ? ମାଳାର କଣ୍ଠସ୍ୱରରେ ଚଞ୍ଚଳତା ଫୁଟିଉଠିଲା ।

: ଆପଣ କିଏ, କାହିଁକି ଆସିଛନ୍ତି, କାହା ପାଖକୁ ଆସିଛନ୍ତି । ମୁଁ ସବୁ ଜାଣି ମଧ୍ୟ ଆପଣଙ୍କୁ ତ୍ୟାଗ କରିପାରୁ ନାହିଁ ।

ମାଳା ନୀରବରେ କ'ଣ ଚିନ୍ତା କରୁଥିଲା । କହିଲା : ଆପଣ ମୋ' ସମ୍ବନ୍ଧରେ ସବୁ ଜାଣି ମଧ୍ୟ ମୋ' ପଛେପଛେ ଚାଲିଛନ୍ତି, କିନ୍ତୁ କାହିଁକି ? ଯଦି ମୋ' ସମ୍ବନ୍ଧରେ ସବୁକଥା ଜାଣିପାରି ଥାଆନ୍ତେ, ତେବେ ସେଇ ମୁହୂର୍ତ୍ତରେ ଆପଣ ମୋତେ ଘୃଣା କରି ନିଜ ବାଟରେ ଆଗେଇ ଯିବା କଥା, କିନ୍ତୁ ଆପଣ ଯେ...

ଆପଣ ଭୁଲ୍ କରନ୍ତୁ ନାହିଁ ମାଳା ଦେବୀ, ଆପଣଙ୍କୁ ଉଦ୍ଧାର କରିବା ପାଇଁ ମୁଁ ଜୀବନ ପଣ କରି ଲାଗିପଡ଼ିଛି । ଜାଣି ନ ଥିଲି ଏତେ ଶୀଘ୍ର ଆପଣଙ୍କ ସହିତ ଭେଟ ହେବ ।

ଘଟଣାଟା ମୋତେ ଟିକିଏ ଖୋଲି କୁହନ୍ତୁ ।

: କହିବି, ଧୀରେଧୀରେ ସବୁ କହିବି ମାଳା ଦେବୀ । କିନ୍ତୁ ମୋର ଗୋଟାଏ ଦୁଇଟା ପ୍ରଶ୍ନର ଉତ୍ତର ପ୍ରଥମେ ଆପଣଙ୍କୁ ଦେବାକୁ ହେବ ।

ପଚାରନ୍ତୁ ।

ଆପଣ କ'ଣ ମୋହନବାବୁଙ୍କର କୌଣସି ନିର୍ଦ୍ଦେଶ ଅମାନ୍ୟ କଲେ ?

ଆପଣ ଜାଣିଲେ କିପରି ? ମାଳା ବିସ୍ମୟ ପ୍ରକାଶ କଲା ।

ମୁଁ ପୂର୍ବରୁ କହିଛି ପରା ! ଆପଣଙ୍କ ସମ୍ବନ୍ଧରେ ମୋତେ ସବୁ କଥା ଜଣାଅଛି । ଆପଣ ବିବାହ ବେଦିରୁ ଉଠି ଚାଲି ଆସିବାଠାରୁ ଆରମ୍ଭ କରି, ଆଜି ପର୍ଯ୍ୟନ୍ତ ଆପଣଙ୍କ ଗତିବିଧି ମୁଁ ତନ୍ନତନ୍ନ କରି ଲକ୍ଷ୍ୟ କରୁଚି । କିନ୍ତୁ ମୁଁ ବୁଝିପାରୁ ନାହିଁ ମୋହନ ସହିତ ଆପଣଙ୍କର କାହିଁକି ମନାନ୍ତର ହେଲା ।

ମାଳା ଟିକିଏ ହସିବାକୁ ଚେଷ୍ଟା କରି କହିଲା : ସବୁ ମୋର ଦୁର୍ଭାଗ୍ୟ ସଞ୍ଜୟ

ବାବୁ । ମୋହନଙ୍କୁ ମୁଁ ବିଶ୍ୱାସ କରିଥିଲି, ତା' ପାଖରେ ଆଶ୍ରୟ କାମନା କରିଥିଲି, କିନ୍ତୁ ସେ ଯେ ଏ କେତେ ବର୍ଷ ଭିତରେ ମୂରା ବ୍ୟବସାୟୀ ପାଲଟି ଯାଇଛି, ମନେ ଜଣା ନ ଥିଲା । ବର୍ତ୍ତମାନ ମୋର ଆଉ ଉଦ୍ଧୁରିବାର କୌଣସି ବାଟ ନାହିଁ । ସେ ଜୀବନଭରି ମୋତେ ପଳପଳ କରି ହତ୍ୟା କରିବ ।

ମୋହନ ସହିତ ଆପଣଙ୍କର ପରିଚୟ ହେଲା କିପରି ?

ସେ ଅନେକ ଦିନରୁ ! ଆମେ ଏକା ସଙ୍ଗରେ ସ୍କୁଲରେ ପଢୁଥିଲୁ । କଲେଜରେ ମଧ୍ୟ କିଛିଦିନ କଟିଥିଲା । ତା'ପରେ ସେ କଲିକତା ଚାଲିଆସିଲା ପଢ଼ିବା ପାଇଁ । ମଝିରେ ମଝିରେ ଚିଠିପତ୍ରର ସମ୍ବନ୍ଧ ବେଶ୍ ଭଲ ଥିଲା । କିନ୍ତୁ ମୋହନ ଯେ ଏପରି...

ମାଳାର ଆଖିଦୁଇଟି ଛଳଛଳ ହୋଇଆସିଲା । ସେ ଆଉ କିଛି କହିପାରିଲା ନାହିଁ ।

ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମାଳାଦେବୀ । ମୁଁ ମୋର ପ୍ରାଣ ବିସର୍ଜନ କରି ଆପଣଙ୍କୁ ସାହାଯ୍ୟ କରିବି । ଜାଣେନି ଆପଣ ମୋତେ ବିଶ୍ୱାସ କରିବେ କି ନାହିଁ । ମୁଁ କେବଳ ଆପଣଙ୍କୁ ଉଦ୍ଧାର କରିବା ପାଇଁ ଏହି ଦଳରେ ଯୋଗଦାନ କରିଛି ।

କାହିଁକି ? ମୋ' ପାଇଁ ଆପଣ ନିଜର ଜୀବନ ବ୍ୟର୍ଥ ହେବାକୁ ଦେଲେ କାହିଁକି ? ମାଳା ଦରଦମିଶା କଣ୍ଠରେ ପଚାରିଲା ।

: ଆପଣଙ୍କୁ ସାହାଯ୍ୟ କରିପାରିଲେ ମୋର ଜୀବନ ସାର୍ଥକ ହେବ ମାଳାଦେବୀ । ମୋ' ଜୀବନର ଚରମ ସାର୍ଥକତା ହେବ ଆପଣଙ୍କ ମୁହଁରେ ହସ ଫୁଟାଇ ପାରିଲେ ।

କିନ୍ତୁ ତାହା କିପରି ସମ୍ଭବ ?

ସବୁ ଅସମ୍ଭବ ସମ୍ଭବ ହେଉଛି ମାଳାଦେବୀ । ଖାଲି ଟିକିଏ ଧୈର୍ଯ୍ୟର ପ୍ରୟୋଜନ । ମୁଁ ବୁଝିପାରୁ ନାହିଁ, ସେମାନେ କାହିଁକି ଆପଣଙ୍କୁ ହତ୍ୟା କରିବା ପାଇଁ ବ୍ୟସ୍ତ ହୋଇପଡ଼ିଛନ୍ତି ।

ହତ୍ୟା ?

ମାଳାର ଦେହ ମୁହଁରେ କିପରି ଏକ ଅସ୍ୱାଭାବିକ ରଙ୍ଗ ଫୁଟିଉଠିଲା !

ହଁ ହତ୍ୟା । ଆପଣଙ୍କୁ ହତ୍ୟା କରିବା ପାଇଁ ମୋତେ ନିଯୁକ୍ତି କରାହୋଇଛି । ଆପଣ ବିଶ୍ୱାସ କରିପାରୁ ନାହାନ୍ତି ? ହେଇ ଦେଖନ୍ତୁ । ସଞ୍ଜୟ ଧୀରେ ଧୀରେ ପକେଟରୁ ରିଭଲଭରଟି ବାହାର କଲା ।

ମାଳାର ମୁହଁଟା ଫିକା ପଡ଼ିଗଲା । ଯେପରି ଟୋପାଏ ହେଲେ ରକ୍ତ ନାହିଁ । ସେ ଅସହାୟ ଚାହାଣିରେ ସଞ୍ଜୟ ଆଡ଼େ ଅନାଇଲା ।

: ମୁଁ କିନ୍ତୁ ଜାଣି ନ ଥିଲି ଜୀବନରେ ମୋତେ ଏତେ ବଡ଼ ଗୋଟାଏ ସୁଯୋଗ ମିଳିବ ।

ମୋତେ ହତ୍ୟା କରିବାକୁ ଆପଣ ସୁଯୋଗ ମଣୁଛନ୍ତି ସଞ୍ଜୟ ବାବୁ !!

ସଞ୍ଜୟ ହସିଲା ।

: ସୁଯୋଗଟା ଠିକ୍ ଓଲଟା ଧରଣର ମାଳା ଦେବୀ । ଆପଣଙ୍କ ସଙ୍ଗରେ ଯେ ଜୀବନରେ ଆଉଥରେ ଦେଖାହେବ, ସେ ଆଶା ମୋର ନ ଥିଲା । କିନ୍ତୁ ଆପଣ କହିଲେ ନାହିଁ ତ, ସେମାନେ ଆପଣଙ୍କୁ ହତ୍ୟା କରିବା ପାଇଁ କାହିଁକି ଏପରି ଲାଗିପଡ଼ିଛନ୍ତି ?

ମୁଁ ସେମାନଙ୍କର କୌଣସି ପ୍ରସ୍ତାବରେ ରାଜି ହେଲି ନାହିଁ ।

ଓ ! କି ପ୍ରସ୍ତାବ ସେମାନେ ଦେଇଥିଲେ ?

ସେଗୁଡ଼ା ମୁହଁରେ ଧରିବା କଥା ନୁହେଁ ସଞ୍ଜୟ ବାବୁ । ସେ ଘୃଣିତ ପ୍ରସ୍ତାବ କଥା ମନେପଡ଼ିଲେ ଏବେ ବି ସମଗ୍ର ଦେହ ମୋର ଘୃଣାରେ ପୂରି ଯାଉଛି । ଅବଶ୍ୟ ଆପଣ କେଉଁ ରୂପରେ ଏଠାକୁ ଆସି ମୋର ଦୁର୍ବଳତାର ସୁଯୋଗ ନେଉଛନ୍ତି କି ନାହିଁ ମୋତେ ଜଣାନାହିଁ । କିନ୍ତୁ ଗୋଟିଏ କଥା ଆପଣ ଜାଣିରଖନ୍ତୁ, ମୁଁ ଆଜି ଖାଲି ନିଃସ୍ୱ ନୁହେଁ, ଅସହାୟ ମଧ୍ୟ ।

ମୁଁ ଯଦି ଆପଣଙ୍କୁ ସାହାଯ୍ୟ କରେ, ଆପଣ କ'ଣ ତାହା ଗ୍ରହଣ କରିବେ ?

ମାଳା ସଞ୍ଜୟ ମୁହଁକୁ କିଛି ସମୟ ଅପଲକ ନୟନରେ ଅନାଇ ରହିଲା । ସାମାନ୍ୟ ଟିକିଏ ହସିଲା, ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କଲା । କହିଲା ବୁଡ଼ି ଯାଉଥିବା ମଣିଷ କୁଟାଖଣ୍ଡକୁ ଆଶ୍ରା କରେ । ଆପଣ ମୃତ୍ୟୁର ପରୁଆନା ହାତରେ ଧରି ମୋତେ ଯେତେବେଳେ ନବଜୀବନର ଆଲୋକ ଦେଖାଉଛନ୍ତି, ମୁଁ ନିଶ୍ଚୟ ଆଶା କରିବି । ସତ କହିବାକୁ ଗଲେ, ମୃତ୍ୟୁ ମୁଁ ଚାହୁଁନାହିଁ ସଞ୍ଜୟ ବାବୁ, ଯଦି ଭଦ୍ର ଭାବରେ ଜୀବନର ସ୍ୱାଦ ଅସ୍ୱାଦନ କରିବାର ସୁଯୋଗ ପାଏ ତା'ହେଲେ...

ମାଳାର କଥା ଅସମାପ୍ତ ରହିଗଲା । ସେ ଦେଖିଲା କାଚଝରକାରେ କାହାର ଗୋଟାଏ କଳାଛାଇ ।

କିଏ, କିଏ ସେଠି ?

ସଞ୍ଜୟ ଉଠିଗଲା । ବୃଦ୍ଧା ପରିଚାରିକାଟି ଝରକା ପାଖରେ ଠିଆ ହୋଇଛି ।

ଆରେ 'ମୀରାମାସୀ' ଯେ ! ତମେ ଏତେବେଳଯାଏ ଶୋଇନାହଁ । ମାଳା କହିଲା ।

ମୀରାମାସୀ କେବଳ ବଲବଲ କରି ଦୁହିଁଙ୍କ ମୁହଁକୁ ଅନାଇ ସେଠାରୁ ଚାଲିଗଲା ।

ମାଳା କହିଲା ଭୟର କିଛି କାରଣ ନାହିଁ ସଞ୍ଜୟ ବାବୁ । ତା' କାନକୁ ଶୁଭେ ନାହିଁ, କିମ୍ବା ଆଖିକୁ ଭଲ ଦିଶେ ନାହିଁ ।

ମାଳା ଓ ସଞ୍ଜୟ ପୁଣି ପୂର୍ବ ସ୍ଥାନକୁ ଫେରିଆସିଲେ ।

ଦୁହେଁ ନୀରବରେ ବସିରହିଲେ ।

ତା'ହେଲେ ଏଠାରୁ ଶୀଘ୍ର ଖସିଯିବାର ଉପାୟ ଉଦ୍ଭାବନ କରିବାକୁ ପଡ଼ିବ । ସଞ୍ଜୟ କହିଲା । ହାତରେ ଆମର ମାତ୍ର ଗୋଟିଏ ଦିନ । ଆଉ ସେ ମୂଲ୍ୟବାନ

ଦିନଟି ହେଉଛି ଆଗାମୀକାଲି । କାଲିର ସୂର୍ଯ୍ୟୋଦୟ ଠାରୁ ସୂର୍ଯ୍ୟାସ୍ତ ଭିତରେ ଆମକୁ କୌଣସି ଏକ ନିରାପଦ ସ୍ଥାନକୁ ଚାଲିଯାଇ ଆଶ୍ରୟ ନେବାକୁ ହେବ ।

ମାଳା ନୀରବରେ ବସି ଚିନ୍ତା କରୁଥିଲା ।

କ'ଣ କହୁଛନ୍ତି ମାଳା ଦେବୀ ?

କିନ୍ତୁ ଆପଣ କାହିଁକି ମୋ' ପାଇଁ ମରଣ ସହିତ ଖେଳ ଖେଳିବେ ? ଶେଷରେ ଦୁଇଟିଯାକ ଜୀବନ ବିପନ୍ନ ହେବ ।

ସେପରି କଥା ଆଉ ମନରେ ସ୍ଥାନ ଦିଅନ୍ତୁ ନାହିଁ ମାଳାଦେବୀ । ବର୍ତ୍ତମାନ ଆମର ଧୈର୍ଯ୍ୟ ଓ ସାହସର ଏକାନ୍ତ ଆବଶ୍ୟକ । ଆପଣ ଖୋଲି କୁହନ୍ତୁ, ମୋ' ସହିତ ଆପଣ ଏକମତ ? ମୁଁ ଆପଣଙ୍କୁ ଯାହା କରିବାକୁ କହିବି, ଆପଣ ବିନା ଦ୍ୱିଧାରେ ତାହା ପାଳନ କରିବେ ?

ମୁଁ ଏକମତ ସଞ୍ଜୟବାବୁ ।

ସଞ୍ଜୟ ମୁହଁରେ ଯେପରି ଆଲୋକର ଦୀପ୍ତି ଫୁଟିଉଠିଲା । ସେ ମାଳାର କଳା କଳା ଲାଜୁରା ଆଖିଦୁଇଟିକୁ ଅପଲକ ନୟନରେ ଅନାଇ ରହିଲା ।

ମାଳା ଲାଜରେ ଆଖିଦୁଇଟି ନୁଆଁଇନେଲା ।

**

---

ଜର୍ଜ ଗୋମେସ ମହାସମସ୍ୟାରେ ପଡ଼ିଗଲେ ।

ସେ ଥରେ ମାଳାର ବିଷଣ୍ଣ ମୁଖମଣ୍ଡଳ ଆଡ଼େ ଓ ଆଉଥରେ ସଞ୍ଜୟର ଅସହାୟ ଚାହାଣି ଆଡ଼େ ଚାହିଁ କହିଲେ  ମୋତେ ମହା ସମସ୍ୟାରେ ପକାଇ ଦେଲେ ଚଉଧୁରୀ । ଆପଣଙ୍କ ମୁହଁରୁ ଦୁଇ ଜଣଙ୍କର ଅସହାୟ ଅବସ୍ଥା କଥା ଶୁଣିବା ପରେ ମୁଁ କିଛି ଉପାୟ ସ୍ଥିର କରିପାରୁ ନାହିଁ ।

ଜର୍ଜ ଗୋମେସ ପ୍ରକୃତରେ ମହାସମସ୍ୟାରେ ପଡ଼ିଯାଇଥିଲେ । ସେ ଗୋମେସ ଏଣ୍ଡ କମ୍ପାନୀର ଛୋଟ ପ୍ରକୋଷ୍ଠଟିରେ ପଦଚାରଣ କରିବାକୁ ଲାଗିଲେ । ସଞ୍ଜୟ ଓ ମାଳା ତଳକୁ ମୁହଁପୋତି ବସିରହିଲେ ।

ଦୀର୍ଘ ନୀରବତା ।

କାନ୍ଥର ଘଡ଼ି କେଇଟା କେବଳ ସେମାନଙ୍କର ଅସ୍ତିତ୍ୱ ଜାହିର କରି ଚାଲିଥିଲେ ।

ଏକ ସମୟରେ ଜର୍ଜ ଗୋମେସ କହିଉଠିଲେ  ରାଇଟ୍ ।

ତା'ପରେ ସଞ୍ଜୟ ଓ ମାଳା ଦୁହିଁଙ୍କ ମୁହଁକୁ ଥରେ ଥରେ ଚାହିଁଲେ, ହାତଘଡ଼ିକୁ

ଅନାଇ କହିଲେ, ଉଠନ୍ତୁ, ଉଠନ୍ତୁ ଚଉଧୁରୀ ! ସମୟ ଖୁବ୍ ଅଳ୍ପ । ଶୀଘ୍ର ସମସ୍ତ ବ୍ୟବସ୍ଥା କରିବାକୁ ପଡ଼ିବ ।

କେଉଁଆଡ଼େ ଯିବା ?

ମ୍ୟାରେଜ୍ ରେଜିଷ୍ଟ୍ରେସନ୍ ଅଫିସକୁ ।

ସଞ୍ଜୟ ମାଳା ମୁହଁକୁ ଅନାଇଲା ।

ତା'ଛଡ଼ା ଅନ୍ୟ କିଛି ଉପାୟ ନାହିଁ ମାଳାଦେବୀ । ଆପଣଙ୍କର କ'ଣ ଏହି ବିବାହରେ କୌଣସି ଆପତ୍ତି ଅଛି ? ଗୋମେସ ପଚାରିଲେ ।

ମାଳା ପୁଣି ତଳକୁ ମୁହଁ ପୋତିଲା ।

: ବର୍ତ୍ତମାନ ଆଉ ଚିନ୍ତା କରିବାର ସମୟ ନାହିଁ ମାଳା ଦେବୀ ! ହଁ ନା ପଦେ କଥା, ଆପତ୍ତି ଅଛି ?

ମାଳା ସଞ୍ଜୟ ମୁହଁକୁ ଚାହିଁଲା । ମୁଣ୍ଡ ହଲାଇ କହିଲା ନା ।

ଆପଣଙ୍କର ଚଉଧୁରୀ ?

ନା ।

ତେବେ ଉଠନ୍ତୁ । ସମୟ ଖୁବ୍ ଅଳ୍ପ ।

କିନ୍ତୁ କିପରି ସମ୍ଭବ ଜର୍ଜ ? ମ୍ୟାରେଜ ରେଜିଷ୍ଟ୍ରେସନ ଅଫିସରେ ଯେ ମାସକ ଆଗରୁ ଦରଖାସ୍ତ କରିବାକୁ ହୁଏ ।

: ଆପଣ ଉଠନ୍ତୁ ଚଉଧୁରୀ । ସେ ସବୁ କଥା ଆପଣଙ୍କୁ ଚିନ୍ତା କରିବାକୁ ହେବନାହିଁ । ପଇସା ଥିଲେ ଏ ଯୁଗରେ ସବୁ ସମ୍ଭବ । ଆଉ ଡେରି କଲେ ଚଳିବ ନାହିଁ ।

ସଞ୍ଜୟ ଓ ମାଳା ଉଠି ଠିଆହେଲେ ।

ଜର୍ଜ ଗୋମେସ ବାହାରୁ ବାହାରୁ କ'ଣ ଭାବି ଟିକିଏ ଠିଆହେଲେ ଏବଂ ପୁରୁଣା ଖବର କାଗଜ ଫାଇଲଟା କାହିଁକି ଘାଣ୍ଟିବସିଲେ । ମାତ୍ର ଚାରିଦିନ ପୂର୍ବର କାଗଜ । ଜର୍ଜ ଗୋମେସ ବାହାର କରି ଗୋଟିଏ ପୃଷ୍ଠାରେ ଛୋଟ ଛବିଟିଏ ଦେଖିଲେ । ଠିକ୍ ତାଙ୍କର ମନେଅଛି ।

ତା'ହେଲେ ଇଏ ସେଇ ମାଳା । ଯିଏ ଘରୁ ବହୁ ମୂଲ୍ୟବାନ ଅଳଙ୍କାରପତ୍ର ଧରି ନିରୁଦ୍ଦେଶ ହୋଇଛି ଏବଂ ପୋଲିସ୍ ମାଳାକୁ ଚାରିଆଡ଼େ ଖୋଜୁଛନ୍ତି ।

ତା'ହେଲେ...।

ଜର୍ଜ ଗୋମେସଙ୍କ ଆଗ୍ରହ ଟିକକ ଭଟା ପଡ଼ିଗଲା । ମାଳା ଘରୁ ଗୋଡ଼ କାଢ଼ିଥିବା କାହାଣୀ ଗୋମେସ ଅଳ୍ପ ସମୟ ପୂର୍ବରୁ ସଞ୍ଜୟ ମୁହଁରୁ ଶୁଣିଥିଲେ । ତଥାପି ମାଳା ପଳାତକ । ଆଇନ୍ ଦୃଷ୍ଟିରେ...

|| ଭାଗ୍ୟର ଲେଖାପାଇସ
ସନ୍ଦେହ ||

ସଞ୍ଜୟ ଲେଉଟି ଆସିଲା ।

କ'ଣ ଦେଖୁଛନ୍ତି ଜର୍ଜ ?

ନା, କିଛି ନୁହେଁ । ଚାଲନ୍ତୁ ।

ଜର୍ଜ୍ ଗୋମେସ ଖବର କାଗଜ ଫାଇଲଟା ରଖିଦେଇ ଘରୁ ବାହାରିଆସିଲେ ।

ମନ ଭିତରେ ତାଙ୍କର ଭୀଷଣ ପ୍ରତିକ୍ରିୟା ସୃଷ୍ଟି ହୋଇଯାଇଥିଲା । ଏମାନେ ତା'ହେଲେ ଖବର କାଗଜର ସେହି ବିଜ୍ଞାପନଟି ଦେଖିନାହାନ୍ତି । ଓହୋ, ମାଳାକୁ ଯେ କାହିଁକି ହତ୍ୟା କରିବାକୁ ମୋହନର ଦଳପତି ବ୍ୟସ୍ତ ହୋଇଛନ୍ତି, ଜର୍ଜ ଗୋମେସ ବୁଝିପାରିଲେ । ମାଳାକୁ ପୋଲିସ ଖୋଜୁଛନ୍ତି ଯେତେବେଳେ, ଦିନେନାଦିନେ ସେ ଧରାପଡ଼ିବ, ଆଉ ସେତେବେଳେ ମାଳା ମୁହଁରୁ ସବୁକଥା ହୁଏତ ପ୍ରକାଶ ପାଇଯିବ । ଫଳରେ ମୋହନ ଧରାପଡ଼ିବ । ତା'ପରେ...

ଟ୍ୟାକ୍ସି ଛୁଟିଥିଲା ।

ଜର୍ଜ ! ଆପଣ ନୀରବ ରହିଲେ ଯେ !

ହଁ, ମୁଁ ଚିନ୍ତା କରୁଛି ଚଉଧୁରୀ । ଆପଣଙ୍କର ଏହି କେସ୍‌ଟା ଖୁବ୍ ଜଟିଳ ।

ତା'ହେଲେ କ'ଣ...

ନା ନା ଆପଣ ମୋତେ ବ୍ୟସ୍ତ ହୁଅନ୍ତୁ ନାହିଁ ।

ପୁଣି ନୀରବତା ।

ଅଚ୍ଛା ମାଳା ଦେବୀ ! ଆପଣଙ୍କର ବୟସ ନିଶ୍ଚୟ କୋଡ଼ିଏରୁ ବେଶି ହେବ । ଜର୍ଜ ଗୋମେସ ପଚାରିଲେ ।

ମୋତେ ବାଇଶି ବର୍ଷ ଚାଲିଛି । ମାଳା ଉତ୍ତର ଦେଲା ।

: ଅଲ୍ ରାଇଟ୍ । ଆପଣ ମାଇନରଟି ଭିତରେ ପଡୁନାହାନ୍ତି । ଶୀଘ୍ର ବିବାହଟା ହୋଇଗଲେ, ତା'ପରେ ପୋଲିସ୍...

ପୋଲିସ୍ ?

ସଞ୍ଜୟ ଓ ମାଳା ଏକାସଙ୍ଗରେ ଚିତ୍କାର କରିଉଠିଲେ ।

: ଆଃ ଆପଣମାନେ ଏପରି ଡରିଯାଉଛନ୍ତି କାହିଁକି ? ମୁଁ ସବୁ ଠିକ୍ କରିଦେବି, ହଁ ସବୁ ଠିକ୍ କରିଦେବି ।

ଟ୍ୟାକ୍‌ସି ଯାଇ ମ୍ୟାରେଜ ରେଜିଷ୍ଟ୍ରେସନ ଅଫିସ ଦୁଆରେ ଠିଆ ହୋଇଯାଇଥିଲା ।

ସମସ୍ତ କାର୍ଯ୍ୟ ଶେଷ କରି ସେମାନେ ଯେତେବେଳେ ବାହାରକୁ ବାହାରିଲେ, ସେତେବେଳକୁ ପ୍ରାୟ ସାଢ଼େ ଚାରିଟା ବାଜି ଯାଇଥିଲା । ମାଳା ଓ ସଞ୍ଜୟ ଦୁଇଜଣଯାକ ନଇଁପଡ଼ି ଜର୍ଜ ଗୋମେସଙ୍କ ପାଦଧୂଳି ନେଇ ମୁଣ୍ଡରେ ଲଗାଇଲେ ।

ଜର୍ଜ ଗୋମେସ ବିରକ୍ତ ହୋଇ କହିଲେ : ଏ କ'ଣ କରୁଛନ୍ତି ଆପଣମାନେ ? ମୋର ଅପରାଧ ହେବ ।

ସଞ୍ଜୟ କହିଲା ଆପଣ ଆମର ପ୍ରିୟବନ୍ଧୁ, ପୁଣି ଗୁରୁଜନ । ଆପଣଙ୍କ ଅକ୍ଳାନ୍ତ ଚେଷ୍ଟାରେ ଆମର ଏହି ବିବାହ ସମ୍ଭବ ହୋଇଛି । ଆପଣ ଆମକୁ ଆଶୀର୍ବାଦ କରିବେ ନାହିଁ ?

ହଉ ଚାଲନ୍ତୁ ତ ! ସମୟ ହୋଇଗଲାଣି । ଏଠାରେ ଆଉ ବେଶି ସମୟ ଅପେକ୍ଷା କରିବା ଉଚିତ ହେବନାହିଁ ।

ସେମାନେ ଗୋଟିଏ ଟ୍ୟାକ୍‌ସିରେ ଉଠିଲେ ।

ସଞ୍ଜୟ କହିଲା ଗୋଟିଏ ଭଲ ହୋଟେଲକୁ ଚାଲନ୍ତୁ ଜର୍ଜ ।

ହୋଟେଲ ? ଜର୍ଜ ଗୋମେସଙ୍କ ସ୍ୱରରେ ବିସ୍ମୟ ଫୁଟିଉଠିଲା ।

ହଁ, ଆମର ଏହି ବିବାହ ସ୍ମାରକୀ ଉପଲକ୍ଷେ, ପେଟପୂଜା କରିବା ନାହିଁ ?

ଜର୍ଜ ଗୋମେସ ଆଉ କିଛି କହିଲେ ନାହିଁ । ଖାଦ୍ୟପେୟ ସମ୍ବନ୍ଧରେ ତାଙ୍କର ଗୋଟାଏ ମସ୍ତ ଦୁର୍ବଳତା ଅଛି । ସେ ଟ୍ୟାକ୍‌ସିକୁ ଚୌରଙ୍ଗୀ ଆଡ଼େ ଯିବାକୁ ନିର୍ଦ୍ଦେଶ ଦେଲେ ।

ସନ୍ଧ୍ୟା ନଇଁଆସୁଥିଲା । ହୋଟେଲ ରେଷ୍ଟୁରେଣ୍ଟମାନଙ୍କରେ ଭିଡ଼ ଲାଗିଆସୁଥିଲା । ପ୍ରଜାପତି ପରି ଦଳଦଳ ତରୁଣତରୁଣୀ ଧାଇଁବୁଲୁଥିଲେ ।

ଜର୍ଜ ଗୋମେସଙ୍କ ଟ୍ୟାକ୍‌ସି ଯାଇ ଗୋଟିଏ ପ୍ରଥମ ଶ୍ରେଣୀର ରେଷ୍ଟୁରେଣ୍ଟ ଦୁଆରେ ଭିଡ଼ିଲା ।

ସେମାନେ ଓହ୍ଲେଇଗଲେ ।

ଗୋଟିଏ ବଡ଼ କେବିନ ମଧ୍ୟରେ ପ୍ରବେଶ କଲେ ।

ସଞ୍ଜୟ, ମାଳା, ଜର୍ଜ ଗୋମେସ ଏବଂ ଆଉ ଦୁଇଜଣ ସାକ୍ଷୀ । ଖିଆପିଆର ଧୂମ ଲାଗିଲା । ଜର୍ଜ ଗୋମେସ ଗୋଟିକ ପରେ ଗୋଟିଏ ପଦାର୍ଥର ବରାଦ କରୁଥିଲେ ।

ହାସ୍ୟ ପରିହାସ ଭିତରେ ଖିଆପିଆର ପର୍ବ ଶେଷ ହେଉହେଉ ପ୍ରାୟ ସାତଟା ବାଜିଯାଇଥିଲା ।

ସାକ୍ଷୀ ଦୁଇଜଣ ବିଦାୟ ନେଇ ଚାଲିଗଲେ ।

ରେଷ୍ଟୁରେଣ୍ଟରେ ଗହଳଚହଳ ବଢ଼ିଯାଇଥିଲା ।

ଏକ ସମୟରେ ଜର୍ଜ ଗୋମେସ ହାତଘଡ଼ିକୁ ଚାହିଁ ଚମକି ଉଠିଲା ପରି

କହିଲେ ମୁଁ ସଂପୂର୍ଣ୍ଣ ଗୁପେ ଭୁଲି ଯାଇଥିଲି ଚଉଧୁରୀ । ଗୋଟାଏ ଜରୁରୀ ଆପଏଣ୍ଟମେଣ୍ଟ ଅଛି । ମୋତେ ଆପଣମାନଙ୍କୁ ବିଦାୟ ଦେବାକୁ ହେବ ।

ସଞ୍ଜୟର ମୁହଁ ହଠାତ୍ ଝାଉଁଳି ପଡ଼ିଲା ।

ଏତେବେଳଯାଏ ସେ ଆନନ୍ଦ କଲରୋଳ ଭିତରେ ମାତି ରହିଥିଲା । କିନ୍ତୁ ଏହାପରେ ? ସେ ଦଳପତିର ଆଦେଶ ଲଙ୍ଘନ କରିଛି । ଯାହାକୁ ହତ୍ୟା କରିବା ପାଇଁ ସେ ନିଯୁକ୍ତି ପାଇଥିଲା, ତାକୁ ସେ ବିବାହ କରିଛି । ଦଳପତି କ'ଣ ତାକୁ କ୍ଷମା କରିପାରିବ ?

ଜର୍ଜ ଗୋମେସ ଉଠି ଠିଆ ହେଲେ ।

କହିଲେ : ଖୁବ୍ ସାବଧାନରେ ଚଳିବେ ଚଉଧୁରୀ । ଆଜି ରାତିଟା କଲିକତାରେ କଟାଇ କାଲି ଆପଣ କଲିକତା ଛାଡ଼ି ଅନ୍ୟତ୍ର ଚାଲିଯିବେ । ତା' ନ ହେଲେ...

ସଞ୍ଜୟର ମୁହଁ ଆହୁରି ଝାଉଁଳି ପଡ଼ିଲା ।

ଜର୍ଜ ଗୋମେସ ବିଦାୟ ନେଇ ବାହାରିଗଲେ ।

ବାହାରେ ପାଦ ଦେବାମାତ୍ରେ ସେ ଦେଖିଲେ, ଦାମୀ ଗୋଟିଏ ପ୍ରାଇଭେଟ କାର୍ ଆସି ରେଷ୍ଟୁରେଣ୍ଟ ଦୁଆରେ ଭିଡ଼ିଲା । ଗୋମେସ୍ ଦେଖିଲେ, ସେହି କାର୍‌ରୁ ମୋହନ ଏବଂ ଆଉ ଦୁଇଜଣ ଲୋକ ଓହ୍ଲାଉଛନ୍ତି ।

ହଠାତ୍ ଜର୍ଜ ଗୋମେସଙ୍କ ମନରେ ପାପ ଛୁଇଁଲା । ତା'ହେଲେ କ'ଣ...

ମୋହନ ଓ ଅନ୍ୟ ଦୁଇଜଣ ଲୋକ କାର୍‌ରୁ ଓହ୍ଲାଇ ଧୀରେଧୀରେ ରେଷ୍ଟୁରେଣ୍ଟ ମଧ୍ୟରେ ପ୍ରବେଶ କଲେ ।

ଗୋଟିଏ ଉହାଡ଼ିଆ ଜାଗାରେ ତିନିଜଣଯାକ ଯାଇ ଠିଆ ହେଲେ ।

ଜର୍ଜ ଗୋମେସ ନିଶ୍ଚିତ ହୋଇପାରିଲେ ନାହିଁ । ଏହା ସଞ୍ଜୟ ଆଉ ମାଳା ବିରୁଦ୍ଧରେ ଅଭିଯାନ ନୁହେଁ ତ ?

ମୋହନ ତା' ସଙ୍ଗୀ ଦୁଇଜଣଙ୍କୁ କ'ଣ ନିର୍ଦ୍ଦେଶ ଦେଲା । ପକେଟରୁ ଗୋଟିଏ ରିଭଲଭର୍ ବାହାର କରି ଜଣକ ହାତକୁ ଦେଲା । କାନ ପାଖରେ କ'ଣ କହିଲା । ତା'ପରେ ଧୀରେଧୀରେ ସେ ବାହାରକୁ ବାହାରି ଆସିଲା । ଅନ୍ୟ ଲୋକ ଦୁଇଜଣ ଜନଗହଳି ମଧ୍ୟରେ ମିଶିଗଲେ ।

ଏହା ନିଶ୍ଚୟ ମୋହନ ଓ ମାଳାକୁ ହତ୍ୟା କରିବାର ଷଡ଼ଯନ୍ତ୍ର ।

ଜର୍ଜ ଗୋମେସ୍‌ଙ୍କ ଅନ୍ତରାତ୍ମା ଥରିଉଠିଲା । ସେମାନଙ୍କୁ ଯେ ବଞ୍ଚାଇବାକୁ ହେବ । କିନ୍ତୁ କିପରି ? କିପରି ??

ହୁଏତ ଏ କ୍ଷେତ୍ରରେ ସାମାନ୍ୟ ଡେରି କରିବା ଉଚିତ ହେବନାହିଁ ।

ସେ ଆଉ କାଳ ବିଳମ୍ବ ନ କରି ଯାଇ ଟେଲିଫୋନ ଉଠାଇଲେ ।

ପୋଲିସ ଷ୍ଟେସନ ସହିତ ସଂଯୋଗ ସ୍ଥାପନ କଲେ ।

ହ୍ୟାଲୋ, ପୋଲିସ ଷ୍ଟେସନ ?

ହଁ ।

ଅପର ପ୍ରାନ୍ତରୁ ଉତ୍ତର ଆସିଲା ।

ଆପଣ ଶୀଘ୍ର ଚୌରଙ୍ଗୀ ରେଷ୍ଟୁରେଣ୍ଟକୁ ଚାଲିଆସନ୍ତୁ । ଚାରିଦିନ ତଳେ ଖବରକାଗଜରେ ଯେଉଁ ଝିଅଟିର ନିରୁଦ୍ଦିଷ୍ଟ କାହାଣୀ ଛପା ହୋଇଥିଲା ଏବଂ ଆପଣମାନେ ସେହି ଝିଅଟିକୁ ଖୋଜୁଚନ୍ତି ମଧ୍ୟ, ସେ ଏହି ଚୌରଙ୍ଗୀ ରେଷ୍ଟୁରେଣ୍ଟରେ ଅଛି । ଆପଣ ଡେରି କରିବେ ନାହିଁ । ଶୀଘ୍ର ଶୀଘ୍ର ।

ଏଇ ସଙ୍ଗେସଙ୍ଗେ ଯାଉଛୁ ।

ଅପର ପ୍ରାନ୍ତରୁ ଶୁଣାଗଲା !

ଜର୍ଜ ଗୋମେସ ଟେଲିଫୋନ ରଖିଦେଇ ବିଚଳିତ ପଦରେ ପୋଲିସ ଭ୍ୟାନକୁ ଅପେକ୍ଷା କରିଥିଲେ ।

ପାଞ୍ଚମିନିଟ୍ ମଧ୍ୟରେ ପୋଲିସ ଭ୍ୟାନ୍‌ଟି ଆସି ଚୌରଙ୍ଗୀ ରେଷ୍ଟୁରେଣ୍ଟ ଦୁଆରେ ଭିଡ଼ିଲା ।

ଜର୍ଜ ଗୋମେସ କହିଲେ : ମୁଁ ଆପଣଙ୍କ ପାଖକୁ ଫୋନ କରିଥିଲି । ଆପଣ ମୋ' ସହିତ ଚାଲିଆସନ୍ତୁ ।

ପୋଲିସ ଅଫିସର ସହ ଦୁଇଜଣ କନେଷ୍ଟବଲ ଜର୍ଜ ଗୋମେସଙ୍କ ପଛେ ପଛେ ଆଗେଇଗଲେ ।

ପ୍ରଥମେ ଗୋମେସ ନିର୍ଦ୍ଦିଷ୍ଟ କେବିନରେ ଦୁଆର ଖୋଲି ଦେଖିଲେ : ସଞ୍ଜୟ ଉପରେ ଦେହଭାର ନଦି ମାଳା ଖୁସି ଗଳ୍ପରେ ମାତିଛି ।

ଆରେ ଜର୍ଜ ଯେ ! ପୁଣି...

ପଛରେ ପୋଲିସ ଅଫିସରଙ୍କୁ ଦେଖି ସଞ୍ଜୟ କଥା ଅସମାପ୍ତ ରହିଗଲା ।

ଜର୍ଜ ମାଳାକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଲେ । ପୋଲିସ ଅଫିସର ଏବଂ ଦୁଇଜଣଯାକ କନେଷ୍ଟବଲ କେବିନ ମଧ୍ୟରେ ପ୍ରବେଶ କଲେ ।

ଆପଣଙ୍କ ନାଁ ମାଳା ସାମନ୍ତରାୟ ?

ପୋଲିସ ଅଫିସର ପଚାରିଲେ ।

ମାଳା ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ଆପଣଙ୍କ ବାପାଙ୍କ ନାଁ ନନ୍ଦକିଶୋର ସାମନ୍ତରାୟ ?

ହଁ ।

: ଆପଣ ଘରୁ ବହୁ ମୂଲ୍ୟବାନ ଅଳଙ୍କାରପତ୍ର ଧରି ବାହାରି ଆସିଛନ୍ତି । ଏଇ ଦେଖନ୍ତୁ, ଆପଣଙ୍କୁ ଆରେଷ୍ଟ କରିବା ପାଇଁ ମୋ' ପାଖରେ ଓ୍ୟାରଣ୍ଟ ଅଛି ।

ମାଳା ମୁହଁରୁ ରକ୍ତ ଶୁଖିଯାଇଥିଲା, ସଞ୍ଜୟ ଅସହାୟ ଦୃଷ୍ଟିରେ ଗୋମେସଙ୍କ ମୁହଁକୁ ଅନାଇ ରହିଥିଲା ।

ଆଉ ଆପଣ ?

ପୋଲିସ୍ ଅଫିସର ସଞ୍ଜୟକୁ ପଚାରିଲେ ।

ସେ ମୋ' ସ୍ୱାମୀ ।

ମାଳା ଉତ୍ତର ଦେଲା ।

: ତାଙ୍କୁ ମଧ୍ୟ ଆରେଷ୍ଟ କରୁଛି, କାରଣ ସେ ଆପଣଙ୍କୁ ଏହିପରି ବେଆଇନୀ କାର୍ଯ୍ୟ କରିବା ପାଇଁ ପ୍ରବର୍ତ୍ତାଇ ଘରୁ ବାହାର କରିଆଣିଛନ୍ତି ।

: ମୁଁ ଆସୁଛି ଚଉଧୁରୀ, ଆସୁଛି ମାଳା ଦେବୀ, ହାତରେ ମୋର ସମୟ ଖୁବ୍ କମ୍ । ତା'ଛଡ଼ା ଗୋଟିଏ ଜରୁରୀ ଆପଏଣ୍ଟମେଣ୍ଟ ଅଛି ।

କିନ୍ତୁ ଜର୍ଜ...

ସଞ୍ଜୟର କାତର ସ୍ୱର ଜର୍ଜ ଗୋମେସଙ୍କ କାନରେ ବାଜିଲା । ସେ ବୁଲି ଅନାଇଲେ, ସାମାନ୍ୟ ଟିକିଏ ହସିଲେ । କହିଲେ : ଏହାଠାରୁ ଆଉ ନିରାପଦ ଆଶ୍ରୟ ଆପଣଙ୍କର କିଛି ନାହିଁ ଚଉଧୁରୀ । ମୋ' ହାତରେ ସମୟ ଖୁବ୍ କମ୍ ଚଉଧୁରୀ । ଗୁଡ଼ନାଇଟ୍ ।

ମୁଁ ତରତର ହୋଇ ଇନ୍ଦ୍ରଜାଲ ଭିତରକୁ ପଶିଲାବେଳକୁ ଦେଖିଲି, ନୀଳିମା ରିସେପ୍‌ସନ ରୁମ୍ ବନ୍ଦ କରୁଛି । ହାତଘଡ଼ିକୁ ଚାହିଁଲି । ମାତ୍ର ସାତଟା ପାଞ୍ଚ । ଏତେ ଶୀଘ୍ର... ନା ନା ।

ନୀଳିମା ଦରଜା ବନ୍ଦ କରି ବୁଲିପଡ଼ିଲା ବେଳକୁ ମୋ ସହିତ ଧକ୍‌କା ଲାଗିଲା ।

ସେ ଯେପରି ଅବାକ୍ ହୋଇ ମୋ ମୁହଁକୁ ଚାହିଁଲା ମୁହୂର୍ତ୍ତେ । ତା ପରେ ଚଞ୍ଚଳ କଣ୍ଠରେ କହିଲା   ବସ୍‌ଙ୍କ ସହିତ ଦେଖା ହୋଇନି ଆପଣଙ୍କର ?

ନା ।

ତା' ହେଲେ ଶୀଘ୍ର ମୋ ସହିତ ଆସନ୍ତୁ । ବସ୍ ଆମକୁ ପୋଲିସ ଷ୍ଟେସନରେ ଅପେକ୍ଷା କରିଛନ୍ତି ।

ହଠାତ୍ ପୋଲିସ୍ ଷ୍ଟେସନ ? ସେପରି ତ କିଛି କଥା ନ ଥିଲା ।

ନୀଳିମା ହସିଲା । କହିଲା   କେସ୍‌ଟା କିନ୍ତୁ ସିରିଅସ୍ ।

ହୁଁ, ମର୍ଡ଼ର କେସ୍ ନିଶ୍ଚୟ ।

ଅବଶ୍ୟ, ତେବେ ପାତ୍ରପାତ୍ରୀ ସୀମିତ ।

: କିପରି? ସଂକ୍ଷେପରେ...

ମୁଁ ଆଗ ରିକ୍‌ସାକୁ ଉଠିଯାଇଥିଲି । ନୀଳିମା ରିକ୍‌ସାରେ ମୋ ପାଖରେ ବସୁବସୁ କହିଲା   ଚାରିଜଣ ଯୁବକ ଆଉ ଦୁଇଜଣ ଯୁବତୀ । ସେମାନେ ସମସ୍ତେ ବନ୍ଧୁ । ଗୋଟିଏ କାର୍‌ରେ ବସି ବୁଲିଯାଇଥିଲେ । ଚିଲିକା କୂଳରେ ଗାଡ଼ି ରଖି ଡଙ୍ଗାରେ ବସି କାଳିଜାଈ ମନ୍ଦିରକୁ ଗଲେ । ସେଠାରୁ ସେମାନେ ଫେରିଆସିଲେ । ପୁଣି କାର୍‌ରେ ବସି ଲେଉଟିଆସିଲେ କଟକକୁ । କିନ୍ତୁ...

ନୀଳିମା ହଠାତ୍ ନୀରବ ହୋଇଯାଇ ରହସ୍ୟମୟ ଦୃଷ୍ଟିରେ ଚାହିଁଲା ମୋ ମୁହଁକୁ । ମୁଁ କହିଲି   ତା'ପରେ କ'ଣ ହେଲା କୁହ ।

ନୀଳିମା କହିଲା   ତା'ପରେ କ'ଣ ହୋଇଥିବ ବୋଲି ଆପଣ ଭାବୁଛନ୍ତି?

ଝିଅ ଦୁଇଟାଙ୍କ ପାଇଁ ପୁଅଚାରିଟାଙ୍କ ଭିତରେ ମାଡ଼ଗୋଳ ହୋଇଥିବ, ଯାହା ସଚରାଚର ହୋଇଥାଏ । ହୁଏତ ସେମାନଙ୍କ ଭିତରୁ କାହାରି ଜଣକର ମୁଣ୍ଡ ଫାଟିଥିବ ଅଥବା...

ନୀଳିମା ଅଳ୍ପ ହସି କହିଲା  ନା ନା, ଘଟଣାଟା ଘଟିଛି ଅନ୍ୟ ପ୍ରକାର । ଗାଡ଼ି ଯେତେବେଳେ ଆସି କଲେଜ ଛକରେ ପହଞ୍ଚିଲା, ସମସ୍ତେ ଓହ୍ଲେଇ ପଡ଼ିଲେ ତଳକୁ । କିନ୍ତୁ ଗୋଟିଏ ଝିଅ ପୂର୍ବପରି ଗଦିକୁ ଆଉଜି ଶୋଇରହିଥିଲା। ବହୁତ ଡକାଡକି ପରେ ଜଣେ ଯେତେବେଳେ ଝିଅଟି ଦେହରେ ହାତମାରି ହଲାଇଦେଲା, ଝିଅଟି ଥିର୍ କରି ଗଡ଼ିପଡ଼ିଲା ତଳକୁ ।

ହୁଁ, ତା'ପରେ ଜଣାଗଲା ଝିଅଟି ମୃତ । ମୁଁ ରହସ୍ୟମୟ କଣ୍ଠରେ କହିଲି ।

ନୀଳିମା ଉଲ୍ଲସିତ ହୋଇଉଠି କହିଲା : ଏକ୍‌ଜାକ୍‌ଟଲି । କିନ୍ତୁ ବର୍ତ୍ତମାନ କଥା ହେଉଛି ଝିଅଟି ମଲା କିପରି ? ଯଦି ଆତ୍ମହତ୍ୟା କରିଥାଏ, ତେବେ କାହିଁକି? ସୁଯୋଗ ପାଇଲା ବା କେତେବେଳେ ? ଯଦି କେହି ହତ୍ୟା କରିଥାଏ, ତେବେ ହତ୍ୟାକାରୀ କିଏ ? ତା'ର ବା ସୁଯୋଗ କେଉଁଠି ?

ହୁଁ, ତା'ହେଲେ ଘଟଣାଟା ବଡ଼ ଜଟିଳ ।

ଖାଲି ଜଟିଳ ନୁହେଁ, ରହସ୍ୟମୟ ବି ।

ପୋଲିସ ଇନିସ୍‌ପେକ୍ଟର ସତ୍ୟାନନ୍ଦ ବେହୁରା ଆରମ୍ଭ କଲେ, ଘଟଣାଟି ସଂକ୍ଷେପରେ ହେଉଛି, ସେମାନେ ଚାରିବନ୍ଧୁ, ଦୁଇବାନ୍ଧବୀ । ସେମାନଙ୍କର ନାମ ଠିକଣା ହେଉଛି ଯଥାକ୍ରମେ:

୧-ସୁଖରଞ୍ଜନ ପଟ୍ଟନାୟକ, ଅଧ୍ୟାପକ, ବୟସ-୩୫, ଠିକଣା ମହମ୍ମଦିଆ ବଜାର ।

୨-ରଜନୀକାନ୍ତ ମହାପାତ୍ର, ଲେଖକ, ବୟସ-୩୧, ବାସସ୍ଥାନ କଟକଚଣ୍ଡୀ ।

୩-ରାଜକିଶୋର ରଥ, ପୁସ୍ତକ ପ୍ରକାଶକ, ବୟସ-୩୯, ବାସସ୍ଥାନ ବାଙ୍କାବଜାର ।

୪- ଅଖିଳ ମହାନ୍ତି, ଗାୟକ, ବୟସ-୩୭, ଠିକଣା-ଡଗରପଡ଼ା ।

୫-ଅନୁରାଧା ପଣ୍ଡା, ଷ୍ଟେନୋଗ୍ରାଫର, ବୟସ-୨୭, ଠିକଣା ଚାନ୍ଦିନୀ ଚୌକ ।

୬-ଚାମେଲୀ ସାମନ୍ତ, ଆର୍ଟିଷ୍ଟ, ବୟସ-୨୩, ଠିକଣା-ରାଣୀହାଟ ।

ଏହି ଛଅଜଣ, ଗୋଟିଏ ପ୍ରାଇଭେଟ କାର୍‌ରେ ବସି ପ୍ଲିଜାର୍ ଟ୍ରିପ୍‌ରେ ଯାଇଥିଲେ ଚିଲିକା । ଚିଲିକା କୂଳରେ ଗାଡ଼ି ରଖି, ଡଙ୍ଗା କରି କାଳିଜାଈ ମନ୍ଦିରକୁ ଯାଇଥିଲେ । ସେଠାରୁ ଫେରି ପୁଣି ସେଇ ପ୍ରାଇଭେଟ କାର୍‌ରେ ସମସ୍ତେ ଫେରିଆସିଲେ କଟକ । କିନ୍ତୁ ରାଣୀହାଟ ଛକରେ ଗାଡ଼ି ରଖି ଯେତେବେଳେ ସମସ୍ତେ ଓହ୍ଲେଇଲେ, ଦେଖିଲେ ତଥାପି ଚାମେଲୀ ବସିରହିଛି ଗାଡ଼ିରେ । ବୋଧହୁଏ ଶୋଇଯାଇଛି । ଡକାହକା ପରେ ଯେତେବେଳେ ଚାମେଲୀ ନ ଉଠିଲା, ଦେହରେ ହାତ ଦେଇ ହଲେଇଦେଲା ବେଳକୁ ଚାମେଲୀ ଢ଼ଳିପଡ଼ିଲା ତଳକୁ । ଅଳ୍ପ ସମୟ ପରେ ଜଣାଗଲା ଚାମେଲୀ ମୃତା ।

ସତ୍ୟାନନ୍ଦବାବୁ ସେଇଠି ଅଟକିଲେ ।

ନୀଳିମା ନୋଟବୁକ୍ ଉପରୁ ପେନ୍‌ସିଲ ଉଠାଇ, ପାଟିରେ କାମୁଡ଼ି ପଚାରିଲା ତା'ପରେ ?

ସତ୍ୟାନନ୍ଦବାବୁ ପୁଣି କ'ଣ ଆରମ୍ଭ କରିବାକୁ ଯାଉଥିଲେ ।

ସତ୍ୟବ୍ରତ ମହାପାତ୍ର ବାଧା ଦେଇ କହିଲେ : ଏହି କେସ୍‌ରେ ସବୁ ଆସାମୀଙ୍କ ଠାରୁ ଜମାନବନ୍ଦୀ ନିଆସରିଛି ?

ହଁ ।

ସେମାନେ କ'ଣ କହୁଛନ୍ତି ?

ସମସ୍ତେ ସ୍ତବ୍‌ଧ ହୋଇଯାଇଛନ୍ତି । ଏହି ଅଭାବିତ ଘଟଣା ଯେ କିପରି ଘଟିଲା, ସେମାନେ ସେଥିପାଇଁ ଆଶ୍ଚର୍ଯ୍ୟ ହେଉଛନ୍ତି ।

ପୋଷ୍ଟମର୍ଟମ ରିପୋର୍ଟ ଆସିଲାଣି ?

ନା ।

ଆସାମୀମାନେ ?

ହାଜତକୁ ଚାଲିଯାଇଛନ୍ତି ।

ହୁଁ, ତା'ହେଲେ ଆପଣ ମୋତେ କ'ଣ କରିବାକୁ କହୁଛନ୍ତି ?

ଏଇ କେସ୍‌ରେ ତଦନ୍ତ ଭାର ମୁଁ ଆପଣଙ୍କୁ ଦେବାକୁ ଚାହେଁ । କେସ୍‌ଟା ଖୁବ୍ ଜଟିଳ । ମନସ୍ତତ୍ତ୍ୱ ଭିତ୍ତିରେ ଏହି କେସ୍‌କୁ ବିଶ୍ଳେଷଣ ନକଲେ ଏହାର ସୂତ୍ର ମିଳିବ ନାହିଁ ।

କାହିଁକି ? ଆପଣଙ୍କ ପରି ଦକ୍ଷ ପୋଲିସ୍ ଅଫିସରଙ୍କ ଆଖିରୁ ପ୍ରକୃତ ଦୋଷୀ ଖସିଯିବା କ'ଣ ଏତେ ସହଜ ହୋଇଉଠିବ ?

ସତ୍ୟାନନ୍ଦ ବାବୁ ହସିଲେ । କହିଲେ  ଆପଣ ତ ସବୁ ଜାଣନ୍ତି ମିଷ୍ଟର ମହାପାତ୍ର । ଆମେ ଚାକିରିଆ । ଉପରବାଲାଙ୍କ ଆଦେଶ ମାନି ଚାଲିବାକୁ ହୁଏ । ଆଇନ୍ ବାହାରେ ପାଦେ ଗୋଡ଼ ବଢ଼ାଇ ହେବ ନାହିଁ ।

ସତ ଯେ । ତେବେ...

ଆପଣଙ୍କ ପାରିଶ୍ରମିକ କଥା ଭାବୁଛନ୍ତି ? ସେ ଠିକ୍ ମିଳିଯିବ । ହଠାତ୍ ସତ୍ୟବ୍ରତଙ୍କ କାନରେ ପାରିଶ୍ରମିକ କଥାଟା ବାଜିଲା ମାତ୍ରକେ ଆଖି ଦୁଇଟା ଦପ୍ କରି ଜଳିଉଠିଲା । ସେ କହିଲେ  ମିଳିଯିବ ମାନେ ? କିଏ ଦେବ?

ସତ୍ୟାନନ୍ଦ ବାବୁ ପୁଣି ହସିଲେ । ଘର ଚାରିଆଡ଼ୁ ଥରେ ସତର୍କ ଦୃଷ୍ଟି ବୁଲାଇ ନେଇ କହିଲେ : ଆପଣ ସେ ସମ୍ବନ୍ଧରେ ନିଶ୍ଚିନ୍ତ ରୁହନ୍ତୁ ମିଷ୍ଟର ମହାପାତ୍ର । ଆପଣଙ୍କ ପାରିଶ୍ରମିକରୁ ନୂଆ ପଇସାଟିଏ ପର୍ଯ୍ୟନ୍ତ ବୁଡ଼ିବ ନାହିଁ ।

: ହୁଁ, ସତ୍ୟବ୍ରତ ନୀରବରେ କିଛି ସମୟ ଅନାଇ ରହିଲା ସତ୍ୟାନନ୍ଦ ବେହୁରାଙ୍କ ମୁହଁକୁ । ତା'ପରେ ଚେଆରଟା ଅହୁରି ଟିକିଏ ଟେବୁଲ ପାଖକୁ ଟାଣିନେଇ କହିଲା ଏଥର ଆପଣ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ସତ୍ୟାନନ୍ଦ ବାବୁ ।

ପଚାରନ୍ତୁ ।

ଘଟଣାଟି ଘଟିଲା କେଉଁଦିନ ?

ରବିବାର । ମାନେ ୩୦ ତାରିଖରେ ।

୩୦ ତାରିଖ ରବିବାର ସେମାନେ ଛଅଜଣ ମିଶି ପ୍ଲିଜାର ଟ୍ରିପ୍ ଆରମ୍ଭ କରିଥିବେ ନିଶ୍ଚୟ ଭୋର୍‌ରୁ, ଆଉ ଗାଡ଼ିଟା ଫେରିଆସିଲା ରାଣୀହାଟକୁ...

ରାତି ଏଗାରଟା ପଇଁତିରିଶ ମିନିଟ୍‌ରେ ମୁଁ ଖବର ପାଇଲି । ରାଣୀହାଟ ଛକରେ ପହଞ୍ଚୁପହଞ୍ଚୁ ମୋର ପ୍ରାୟ ବାରଟା ବାଜିଯାଇଥିଲା ।

ସେମାନେ ସମସ୍ତେ ଆସି ସେଦିନ ଲକ୍‌ଅପ୍‌ରେ ଥିଲେ ?

ଆଜି ସକାଳୁ ଜେଲ୍ ହାଜତକୁ ପଠାଇ ଦିଆ ହୋଇଛି । ନିୟମ ଅନୁସାରେ ଆଉ ବେଶୀ ସମୟ ରଖି ହେବ ନାହିଁ ।

ଘଟଣାଟା ତିରିଶି ତାରିଖ ରାତିର । କାଲି ପହିଲା ଗଲା, ଆଜି ଦୁଇ ତାରିଖ । ଦୁଇଦିନ ପରେ ହଠାତ୍ କାହିଁକି ଆପଣଙ୍କର ମୋ କଥା ମନେ ପଡ଼ିଗଲା ?

ସତ୍ୟାନନ୍ଦ ବାବୁ ପୁଣି ହସିଲେ, କହିଲେ: ଏହି ହତ୍ୟା ମାମଲା ତଦନ୍ତରେ ମୁଁ କାହିଁକି ବେସରକାରୀ ଭାବେ ଆପଣଙ୍କୁ ତଦନ୍ତ କରିବାକୁ ଅନୁରୋଧ କରୁଛି, ଆପଣ ସେ ସମ୍ବନ୍ଧରେ ମୋଠାରୁ ସ୍ୱୀକାରୋକ୍ତି ଚାହାନ୍ତି । କିନ୍ତୁ ମିଷ୍ଟର ମହାପାତ୍ର, ଆପଣ ମୋତେ ବିଶ୍ୱାସ କରନ୍ତୁ । ମୁଁ ଆଉ କିଛି ନ ହେଲେ ବି ଆପଣଙ୍କର ଜଣେ ବନ୍ଧୁ । ପୋଲିସ ଅଫିସର ନ ହୋଇ ବନ୍ଧୁ ଭାବରେ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଏହି କେସ୍‌ଟିର ଭାର ନେବାକୁ । ଠିକ୍ ଆପଣଙ୍କ ଦୃଷ୍ଟିଭଙ୍ଗୀରେ ଆପଣ ତଦନ୍ତ କରିବେ । ମୋର ସତ୍ତା ସେଠାରେ ମୋଟେ ଅନୁଭବ କରିବେ ନାହିଁ । ବରଂ କେଉଁ କେଉଁ ସ୍ଥଳରେ ଆପଣଙ୍କ ସହିତ ମୋର ବିରୋଧ ହୋଇପାରେ । ସଚରାଚର ଯାହା ହୋଇଥାଏ ।

ତାହେଲେ ଆପଣ କହୁଛନ୍ତି ମୁଁ ଏ କେସ୍‌ଟା ହାତକୁ ନେଇ ମୋ ରୀତି ଅନୁସାରେ...

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା ।

: ହ୍ୟାଲୋ ? ...ହଁ ହଁ, ହାବିଲ୍‌ଦାରକୁ ପଠାଇ ଦେଉଛି... ହଁ ବୁଝିପାରିଛି । ...ହୁଁ ...ହୁଁ ଓଃ ତା'ହେଲେ ଆପଣ ବରଂ ଥରେ ଆସନ୍ତୁ, ମୁଁ ସାଢ଼େ ନଅଟା ପର୍ଯ୍ୟନ୍ତ ଅଛି ।

ସତ୍ୟବ୍ରତ ଉଠି ଠିଆ ହୋଇଥିଲା ।

ସତ୍ୟାନନ୍ଦବାବୁ ଟେଲିଫୋନ ରିସିଭର ରଖିବା ସଙ୍ଗେସଙ୍ଗେ ସତ୍ୟବ୍ରତ କହିଲେ : ସେମାନଙ୍କର ଜାମିନପାଇଁ କୋର୍ଟରେ ଦରଖାସ୍ତ ପଡ଼ିବା ପରେ କୌଣସି ଚାର୍ଜଆଣିବେ ନାହିଁ । ସେମାନେ ଯେତେ ଶୀଘ୍ର ମୁକ୍ତି ପାଆନ୍ତି ସେଥିପାଇଁ ଚେଷ୍ଟା କରିବେ ।

: ନା ନା, ମୋର ବିରୋଧିତା କରିବାର କିଛି ନାହିଁ । ସେମାନେ ସମସ୍ତେ ସମାଜର ଜଣେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ସେମାନଙ୍କୁ ଅଟକାଇ ରଖି ଲାଭ କ'ଣ ହେବ ?

ସତ୍ୟବ୍ରତ ହାତ ବଢ଼ାଇଲା ।

ସତ୍ୟାନନ୍ଦ ବାବୁ ଚେଆରରୁ ଉଠି କରମର୍ଦ୍ଦନ କରି କହିଲେ, : ମୁଁ ଆପଣଙ୍କର ସଫଳତା କାମନା କରୁଛି ।

ସତ୍ୟବ୍ରତ କହିଲା  ମୁଁ ମଧ ।

ଗାଡ଼ି ମୋତେ ଚଳାଇବାକୁ ହେଲା ।

ମୋ ବାଁ ପାଖରେ ସତ୍ୟବ୍ରତ । ପଛ ସିଟ୍‌ରେ ନୀଳିମା । ଅଖଣ୍ଡ ନିରବତା । ଗାଡ଼ିଟା ମୁଁ 'ଇନ୍ଦ୍ରଜାଲ' ଆଡ଼କୁ ମୁହାଁଇଲା ବେଳକୁ ସତ୍ୟବ୍ରତ କହିଲା  ଏତେଦିନ ମୋ ପାଖରେ ରହି ଆଉ କ'ଣ ଶିଖିଲୁ ?

ଗାଡ଼ି ମୁଁ ଅଟକାଇ ତା' ମୁହଁକୁ ଚାହିଁଲି ।

ସେ ସ୍ମିତ ହସି କହିଲା : ରାଣୀହାଟ ଚାଲେ ।

ଚାମେଲୀ ଘରକୁ ? ମୁଁ ପଚାରିଲି ।

: ତା'ଛଡ଼ା ଆଉ ସମସ୍ତେ ତ ଜେଲରେ । କାଲି କିମ୍ବା ପହରିଦିନ ସେମାନଙ୍କ ପାଖକୁ ଗଲେ ଚଳିବ, କିନ୍ତୁ ବିଚାରୀ ଚାମେଲୀର ଦେଖା ଆଉ ଆମେ କୌଣସି ଦିନ ପାଇବା ନାହିଁ । ସତ୍ୟବ୍ରତ ଆଖି ବୁଜି ଧୀରେଧୀରେ କହୁଥିଲା ।

: ଚାମେଲୀ ପରିବାର ସହିତ ଆମର ପରିଚୟ ନାହିଁ । ପ୍ରଥମେ ଯାଇ ଆମକୁ ଟିକିଏ ଅସୁବିଧାରେ ପଡ଼ିବାକୁ ହୋଇପାରେ, ନା କ'ଣ କହୁଛୁ ସତ୍ୟ?

ନ ହୋଇ ବି ପାରେ ତ । ଚାମେଲୀ ପରିବାରରେ କେଉଁମାନେ ଅଛନ୍ତି ଆମକୁ ଜଣାନାହିଁ । ତେବେ ତା'ର ବାପା ମା, ଭାଇ ଭଉଣୀ ଯିଏ ଥାଆନ୍ତୁ ସେମାନେ ନିଶ୍ଚୟ ମନପ୍ରାଣରେ ଚାହୁଁଥିବେ ଚାମେଲୀର ହତ୍ୟାକାରୀ ଧରାପଡୁ, ଶାସ୍ତି ପାଉ । ତେଣୁ ସେମାନେ ଆମକୁ ସାହାଯ୍ୟ ବି କରି ପାରନ୍ତି ।

ଚାମେଲୀ ସାମନ୍ତର ଘର ବଡ଼ରାସ୍ତା ଛାଡ଼ି ଟିକିଏ ଭିତରକୁ । ଆମେ ପହଞ୍ଚିଲା ବେଳକୁ ତାଙ୍କ ଘରର ଦୁଆର ବନ୍ଦ ଥିଲା । ଆମ ଡାକରେ ଯିଏ ଆସି କବାଟ ଖୋଲିଲା, ସେ ଘରର ଚାକର ହେବ । ଆମକୁ ଦେଖି କହିଲା: ବାବୁ ବାହାରକୁ ଯାଇଛନ୍ତି । ଫେରୁଫେରୁ ଡେରି ହେବ ।

ମାଆ ଅଛନ୍ତି ? ମୁଁ ପଚାରିଲି ।

: ସେ ଶୋଇଛନ୍ତି । ଦେହ ଖରାପ । ଡାକ୍ତର ତାଙ୍କୁ କାହାରି ସହିତ କଥାବାର୍ତ୍ତା କରିବାକୁ ବାରଣ କରିଛି ।

ଘରେ ଆଉ କେହି ନାହାନ୍ତି ?

ଛୋଟବାବୁ ଅଛନ୍ତି ।

ତାଙ୍କୁଇ ଡାକିଦିଅ ।

ସେ କିନ୍ତୁ...

ଲୋକଟିର କଥା ଶେଷ ହେଲା ନାହିଁ । ଘର ଭିତରୁ ଜଣେ ଉଣେଇଶ କୋଡ଼ିଏ ବର୍ଷର ତରୁଣ ବାହାରିଆସି ହାତ ଯୋଡ଼ି ନମସ୍କାର କଲା । ହସି ହସି କହିଲା  ଆସନ୍ତୁ ଆଜ୍ଞା । ଆପଣମାନେ କେତେବେଲୁ ଆସିଲେଣି ?

ଚାକରଟି ସେହି ଯୁବକଟି ମୁହଁକୁ ଥରେ ଓ ଆମ ମୁହଁକୁ ଥରେ ଚାହିଁ ଧୀରେ ଧୀରେ ପଛକୁ ଘୁଞ୍ଚି ଯାଉଥିଲା । ଯୁବକଟି କହିଲା, ଆସନ୍ତୁ ଆସନ୍ତୁ, ଭୋଳା କକାଟା ସବୁଦିନ ମୋଟାବୁଦ୍ଧିଆ । ଆପଣମାନେ କିଛି ଭାବିବେ ନାହିଁ ।

ଆମେ ଆଗେଇ ଗଲୁ । ଭିତରେ ଡାହାଣ ପାଖ ଘରଟିର ଦରଜା ଖୋଲା ଥିଲା । ଆମକୁ ସେ କହିଲା  ଆମର ଡ୍ରଇଂରୁମ୍ । ଆପଣମାନେ ବସନ୍ତୁ ।

ଆମେ ବସିଲୁ । ସେ ବାହାରି ଚାଲିଯାଉଥିଲା । ମୁଁ ପଚାରିଲି, ଆପଣଙ୍କ ପରିଚୟଟା...

ଯୁବକଟି ଅଟକିଯାଇ ଆମ ଆଡ଼କୁ ବୁଲି ଅନେଇ କହିଲା  ଭୋଳା କକା କିଛି କହିନାହିଁ ? ମୁଁ ଛୋଟବାବୁ, ମାନେ ନୀଳମଣି ସାମନ୍ତଙ୍କର ଏକମାତ୍ର ପୁତ୍ର ଜଗଜ୍ୟୋତି ସାମନ୍ତ । ମୋର ଡାକ ନାମ ଗୁଙ୍ଗା । ଆପଣମାନେ ବସନ୍ତୁ । ମୁଁ ଚା' ଜଳଖିଆ ଭୋଳାକକା ହାତରେ ପଠାଇ ଦେଉଛି ।

: ଶୁଣନ୍ତୁ, ଶୁଣନ୍ତୁ । ସତ୍ୟବ୍ରତ ଡାକି ଡାକି ତା'ପଛରେ ଆଗେଇ ଯାଉଥିଲା । ସେ କିନ୍ତୁ ସେଠାରୁ ଅଦୃଶ୍ୟ ହୋଇସାରିଥିଲା ।

ଆମେ ଡ୍ରଇଂରୁମ୍‌ରେ ତିନିଜଣ ନୀରବ ହୋଇଯାଇଥିଲୁ ।

କିଛି ସମୟ ପରେ ହଠାତ୍ ସେ ଛୁଟି ଆସି କହିଲା  ଗୋଟାଏ କଥା କିନ୍ତୁ ଭୁଲ ହୋଇଯାଇଛି ଆଜ୍ଞା । ବାପା ଘରେ ନାହାନ୍ତି, ବୋଉର ଦେହ ଭଲ ନାହିଁ । ସବୁଠୁ ଅସୁବିଧା କ'ଣ ହେଇଛି ଜାଣନ୍ତି ? ଆମ ଗ୍ୟାସ ଚୁଲୀରୁ ଆଜି ଗ୍ୟାସ ଶେଷ ହୋଇଯାଇଛି । ତେଣୁ ବାପା ଆସିବା ପର୍ଯ୍ୟନ୍ତ ଆପଣଙ୍କୁ ଟିକିଏ ଅପେକ୍ଷା କରିବାକୁ ପଡ଼ିବ । କଥା ଶେଷ କରି ସେ ଚାଲି ଯାଉଥିଲା ।

ଶୁଣନ୍ତୁ ଜ୍ୟୋତିବାବୁ ।

ପୁଣି ଛୁଟିଆସି ସେ କହିଲା  ଉଁହୁଁ, ଶୁଣନ୍ତୁ ଫୁଣନ୍ତୁ ନୁହେଁ କି ଜ୍ୟୋତିବାବୁ ନୁହେଁ, ମୋତେ ଆଜିଠାରୁ ଗୁଙ୍ଗାବାବୁ ଡାକିବେ ।

ହେଲା, ଆଚ୍ଛା ବାପା ତମର କେତେବେଳକୁ ଆସିବେ ?

ବାପା, ଆଚ୍ଛା ରୁହନ୍ତୁ ରୁହନ୍ତୁ କହି ଜଗଜ୍ୟୋତି ପୁଣି ଛୁଟି ପଳାଇଲା।

ସାମାନ୍ୟ ନୀରବତା ପରେ ସତ୍ୟବ୍ରତ କହିଲା  ଆଉ ଏଠାରେ ବସି କିଛି ଲାଭ ନାହିଁ, ବରଂ ଘରେ ଆସିବା ।

ଆମେ ସମସ୍ତେ ଠିଆହେଲୁ । ଭିତରୁ କିନ୍ତୁ ଜଗଜ୍ୟୋତିର ଚିତ୍କାର ଶୁଣାଗଲା

ବାପା ଥାନାକୁ ଯାଇଛନ୍ତି, ଚାମେଲୀ ନାନୀ ମରି ଯାଇଛି ତ? ପୋଲିସ୍ ବାପାଙ୍କୁ ଡାକି ନେଇଯାଇଚି । ଓଃ ଆପଣ ଜାଣି ନାହାନ୍ତି ବୋଧେ, ଆରେ ଅସଲ କଥାଟା ମୁଁ ଆପଣଙ୍କୁ କହିନାହିଁ ? ଭୋଳାକକା ବି କହିନାହିଁ? ଫୁର୍‌ର୍‌ର୍, ହାତରେ ଗୋଟିଏ ଫୁଟ୍‌କି ଫୁଟେଇ କଣ କହିବାକୁ ଯାଇ ହଠାତ୍ ନୀରବ ହୋଇଗଲା । ଆମ ଆଡ଼କୁ ଚାହିଁ ତା ଆଖିରେ କିପରି ଏକ ଭୟାର୍ତ୍ତ ଚାହାଣି ଫୁଟିଉଠିଲା । କାନ୍ଦକାନ୍ଦ ସ୍ୱରରେ କହିଲା ସେମାନେ ମିଶି ନାନୀକି ମାରି ଦେଲେ । ନାନୀର କିନ୍ତୁ କିଛି ଦୋଷ ନଥିଲା । ନା ନା, ନାନୀର ବି ଭୁଲ, ସେ ବା ସେମାନଙ୍କ ସାଙ୍ଗରେ ଗଲା କାହିଁକି ?

ହଠାତ୍ ପିଲାଙ୍କ ପରି ଭେଁ ଭେଁ ହୋଇ କାନ୍ଦି ଉଠିଲା ଜଗଜ୍ୟୋତି ।

ସେତିକିବେଳେ ଘର ଭିତରେ ପ୍ରବେଶ କଲେ ଜଣେ ପ୍ରୌଢ଼ ଭଦ୍ରଲୋକ । ଗୃହସ୍ୱାମୀ ହେବେ ବୋଧହୁଏ । ଆମକୁ ସେଠାରେ ହୁଏତ ଆଶା କରି ନ ଥିଲେ ।

ସତ୍ୟବ୍ରତ ସଙ୍ଗେ ସଙ୍ଗେ କହିଲା : ମୋ ନାଁ ସତ୍ୟବ୍ରତ ମହାପାତ୍ର । ମୁଁ ଜଣେ ପ୍ରାଇଭେଟ୍ ଡିଟେକ୍‌ଟିଭ । ଏମାନେ ମୋର ସହକାରୀ । ଆପଣ ବୋଧହୁଏ ନୀଳମଣି ସାମନ୍ତ, ଚାମେଲୀ ସାମନ୍ତଙ୍କର ବାପା ।

ଭଦ୍ରଲୋକ ସ୍ଥିର ଦୃଷ୍ଟିରେ କେତୋଟି ମୁହୂର୍ତ୍ତ ଆମ ଆଡ଼େ ଚାହିଁ ଇଙ୍ଗିତରେ ଆମକୁ ବସିବାକୁ କହିଲେ । ଜଗଜ୍ୟୋତିର ହାତ ଧରି ଭିତରକୁ ଟାଣିଟାଣି ନେଇଗଲେ । ସେ ପୂର୍ବପରି କାନ୍ଦୁଥିଲା ।

ଆଖିରୁ ତା'ର ଲୁହ ଝରୁଥିଲା ।

ଆମ୍ଭେ ପୁଣି ଥରେ ବସିଲୁ ।

ସତ୍ୟବ୍ରତ ମୋ ଆଡ଼କୁ ଚାହିଁ କହିଲା କ'ଣ ମନେ ହେଉଛି ?

ଅସ୍ୱାଭାବିକ । ଜଗଜ୍ୟୋତିର ଆଚରଣରେ କିନ୍ତୁ ଅସ୍ୱାଭାବିକତା ଫୁଟି ଉଠୁଛି । ବୟସ ତୁଳନାରେ...

ଜ୍ଞାନର ବୃଦ୍ଧି ହୋଇ ନାହିଁ, ଏଇଆ ତ ? ସତ୍ୟବ୍ରତ ହସିହସି କହିଲା ।

ଘର ଭିତରକୁ ପୂର୍ବର ସେହି ଭଦ୍ରଲୋକ ପଶି ଆସୁଥିବାର ଦେଖି ସତ୍ୟବ୍ରତ ନୀରବ ହୋଇଗଲା ।

ଭଦ୍ରଲୋକ କହିଲେ ଆପଣମାନେ କିଛି ଭାବିବେ ନାହିଁ ଆଜ୍ଞା । ମୁଁ ବଡ଼ ସମସ୍ୟାରେ ପଡ଼ିଯାଇଛି । ଜୀବନଯନ୍ତ୍ରଣାରେ ଛଟପଟ ହେଉଛି ।

ଭଦ୍ରଲୋକ ଆମ ସାମ୍ନାରେ ଗୋଟିଏ ଚେଆର ଉପରେ ବସିପଡ଼ି କହିଲେ : ଚାମେଲୀ ଥିଲା ମୋର ଏକମାତ୍ର କନ୍ୟା ଆଉ ଜଗଜ୍ୟୋତି ମୋର ଏକମାତ୍ର ପୁତ୍ର । ଜଗଜ୍ୟୋତିକି ତ ଆପଣମାନେ ଦେଖିଲେ । ତା'ର ବୟସ ବର୍ତ୍ତମାନ ୨୦ ହେଲାଣି, କିନ୍ତୁ ଜ୍ଞାନ ବୁଦ୍ଧିରେ ସେ ୮/୯ ବର୍ଷଠାରେ ରହି ଯାଇଛି । ତା'ର ବ୍ରେନ୍ ଅନଡେଭଲପ ହୋଇ ରହିଛି । ତେଣୁ ତାର ଶିଶୁସୁଲଭ ଆଚରଣ ଆମକୁ ବେଳେବେଳେ ବିବ୍ରତ କରି ପକାଉଛି ।

ଚାମେଲୀ କଥା ତ ଆପଣ ଶୁଣିଛନ୍ତି ।

ଆଉ ଚାମେଲୀର ମା' ଆଜିକୁ ଦଶବର୍ଷ ହେବ ଶଯ୍ୟାଶାୟିନୀ । ତେଣୁ ମୋର ଅବସ୍ଥା ଆପଣମାନେ ନିଜେ ନିଜେ ଟିକିଏ ଅନୁଭବ କରିବାକୁ ଚେଷ୍ଟା କଲେ ବୁଝିପାରିବେ । ଏଥର ଆଦେଶ କରନ୍ତୁ ।

ସତ୍ୟବ୍ରତ ବ୍ୟଥିତ ସ୍ୱରରେ କହିଲା ନା ମିଷ୍ଟର ସାମନ୍ତ, ଆମେ ଆପଣଙ୍କୁ ଆଦେଶ ଦେବାକୁ ଏଠାକୁ ଆସିନାହୁଁ । ଚାମେଲୀର ହତ୍ୟା ତଦନ୍ତ ଭାର ମୋ ଉପରେ ପୋଲିସ୍ ଇନିସ୍ପେକ୍ଟର ଦେଇଛନ୍ତି । ତେଣୁ କର୍ତ୍ତବ୍ୟ ଦୃଷ୍ଟିରୁ...

ନୀଳମଣି ସାମନ୍ତ ଏତେ ଦୁଃଖରେ ବି ହସି ପକାଇଲେ ।

କହିଲେ: ଆପଣ କ'ଣ ଭାବିଛନ୍ତି ଏ କେସ୍‌ର ସମାଧାନ ଆପଣ କରିପାରିବେ ? ଅବଶ୍ୟ ଏ କ୍ଷେତ୍ରରେ ଚାମେଲୀର ହତ୍ୟାକାରୀ ସୀମିତ, ଅର୍ଥାତ୍ ମୋଟରେ ସେମାନେ ପାଞ୍ଚଜଣ । କିନ୍ତୁ ସେଇ ପାଞ୍ଚଜଣ ଭିତରୁ ଜଣକୁ କାହାକୁ ଦୋଷୀ ବୋଲି ବାଛିବା ଆପଣମାନଙ୍କ ପକ୍ଷରେ ସହଜ ହୋଇ ଉଠିବ ନାହିଁ । ଶେଷରେ, ପାଞ୍ଚବର୍ଷ ପରେ ସେମାନେ ସମସ୍ତେ ନିର୍ଦ୍ଦୋଷରେ ଖଲାସ ହୋଇଯିବେ । ତେଣୁ ଆଜିଠାରୁ ସେମାନଙ୍କୁ ମୁକ୍ତି ଦିଅନ୍ତୁ ମିଷ୍ଟର ମହାପାତ୍ର । କାରଣ ଚାମେଲୀ ମୋର ଆଉ ଫେରିବ ନାହିଁ । ପ୍ରକୃତ ଦୋଷୀକୁ ମଧ୍ୟ ଆପଣମାନେ ଧରି ପାରିବେ ନାହିଁ । ଖାଲି ମଝିରେ ଅତି କମ୍‌ରେ ପାଞ୍ଚଟି ବର୍ଷ କୋଟ କଚେରୀକୁ ଦଉଡ଼ିଦଉଡ଼ି କେଇହଳ ଯୋତା ଛିଡ଼ିବା ସାର ହେବ ।

ସତ୍ୟବ୍ରତ ଶାନ୍ତସ୍ୱରରେ କହିଲା ଆଜିକାଲିର ଆମ ଶାସନ ବ୍ୟବସ୍ଥା ଯେପରି, ତହିଁରେ ଆପଣଙ୍କ ଉକ୍ତିର ସାମାନ୍ୟ ସତ୍ୟତା ଥିଲେ ମଧ୍ୟ ସମାଜରେ ସ୍ୱେଚ୍ଛାଚାରିତାକୁ ତ ପ୍ରଶ୍ରୟ ଦେଇ ହେବ ନାହିଁ । ହଇରାଣ ଆପଣ ଟିକିଏ ହୁଏତ ହେବେ, ତେବେ ଦୋଷୀକୁ ଶାସ୍ତି ଦେବାର ବିଧିବ୍ୟବସ୍ଥା ସମାଜରୁ ଉଠାଇ ଦେଲେ ତ ଚଳିବ ନାହିଁ । ମୁଁ ଜାଣେ ଆପଣ ଖୁବ୍ ବ୍ୟଥିତ । ଆପଣଙ୍କ ମନରେ ଆଘାତ ଲାଗିଛି ଯଥେଷ୍ଟ । ତଥାପି ଆପଣଙ୍କୁ ସମାଜର ଶୃଙ୍ଖଳା ରକ୍ଷା ରକ୍ଷା କରିବା ଦିଗରେ ଆମକୁ ସାହାଯ୍ୟ କରିବାକୁ ହେବ । ଆପଣ ଦେଶର ଜଣେ ଶିକ୍ଷିତ ନାଗରିକ । ଦେଶ ଆପଣଙ୍କଠାରୁ ଅନେକ କିଛି ଆଶା କରେ । ଆପଣ ମନକୁ ଦୃଢ଼ କରି ଅସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ଯୁଦ୍ଧ ଘୋଷଣା ନ କଲେ ଖାଲି ଗୋଟିଏ ଚାମେଲୀ ନୁହେଁ, ଅନେକ ଚାମେଲୀ ସେମାନଙ୍କର ଶିକାର ହେବେ ।

ଆପଣଙ୍କ ଉକ୍ତି ସତ୍ୟ ଯେ... ତେବେ ଉପାୟ ନାହିଁ ମିଷ୍ଟର ମହାପାତ୍ର । ଆପଣ ହୁଏତ ଜାଣନ୍ତି ନାହିଁ ଆଜିକାଲି ସମାଜରେ ମୋ'ପରି ମଧ୍ୟବିତ୍ତ ବାପାମାନଙ୍କର ଯନ୍ତ୍ରଣା କେତେ କରୁଣ ।

ନୀଳମଣି ସାମନ୍ତଙ୍କର ଅଖି ଛଳଛଳ ହୋଇଉଠିଲା । ସେ ମୁହୂର୍ତ୍ତେ ନୀରବ

ରହି ପୁଣି କହିଲେ  ଆପଣ କୁହନ୍ତୁ ମିଷ୍ଟର ମହାପାତ୍ର, ଆପଣ ମୋ ଠାରୁ କ'ଣ ଜାଣିବାକୁ ଚାହାନ୍ତି ।

ସତ୍ୟବ୍ରତ କହିଲା  ମୁଁ ଖାଲି ଜାଣିବାକୁ ଚାହେଁ ଚାମେଲୀ ତା'ର ଯେଉଁସବୁ ବନ୍ଧୁମାନଙ୍କ ସହିତ ପ୍ଲିଜାର ଟ୍ରିପ୍‌ରେ ଯାଇଥିଲା, ସେମାନେ ଚାମେଲୀର କେତେ ବିଶ୍ୱାସୀ । ଅଥବା ସେମାନଙ୍କ ଭିତରୁ କାହାରି ପ୍ରତି ଆପଣଙ୍କର କୌଣସି ଅଭିଯୋଗ ଅଛି କି ନାହିଁ ?

ନୀଳମଣି ସାମନ୍ତ ଯେପରି ମହାସମସ୍ୟାରେ ପଡ଼ି ଯାଇଥିଲେ । ସେ କହିଲେ  ଏହା ଖୁବ୍ ଜଟିଳ ପ୍ରଶ୍ନ ମିଷ୍ଟର ମହାପାତ୍ର । କାରଣ ଚାମେଲୀ ମୋର କନ୍ୟା ହେଲେ ବି ସେ ନାରୀ । ବୟସ ବି ତାର ଯଥେଷ୍ଟ ହୋଇଥିଲା । ତା'ଛଡ଼ା ସେ ଥିଲା ସ୍ୱନାମଧନ୍ୟା ଗାୟିକା ଆଉ ଅଭିନେତ୍ରୀ । ଦେଶର ବହୁ ଯୁବ ସଂପ୍ରଦାୟର ସେ ଯେ ଏକ ଲୋଭନୀୟ ଆକର୍ଷଣ ଥିଲା, ମୁଁ ତା'ର ବାପା ହୋଇ ବି ଅସ୍ୱୀକାର କରି ପାରିବି ନାହିଁ । ତେଣୁ ଏମାନେ ତା'ର ସେହିପରି କେତେଜଣ ପ୍ରଶଂସକ । ବନ୍ଧୁ ବି ହୋଇ ପାରନ୍ତି । ଏମାନଙ୍କ ଭିତରୁ ଦୁଇ ତିନିଜଣଙ୍କ ସହିତ ମୋର ମଧ ସାମାନ୍ୟ ପରିଚୟ ଅଛି । ମାନେ ଚାମେଲୀ ଜରିଆରେ, ସେମାନେ ବେଳେବେଳେ ଆମ ଘରକୁ ଯା' ଆସ କରନ୍ତି ।

ଅବଶ୍ୟ ଚାମେଲୀ ବଡ଼ ହୋଇ ସମାଜରେ ସୁଖ୍ୟାତି ଅର୍ଜନ କରିବା ପରେ, ଆମେ ବାଧ ହୋଇ ତା'ଉପରୁ ପାରିବାରିକ ସମସ୍ତ ବାଧାନିଷେଧ ଉଠାଇ ନେଇଥିଲୁ । ପ୍ରଥମେ ପ୍ରଥମେ ଆମକୁ ଟିକିଏ ଅଡୁଆ ଲାଗିଥିଲେ ବି ପରେ ସବୁ ଦିହସୁହା ହୋଇଯାଇଥିଲା । ଚାମେଲୀ ପାଖକୁ କିଏ ଆସୁଛି ଯାଉଛି, ସେ ସବୁ ଖବର ରଖିବାର କୌତୂହଳ ଧୀରେଧୀରେ ଆମ ମନରୁ ଶେଷ ହୋଇ ଯାଇଥିଲା । ଆମ ଘରେ ବହୁ ଜ୍ଞାନୀ ଗୁଣୀଜନମାନଙ୍କର ପାଦ ପଡ଼ିବାକୁ ଲାଗିଲା । ଚାମେଲୀର ଏହି ସୁଖ୍ୟାତିରେ ଆମ ମନରେ ଗର୍ବ ଆଉ ଗୌରବବୋଧ ଯେ ଜାଗୁନଥିଲା, ତାହା ବର୍ତ୍ତମାନ ମୁଁ ଅସ୍ୱୀକାର କରିପାରିବି ନାହିଁ ।

ନୀଳମଣି ସାମନ୍ତ ଟିକିଏ ନୀରବ ହେଲେ ।

ସତ୍ୟବ୍ରତ କହିଲା  ମୋର ପ୍ରଶ୍ନ କିନ୍ତୁ ଏତେ ଗଭୀର ଯାଏ ନୁହେଁ ମିଷ୍ଟର ସାମନ୍ତ । ମୁଁ ଖାଲି ଜାଣିବାକୁ ଚାହେଁ ଏଇ ପାଞ୍ଚଜଣଙ୍କ କଥା । ଯେଉଁମାନେ ଚାମେଲୀ ସହିତ ପ୍ଲିଜାର ଟ୍ରିପ୍‌ରେ ଯୋଗ ଦେଇଥିଲେ ।

ନୀଳମଣି ସାମନ୍ତ କହିଲେ  ସେମାନଙ୍କ ମଧ୍ୟରୁ ରଜନୀ, ଅଖିଳ ଓ ରାଜକିଶୋରଙ୍କୁ ମୁଁ ଚିହ୍ନେ ।

ଆଉ ଅନୁରାଧାକୁ ? ସତ୍ୟବ୍ରତ ପଚାରିଲା ।

ହଁ ଅନୁରାଧା ଚାମେଲୀର ଅନ୍ତରଙ୍ଗ ବନ୍ଧୁ ଥିଲା । ସେ ପ୍ରାୟ ଆମ ଘରକୁ ଆସୁଥିଲା । ନୀଳମଣି ସାମନ୍ତ କହିଲେ ।

ବୁଝିଲି । ଏଥର ଆପଣ ସେମାନଙ୍କ କଥା କୁହନ୍ତୁ । ଅଖିଳ ମହାନ୍ତି, ରାଜକିଶୋର ରଥ ଓ ରଜନୀକାନ୍ତ ମହାପାତ୍ରଙ୍କୁ ଆପଣ କିପରି ଚିହ୍ନନ୍ତି ଓ କେତେଟା ଜାଣନ୍ତି ?

ନୀଳମଣି ସାମାନ୍ତ ଟିକିଏ ବିଚଳିତ ହୋଇପଡ଼ିଲେ । କଣ୍ଠସ୍ୱରରେ ବିବ୍ରତ ଭାବ ଫୁଟିଉଠିଲା । କହିଲେ : ଏମାନେ ସମସ୍ତେ ମୋର ପରିଚିତ ହେଲେ ବି ଗଭୀର ଭାବରେ କାହାରି ସହିତ ମୋର ପରିଚୟ ନାହିଁ । ଅଖିଳ ମହାନ୍ତି ଗୀତ ଗାଆନ୍ତି, ତେଣୁ ସେ ଚାମେଲୀର ନିକଟ ସଂପର୍କକୁ ଆସିବା କଥା । ରଜନୀବାବୁ ଜଣେ ଲେଖକ, ବେଳେବେଳେ ସେ ଚାମେଲୀ ପାଇଁ ଗୀତ ମଧ ରଚନା କରି ଦେଇଥିବା କଥା ମୁଁ ଶୁଣିଛି । ତେଣୁ ଚାମେଲୀ ସହିତ ତାଙ୍କର ସଂପର୍କ ମଧ ଘନିଷ୍ଠ ହେବାର କଥା । ଆଉ ରାଜକିଶୋର ବାବୁଙ୍କୁ କେବେକେବେ ସେମାନଙ୍କ ମେଳରେ ମୁଁ ଦେଖିଛି । ହୁଏତ ସେ ଚାମେଲୀର ଜଣେ ସ୍ତାବକ ହୋଇଥିବେ ବା ସେହିପରି କିଛି...

: ହଁ, ସେମାନଙ୍କ ଗ୍ରୁପ୍‌ର ପଞ୍ଚମ ବ୍ୟକ୍ତିଙ୍କୁ ଆପଣ ତା'ହେଲେ ଚିହ୍ନନ୍ତି ନାହିଁ। ମାନେ ମୁଁ ସୁଖରଞ୍ଜନ ପଟ୍ଟନାୟକଙ୍କ କଥା କହୁଛି ।

ନା, ତେବେ ନାଁ ଶୁଣିଛି । ସେମାନେ ଚିଲିକା ଯିବା ଆଗଦିନ ରାତିରେ ଚାମେଲୀ ମୋତେ କହୁଥିଲା । କେଉଁମାନେ ଯାଉଛନ୍ତି, ସେମାନଙ୍କର ପ୍ରୋଗ୍ରାମ କ'ଣ, ସବୁ କଥା ସେ ମୋତେ କହିଥିଲା ।

ଆପଣ କୌଣସି ମନ୍ତବ୍ୟ ପ୍ରକାଶ କରି ନ ଥିଲେ ?

ନା, କିଛି ଆବଶ୍ୟକ ନଥିଲା । ଖାଲି ସେଇ ଦିନକ ନୁହେଁ, ଏଥି ପୂର୍ବରୁ ସେ ଆହୁରି ଅନେକ ଥର ପ୍ଲିଜାର ଟ୍ରିପ୍‌ରେ ଓଡ଼ିଶା ବାହାରକୁ ମଧ ଯାଇଛି । ସାତ ଆଠଦିନ ଏପରିକି କେବେକେବେ ପନ୍ଦରଦିନ ମଧ କଟାଇ ଆସିଛି । କୌଣସି ଦିନ ଆମେ ତାକୁ ବାଧା ଦେଇ ନାହୁଁ ।

ପ୍ରତିଥର କ'ଣ ଏଇ ଛଅଜଣ ପ୍ଲିଜାର ଟ୍ରିପ୍‌ରେ ଯାଆନ୍ତି ?

ନା ନା, ସେପରି କିଛି ଅର୍ଥ ନାହିଁ । ବିଭିନ୍ନ ସମୟରେ ବିଭିନ୍ନ ବନ୍ଧୁ ବାନ୍ଧବୀମାନଙ୍କ ସହିତ ଚାମେଲୀ ଯାଏ । ତେବେ ଏଇ ପାଞ୍ଚଜଣଙ୍କ ମଧ୍ୟରୁ ଜଣେ ଦି'ଜଣ ସେଇ ସବୁ ଗ୍ରୁପ୍‌ରେ ଯେ ନ ଥାନ୍ତି, ସେ କଥା ମୁଁ ଠିକ୍ କହି ପାରିବି ନାହିଁ। କାରଣ ଚାମେଲୀ ସମ୍ବନ୍ଧରେ ଏତେ ସଠିକ୍ ଖବରାଖବର ନେବାର ଦାୟିତ୍ୱ ମୁଁ ଅନେକ ଦିନରୁ ଛାଡ଼ି ଦେଇଥିଲି ।

ଠିକ୍ ଏହା ପୂର୍ବରୁ ଚାମେଲୀ କେବେ ଏହିପରି ପ୍ଲିଜାର ଟ୍ରିପ୍‌ରେ ଯାଇଥିଲା ଆପଣଙ୍କର ମନେଅଛି?

ନୀଳମଣି ସାମାନ୍ତ ଆଖିବୁଜି କିଛି ସମୟ ଚିନ୍ତା କରି କହିଲେ, : ଠିକ୍ ସଠିକ ମାସ ତାରିଖ ମନେ ନଥିଲେ ବି, ଚାମେଲୀ ଗତ ଜୁଲାଇ ମାସରେ ଥରେ କଲିକତା ଯାଇଥିଲା । ଅବଶ୍ୟ ସେତେବେଳେ ତା'ର କେତେଟା ଗୀତ ରେକର୍ଡ଼ିଂ ଥିଲା ବୋଲି କହୁଥିଲା । ସେଥର ପ୍ରାୟ ସେ ଛଅ ସାତଦିନ କଲିକତାରେ ଥିଲା ।

ହୁଁ, ସେଥର ଚାମେଲୀ ସହିତ ଆଉ କିଏ କିଏ ଯାଇଥିଲେ ଆପଣ କହି ପାରିବେ ? ଏଇ ଗ୍ରୁପ୍‌ର କେହି ଥିଲେ କି ?

ହଁ, ଅଖିଳ ମହାନ୍ତି ଯାଇଥିଲେ, ଆଉ ଅନୁରାଧା ବି ଯାଇଥିଲା ।

ଅନୁରାଧା ? ସତ୍ୟବ୍ରତ କଣ୍ଠରେ ଅନୁସନ୍ଧିତ୍ସା ଫୁଟିଉଠିଲା ।

ହଁ ଅନୁରାଧା । ନୀଳମଣି ସାମନ୍ତ ଶାନ୍ତସ୍ୱରରେ କହିଲେ, ଅନୁରାଧା ଛୁଟିନେଇ କଲିକତା ଦେଖିବା ପାଇଁ ଯାଇଥିଲା । ମୋର ବେଶ୍ ମନେ ଅଛି ସେ କଥା ।

ଆଉ?

ଆଉ ହୁଏତ କେହି ଯାଇଥିଲେ, କିନ୍ତୁ ମୋର ମନେ ନାହିଁ ।

ହୁଁ, ଆଜି ଆମେ ଆସି ଆପଣଙ୍କୁ ବିରକ୍ତ କରିଗଲୁ, ଦରକାର ପଡ଼ିଲେ ଆହୁରି ବି ଆସିବୁ । ଆପଣଙ୍କୁ କିନ୍ତୁ ଆମକୁ ସହଯୋଗ କରିବାକୁ ହେବ ।

ନିଶ୍ଚୟ, ନିଶ୍ଚୟ । ଆପଣମାନେ ଯେତେଥର ପାରନ୍ତି ଆସିବେ । ମୋ ଝିଅର ହତ୍ୟାକାରୀକୁ ଧରିବା ପାଇଁ ଆପଣମାନେ ଚେଷ୍ଟା କରୁଛନ୍ତି, ଅଥଚ ମୁଁ ଆପଣମାନଙ୍କୁ ସାହାଯ୍ୟ କରିବି ନାହିଁ ?

ନୀଳମଣି ସାମନ୍ତଙ୍କ କଣ୍ଠରେ କିପରି ବିଦ୍ରୂପ ଫୁଟିଉଠିଲା ପରି ମନେ ହେଲା ।

ସତ୍ୟବ୍ରତ ଉଠୁ ଉଠୁ କହିଲା  ମୋର ଆଉ ଗୋଟିଏ ଅନୁରୋଧ ମିଷ୍ଟର ସାମନ୍ତ, ମୋତେ ଟିକିଏ ଚାମେଲୀର ଘରଟା ଦେଖିବାର ଅନୁମତି ଦେବାକୁ ହେବ । ମୁଁ ଖାଲି ଥରେ ଘର ଭିତରଟା ଦେଖିଆସିବି ।

ନୀଳମଣି ବାବୁ ଆପତ୍ତି କଲେ ନାହିଁ ।

ସେ ଗୋଟାଏ ଘର ଖୋଲିଦେଇ କହିଲେ : ଏଇ ଘରଟା ଥିଲା ଚାମେଲୀର । ସେ ଏଇ ଘରେ ରହୁଥିଲା, ରିଆଜ କରୁଥିଲା । ତା'ର ବନ୍ଧୁ-ବାନ୍ଧବମାନେ ଏଇ ଘରେ ଆସି ବସୁଥିଲେ । ଆଳାପ କରୁଥିଲେ ।

ଘରଟା ଖୋଲିଦେବା ମାତ୍ରକେ ଗୋଟାଏ ଝାପ୍‌ସା ଗନ୍ଧ ଆସି ନାକରେ ବାଜିଲା । ବୋଧହୁଏ କେତେଦିନ ହେବ ବନ୍ଦ ହୋଇ ଥିବାରୁ ଏପରି ଗନ୍ଧ ବାହାରୁଥିଲା । କିନ୍ତୁ ଘର ଭିତରେ ପଶି ଦେଖିଲୁ, ଘରଟା ଭୀଷଣ ଅପରିଷ୍କାର। ଆସବାବପତ୍ର ଭିତରେ ଗୋଟାଏ କୋଣକୁ ଡେରା ହୋଇ ଥୁଆ ହୋଇଛି ଗୋଟାଏ ତାନ୍‌ପୁରା ଆଉ ଗୋଟାଏ ବଡ଼ ବାକ୍‌ସ ଖୋଲା ପଡ଼ିଛି, ତା'ଭିତରେ ଗୋଟାଏ ହାରମୋନିଅମ୍, ହଳେ ତୁବି ତବଲା, ଗୋଟାଏ ତକ୍ତପୋଷ, ଗୋଟାଏ ଆଇନା ଆଉ ଗୋଟାଏ ଭଙ୍ଗା କାଚ ଆଲମାରୀ  ତ'ଛଡ଼ା କିଛି କାଗଜ-ପତ୍ର, ବହିପତ୍ର ଏବଂ ଛିଣ୍ଡାକନା, କାଗଜ ଠୁଙ୍ଗା ଓ ଗୁଡ଼ାଖୁ ଡବା ଇତ୍ୟାଦି ।

ସତ୍ୟବ୍ରତ ଘରେ ପଶି ଚାରିଆଡ଼କୁ ଥରେ ଚାହିଁଲା ।

ଆଗେଇ ଯାଇ ତାନ୍‌ପୁରା ତାରରେ ଟିକଏ ହାତ ମାରି ଦେଖିଲା । ତକ୍ତପୋଷ

ଉପରେ ପଡ଼ିଥିବା ବିଛଣାକୁ କିଛି ସମୟ ଏକ ଦୃଷ୍ଟିରେ ଚାହିଁବା ପରେ ନଇଁପଡ଼ି ଗଦିଟା ଟେକିଦେଲା ।

ଭିତରେ ଛିଣ୍ଡା, ଚିରା ଅନେକ କାଗଜପତ୍ର । ଗୋଟିଏ ମୋଟା ଏକ୍‌ସର୍ ସାଇଜ ଖାତା । ସେଇଟିକୁ ଉଠାଇ ଆଣି ଦେଖିଲା- କେତେଗୁଡ଼ିଏ ଗୀତ ଲେଖା ହୋଇଛି । ସେଇଟିକୁ ଯଥା ସ୍ଥାନରେ ରଖିଦେଇ ଆଲମାରୀଟା ଖୋଲି ପକାଇଲା । କେଇଖଣ୍ଡ ଲୁଗାପଟା, ଏକସରସାଇଜ୍ ଖାତା ଏବଂ ତିନି ଚାରିଟା ଛୋଟ ଛୋଟ ଖାଲି ଶିଶି ।

ଶିଶିରୁ ଗୋଟାଏ ଆଣି ସତ୍ୟବ୍ରତ ଦେଖିଲା । ନୀଳମଣି ସାମନ୍ତଙ୍କୁ ଉଦ୍ଦେଶ୍ୟ କରି କହିଲା  ଚାମେଲୀ ହୋମିଓପାଥିକ ଔଷଧ ବ୍ୟବହାର କରୁଥିଲା ବୋଧହୁଏ ।

ନୀଳମଣି ବାବୁ ସତ୍ୟବ୍ରତ ହାତରୁ ଶିଶିଗୁଡ଼ିକ ଦେଖି, ପ୍ରଶ୍ନର ଉଦ୍ଦେଶ୍ୟ ବୁଝିପାରି କହିଲେ  ନା, ସେଗୁଡ଼ିକ ହୋମିଓପାଥିକ ଔଷଧର ଶିଶି ନୁହେଁ । ତା' ଭିତରେ ତାନ୍‌ସେନ୍ ଟାବଲେଟ୍ ଥାଏ ।

ତାନ୍‌ସେନ୍ ଟାବଲେଟ୍ ? ସତ୍ୟବ୍ରତ ପଚାରିଲେ ।

ଏକ ମଶଲା ଜାତୀୟ । ତା'ଛଡ଼ା କଣ୍ଠ ସଫା ରଖିବା ଦିଗରେ ବୋଧହୁଏ ସହାୟତା କରେ। କାରଣ ଚାମେଲୀ ଅନେକ ଦିନରୁ ଏହି ଟାବଲେଟ୍ ଖାଉଥିବାର ମୁଁ ଲକ୍ଷ୍ୟ କରିଛି ।

ଆଚ୍ଛା !

ସତ୍ୟବ୍ରତ ଖାଲିଶିଶିଗୁଡ଼ିକ ପୁଣି ଯଥାସ୍ଥାନରେ ରଖିଦେଇ ଆଲମାରୀର କବାଟ ବନ୍ଦ କରିଦେଇ ଆମ ପାଖକୁ ଚାଲିଆସିଲା ।

ନୀଳମଣି ବାବୁଙ୍କୁ ଲକ୍ଷ୍ୟ କରି କହିଲା  ଚାମେଲୀ କେତେଦିନ ହେବ ରେଆଜ ବନ୍ଦ କରି ଦେଇଥିଲା ?

ମାନେ?

: ତାନପୁରାଟାର ଅବସ୍ଥା ଭଲ ନୁହେଁ, ଅବସ୍ଥା ଦେଖି ମନେ ହେଉଛି, ଅନେକ ଦିନରୁ ଏଇଟା ଅକାମୀ ହୋଇପଡ଼ିଛି ।

ନୀଳମଣି ସାମନ୍ତଙ୍କ ଆଖିରେ ବିସ୍ମୟ ଫୁଟି ଉଠିଲା । କଣ୍ଠରେ ମଧ୍ୟା ସେ କହିଲେ  ମୁଁ କିନ୍ତୁ ଏତେଟା ଲକ୍ଷ୍ୟ କରିନାହିଁ ।

ଆଚ୍ଛା, ଆପଣ ଏଥର ଘରର ଦରଜା ବନ୍ଦ କରନ୍ତୁ ।

ନୀଳମଣି ସାମନ୍ତ ଦରଜା ବନ୍ଦ କଲେ ।

ସତ୍ୟବ୍ରତ ପଚାରିଲା । ଜଗଜ୍ୟୋତି କ'ଣ ପିଲାଦିନୁ ଏହିପରି, ନା କିଛି ରୋଗ ଫୋଗ ଭୋଗି...

ନୀଳମଣି ସାମନ୍ତ ଆମ ସଙ୍ଗରେ ଆଗେଇ ଆସୁଆସୁ କହିଲେ  ଛଅ ସାତବର୍ଷ ଯାଏ ସେ ଠିକ୍ ଥିଲା । ସେତେବେଳ ଯାଏ ମାଇଣ୍ଡର ଡେଭଲପ୍ ଠିକ୍

ଭାବରେ ହେଉଥିଲା । ତା'ପରେ ଥରେ ସେ ଟାଇଫଏଡ୍‌ରେ ଆକ୍ରାନ୍ତ ହୋଇ ପରବର୍ତ୍ତୀ କାଳରେ ତା' ମାଇଣ୍ଡ୍ ପାରାଲିସିସ୍ ହୋଇଗଲା । ସାତ ଆଠବର୍ଷ ସେହି ଅବସ୍ଥାରେ କଟିଗଲା । ଏଇ ତିନି ଚାରିବର୍ଷ ହେବ ମୁଣ୍ଡର ଟିକିଏ ଉନ୍ନତି ଘଟୁଛି ବୋଲି ଡାକ୍ତର ପଟ୍ଟନାୟକ କହୁଛନ୍ତି । ଆମେ ବି ଲକ୍ଷ୍ୟ କରୁଛୁ । କିନ୍ତୁ ଶିଶୁସୁଲଭ ଭାବ ଏ ପର୍ଯ୍ୟନ୍ତ ସେ ଛାଡ଼ିପାରିନାହିଁ ।

ହୁଁ, ଆପଣ ଆଉ ଆସନ୍ତୁ ନାହିଁ ମିଷ୍ଟର ସାମନ୍ତ । ଘରକୁ ଯାଆନ୍ତୁ। ଆପଣଙ୍କର ଏହି ଦୁର୍ଦ୍ଦିନରେ ଆମର କେବଳ ସହାନୁଭୂତି ଜଣାଇବା ଛଡ଼ା କରିବାର କିଛି ନାହିଁ । ବରଂ ଆମେ ଆସି ଅଧିକ ଦୁଃଖ ଦେଲୁ ।

ନା ନା, ନୀଳମଣି ସାମନ୍ତ ଟିକିଏ ହସିବାକୁ ଚେଷ୍ଟା କଲେ, କିନ୍ତୁ ତାହା ବେଦନାର୍ତ୍ତ ପରି ମନେ ହେଲା ।

ଆମ ଗାଡ଼ି ଛାଡ଼ିବା ଯାଏ ସେ ଆମରି ଆଡ଼େ ଚାହିଁ ଠିଆ ହୋଇଥିଲେ।

ଏହି ଘଟଣାର ଦୁଇଦିନ ପରେ ଆମେ ଯାଇ ଅନୁରାଧା ଘରେ ପହଞ୍ଚିଲୁ ।

ଅନୁରାଧାର ବାପା ନାହାନ୍ତି । ମା' ଆଉ ଗୋଟିଏ ଭଉଣୀ ।

ନୀହାରିକା ଅନୁରାଧାର ସାନଭଉଣୀ । ସେ ଅନୁରାଧା ଠାରୁ ଦୁଇବର୍ଷର ସାନ ।

ନୀହାରିକା ଆମକୁ ସବୁକଥା କହିଲା ।

ବାପା ମରିଯିବା ଦିନଠାରୁ ସେମାନେ ବଡ଼ କଷ୍ଟରେ ଅଛନ୍ତି । ଏଇ ଯେଉଁ ଅଧା ତିଆରି ଘରଟିରେ ସେମାନେ ବସବାସ କରୁଛନ୍ତି, ତା' ବାପା ବହୁ କଷ୍ଟରେ ଏକଦା କରାଇଥିଲେ । ତା'ପରଠାରୁ ସେମାନଙ୍କୁ ନିର୍ଭର କରିବାକୁ ପଡୁଛି ଅନୁରାଧା ଉପରେ । ତା'ରି ରୋଜଗାରରେ ସେମାନେ ଚଳନ୍ତି । ବହୁ ଚେଷ୍ଟା କରି ମଧ୍ୟ ନୀହାରିକା କେଉଁଠି ହେଲେ ଚାକିରି ଖଣ୍ଡିଏ ଯୋଗାଡ଼ କରିପାରି ନାହିଁ ।

ମୁଁ ନୀହାରିକାର ମୁହଁକୁ ଏକଲୟରେ ଚାହିଁଲି । ନୀହାରିକା ସୁନ୍ଦରୀ। ବୟସ ଉଣେଇଶି କୋଡ଼ିଏ ହେବ । ଟିକିଏ ଚଞ୍ଚଳ, କଥା କହିବାର ଭଙ୍ଗୀ କ୍ଷିପ୍ର ।

ସତ୍ୟବ୍ରତ କହିଲା ଅନୁରାଧା ଠିକ୍ କେତେବେଳେ ଫେରିବ ତମେ ଜାଣି ନାହଁ ?

: ନା, ଅପା ମୋତେ ଗୀତ ଶିଖିବାକୁ ବାରଣ କରିଦେଇଛି । ମା'ର ଇଚ୍ଛା ଥିଲେ ବି ଅପା ରାଜି ହେଲାନାହିଁ । ସେ କହିଲା, ଝିଅମାନେ ଗୀତ ବା ନାଚ ଶିଖିବା ଭଲ ନୁହେଁ । ଫଳରେ ମୋ ଗୀତ ଶିଖା ବନ୍ଦ ହେଲା ।

ଚାମେଲୀ ତମ ଘରକୁ ଆସୁଥିଲା ?

ହଁ ଚାମେଲୀ ଅପା ଆଗେ ଆସୁଥିଲେ ଏବେ ଆଉ ଅନେକ ଦିନ ହେବ ଆସନ୍ତି ନାହିଁ ।

କାରଣ ?

ମୁଁ କେମିତି ଜାଣିବି ?

ତମ ଅପା କିଛି କହୁ ନ ଥିଲେ ?

ନା, ମୁଁ କିଛି ପଚାରି ନାହିଁ । ତେବେ ମୋର ମନେ ହେଉଛି ଅପା ସହିତ ଚାମେଲୀ ଅପାର ବୋଧହୁଏ କଳି ହୋଇଥିଲା ।

ହୁଁ ।

ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତା କରି ପ୍ରସଙ୍ଗ ବଦଳେଇଲା ।

ଆଚ୍ଛା ତମ ମା' ଘରେ ନାହାନ୍ତି ?

ଅଛି । ଠାକୁର ଘରେ ପୂଜା କରୁଛି । ବାପା ମରିଯିବା ଦିନରୁ ମା' ବାହାରର କୌଣସି ଲୋକ ସହିତ ଦେଖା କରେ ନାହିଁ । ଯେତେବେଳେ ଯାଏ କାମଦାମ ଥାଏ କରେ, ନହେଲେ ଠାକୁର ଘରେ ବସି ପୁରାଣ ପଢୁଥାଏ ।

ତାହେଲେ ମା'ଙ୍କ ସହିତ ଦେଖା ହେବନାହିଁ ?

ନୀହାରିକା ମୁହୂର୍ତ୍ତେ ନୀରବ ରହି ଟିକିଏ ଚିନ୍ତା କରି କହିଲା ଆପଣମାନେ ପୋଲିସ୍ ଲୋକ । ଯଦି ନିତାନ୍ତ ଦରକାର ଥାଏ, ତା'ହେଲେ କହିଲେ ମୁଁ ମା'ଙ୍କୁ ଯାଇ କହିବି ।

ନା ନା ବିଶେଷ କିଛି ଦରକାର ନାହିଁ । ତେବେ ଅନୁରାଧା ଯେଉଁ ଘରେ ରୁହେ, ସେଇ ଘରଟା ଟିକିଏ ଦେଖି ପାରିଲେ ଆପାତତଃ ଆମେ ଫେରିଯିବୁ ।

ଅପାର ସେମିତି କିଛି ଅଲଗା ଘର ନାହିଁ । ଆମର ମୋଟରେ ଚାରୋଟି ଘର । ଗୋଟିଏ ଘରେ ଠାକୁର ରୁହନ୍ତି, ଗୋଟିଏ ଘରେ ରୋଷେଇବାସ ହୁଏ, ଆଉ ଗୋଟିଏ ଘରେ ଅପା ଆଉ ମୁଁ ରହୁ । ଏଇ ଘରଟି ଆମ ବୈଠକଖାନା କୁହନ୍ତୁ, ପଢ଼ାଘର କୁହନ୍ତୁ, ସବୁ । ରାତିରେ ମା' ଏଇ ଘରେ ଶୁଏ ।

ସତ୍ୟବ୍ରତ କହିଲା ତମେ ଆଉ ତମର ଅପା ଯେଉଁ ଘରେ ରୁହ, ସେ ଘରଟା କେଉଁଠି ?

ଆସନ୍ତୁ ମୋ ସହିତ ।

ନୀହାରିକା ପାଖ ଘରକୁ ଡାକି ନେଇଗଲା ।

ଗୋଟିଏ ମଧ୍ୟମ ଧରଣର ଘର । ଦୁଇଟି ତକ୍ତପୋଷ ପଡ଼ିଛି । ଗୋଟାଏ ଆଲଣା । ସାମାନ୍ୟ କିଛି ଲୁଗାପଟା । ଦୁଇଟା କଳା ଜଙ୍କ୍‌ଲଗା ଟ୍ରଙ୍କ । ଗୋଟାଏ ପୁରୁଣା କାଠ ଆଲମାରୀ । ଘରର ଗୋଟାଏ କୋଣକୁ ଛିଣ୍ଡାକାଗଜ ଇତ୍ୟାଦି ଜମା ହୋଇଛି ।

ସତ୍ୟବ୍ରତ ଘରର ଦୁଆର ମୁହଁରେ ଠିଆହୋଇ ଚାରିଆଡ଼କୁ ଥରେ ଚାହିଁଲା । ତା'ପରେ ଧୀରେଧୀରେ ଘର ଭିତରେ ପଶି, ଟେବୁଲ ଉପରୁ ଗୋଟାଏ ଖାତା ଉଠାଇଲା । ସେଇଟି ଗୋଟାଏ ସର୍ଟହ୍ୟାଣ୍ଡ ନୋଟ୍‌ବୁକ୍ ।

ନୀହାରିକା ମୁହଁକୁ ଚାହିଁଲା ।

ନୀହାରିକା କହିଲା ଅପା ଅଫିସର ଖାତା ।

ତା'ପରେ ସତ୍ୟବ୍ରତ ଯେଉଁ ଖାତାଟି ଉଠାଇଲା, ସେ ଖଣ୍ଡିକ ଗୋଟିଏ ଏକ୍ସରସାଇଜ୍ ଖାତା ।

ନୀହାରିକା ଏଥର ସାମାନ୍ୟ ହସିବାକୁ ଚେଷ୍ଟା କରି କହିଲା,

ସେଇଟି ମୋର । ଚାମେଲୀ ଅପା ସେଥିରେ ମୋତେ ଗୀତ ଲେଖି ଦେଇଥିଲା !

ସତ୍ୟବ୍ରତ ଟେବୁଲ ଉପରୁ ଆଉ ଖଣ୍ଡେ ଦି'ଖଣ୍ଡ ଖାତାପତ୍ର ଏପାଖ ସେପାଖ ଓଲଟେଇ ଶେଷରେ ବାହାରକୁ ବାହାରି ଆସିଲା ।

ମୁଁ ଆଉ ନୀହାରିକା ପୁଣି ପୂର୍ବ ଘରକୁ ଫେରି ଆସିଲୁ । ସତ୍ୟବ୍ରତ ନୀହାରିକା ମୁହଁକୁ ଅନାଇ କହିଲା ଚାମେଲୀର ଏଇ ଆକସ୍ମିକ ମୃତ୍ୟୁ ସମ୍ବନ୍ଧରେ ତମର ଧାରଣା କ'ଣ ?

ନୀହାରିକା କହିଲା : ମୃତ୍ୟୁ ପୁଣି ଆକସ୍ମିକ କ'ଣ? ଚାମେଲୀ ଅପା ଯେତେଦିନ ବଞ୍ଚିବାର କଥା ସେତିକି ବଞ୍ଚିଲା ।

ହୁଁ, ଆମେ ତା'ହେଲେ ଆସୁଚୁ ନୀହାର । ତମ ଅପା ଆସିଲେ କହିଦେବ, ଆମେ ଆସିଥିଲୁ । ତାଙ୍କୁ ଖୋଜୁଥିଲୁ । ଆଉ କହିବ...

ହଠାତ୍ ସତ୍ୟବ୍ରତ ବାହାରେ ଗୋଟାଏ ମଟର ବାଇକ୍‌ର ଶବ୍ଦ ଶୁଣି ସେଇଆଡ଼େ ଚାହିଁଲା ।

ନୀହାରିକା କହିଲା : ଅପା ଆସିଲାଣି । ରାଜୁଭାଇଙ୍କ ମଟର ସାଇକେଲ ଶବ୍ଦ ମୋର ଅତି ପରିଚିତ ।

ନୀହାରିକା କଥା ଶେଷ ହେଲା ନାହିଁ । ଅନୁରାଧା ଆସି ହଠାତ୍ ଠିଆ ହୋଇଗଲା ।

ନୀହାରିକା କହିଲା : ଅପା ଏମାନେ ପୋଲିସ ଲୋକ । ତତେ ଆସି ଅନେକ ବେଳୁ ଖୋଜୁଛନ୍ତି ।

ବାହାରେ ମଟର ସାଇକେଲ ଚାଲିଯିବାର ଶବ୍ଦ ହେଲା ।

ଅନୁରାଧା ଟିକିଏ ହସିବାକୁ ଚେଷ୍ଟା କରି, ନମସ୍କାର ଜଣାଇ କହିଲା ବସନ୍ତୁ ।

ସତ୍ୟବ୍ରତ ଓ ମୁଁ ପୁଣି ଥରେ ସେ ଘରର ତକ୍ତପୋଷ ଉପରେ ବସିଲୁ ।

ଅନୁରାଧା ଗୋଟିଏ ଟୁଲ ଉପରେ ବସୁବସୁ କହିଲା ଆମର ଦୁର୍ଭାଗ୍ୟ ଆମେ ଚାମେଲୀକୁ ହରାଇଲୁ । ଆପଣମାନେ ଚାମେଲୀର ମୃତ୍ୟୁ ସମ୍ବନ୍ଧରେ ସଠିକ କାରଣ କିଛି ଜାଣି ପାରିଲେ ?

: ନା, ଏପର୍ଯ୍ୟନ୍ତ କିଛି ଜଣା ପଡ଼ିଲା ନାହିଁ । ତେବେ ପୋଷ୍ଟମର୍ଟମ ରିପୋର୍ଟରୁ ବିଷ ଖାଇଥିବା କଥା ଜଣାପଡ଼ିଛି । ସତ୍ୟବ୍ରତ ଶାନ୍ତ ସ୍ୱରରେ କହିଲା ।

ଅନୁରାଧା ମୁହୂର୍ତ୍ତେ ନୀରବ ରହି ନୀହାରିକାକୁ କହିଲା ଭଦ୍ରଲୋକଙ୍କୁ ଚା' ଦେଇଥିଲୁ ?

ନା ।

ସତ୍ୟବ୍ରତ ବାରଣ କଲା । ବର୍ତ୍ତମାନ ଚା' ଖାଇବାକୁ ସମୟ ନାହିଁ ଅନୁରାଧା ଦେବୀ । ଆମେ ଅନ୍ୟ କାମ ନେଇ ଆସିଛୁ । ଖାଲି ଆପଣଙ୍କ ଠାରୁ କେଇଟା କଥା ଜାଣିପାରିଲେ ଫେରିଯିବୁ ।

ତଥାପି... ଯା ନୀହାର । ଶୀଘ୍ର ଟିକିଏ ଚା' କରିଆଣ ।

ନୀହାରିକା ଚାଲିଗଲା ।

ଅନୁରାଧା କହିଲା ଆପଣମାନେ କୁହନ୍ତୁ ।

ସତ୍ୟବ୍ରତ କହିଲା ଚାମେଲୀର ଏହି ଆକସ୍ମିକ ମୃତ୍ୟୁର କାରଣ ସମ୍ବନ୍ଧରେ ଆପଣଙ୍କ ମତାମତ ଜାଣିବାକୁ ଆସିଛୁ ।

ଅନୁରାଧା ମୁହୂର୍ତ୍ତେ ନୀରବ ରହି କହିଲା ଏ ବଡ଼ ଜଟିଳ ପ୍ରଶ୍ନ ସାର୍ । ଥାନାରେ ଆମକୁ ଅଟକ ରଖି ଏହିପରି ନାନା ପ୍ରଶ୍ନ ପଚରା ହୋଇଥିଲା । ଜଣେ ଅଫିସର ମୋତେହିଁ ଉଦ୍ଦେଶ୍ୟ କରି କହି ପକାଇଲେ, ଚାମେଲୀକୁ ହତ୍ୟା କରା ହୋଇଛି ଏବଂ ସେ ହତ୍ୟାକାରୀ ମୁଁ ବୋଲି ତାଙ୍କର କିପରି ଏକ ଧାରଣା ହୋଇଥିଲା, ଏ ହତ୍ୟା ଈର୍ଷାପ୍ରଣୋଦିତ । ଚାମେଲୀ ଯାହାକୁ ଭଲ ପାଉଥିଲା, ମୁଁ ସେଇଆକୁ ଭଲପାଉଥିଲି । ଚାମେଲୀର ଭଲପାଇବା ସେହି ବ୍ୟକ୍ତି ପ୍ରତି ଅତ୍ୟଧିକ ହୋଇଯିବାରୁ ମୁଁ କୁଆଡ଼େ ଈର୍ଷାପ୍ରଣୋଦିତ ହୋଇ ମୋର ପ୍ରତିଦ୍ୱନ୍ଦୀକୁ ମୋ ପଥରୁ ଘୁଞ୍ଚେଇ ଦେବାପାଇଁ ତାକୁ ବିଷ ଦେଇ ହତ୍ୟା କରିଛି ।

ଅନୁରାଧା କଥା ଶେଷ କରି ସତ୍ୟବ୍ରତଙ୍କ ମୁହଁକୁ ନୀରବରେ ଅନେଇ ରହିଲା ।

ସତ୍ୟବ୍ରତ କହିଲା କେଉଁ ପୋଲିସ ଅଫିସର କଣ ସନ୍ଦେହ କଲେ ସେ ସମ୍ବନ୍ଧରେ ମୋର କୌଣସି ବକ୍ତବ୍ୟ ନାହିଁ । ତା'ଛଡ଼ା ମୁଁ ପୋଲିସ ଲୋକ ନୁହେଁ । ମୁଁ ଜଣେ ପ୍ରାଇଭେଟ ଡିଟେକ୍‌ଟିଭ । ପୋଲିସବିଭାଗ ଏଇ କେସ୍‌ଟା ଡିଟେକ୍ଟ କରିବା ପାଇଁ ମୋତେ ଦେଇଛନ୍ତି । ମୁଁ ଆଶା କରୁଛି ଆପଣମାନେ ମୋ ସହିତ ସହଯୋଗ କଲେ ଚାମେଲୀ ହତ୍ୟା ରହସ୍ୟ ଉଦ୍‌ଘାଟନ କରିବା ପାଇଁ ମୋତେ ଟିକିଏ ସହଜ ହେବ ।

ଆପଣ ମୋଠାରୁ କି ପ୍ରକାର ସହଯୋଗ ଆଶା କରନ୍ତି ?

ମୁଁ ଖାଲି ସେଦିନର ଆପଣମାନଙ୍କ ପିକ୍‌ନିକର ଟ୍ରିପର ଗୋଟିଏ ବିବରଣୀ ଆପଣଙ୍କ ମୁହଁରୁ ଶୁଣିବାକୁ ଚାହେଁ ।

ଅନୁରାଧା ମୁହୂର୍ତ୍ତେ ନୀରବ ରହି ଟିକିଏ ଚିନ୍ତା କରି କହିଲା ସେଦିନର ଆମ ପିକ୍‌ନିକର ଟ୍ରିପ୍‌ରେ ବିଶେଷ କିଛି ବିଶେଷତ୍ୱ ନ ଥିଲା । ବରଂ ଅନ୍ୟାନ୍ୟ ଦିନର

ପ୍ଲିଜାରଟ୍ରିପ୍ ଅପେକ୍ଷା ଏଇଟା ଅତି ମାମୁଲି । ପ୍ଲିଜାରଟ୍ରିପରେ ଯେଉଁମାନେ ଯାଇଥିଲେ, ସେମାନଙ୍କ ନାମଧାମ ତ ଆପଣ ଜାଣନ୍ତି । ଆମେ ସେଦିନ ଗୋଟିଏ ପ୍ରାଇଭେଟ୍ କାର୍‌ରେ ବସି ଚିଲିକା ଯାଇଥିଲୁ । ସେଠାରୁ କାଳିଜାଈ ମନ୍ଦିର । ଯାହା ଖାଇବା ଜିନିଷ ନେଇ ଯାଇଥିଲୁ, କାଳିଜାଈ ମନ୍ଦିରରେ ବସି ଖାଇଲୁ । ଅଖିଳ ମହାନ୍ତି ଗୀତ ଗାଇଲେ । ଚାମେଲୀ ବି ଗୀତ ଗାଇଲା । ଆମେ ସୃଷ୍ଟିଛଡ଼ା ଜୀବପରି ସେଠାରେ ଅସ୍ୱାଭାବିକ ଭାବରେ ବୁହେ ନାଚକୁଦ କଲୁ । ଯେତେବେଳେ କ୍ଳାନ୍ତ ହୋଇ ପଡ଼ିଲୁ, ଡଙ୍ଗାରେ ବସି ଧୀରେଧୀରେ ଫେରି ଆସିଲୁ କୂଳକୁ । ତା'ପରେ କାର୍ ଏବଂ କାର୍‌ରେ ବସି କଟକ ।

ଅନୁରାଧା ଏକ ମୁହୂର୍ତ୍ତରେ ସବୁତକ କହି ପକାଇ ନୀରବ ହେଲା ।

ସତ୍ୟବ୍ରତ ପଚାରିଲା : ତା'ପରେ ? ଗାଡ଼ିରେ ଆଉ କିଛି ଘଟଣା ଘଟିନାହିଁ ?

ଘଟଣା ମାନେ ? ଅନୁରାଧା ପଚାରିଲା ।

ମୁଁ କହୁଛି ଗାଡ଼ିରେ ଆଉ କିଛି ଅପ୍ରୀତିକର ଘଟଣା ଘଟିନାହିଁ ? ଏଇ ଯେମିତି ନିଜ ନିଜ ଭିତରେ କଳିଗୋଳ ବା ଆନନ୍ଦରେ ଆତ୍ମହରା ହୋଇ ଅନ୍ୟ କିଛି ।

: ନା, ଗାଡ଼ିରେ କିଛି ସମୟ ବସିବା ପରେ ପ୍ରାୟ ଅଧିକାଂଶଙ୍କୁ ନିଦ ହୋଇ ଯାଇଥିଲା । ଆନନ୍ଦ କଳରୋଳ କରିବାକୁ ଆଉ କେହି ସୁଯୋଗ ପାଇ ନ ଥିଲେ ।

ସେତିକିବେଳେ ନୀହାରିକା ଗୋଟିଏ ଟ୍ରେ'ରେ ଚା'ଆଣି ପହଞ୍ଚିଲା ।

ସତ୍ୟବ୍ରତ ଉଠୁ ଉଠୁ କହିଲା  ଆପଣଙ୍କୁ ଆସି ବିରକ୍ତ କଲି । ଭାବିଥିଲି ଖୋଲାମନ ନେଇ ଆପଣ ମୋତେ ସାହାଯ୍ୟ କରିବେ । କିନ୍ତୁ...

ଅନୁରାଧା କଥା କାଟି କହିଲା : ଆପଣ ଭାବୁଛନ୍ତି ମୁଁ ଅନେକ କଥା ଗୋପନ କରିଗଲି? ଆପଣ ଯଦି ସେପରି ଭାବି ଥାଆନ୍ତି, ମୋର କହିବାର କିଛି ନାହିଁ । କିନ୍ତୁ ବିଶ୍ୱାସ କରନ୍ତୁ, ଏହା ଭିତରେ ଲୁଚାଛପାର କାହାଣୀ କିଛି ନାହିଁ ।

ଆଚ୍ଛା, ଅନୁରାଧା ଦେବୀ ? ମୁଁ ଆପଣଙ୍କୁ ଗୋଟିଏ କଥା ପଚାରିବି, ସତ କହିବେ ? ସତ୍ୟବ୍ରତ କହିଲା ।

ହଁ, ପଚାରନ୍ତୁ ।

: ମୋର ପ୍ରଶ୍ନ ହେଉଛି ଆପଣମାନେ ଯେଉଁ ଚାରିଜଣ ପୁରୁଷଲୋକଙ୍କ ସହିତ ଯାଇଥିଲେ, ସେହି ଚାରିଜଣଙ୍କ ଭିତରୁ ଚାମେଲୀ କାହାକୁ ସବୁଠାରୁ ବେଶୀ ଭଲ ପାଉଥିଲା ?

ଅନୁରାଧା ମୁହଁରେ ବିରକ୍ତିର ଭାବ ଫୁଟିଉଠିଲା । ସେ କଣ୍ଠକୁ ଯଥା ସମ୍ଭବ ସଂଯତ କରି କହିଲା  ଏହା ଆପଣଙ୍କର ବଡ଼ ଅବାନ୍ତର ପ୍ରଶ୍ନ । ଏ ପ୍ରଶ୍ନର ଉତ୍ତର ମୋ ପକ୍ଷରେ ଦେବା ସମ୍ଭବ ନୁହେଁ । ଆଉ ମୁଁ ଜାଣିଥିଲେ ବି ଦେଇ ନ ଥାନ୍ତି ।

ସତ୍ୟବ୍ରତ ହୁଏତ ଅନୁରାଧା ଠାରୁ ଏପରି ଉତ୍ତର ଆଶା କରି ନ ଥିଲା ।

କହିଲା: ଆଚ୍ଛା ଆଜି ଆମେ ଆସୁଛୁ । ହୁଏତ ପୁଣି ଆପଣଙ୍କ ସହିତ ଦେଖାହୋଇ ପାରେ !

ଦିନ ଚାରିଟାବେଳେ ଆମେ ଯେତେବେଳେ ରାଜକିଶୋର ରଥଙ୍କ ଘରେ ପହଞ୍ଚିଲୁ, ବାହାରେ ମରଟ ସାଇକେଲଟା ଥୁଆ ହୋଇଥିଲା ।

କଲିଂବେଲ୍ ଟିପିବା ମାତ୍ରକେ ଗୋଟିଏ ପିଲା ଆସି ଦରଜା ଖୋଲିଦେଇ ସଙ୍ଗେସଙ୍ଗେ କହିଲା  ବାବୁ ଘରେ ନାହାନ୍ତି ।

ସତ୍ୟବ୍ରତ ସେଇ ପିଲାଟି ମୁହଁ ଉପରୁ ଆଖି ଲେଉଟାଇ, ମଟର ସାଇକେଲ ଉପରେ ଆଖି ବୁଲେଇ ନେଇ କହିଲା  ତା'ହେଲେ ଘରେ ଆଉ କିଏ ଅଛନ୍ତି ?

ମା, ପିଲାମାନେ ।

ବାବୁ କୁଆଡ଼େ ଯାଇଛନ୍ତି ?

ବହି ଦୋକାନରେ ଥିବେ ।

କେତେବେଳେ ଗଲେ ?

ଏଇ ଟିକକ ଆଗରୁ ।

ଆଚ୍ଛା, ଆମେ ଦୋକାନକୁ ଯାଉଛୁ ।

ଆମେ ଫେରି ଆସୁଥିଲୁ । କିନ୍ତୁ ସେହି ପିଲାଟି ପଛରୁ ବାବୁ ବାବୁ ଡାକି ଛୁଟି ଆସି ଆମ ଆଗରେ ଠିଆହେଲା ।

: କିରେ କ'ଣ ହେଲା ?

ପିଲାଟି ଖଣ୍ଡେ କାଗଜ ଓ ପେନ୍‌ସିଲ୍ ବଢ଼ାଇ ଦେଇ କହିଲା,  ଆପଣଙ୍କ ନାଁ ଠିକଣା, ଆଉ କେଉଁ କାମରେ ଆସିଥିଲେ, ସବୁ ଏଇଥିରେ  ଲେଖି ଦେଇ ଯାଆନ୍ତୁ ।

ଦରକାର ନାହିଁ । ଆମେ ତ ଦୋକାନକୁ ଯାଉଛୁ ।

: ନା ଆଜ୍ଞା । ପିଲାଟି ପଥ ଓଗାଳିଲା । କହିଲା, ଆପଣ ଲେଖି ଦେଇ ନ ଗଲେ ମୋ ଚାକିରି ରହିବ ନାହିଁ ।

: ମାନେ ? ମୁଁ ପଚାରିଲି ।

ପିଲାଟି କାନ୍ଦକାନ୍ଦ ହୋଇ କହିଲା  ବାବୁଙ୍କ ହୁକୁମ୍, ସେ ନଥିଲା ବେଳେ ଯିଏ ତାଙ୍କୁ ଖୋଜିବାକୁ ଆସିବ, ତା'ର ନାମ ଠିକଣା, କାମଦାମ, ସବୁ ଲେଖି ରଖିବାକୁ ହେବ । ମୋ ଆଗରୁ ଏଠାରେ ଯିଏ ଥିଲା, ସେ ଏଇଆ କରି ନ ପାରି ତା'ର ଚାକିରି ଯାଇଛି ।

ସତ୍ୟବ୍ରତ ପିଲାଟି ହାତରୁ କାଗଜ ପେନ୍‌ସିଲ ନେଇ ଲେଖୁଲେଖୁ କହିଲେ ତୋ ବାବୁଙ୍କର ତ ଭାରି କଡ଼ା ଶାସନ ଦେଖୁଛି ।

ଆଜ୍ଞା କଡ଼ା ବୋଲି କଡ଼ା । ଏ ଘରେ ଯିଏ ରହିବ, ସିଏ ଖଣ୍ଡାଧାରରେ ବାଟ ଚାଲିବ । ଟିକିଏ ଏପାଖ ସେପାଖ ହୋଇଗଲେ, ବାବୁ କାହାରି ନୁହନ୍ତି । ପିଲାଟି କହିଲା ।

ସତେ ? ସତ୍ୟବ୍ରତ ନାଁ ଠିକଣା ଲେଖି କାଗଜ ବଢ଼ାଇଦେଲେ ।

ଆଜ୍ଞା ହଁ ।

ବେଶ୍ ବେଶ୍ । ସବୁବେଳେ ନିୟମ କାନୁନ୍ ମାନି ଚଳିବା ଭଲ । ବାବୁ ଆସିଲେ କହିବୁ, ଏଇ ଠିକଣାରେ ଆମକୁ ଯାଇ ଦେଖା କରିବେ ।

ପିଲାଟି ଚାଲିଗଲା ।

ଆମେ ବାହାରିଲୁ ବାଙ୍କା ବଜାରକୁ । ରାଜକିଶୋର ରଥଙ୍କ ସହିତ ବହି ଦୋକାନରେ ଦେଖା କରିବାକୁ ।

ଦୋକାନ କାଉଣ୍ଟରରେ ଯେଉଁ ଲୋକଟି ଥିଲେ, ସାମନାରେ ପଡ଼ିଥିବା ଗୋଟିଏ ବେଞ୍ଚ ଦେଖାଇ ଦେଇ କହିଲେ: ଆପଣମାନେ ବସନ୍ତୁ । ସାର୍ ବର୍ତ୍ତମାନ ବ୍ୟସ୍ତ ଅଛନ୍ତି ।

ଆମେ ବସିଲୁ ।

ସେଲ୍ସମ୍ୟାନଟି ଗୋଟିଏ କ୍ୟାସମେମୋ ଟୋଟାଲ କରିସାରି, ଗ୍ରାହକଙ୍କ ଠାରୁ ଟାଙ୍କା ନେଇ ବହିପୁଡ଼ିଆଟି ବଢ଼ାଇ ଦେଲା ।

ତା'ପରେ ଆମ ଆଡ଼େ ଚାହିଁ, ଅଳ୍ପ ହସି କହିଲା, କୁହନ୍ତୁ ଆଜ୍ଞା ।

ଆମେ ସେତେବେଳକୁ ପ୍ରାୟ ପାଞ୍ଚ ମିନିଟ୍ ଅପେକ୍ଷା କରି ସାରିଥିଲୁ ।

ସତ୍ୟବ୍ରତ ଟିକିଏ ଚିଡ଼ିଲା ସ୍ୱରରେ କହିଲା ଆପଣଙ୍କୁ ଆମର କହିବାର କିଛି ନାହିଁ, ଆପଣଙ୍କ ସାର୍‌ଙ୍କୁ ଟିକିଏ ଖବର ଦିଅନ୍ତୁ ।

ସେଲ୍ସମ୍ୟାନଟି କିନ୍ତୁ ସେହିପରି ନିର୍ଲିପ୍ତ ସ୍ୱରରେ କହିଲା ସାର୍ ଟିକିଏ ବ୍ୟସ୍ତ ଲୋକ ସାର୍ । ଆପଣମାନେ ଆଗରୁ ଟିକିଏ ଆପଏଣ୍ଟମେଣ୍ଟ କରି ଆସିଥିଲେ ଭଲ ହୋଇଥାଆନ୍ତା ।

ମୁଁ ଲକ୍ଷ୍ୟ କରିଥିଲି, ସତ୍ୟବ୍ରତର ମୁହଁ ବିବର୍ଣ୍ଣ ହୋଇଉଠିଥିଲା । ସେ ପକେଟରୁ ଖଣ୍ଡେ କାର୍ଡ଼ ବାହାର କରି ସେଲସ୍‌ମ୍ୟାନ ହାତକୁ ବଢ଼ାଇ ଦେଇ କହିଲା: ତମ ସାର୍‌ଙ୍କୁ ନେଇ ଏଇ ଖଣ୍ଡିକ ଦିଅ ।

ସେଲ୍ସମ୍ୟାନଟି କିନ୍ତୁ ସାମାନ୍ୟ ବିଚଳିତ ହେଲାପରି ମନେ ହେଲା । ସେହିପରି ଶାନ୍ତସ୍ୱରରେ କହିଲା : ବର୍ତ୍ତମାନ କାର୍ଡ଼ ଦେଇ କିଛି ଲାଭ ହେବ ନାହିଁ ସାର୍ । ସାର୍‌ଙ୍କ ଚେମ୍ବରରେ ଅନେକ ଭିଡ଼ । ବିଶେଷ କରି ମାଳବିକା ମହାପାତ୍ର ବର୍ତ୍ତମାନ ଭିତରେ ଅଛନ୍ତି । ନିଶିକାନ୍ତ ପଟ୍ଟନାୟକ, ହୃଦୟ ରଞ୍ଜନ ମହାନ୍ତି ଏବଂ....

ସତ୍ୟବ୍ରତ ବିରକ୍ତ ହୋଇ କହିଉଠିଲା ଏମାନେ ସବୁ କିଏ ?

ସେଲସମ୍ୟାନଟି ବିନୀତ ସ୍ୱରରେ କହିଲା ମୁଁ ଯେଉଁ ନାଁ କହିଲି ଏମାନଙ୍କୁ

ଆପଣ ଜାଣି ନାହାନ୍ତି ? ବର୍ତ୍ତମାନ ସାହିତ୍ୟ ଜଗତରେ ଏମାନେ ହଲଚଲ ସୃଷ୍ଟି କରିଛନ୍ତି । ଏମାନଙ୍କ ବହି ବଜାରକୁ ବାହାରିଲେ ଦିନକରେ ଶେଷ ହୋଇଯାଏ, ଅଥଚ...

ସେଲ୍‌ସମ୍ୟାନର କଥା ଶେଷ ହେଲା ନାହିଁ । କଲିଂବେଲଟା କର୍ କର୍ ହୋଇ ବାଜି ଉଠିଲା ! ପାଖରେ ବସିଥିବା ବୟଟି ଭିତରକୁ ଛୁଟିଯିବା ମାତ୍ରକେ, ଭିତରୁ କିପରି ଏକ ଗର୍ଜନ ଶୁଣାଗଲା । ବୟଟି ପୁଣି ଛୁଟି ଆସି ସେଲ୍‌ସମ୍ୟାନଙ୍କୁ କହିଲା କଫି କ'ଣ ହେଲା ?

କଫି, ମୁଁ ତ କହି ଆସିଥିଲି । ଦଉଡୁ ଦଉଡୁ, ଦୋକାନୀ ଭୁଲି ଯାଉଛି ବୋଧହୁଏ ।

ବୟଟି ଛୁଟି ଆସିବା ପରେ, ଭିତରୁ ସୌମ୍ୟଦର୍ଶନ ଏକ ମଧ୍ୟବୟସ୍କ ଲୋକ ପ୍ୟାଣ୍ଟ ସଜାଡୁ ସଜାଡୁ କାଉଣ୍ଟର ପାଖରେ ଆସି ଠିଆହୋଇ, ସେଲସମ୍ୟାନ କାନରେ ଚୁପ୍‌ଚୁପ୍ କ'ଣ କ'ଣ କହିଲେ । ସେଲ୍‌ସ୍‌ମ୍ୟାନ ଡ୍ରୟାରଟି ଟାଣି ସେହି ଲୋକଟି ହାତକୁ ଖଣ୍ଡିଏ ଶହେଟଙ୍କାର ନୋଟ ବଢ଼ାଇ ଦେଲା । ତା'ପରେ ସେ ସତ୍ୟବ୍ରତ ଓ ମୋ ଆଡ଼କୁ ଟିକିଏ ଚାହିଁ ସ୍ମିତ ହସି ପୁଣି ଭିତରକୁ ପଶିଗଲେ ।

ସେଲସମ୍ୟାନଟି ଆମ ଆଡ଼େ ଚାହିଁ କହିଲା : ସାର୍ ତ ଆସିଥିଲେ । ଆପଣ ତାଙ୍କୁ କହିଲେ ନାହିଁ ଆପଣଙ୍କର ଅର୍ଜେଣ୍ଟ କାମ ଅଛି ବୋଲି ? ଯେତେ ତୋଡ଼ ସବୁ ମୋରି ଉପରେ । ମୁଁ ଏକା ଆପଣଙ୍କୁ ଦୋଷ ଦେଉନାହିଁ ସାର୍ ! ସବୁ ଲେକକମାନେ ସେଇଆ । ସମସ୍ତେ ଆସି ମୋ'ରି ପାଖରେ ମୁହଁ ଭଡ଼ଙ୍ଗୀ ମାରିବେ । ଛାଡ଼ନ୍ତୁ ସାର୍, ଆପଣ କ'ଣ ଆଣିଛନ୍ତି ଦେଇ ଯାଆନ୍ତୁ । ବରଂ ମୁଁ ଆପଣଙ୍କ ପାଇଁ ଚେଷ୍ଟା କରିବି ।

ସତ୍ୟବ୍ରତ ମୋ ମୁହଁକୁ ଅବାକ୍ ହୋଇ ଚାହିଁ, ସେଲ୍‌ସମ୍ୟାନଟି ଆଡ଼େ ଅନାଇ କହିଲା ମାନେ ?

ସେଲ୍‌ସମ୍ୟାନଟି ହସୁ ହସୁ ଉତ୍ତର ଦେଲା : ଏତେ ମାନେ ଫାନେ ମୁଁ ବୁଝେ ନାହିଁ । ସାର୍‌ଙ୍କର କାମ ସରୁ ସରୁ ଆହୁରି ଘଣ୍ଟାଏ । ଆପଣ ଯଦି ଅପେକ୍ଷା କରିବେ କରନ୍ତୁ । ନହେଲେ, ଆପଣଙ୍କ ପାଣ୍ଡୁଲିପିଟା ମୋ ପାଖରେ ରଖି ଦେଇ ଯାଆନ୍ତୁ । ମୁଁ କଥା ଦେଉଚି ଆପଣଙ୍କ ପାଇଁ...

ପୁଣି କଲିଂ ବେଲ୍‌ଟା କ୍ରିଂ କ୍ରିଂ ହୋଇ ବାଜି ଉଠିଲା ।

ଏଥର ସେଲ୍‌ସମ୍ୟାନ ନିଜେ ଉଠିଗଲା । ଫେରି ଆସି ଡ୍ରୟାରରୁ ଗୋଟାଏ ଡାଇରି ଟାଣି ପୃଷ୍ଠା ଓଲଟାଇ କହିଲା ୫ଟାରେ ରମଣୀ ମୋହନ ପାଣିଗ୍ରାହୀଙ୍କ ସହିତ ଜରୁରୀ ସାକ୍ଷାତ । ପୁଣି ଡାଇରିଟା ରଖିଦେଇ ଭିତରକୁ ଉଠିଯାଇ ଫେରି ଆସି କହିଲା, ନୋ ଚାନ୍‌ସ । ସାର୍ ! ସାର୍‌ଙ୍କର ୫ଟାରେ ଗୋଟାଏ ଆପଏଣ୍ଟମେଣ୍ଟ ଅଛି । ମୋର ମନେ ନ ଥିଲା ।

ସେତିକିବେଳେ କଫି ଚାରିପାଞ୍ଚ ଗ୍ଲାସ ଭିତରକୁ ଗଲା ।

କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କଲି, ସତ୍ୟବ୍ରତ ରାଜକିଶୋର ରଥଙ୍କର ବ୍ୟବହାରରେ ଟିକିଏ ମାତ୍ର ବିଚଳିତ ନ ହୋଇ ଧୀରସ୍ଥିର ଭାବରେ ବସି ରହିଥିଲା ।

ସେଲ୍‌ସମ୍ୟାନଟି ପୁଣି କହିଲା ଆଜି ଆଉ ସାର୍‌ଙ୍କ ସଙ୍ଗରେ ଦେଖା ହେବନାହିଁ ସାର୍ । ଅପେକ୍ଷା କରି ବୃଥାଟାରେ ସମୟ ନଷ୍ଟ କରନ୍ତୁ ନାହିଁ ।

ପିଲାଟି କଫିଦେଇ ଫେରି ଯାଉଥିଲା ।

ସେଲ୍‌ସମ୍ୟାନଟି ପୁଣି ପଚାରିଲା କଫି ପିଇବେ ସାର୍ ?

ଆମ ଆଡୁ କୌଣସି ଉତ୍ତର ନ ପାଇ ମଧ୍ୟ ସେ ଦୁଇ କପ୍ କଫି ପାଇଁ ଅର୍ଡ଼ର ଦେଇଦେଲା ।

ମୁଁ ଉଠୁଉଠୁ ସତ୍ୟବ୍ରତକୁ କହିଲି ଆଉ ଅପେକ୍ଷା କରି ଲାଭ କ'ଣ ? ସତ୍ୟବ୍ରତ ମୋ ପ୍ୟାଣ୍ଟ ଟାଣିଦେଇ ଇଙ୍ଗିତରେ ବସିବାକୁ କହିଲା ।

ସଙ୍ଗେସଙ୍ଗେ ସେଲ୍‌ସମ୍ୟାନଟି କହିଉଠିଲା : ମୁଁ କଫି ଅର୍ଡ଼ର ଦେଇଛି ସାର୍। ଏଇକ୍ଷଣି ଆସିଯିବ ।

ଭିତରୁ ବହୁ କଣ୍ଠର ହାସ୍ୟରୋଳ ଏକା ସଙ୍ଗରେ ଉଠି ପୁଣି ବନ୍ଦ ହୋଇଗଲା ।

କିଛି ସମୟର ନୀରବତା ପରେ ପ୍ରଥମେ ମାଳବିକା ମହାପାତ୍ର, ତା'ପରେ ବୋଧହୁଏ ନିଶିକାନ୍ତ ପଟ୍ଟନାୟକ, ତାପରେ ହୃଦୟରଞ୍ଜନ ମହାନ୍ତି, ତା'ପରେ ଆଉ ଜଣେ ପଥର ପାହାଚ ତଳକୁ ଓହ୍ଲାଇଗଲେ । ସର୍ବଶେଷରେ ସୌମ୍ୟଦର୍ଶନ ରାଜକିଶୋର ରଥ ବାହାରକୁ ବାହାରି, ସତ୍ୟବ୍ରତ ଓ ମୋତେ ଲକ୍ଷ୍ୟ କରି କହିଲେ ମୁଁ ଖୁବ୍ ଦୁଃଖିତ ଆଜ୍ଞା, ଗୋଟାଏ ଜରୁରୀ ଆପଏଣ୍ଟମେଣ୍ଟ ଅଛି, ଆପଣ ମୋ ପି.ଏ.ଙ୍କ ସହିତ ଆପଏଣ୍ଟମେଣ୍ଟ କରି ଯାଆନ୍ତୁ, ସେ ଆପଣଙ୍କୁ ସାହାଯ୍ୟ କରିବେ ।

ସର୍ବଶେଷରେ ରାଜକିଶୋର ରଥ ମଧ୍ୟ ପଥର ପାହାଚରୁ ତଳକୁ ଓହ୍ଲାଇ ଗଲେ ।

ହଠାତ୍ ଘର ଭିତରେ ଟେଲିଫୋନ୍‌ଟା ବାଜି ଉଠିବାରୁ, ସେ ଠିଆ ହୋଇପଡ଼ି, ପି.ଏ.ଙ୍କ ଆଡ଼କୁ ଚାହିଁ ଇଙ୍ଗିତରେ ଫୋନ୍‌ଟା ରିସିଭ କରିବାକୁ କହିଲେ ।

ପି.ଏ. କମ୍ ସେଲ୍‌ସମ୍ୟାନ ଉଠିଯାଇ, ସେଇ ଚେମ୍ବରରୁ ଚିତ୍କାର କରି କହିଲେ ରମଣୀ ମୋହନ ପାଣିଗ୍ରାହୀ ସାର୍ !

ରାଜକିଶୋର ରଥଙ୍କ ମୁହଁରେ ଟିକିଏ ବିରକ୍ତି ଫୁଟି ଉଠିଲା । ପୁଣି ସେ ଚେମ୍ବରକୁ ଫେରିଗଲେ ।

ସତ୍ୟବ୍ରତ ସେଲ୍‌ସମ୍ୟାନଙ୍କୁ ଉଦ୍ଦେଶ୍ୟ କରି କହିଲେ ପି.ଏ. ସାହେବ ! ଏଥର ଆପଣଙ୍କ ସାର୍‌ଙ୍କ ସହିତ ଆପଏଣ୍ଟମେଣ୍ଟ ସମୟଟା ଠିକ୍ କରନ୍ତୁ ତ !

ପି.ଏ. ଭଦ୍ରଲୋକ ଡ୍ରୟାର ଟାଣି, ଡାଇରିଟା ଖୋଲି ଦେଖିବାକୁ ଯାଉଛନ୍ତି, କ୍ରିଂ କ୍ରିଂ ହୋଇ କଲିଂବେଲଟା ବାଜି ଉଠିଲା । ସେ ଉଠି ଭିତରକୁ ଚାଲିଗଲେ । ଅଳ୍ପ ସମୟ ପରେ ହସ ହସ ମୁହଁରେ ଫେରି ଆସି କହିଲେ: ଆପଣଙ୍କ ଭାଗ୍ୟ ଭଲ

ସାର୍ । ସାର୍‌ଙ୍କ ପ୍ରୋଗ୍ରାମ କ୍ୟାନସଲ ହୋଇ ଯାଇଛି । ସାର୍ ଆପଣମାନଙ୍କୁ ଭିତରକୁ ଡାକୁଛନ୍ତି ।

ସତ୍ୟବ୍ରତ ଆଉ ସମୟ ନଷ୍ଟ ନ କରି ସଙ୍ଗେସଙ୍ଗେ ଉଠି ଠିଆ ହେଲା । ମୁଁ ବି ଉଠିଲି । ଆମେ ଦୁହେଁ ଯାଇ ରାଜକିଶୋର ରଥଙ୍କ ଚେମ୍ବରରେ ପଶିଲୁ ।

ରାଜକିଶୋରବାବୁ ମୁହଁରେ ସ୍ମିତ ହସ ଫୁଟାଇ ଆମ ଦୁହିଁଙ୍କୁ ଅଭିନନ୍ଦନ ଜଣାଇଲେ । ଚେଆରରେ ବସିବା ପାଇଁ ଇଂଗିତରେ କହିଲେ : ମୁଁ ଭାରି ବ୍ୟସ୍ତଲୋକ ଆଜ୍ଞା, ସବୁବେଳେ ଇଣ୍ଟଲେକ୍‌ଚୁଆଲମାନଙ୍କ ସହିତ କାରବାର । କେତେ ଯେ ଫର୍ମାଲିଟି, କେତେ ଯେ ଜଗିରଖି ଚଳିବାକୁ ହୁଏ, ଆପଣ କଳ୍ପନା କରି ପାରିବେ ନାହିଁ ! ଏହି କବି ଲେଖକମାନେ ଗୋଟିଏ ଗୋଟିଏ ପାଗଳ । କିଏ ଯେ କେତେବେଳେ କ'ଣ ଚିନ୍ତା କରେ, କ'ଣ କୁହେ, ଉଃ... ଏମାନେ ଗୋଟିଏ ଗୋଟିଏ ଲଗାମଛଡ଼ା ଘୋଡ଼ା । ଛାଡ଼ନ୍ତୁ । ହଁ, ଆପଣଙ୍କ କଥା କୁହନ୍ତୁ।

ସତ୍ୟବ୍ରତ କହିଲା  ମୋ ନାଁ ସତ୍ୟବ୍ରତ ମହାପାତ୍ର, ଆଉ ଏ ମୋର ବନ୍ଧୁ, ସବ୍ୟସାଚୀ ଦାସ ।

ରାଜକିଶୋର ରଥ ଆଖି ବୁଜି କିଛି ସମୟ ଚିନ୍ତା କଲେ । ନାଁ ଦୁଇଟି ମୁହଁରେ ଦୁଇ ତିନିଥର ଆଉଡେଇଲେ, ତା'ପରେ ଧୀରେଧୀରେ ଆଖି ଖୋଲି କହିଲେ : ଆପଣମାନଙ୍କ ନାଁରେ କୌଣସି ବହି ପ୍ରକାଶ ପାଇଥିବାର ତ ମୋର ମନେ ପଡୁନାହିଁ । ଛାଡ଼ନ୍ତୁ ! ଆପଣ ଦୁଇଜଣ କ'ଣ କ'ଣ ଲେଖନ୍ତି କହିଲେ ? ଗଳ୍ପ ଉପନ୍ୟାସ ନା କବିତା ପ୍ରବନ୍ଧ ? ଦେଖନ୍ତୁ ମହାପାତ୍ର ବାବୁ ଆପଣମାନେ ଯଦି କବିତା ପ୍ରବନ୍ଧ ଲେଖୁଥାଆନ୍ତି, ସେଇଟା ଅନେକ ଭଲ କଥା । ସୁସ୍ଥ ମନର ପରିଚୟ ! କିନ୍ତୁ ସତ କହିବାକୁ ଗଲେ, କବିତା ପ୍ରବନ୍ଧର ବଜାର ଆମ ଏହି ଓଡ଼ିଶା ପ୍ରଦେଶରେ ବର୍ତ୍ତମାନ ହୋଇ ନାହିଁ । ଗଳ୍ପର କିଛି କିଛି ହୋଇଛି । ତେବେ ରୋମାଣ୍ଟିକ ଉପନ୍ୟାସ ହେଲେ କୌଣସି ପ୍ରକାର ଦୁଇବର୍ଷରେ ଗୋଟିଏ ସଂସ୍କରଣ ଶେଷ କରିହେଉଛି । ତା' ନହେଲେ...

ସତ୍ୟବ୍ରତ କଥା ମଝିରେ ବାଧା ଦେଇ କହିଲା  ଆଉ ଯଦି ରହସ୍ୟ ଉପନ୍ୟାସ ହୁଏ ?

ରାଜକିଶୋର ରଥ ଆଗ୍ରହରେ ଆମ ଆଡ଼କୁ ଝୁଙ୍କିପଡ଼ି କ'ଣ କହି ଆସୁଥିଲେ, କିନ୍ତୁ ହଠାତ୍ ଅଟକି ଯାଇ କହିଲେ,  କ'ଣ କହିଲେ, ଆପଣଙ୍କ ନାଁ ସତ୍ୟବ୍ରତ ମହାପାତ୍ର ? ମାନେ...

ହଁ, ମୁଁ ରହସ୍ୟ ସନ୍ଧାନୀ ସତ୍ୟବ୍ରତ ମହାପାତ୍ର ।

ହଠାତ୍ ରାଜକିଶୋର ରଥଙ୍କ ମୁହଁରେ କିପରି ଚଞ୍ଚଳତା ଫୁଟିଉଠିଲା। ସେ ବ୍ୟସ୍ତ ହୋଇ କଲିଂ ବେଲ ଟିପିଲେ ।

ବୟଟି ପଶି ଆସିଲା ଭିତରକୁ । ସେ କଫି ଅର୍ଡ଼ର ଦେବାକୁ କହିଲେ। ତା

ପରେ ଆମ ଆଡ଼କୁ ଚାହିଁ କହିଲେ ଏଥର ଆପଣଙ୍କ କଥା କୁହନ୍ତୁ ମିଷ୍ଟର ମହାପାତ୍ର ! ଆପଣ ସମାଜର ଜଣେ ହିତାକାଂକ୍ଷୀ । ଆଗରୁ ଜାଣିଥିଲେ ଏତେବେଳେ ଯାଏ ଆପଣଙ୍କ ସମୟ ମୋଟେ ନଷ୍ଟ କରିନଥାନ୍ତି । ଯାହାହେଉ ଏଥର କୁହନ୍ତୁ ।

ସତ୍ୟବ୍ରତ କହିଲା ନା ନା, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମିଷ୍ଟର ରଥ ! ଆପଣଙ୍କ ବ୍ୟବସାୟରେ ବାଧା ସୃଷ୍ଟି କରି କିଛି କହିବାକୁ ମୁଁ ଆସି ନାହିଁ । ସେଥିପାଇଁ ଅପେକ୍ଷା କରିଥିଲି । ଯାହା ହେଉ, ମୋ କଥା ମୁଁ ସଂକ୍ଷେପରେ କହୁଛି । ଚାମେଲୀ ସାମନ୍ତଙ୍କ ହତ୍ୟା ରହସ୍ୟ ଉଦ୍‌ଘାଟନ ପାଇଁ ପୋଲିସ ଡିପାର୍ଟମେଣ୍ଟ ମୋ ଉପରେ ଦାୟିତ୍ୱ ଦେଇଛନ୍ତି । ଆପଣ ତ ଜାଣନ୍ତି ସେହି ଘଟଣା ସହିତ ଆପଣ ଜଡ଼ିତ । ତେଣୁ ମୁଁ ବାଧ ହୋଇ ଆପଣଙ୍କ ପାଖକୁ ଆସୁଛି । ଖାଲି ଦି' ଚାରି କଥା ଜାଣିବା ପାଇଁ । ଆଶା କରୁଛି ଆପଣଙ୍କ ସହଯୋଗ ପାଇବି ।

ନିଶ୍ଚୟ, ନିଶ୍ଚୟ । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଛି ଚାମେଲୀର ମୃତ୍ୟୁକୁ ଆପଣମାନେ 'ହତ୍ୟା' ବୋଲି ଧରି ନେଇଛନ୍ତି ଏବଂ ଚାମେଲୀର ହତ୍ୟାକାରୀକୁ ଧରିବା ପାଇଁ ପୋଲିସ ଡିପାର୍ଟମେଣ୍ଟ ବିଭିନ୍ନ ପ୍ରକାର ଉପାୟ ଅବଲମ୍ବନ କରୁଛନ୍ତି । କିନ୍ତୁ ଚାମେଲୀକୁ କିଏ ହତ୍ୟା କରିବ କାହିଁକି ? ଆମେ ଯେଉଁ ଛଅଜଣ ପ୍ଲିଜାର ଟ୍ରିପ୍‌ରେ ଯାଇଥିଲୁ, ଆମେ ସମସ୍ତେ ପରସ୍ପରର ବନ୍ଧୁ । ବହୁ ପରିଚିତ, ବହୁ ବିଶ୍ୱାସୀ । କାହାରି ସହିତ କାହାରି କୌଣସି ଶତ୍ରୁତା ନ ଥିଲା କିମ୍ବା ବର୍ତ୍ତମାନ ବି ନାହିଁ । ଘଟଣାଚକ୍ରରେ ଗୋଟାଏ ଦୁର୍ଘଟଣା ଘଟିଲା, ମାନେ ଆମ ଭିତରୁ ଜଣେ ମରିଗଲା, ତା' ବୋଲି ଅନ୍ୟ ପାଞ୍ଚଜଣଙ୍କୁ ବା ପାଞ୍ଚଜଣ ମଧ୍ୟରୁ ଜଣକୁ ହତ୍ୟା ଅପରାଧରେ ଅପରାଧୀ କରିବାର ଯୁକ୍ତି ମୁଁ ଖୋଜି ପାଉନାହିଁ ।

ସତ୍ୟବ୍ରତ କହିଲା : ଆପଣ ଠିକ୍ କହିଛନ୍ତି ମିଃ ରଥ ! ମୋର ବି ସେଇଆ ମତ । ତଥାପି ପୋଲିସ ବିଭାଗ ଏହା ବିଶ୍ୱାସ କରିବାକୁ ଚାହେଁ ନାହିଁ । ଚାମେଲୀର ଏ ମୃତ୍ୟୁ ସାଧାରଣ ମୃତ୍ୟୁ ନୁହେଁ ବୋଲି ଡାକ୍ତରମାନେ କହୁଛନ୍ତି । ଅତି ସହଜ କଥାରେ ଚାମେଲୀ ପେଟରୁ ବିଷ ବାହାରିଛି । ତେଣୁ ପୋଲିସର ଧାରଣା ହୋଇଛି ହୁଏତ ଚାମେଲୀ ନିଜ ହାତରେ ବିଷ ଖାଇଛି ଅଥବା ତାକୁ କେହି ବିଷ ଖୋଇଛି ।

ରାଜକିଶୋର ରଥ ମୁହୂର୍ତ୍ତେ ନୀରବ ରହି ଆଖିବୁଜି କ'ଣ ଟିକିଏ ଚିନ୍ତା କରି କହିଲେ : କିନ୍ତୁ ଦୁଇଟାଯାକ କଥାରୁ କେଉଁଟାକୁ ମୁଁ ବିଶ୍ୱାସ କରିବାକୁ ଚାହେଁନା । କାରଣ ମୁଁ ଚାମେଲୀକୁ ଏତେ ଗଭୀର ଭାବରେ ଜାଣିଥିଲି ଯେ, ଚାମେଲୀର ଆତ୍ମହତ୍ୟା କରିବାର କୌଣସି କାରଣ ନ ଥିଲା । ତା'ଛଡ଼ା ଆମର ବନ୍ଧୁମାନଙ୍କୁ ମୁଁ ଭଲଭାବରେ ଚିହ୍ନେ । ସେ ଯାହାହେଉ, ମୋତେ ବର୍ତ୍ତମାନ କଣ କରିବାକୁ ହେବ ଆପଣ କୁହନ୍ତୁ ।

ସତ୍ୟବ୍ରତ କହିଲା ଆପଣଙ୍କୁ କିଛି କରିବାକୁ ହେବ ନାହିଁ ମିଷ୍ଟର ରଥ ! ଆପଣ ଖାଲି ଏତିକି କୁହନ୍ତୁ, ଚାମେଲୀର ପାକସ୍ଥଳୀରୁ ବିଷ ବାହାରିଛି ଯେତେବେଳେ,

ନିଶ୍ଚୟ ସେ ବିଷ ଖାଇଛି, ନତୁବା ତାକୁ କେହି ଖୁଆଇଛି । ସେଇ ଖାଇବା ବା ଖୁଆଇବା ଭିତରେ କେଉଁଟା ସତ୍ୟ ?

ମାଫ କରିବେ ମିଷ୍ଟର ମହାପାତ୍ର । ଏ ସମ୍ବନ୍ଧରେ ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ ।

ତା' ହେଲେ ଆପଣ କ'ଣ ପୋଷ୍ଟମର୍ଟମ ରିପୋର୍ଟକୁ ବିଶ୍ୱାସ କରନ୍ତି ନାହିଁ ?

: କରେ, କିନ୍ତୁ କ'ଣ ଜାଣନ୍ତି ମିଷ୍ଟର ମହାପାତ୍ର, କେତେକ କ୍ଷେତ୍ରରେ ଏହି ରିପୋର୍ଟଗୁଡ଼ିକ ଇମ୍ପାରସିଆଲ ହୁଏ ନାହିଁ । ଏଇତ ମୁଁ କାଗଜରେ କାଲି ଗୋଟିଏ ଘଟଣା ପଢୁଥିଲି । ଅବଶ୍ୟ ଘଟଣାଟା ଆମେରିକାରେ ଘଟିଛି। ଗୋଟିଏ ମୃତଲୋକକୁ ପୋଷ୍ଟମର୍ଟମ କରାହୋଇ ତା'ପେଟରୁ ବିଷ ବାହରିଲା। ପୋଲିସ ସେହି ମୃତ ଲୋକଟିର ସ୍ତ୍ରୀକୁ ବିଷ ଦେଇଥିବା ସନ୍ଦେହ କରି ଆରେଷ୍ଟ କଲେ । ସ୍ତ୍ରୀଲୋକଟି କଠୋର ଭାବରେ ପ୍ରତିବାଦ କଲା । କିନ୍ତୁ ପୋଷ୍ଟମର୍ଟମ ରିପୋର୍ଟ ତ ମିଛ ହୋଇ ନପାରେ । ପାକସ୍ଥଳୀରୁ ବିଷ ବାହାରିଛି ।

ଶେଷରେ ମୃତଦେହଟିକୁ ଆଉଥରେ ପୋଷ୍ଟମର୍ଟମ କରାହେଲା । ଜଣାଗଲା ଯେ...

ସତ୍ୟବ୍ରତ ବାଧା ଦେଇ କହିଲେ   ରିପୋର୍ଟଟା ମିଛ ଏବଂ ଡାକ୍ତରକୁ ଲାଞ୍ଚ ଦିଆହୋଇ ଏହା କରାହୋଇଛି ।

ରାଜକିଶୋର ରଥ କହିଲେ   ଅନେକଟା ସେଇ ଧରଣର । ଡାକ୍ତରଙ୍କୁ ଅବଶ୍ୟ ଲାଞ୍ଚ ଦିଆ ହୋଇ ନ ଥିଲା । ଡାକ୍ତରଙ୍କ ଆନାଲିସିସ୍‌ରେ ଭୁଲ ହୋଇଥିଲା ।

ସତ୍ୟବ୍ରତ କହିଲା   ଚାମେଲୀ କ୍ଷେତ୍ରରେ କିନ୍ତୁ କୌଣସି ପ୍ରକାର ସନ୍ଦେହର ଅବକାଶ ନାହିଁ । ସେ ଯାହାହେଉ, ଆପଣ ଆମକୁ ସହଜ ଭାବରେ ଗ୍ରହଣ କରୁ ନାହାନ୍ତି ଯେତେବେଳେ ଆମେ ଉଠୁଛୁ ।

ରାଜକିଶୋର ରଥ ବ୍ୟସ୍ତ ହୋଇପଡ଼ି କହିଲେ   ଆପଣ ମୋଟେ ଭୁଲ ବୁଝନ୍ତୁ ନାହିଁ ମିଷ୍ଟର ମହାପାତ୍ର । ମୁଁ କିନ୍ତୁ ଏହିପରି ଗୋଟାଏ ଘଟଣାକୁ ବିଶ୍ୱାସ କରି ପାରୁନାହିଁ । ଚାମେଲୀ ମରିଛି ସତ୍ୟ, କିନ୍ତୁ ସେ ବିଷ ଖାଇ ଆତ୍ମହତ୍ୟା କରିଛି ବା ତାକୁ କେହି ବିଷ ଖୁଆଇ ଦେଇଛି, ଏହା ମୁଁ ମୋଟେ ସ୍ୱୀକାର କରି ପାରୁନାହିଁ । ତଥାପି ମୁଁ ଆପଣଙ୍କ କଥା ମାନି ନେଉଛି । ମୋତେ କ'ଣ କରିବାକୁ ହେବ ଆପଣ କୁହନ୍ତୁ ।

ଶୁଣନ୍ତୁ ମିଷ୍ଟର ରଥ । ମୁଁ ଯାହା କହୁଛି ଆପଣ ଟିକିଏ ମନଦେଇ ଶୁଣନ୍ତୁ । ମୁଁ ଆଜି ମୋ ପ୍ରଶ୍ନର ଜବାବ ଆପଣଙ୍କଠାରୁ ଚାହୁଁ ନାହିଁ । ଆଜି ରାତିରେ ଆପଣ ଭାବିଚିନ୍ତି,. ମନକୁ ପ୍ରଶ୍ନ ପଚାରି ବିଚାର କରି ଦେଖିବେ, ହୁଏତ ମୁଁ କାଲି ବା ଆଉଦିନେ ଆସି ମୋ ଜବାବ ଆପଣଙ୍କଠାରୁ ନେଇଯିବି ।

ହେଉ, ଆପଣଙ୍କ କଥା ଏଥର ମୋତେ କୁହନ୍ତୁ ।

ସତ୍ୟବ୍ରତ କହିଲା ଆପଣମାନେ ବନ୍ଧୁ ଓ ବାନ୍ଧବୀ ମିଶି ଛଅଜଣ । ଆପଣମାନଙ୍କ ମଧ୍ୟରେ ଗଭୀର ଆନ୍ତରିକତା, ଅସମ୍ଭବ ଆତ୍ମବିଶ୍ୱାସ । ତଥାପି ଆପଣମାନେ ଚାରିଜଣ ପୁରୁଷ ଓ ଦୁଇଜଣ ନାରୀ ।

ସେ ଯାହାହେଉ, ମୁଁ କହୁନାହିଁ ସେଇ ଦୁଇଜଣ ନାରୀଙ୍କ ମଧ୍ୟରୁ ଆପଣ କୌଣସି ଜଣକୁ ଅଧିକ ଭଲ ପାଉଥିଲେ ବା ସେହି ଦୁଇଜଣ ନାରୀଙ୍କ ମଧ୍ୟରୁ କେହି ଜଣେ ଆପଣଙ୍କୁ ଅଧିକ ଭଲ ପାଉଥିଲା । ତଥାପି ଆପଣ ଚିନ୍ତା କରିବେ, ଅନୁରାଧା ଆଉ ଚାମେଲୀ ଦୁହିଁଙ୍କ ମଧ୍ୟରୁ କୌଣସି ଜଣକ ପ୍ରତି ଆପଣଙ୍କ ମନ ଦୁର୍ବଳ ଥିଲା । ଏଠାରେ ମୁଁ ଏକା ଆପଣଙ୍କ କଥା କହୁନାହିଁ । ସୁଖରଞ୍ଜନ, ରଜନୀକାନ୍ତ, ଅଖିଳ ବାବୁ, ଏହା ଭିତରୁ କାହାରି ଜଣକ ମନ କୌଣସି ଏକ ଝିଅ ପ୍ରତି ଦୁର୍ବଳ ଥାଇପାରେ । ଅଥବା ଦୁଇଟିଯାକ ଝିଅ ଏପରି ଜଣକୁ ଭଲ ପାଉଥିଲେ ଯେଉଁ ଜଣକ ପାଇଁ ସେ ଦୁହିଁଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଲାଗିଥିଲା । ଅଥବା ଦୁଇଜଣ ପୁରୁଷ ଗୋଟିଏ ଝିଅକୁ ଭଲପାଇ ବସିଥିଲେ, ଯାହା ଫଳରେ ସେହି ପୁରୁଷ ଦୁହିଁଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ବଢ଼ି ଉଠିଥିଲା, ଯାହାର ଶେଷ ପରିଣତି ହେଲା ବିଷ ପ୍ରୟୋଗ । ଏହା ବା ଏହିପରି ଏକ ଘଟଣା ସେଦିନ ଆପଣମାନଙ୍କ ପ୍ଲିଜାରଟ୍ରିପ୍‌ରେ ଘଟିଛି ବୋଲି ମୁଁ କହୁନାହିଁ। ମୁଁ ଖାଲି କହୁଛି ଆପଣଙ୍କୁ ସେହି ବିଷୟଟାକୁ ଅନୁଶୀଳନ କରିବା ପାଇଁ । ହୁଏତ ଆପଣଙ୍କର ଆତ୍ମବିଶ୍ୱାସ ପ୍ରବଳ । ଆପଣଙ୍କର ସେହି ଆତ୍ମବିଶ୍ୱାସର ମାପକାଠିରେ ଆପଣ ସମସ୍ତଙ୍କୁ ମାପୁଛନ୍ତି । ତଥାପି ଆପଣ ଥରେ ସେହି ଦିନର କଥା ଚିନ୍ତା କରିବେ । ଗଭୀର ଭାବରେ ଚିନ୍ତା କରି ଦେଖିବେ ପ୍ରତିଟି ମୁହୂର୍ତ୍ତକୁ । ଆପଣମାନେ ଘରୁ ବାହାରିଯିବା ଠାରୁ ପୁଣି ଫେରି ଆସିବାଯାଏ । ଚିନ୍ତା କରିବେ ଏବଂ ଧ୍ୟାନମଗ୍ନ ହୋଇ ସେହିଦିନର ପ୍ରତିଟି ମୁହୂର୍ତ୍ତର ଘଟଣାକୁ ମନେ ପକଇବେ, କିଏ କାହା ପାଖରେ କେଉଁ କଥାକୁ ପ୍ରତିବାଦ କରୁଥିଲା, ପୁଣି କିଏ କାହାକଥାକୁ ଗ୍ରହଣ କରି ନେଉଥିଲା- ଏହିପରି ଟିକିନିଖି ସବୁକଥା। ଆପଣ ଖାଲି ମନେ ପକାଇଯିବେ ଏବଂ ମନେ ପାକଇ ଯିବେ ଆହୁରି ପୂର୍ବଦିନମାନଙ୍କର ଘଟଣାବଳୀ ।

ମୋର କେବଳ ଆପଣଙ୍କୁ ଏତିକି ଅନୁରୋଧ । ମୁଁ ଆସି ପୁଣି ଆପଣଙ୍କୁ ପ୍ରଶ୍ନ କରିବି । ଆଜିର ଆପଣଙ୍କର ଉତ୍ତର ମୁଁ ସବୁ ମୋ ଟିପାଖାତାରେ ଟିପି ନେଇଛି, ସେ ଦିନର ଉତ୍ତର ମୋ ଟିପାଖାତାରେ ଟିପିବି । ତା'ପରେ ଦୁଇଟିଯାକ ଉତ୍ତର ଆପଣ ମିଳାଇ ପଢ଼ିବେ । ଯାହାହେଉ, ଆଜି ଆମେ ଉଠୁଛୁ, ଆପଣ ମୋ କଥା ଯେପରି ଭୁଲି ନଯାଆନ୍ତି ।

ସତ୍ୟବ୍ରତ ଉଠି ଠିଆ ହୋଇପଡ଼ିଲା ।

ସଙ୍ଗେସଙ୍ଗେ ରଜକିଶୋର ରଥ ମଧ ଠିଆ ହୋଇଗଲେ । ସେ ଭୀଷଣ ଚିନ୍ତିତ ମନେ ହେଉଥିଲେ ।

ସତ୍ୟବ୍ରତ କରମର୍ଦ୍ଦନ କରିବାକୁ ହାତ ବଢ଼ାଇଦେଲା । ରାଜକିଶୋର ରଥ କରମର୍ଦ୍ଦନ କଲେ !

ତଥାପି ଆଗେଇଗଲେ ରାଜକିଶୋର ରଥ । ରସ୍ତା ଉପରକୁ । ସତ୍ୟବ୍ରତର ଗାଡ଼ି ପାଖକୁ ।

ସତ୍ୟବ୍ରତ ଗାଡ଼ିର ଦରଜା ଖୋଲିବାକୁ ଯାଇ ହଠାତ୍ ଠିଆ ହୋଇପଡ଼ି କହିଲା: ଆଛା ମିଷ୍ଟର ରଥ, ଆପଣମାନେ ସେଦିନ ଯେଉଁ କାର୍‌ରେ ଯାଇଥିଲେ, ସେ କାର୍‌ର ମାଲିକ କିଏ ?

ସେ ଗୋଟାଏ ଭଡ଼ା କାର୍ ଆଜ୍ଞା । ଦିନକ ପାଇଁ ଭଡ଼ା କରି ନେଇଥିଲୁ ।

ହଁ, କାର୍‌ରେ ଡ୍ରାଇଭର ନିଶ୍ଚୟ ଥିଲା ?

ନା ଆଜ୍ଞା ! କାର୍‌ଟି ରଜନୀକାନ୍ତ ମହାପାତ୍ରଙ୍କର ଜଣେ ବନ୍ଧୁଙ୍କର । ଆମେ କିନ୍ତୁ ଭଡ଼ାରେ ଆଣିଥିଲୁ ।

ଡ୍ରାଇଭର ?

: ରଜନୀବାବୁ ଭଲ ଡ୍ରାଇଭ୍ ଜାଣନ୍ତି, ମୁଁ ବି ଟିକେ ଟିକେ ଡ୍ରାଇଭିଂ ଜାଣେ । ତେଣୁ ଆମର ଡ୍ରାଇଭରର ଆବଶ୍ୟକ ହୋଇ ନ ଥିଲା ।

: ହୁଁ, ସତ୍ୟବ୍ରତ ଠିଆ ହୋଇ ମୁହୂର୍ତ୍ତେ କ'ଣ ଚିନ୍ତା କଲା । ତା'ପରେ ଗାଡ଼ିର ଦରଜା ଖୋଲୁ ଖୋଲୁ କହିଲା, ଆମେ ତା'ହେଲେ ଆଜି ଆସୁଚୁ ମିଷ୍ଟର ରଥ । ମୁଁ ଯାହା କହିଗଲି, ଆପଣ ଟିକେ ଭଲ ଭାବରେ ଆଜି ଚିନ୍ତା କରିବେ । କାଲି କିମ୍ବା ପହରିଦିନ ମୁଁ ଆସି ଆପଣଙ୍କ ସହିତ ସାକ୍ଷାତ୍ କରିବି ।

କିନ୍ତୁ ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର, ମୁଁ, ମାନେ ଆମେ ସବୁ...

ରାଜକିଶୋର ରଥଙ୍କର କଥା ଶେଷ ହୋଇ ଥିଲା । ସତ୍ୟବ୍ରତ ଗାଡ଼ିରେ ଷ୍ଟାର୍ଟ ଦେଇ ଆଗେଇ ଯାଇଥିଲା ।

ଏଥର ଆମ ଗାଡ଼ି ଯାଇ ଠିଆ ହେଲା କଟକ ଚଣ୍ଡୀଠାରେ । ସତ୍ୟବ୍ରତ ନିଜେ ଗାଡ଼ି ଚଳାଉଥିଲା । ମୋତେ କହିଲା  ରଜନୀକାନ୍ତ ମହାପାତ୍ରଙ୍କ ଘରଟା କେଉଁଠି ଟିକିଏ ଖୋଜି ଦେଖ୍ ।

ମୁଁ ଗାଡ଼ିରୁ ଓହ୍ଲାଇଗଲି । ଚଣ୍ଡୀ ମନ୍ଦିର ପାଖରୁ ଅଳ୍ପ ଦୂରରେ ଗୋଟାଏ ଦୋତାଲା କୋଠା । ସ୍ଥାନୀୟ ଲୋକ ଜଣେ ମୋତେ ହାତ ଦେଖାଇ ଚିହ୍ନାଇ଼ ଦେଲା । ସେଇ ଘରେ ରଜନୀକାନ୍ତ ମହାପାତ୍ର ରୁହନ୍ତି ।

ସତ୍ୟବ୍ରତ ଗାଡ଼ିକୁ ଗୋଟାଏ ସାଇଡ଼କୁ ଠିଆ କରି ଓହ୍ଲାଇ ଆସିଲା । ଆମେ ସେଇ ଦୋତାଲା କୋଠା ସାମାନାକୁ ଯାଇ ଦେଖିଲୁ, ଭିତର କବାଟ ବନ୍ଦ । ଦୁଆରେ ଗୋଟାଏ ନେମପ୍ଲେଟ୍ ଲେଖା ହୋଇଛି- ହରିହର ମହାପାତ୍ର, ଆଡଭୋକେଟ୍ ।

ସତ୍ୟବ୍ରତ ମୋ ମୁହଁକୁ ଚାହିଁଲା । ମୁଁ କହିଲି  ବୋଧହୁଏ ରଜନୀବାବୁଙ୍କର କେହି ଆତ୍ମୀୟ ହୋଇପାରନ୍ତି ।

ସତ୍ୟବ୍ରତ ଆଗେଇଯାଇ ଦୁଆରେ ନକ୍ କଲା ।

ଭିତରୁ ଗୋଟାଏ କୁକୁର ଭୁକି ଉଠିଲା ।

କିଛି ସମୟ ପରେ ଘରେ ଲାଇଟ୍ ଜଳିଲା ।

ଧୀରେଧୀରେ କବାଟ ଖୋଲିଗଲା ।

ଜଣେ ମଧ୍ୟବୟସ୍କ ଭଦ୍ରଲୋକ କବାଟ ଖୋଲିଲେ । ଧୋତି ପଞ୍ଜାବି ପିନ୍ଧିଥିଲେ । ଆଖିରେ ଚଷମା ଥିଲା । ଭଦ୍ରଲୋକ ପଚାରିଲେ,   କାହାକୁ ଖୋଜୁଛନ୍ତି ?

ସତ୍ୟବ୍ରତ କହିଲା: ଆମେ ରଜନୀକାନ୍ତ ମହାପାତ୍ରଙ୍କୁ ଖୋଜୁଛୁ । ଆପଣ...

ମୋ ନାଁ ହରିହର ମହାପାତ୍ର । ରଜନୀବାବୁ ଉପରେ ରୁହନ୍ତି । ମୁଁ ଡାକି ଦେଉଛି । ଆପଣମାନେ ବସନ୍ତୁ ।

ଆମେ ଘର ଭିତରକୁ ପଶିଲୁ । ହରିହର ମହାପାତ୍ରଙ୍କର ସେଇଟା ଚେମ୍ବର । ଆଲମାରୀରେ ଥାକଥାକ ଆଇନ୍ ବହି । ଆମେ ଦୁହେଁ ଦୁଇଟି ଚେଆର ଅଧିକାର କରି ବସିଲୁ । ହରିହର ମହାପାତ୍ର ମଧ୍ୟ ତାଙ୍କର ନିଜସ୍ୱ ଚେଆରଟିରେ ବସିଲେ । ନୀରବତା ମଧ୍ୟରେ କେତୋଟି ମୁହୂର୍ତ୍ତ କଟିଗଲା ।

ନା ନା ହରିହର ମହାପାତ୍ର ବଡ଼ ପାଟି କରି ମନାକଲେ । ରଜନୀବାବୁ ମୋର କେହି ଆତ୍ମୀୟ ନୁହନ୍ତି । ସେ ମୋର ଏହି ଘରେ ଭଡ଼ା ନେଇ ଅଛନ୍ତି ।

: ଆମେ ତାଙ୍କ ପାଖକୁ ଆସିଥିଲୁ । ଟିକିଏ ଦରକାର ଥିଲା । ସତ୍ୟବ୍ରତ ପୁଣି ଥରେ ସେଇକଥା ଭାବୁଚି ।

ଆପଣ କ'ଣ ଭାବୁଚନ୍ତି ।

ଭାବୁଚି ଖବର ଦେବି କି ନାହିଁ । ଭଦ୍ରଲୋକଙ୍କର କିଏ ଜଣେ ଆତ୍ମୀୟ ମରି ଯାଇଛନ୍ତି । କେଇଦିନ ହେବ ସେ ଖୁବ୍ ଶୋକାତୁର । ଘରୁ କୁଆଡ଼େ ବାହାରୁ ନାହାନ୍ତି । ପୋଲିସ୍ ଲୋକଙ୍କ ଛଡ଼ା ଆଉ କାହାରି ସହିତ ସାକ୍ଷାତ କରୁନାହାନ୍ତି ।

ସତ୍ୟବ୍ରତ ପକେଟରୁ ଖଣ୍ଡିଏ ନିଜର ନାମାଙ୍କିତ କାର୍ଡ଼ ବାହାର କରି ହରିହର ମହାପାତ୍ରଙ୍କ ହାତକୁ ବଢ଼ାଇ ଦେଲା । ସେ ଟେବୁଲ ଉପରୁ ଚଷମା ଉଠାଇ ନେଇ କାର୍ଡ଼ଟି ପଢ଼ିଲେ ।

ହୁଁ, ନମସ୍କାର ଆପଣଙ୍କ ନାଁ ମୁଁ ଆଗରୁ ଶୁଣିଥିଲି । ହସି ହସି ମହାପାତ୍ର କହିଲେ । କିନ୍ତୁ ତାଙ୍କ କଣ୍ଠରେ କୌଣସି ଉତ୍ସାହ ନଥିଲା । ମନେ ହେଉଥିଲା, ସେ ଯେପରି ରଜନୀକାନ୍ତଙ୍କ ଶୋକରେ ଅଭିଭୂତ ହୋଇ ପଡ଼ିଛନ୍ତି ।

ସତ୍ୟବ୍ରତ ପ୍ରତିନମସ୍କାର ଜଣାଇ କହିଲା   ଆମେ ଟିକିଏ ବ୍ୟସ୍ତ ଅଛୁ! ଆପଣ ଯଦି ଦୟାକରି ଖବରଟା ଦିଅନ୍ତେ...

କିନ୍ତୁ ଆପଣଙ୍କର ଏଥିରେ ଇଣ୍ଟେରେଷ୍ଟ କ'ଣ ? ହରିହର ବାବୁ ସେହିପରି ଶାନ୍ତ କଣ୍ଠରେ ପଚାରିଲେ ।

ମୋତେ ଏ କେସ୍‌ର ତଦନ୍ତପାଇଁ ନିଯୁକ୍ତି ମିଳିଛି । ତେଣୁ ଆପଣ ବୁଝି ପାରୁଛନ୍ତି ଏ କ୍ଷେତ୍ରରେ ମୋର ପ୍ରଥମ କର୍ତ୍ତବ୍ୟ ହେଉଛି...

ହୁଁ, ଆପଣ ତା' ହେଲେ ଟିକିଏ ବସନ୍ତୁ, ମୁଁ ଖବର ଦେଉଛି । ଏଥିରେ ମୋର ଅବଶ୍ୟ କୌଣସି ଇଣ୍ଟେରେଷ୍ଟ ନାହିଁ । ତେବେ ଭଦ୍ରଲୋକ ଏତେ ଭାଙ୍ଗି ପଡ଼ିଛନ୍ତି ଯେ, ତାଙ୍କୁ ଦେଖିଲେ ଦୟା ହେଉଛି । ଯା' ହେଉ, ମୁଁ ଦେଖୁଛି ।

ହରିହର ମହାପାତ୍ର ଧୀରେଧୀରେ ଆମ ପାଖରୁ ଉଠି ଚାଲିଗଲେ । ଆମେ ଦୁଇଜଣ ନୀରବରେ ବସି ରହିଲୁ । କିଛି ସମୟ ପରେ ଫେରିଆସି କହିଲେ ଆଜି ତାଙ୍କ ସହିତ ଦେଖା ନ କଲେ ଚଳନ୍ତା ନାହିଁ ?

: କାହିଁକି ?

ମୁଁ ସତ୍ୟବ୍ରତର ସ୍ୱରରେ କିପରି ଉତ୍ତେଜନା ଅନୁଭବ କଲି ।

ଭଦ୍ରଲୋକ ବୋଧହୁଏ ଶୋଇପଡ଼ିଛନ୍ତି । ତାଙ୍କ ଘର ଅନ୍ଧକାର । ବାହାରୁ ଦୁଇ ଚାରିଥର ଡାକିଲି । କିଛି ଉତ୍ତର ପାଇଲି ନାହିଁ । ସେଇଥି ପାଇଁ କହୁଥିଲି...

: କିନ୍ତୁ ତାଙ୍କ ସହିତ ମୋର ଖୁବ୍ ପ୍ରୟୋଜନ । ଯେପରି ହେଉ ଆଜି ଆମକୁ ଦେଖା କରିବାକୁ ପଡ଼ିବ । ସତ୍ୟବ୍ରତ କହିଲା ।

: ତା'ହେଲେ ଆପଣ ଗୋଟିଏ କାମ କରନ୍ତୁ । ମୁଁ ଆପଣଙ୍କୁ ଶିଡ଼ି ଦେଖେଇ ଦେଉଛି । ଆପଣ ଯାଇ ନିଜେ ତାଙ୍କୁ ଡାକନ୍ତୁ । ତାଙ୍କର ଏଇ ଦୁଃସମୟରେ ମୁଁ ତାଙ୍କୁ ବିରକ୍ତ କରି ପାରିବି ନାହିଁ । ହରିହରି ମହାପାତ୍ର କହିଲେ ।

ସତ୍ୟବ୍ରତ ଉଠି ଠିଆ ହୋଇପଡ଼ି କହିଲା ହଁ, ସେଇଆ କରନ୍ତୁ । ଶିଡ଼ିଟା କେଉଁ ଆଡ଼େ ?

: ମୁଁ ଦେଖେଇ ଦେଉଚି । ଆପଣ ଟିକିଏ ଚା' ଖାଇ ନିଅନ୍ତୁ । ମୁଁ ଘରେ କହି ଆସିଚି । ଏଇକ୍ଷିଣା ଆସିଯିବ ।

ହରିହର ମହାପାତ୍ରଙ୍କ କଥା ଶେଷ ହେବା ପୂର୍ବରୁ ଚାକର ପିଲାଟିଏ ଚା' ଟ୍ରେ ଧରି ଆସି ପହଞ୍ଚିଲା ।

ସତ୍ୟବ୍ରତ ପୁଣି ପୂର୍ବ ଚେଆରରେ ବସିଲା ।

ଚାକର ପିଲାଟି ଆମ ହାତକୁ କପେ କପେ ଚା' ବଢ଼େଇ ଦେଇ ଚାଲିଗଲା ।

ହରିହର ବାବୁ ଚା' କପରୁ ଢ଼ୋକେ ପିଇ କହିଲେ : ଆଛା ପ୍ରକୃତ ଘଟଣାଟା କ'ଣ ମହାପାତ୍ର ବାବୁ, ମୁଁ ଶୁଣୁଛି ଝିଅଟି କୁଆଡ଼େ ମର୍ଡ଼ର ହୋଇଛି ! ଖବରଟା କ'ଣ ସତ ?

ହଁ ସତ । ସତ୍ୟବ୍ରତ ଦୃଢ଼ ସ୍ୱରରେ କହିଲା ।

ତା' ହେଲେ ମର୍ଡ଼ରର ?

ଏହି ପାଞ୍ଚଜଣଙ୍କ ଭିତରୁ ଜଣେ କେହି ନିଶ୍ଚିତ ।

ଆପଣଙ୍କ ନିଶ୍ଚିତ ଅନିଶ୍ଚିତତାରେ ବର୍ତ୍ତମାନ କିଛି ମୂଲ୍ୟ ନାହିଁ ମିଷ୍ଟର

ମହାପାତ୍ର । ଯେତେବେଳଯାଏ  ପ୍ରମାଣ ମିଳିନାହିଁ, ସେତେବେଳ ଯାଏ ଧାରଣାର କିଛି ମୂଲ୍ୟ ନାହିଁ   ଆପଣ ଏ ବିଷୟରେ କିଛି ଜାଣିଛନ୍ତି ?

ମୁଁ ରଜନୀବାବୁଙ୍କ ମୁହଁରୁ ଘଟଣାଟା ଶୁଣିଥିଲି । ସେ କାନ୍ଦି କାନ୍ଦି ମୋତେ ସେହି ଦୁର୍ଘଟଣାର କଥା କହିଥିଲେ । ଅବଶ୍ୟ କାଲି ସନ୍ଧ୍ୟାବେଳେ ମୁଁ ସବୁ ଶୁଣିଲି । ଶୁଣିଲା ବେଳଠାରୁ ମୋ ମନଟା କିପରି ଭାଙ୍ଗି ଯାଇଛି । ଝିଅଟାକୁ ମୁଁ କେତେଥର ଦେଖିଛି । ରଜନୀବାବୁଙ୍କ ପାଖକୁ ସେ ଅନେକଥର ଆସିଛି । ରୁନୁଠୁ ବର୍ଷେ ଖଣ୍ଡେ ବଡ଼ ହେବ । ଭାରି ସୁନ୍ଦର ଗାଇ ପାରେ । ଆମ ଘରେ ରୁନୁର ଜନ୍ମଦିନକୁ ସେ ଆସିଥିଲା । ଅନେକ ରାତିଯାଏ ଗୀତ ଗାଇଥିଲା । ଏଇ ତ ପନ୍ଦର କୋଡ଼ିଏ ଦିନ ତଳର କଥା । ଏବେ ବି ଝିଅଟାର ମୁହଁ ରହି ରହି ମୋ ଆଖି ଆଗରେ ନାଚି ଯାଉଚି । ଯାହା କହନ୍ତି ମଣିଷ ଜୀବନ ପାଣିଫୋଟକା । କିଛି ମୂଲ୍ୟ ନାହିଁ ।

ମୁଁ ଲକ୍ଷ୍ୟ କଲି ସତ୍ୟବ୍ରତ ନୀରବରେ ମନଯୋଗ ଦେଇ ହରିହର ମହାପାତ୍ରଙ୍କ କଥା ଶୁଣୁଛି ।

ହରିହର ମହାପାତ୍ର ପୁଣି କହିଲେ : ଚାମେଲୀର ମୃତ୍ୟୁରେ ରଜନୀକାନ୍ତ ବାବୁ ଖୁବ୍ ଆଘାତ ପାଇଛନ୍ତି । ଏଇ କେତେଦିନ ହେବ ମୁଁ ଲକ୍ଷ୍ୟ କରୁଚି, ବିଚରା ଭଦ୍ରଲୋକ, ମୁହୂର୍ତ୍ତକ ପାଇଁ ବି ଘରୁ ବାହାରୁ ନାହାନ୍ତି । ଲେଖକ ଲୋକ, ଭାରି ଫୂର୍ତ୍ତିବାଜ । ମୁଁ କେବେ ତାଙ୍କ ମୁହଁରେ ଦୁଃଖର କାଳିମା ଦେଖି ନ ଥିଲି । କିନ୍ତୁ ଏ କେତେ ଦିନ ହେବ କ'ଣ ଯେ ହେଲା ! ଲୋକଟା ଯେପରି ପଙ୍ଗୁ ହୋଇଯାଇଛି ।

ହରିହର ମହାପାତ୍ରଙ୍କର ବୋଧହୁଏ ଆଉ କିଛି କହିବାର ନ ଥିଲା । କଥା ଶେଷ କରି ସେ ନୀରବ ହେଲେ । ସତ୍ୟବ୍ରତ ସବୁ ଶୁଣି ସାରି ଉଠି ଠିଆ ହେଲା । କହିଲା   ମୋତେ ଟିକିଏ ବାଟ ଦେଖାଇ ଦିଅନ୍ତୁ ।

ହରିହରବାବୁ ଉଠି ଠିଆ ହେଲେ । କହିଲେ   ହଁ ଆସନ୍ତୁ ।

ଆମକୁ ସେ ଉପର ଶିଡ଼ି ଦେଖାଇ ଦେଇ କହିଲେ   ଶିଡ଼ି ଶେଷରେ ଯେଉଁ ଘରଟି ଦେଖିବେ, ସେଇ ଘରେ ରଜନୀବାବୁ ରୁହନ୍ତି ।

ଆମେ ଅନ୍ଧକାର ଭିତରେ ପାହାଚ ଅତିକ୍ରମ କରି ଉପରକୁ ଉଠିଲୁ । ଶିଡ଼ି ଶେଷରେ ଯେଉଁ ଘର, ସେଇ ଘର ଦୁଆରେ ପହଞ୍ଚି ସତ୍ୟବ୍ରତ ଦରଜାରେ ନକ୍ କଲା । କିନ୍ତୁ ଭିତରୁ କିଛି ଉତ୍ତର ମିଳିଲା ନାହିଁ । ଆମେ ପ୍ରାୟ ପାଞ୍ଚ ସାତ ମିନିଟ୍ ଯାଏ ନକ୍ କରି ବ୍ୟର୍ଥ ହେଲୁ ।

ସତ୍ୟବ୍ରତ ପକେଟରୁ ଦିଆସିଲି ବାହାର କରି ଜଳାଇଲା । ଘରର ଝରକା ଗୁଡ଼ିକ ବନ୍ଦ । ଦୁଆର ମୁହଁରେ ଗୋଟିଏ ଛୋଟତାଲା ଝୁଲୁଛି ।

ରଜନୀକାନ୍ତ ମହାପାତ୍ର ତା'ହେଲେ ଘରେ ନାହାନ୍ତି !

ଘରେ ନାହାନ୍ତି ? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି । ତେବେ କ'ଣ ହରିହର ମହାପାତ୍ର ଆମକୁ ମିଛ କଥା କହିଲେ ?

ମିଛ ନହେଇ ପାରେ । ସେ ହୁଏତ ଦରଜାରେ ତାଲା ପଡ଼ିଥିବା କଥା ଜାଣି ନାହାନ୍ତି । ତାଙ୍କର ହୁଏତ ଧାରଣା ଦରଜା ବନ୍ଦ ଅଛି ଆଉ ରଜନୀବାବୁ ଭିତରେ ଶୋଇଛନ୍ତି ।

ତା'ହେଲେ ଆମେ ବର୍ତ୍ତମାନ କ'ଣ କରିବା ?

ଫେରିଯିବା ଛଡ଼ା ଆମର ଆଉ କ'ଣ କରିବାର ଅଛି ? ସତ୍ୟବ୍ରତ କହିଲା ।

ଆମେ ସେଇ ଅନ୍ଧକାରରେ ପାହାଚ ଗଣି ଗଣି ଫେରିଆସିଲୁ । ଫେରି ଆସିଲୁ ହରିହର ମହାପାତ୍ରଙ୍କ ଚେମ୍ବରକୁ ।

ସେ ଚେମ୍ବରରେ ବସି ଗୋଟିଏ ଆଇନ୍ ବହି ଖେଳେଇ ପଢୁଥିଲେ । ଆମକୁ ଦେଖି କହିଲେ, ରଜନୀବାବୁଙ୍କ ସହିତ ଦେଖାହେଲା ?

ନା, ସେ ଘରେ ନାହାନ୍ତି ।

ଘରେ ନାହାନ୍ତି !

ନା, ଦୁଆରେ ତାଲା ପଡ଼ିଛି ।

ହରିହର ମହାପାତ୍ରଙ୍କ କାନକୁ କଥାଟା ଯେପରି ଖାପଛଡ଼ା ଲାଗିଲା ।

ସେ ଆଖିରୁ ଚଷମା ଖୋଲି ଟେବୁଲ ଉପରେ ରଖି ଆମ ଆଡ଼କୁ ଚାହିଁ କହିଲେ ଆପଣ ଠିକ୍ ଦେଖିଛନ୍ତି ଦୁଆରେ ତାଲା ପଡ଼ିଛି ?

ହଁ । ସତ୍ୟବ୍ରତ ସରଳ ଉତ୍ତରଟିଏ ଦେଲା ।

ହରିହର ମହାପାତ୍ର ଟିକିଏ କ'ଣ ଚିନ୍ତା କରି କହିଲେ ମୁଁ ତାଙ୍କୁ ଦୁଇଘଣ୍ଟା ଆଗରୁ ଦେଖିଥିଲି । ଏହା ଭିତରେ ସେ କୁଆଡ଼େ ଚାଲି ଯାଇଛନ୍ତି ହୁଏତ । ଯାହାହେଉ, ସେ ଫେରିଲେ ମୁଁ ଆପଣମାନଙ୍କ କଥା କହିବି ।

ନୀରବତା ମଧ୍ୟରେ କିଛି ସମୟ କଟିଯିବା ପରେ ପୁଣି ହରିହର ମହାପାତ୍ର କହିଲେ ଆପଣମାନେ କ'ଣ ତାଙ୍କୁ ଅପେକ୍ଷା କରିବେ ?

ନା, ତେବେ ଦେଖା ହୋଇଥିଲେ ଭଲ ହୋଇ ଥାଆନ୍ତା ।

ଆମେ ଚେଆର ଛାଡ଼ି ଉଠିଲୁ । ହରିହର ମହାପାତ୍ର ଆମ ସଙ୍ଗରେ ଉଠି ବାହାରକୁ ଆସିଲେ । ଗାଡ଼ିରେ ବସିବାଯାଏ ସେ ଆମ ଯିବାପଥକୁ ଅପେକ୍ଷା କରି ରହିଥିଲେ ।

ଆମେ ଗାଡ଼ିରେ ଷ୍ଟାର୍ଟ ଦେଇ ବାହାରିବା ,ବେଳକୁ ସେ ହାତଠାରି ଡାକିଲେ । ମୁଁ ଦେଖିପାରି ସତ୍ୟବ୍ରତକୁ କହିଲି । ସେ ଗାଡ଼ିର ଷ୍ଟାର୍ଟ ବନ୍ଦ କଲା । ମୁଁ ଓହ୍ଲେଇ ଆସିଲି ହରିହର ମହାପାତ୍ରଙ୍କ ପାଖକୁ ।

ସେ କହିଲେ ଆପଣ ବରଂ ମଦନ ମହାନ୍ତିଙ୍କ ଘରେ ଥରେ ଦେଖିଯିବେ ।

ମହମ୍ମଦିଆ ବଜାରରେ । ମଦନ ମହାନ୍ତି ରଜନୀ ବାବୁଙ୍କର କେହି ଆତ୍ମୀୟ ହୁଅନ୍ତି। ବେଳେବେଳେ ସେଇଠି ସେ ଯାଇ ରହନ୍ତି ।

ମୁଁ ପୁଣି ଫେରିଗଲି ଗାଡ଼ିକୁ । ସତ୍ୟବ୍ରତକୁ କହିଲି । ସତ୍ୟବ୍ରତ ନୀରବରେ ଗାଡ଼ି ଚଳେଇଲା । ମୁଁ ଦେଖିଲି, ସେ ମହମ୍ମଦିଆ ବଜାର ଆଡ଼କୁ ଗାଡ଼ି ଚଳାଉଛି ।

ଶେଷରେ ଆମେ ମଦନ ମହାନ୍ତିଙ୍କ ଘର ଖୋଜି ବାହାରକୁ ଗଲୁ । ଭଦ୍ରଲୋକ ଜଣେ କଣ୍ଟ୍ରାକ୍ଟର । ସେ ଘରେ ନ ଥିଲେ । କିନ୍ତୁ ରଜନୀକାନ୍ତ ମହାପାତ୍ରଙ୍କର ସନ୍ଧାନ ଆମେ ସେଇଠୁ ପାଇଲୁ । କିଛି ସମୟ ଆଗରୁ ସେ ସେଠାକୁ ଆସିଥିଲେ ଏବଂ ଅଳ୍ପ ସମୟ ପରେ ମଧ୍ୟ ସେ ସେଠାକୁ ଫେରିଆସିବେ ।

ସତ୍ୟବ୍ରତର ଲକ୍ଷଣ ଦେଖି ମନେ ହେଲା, ସେ ଅପେକ୍ଷା କରିବାକୁ ଚାହେଁ। ମୁଁ କହିଲି  ଚାଲେ ଟିକେ ଚା'ଫା ଖାଇ ଆସିବା । ସତ୍ୟବ୍ରତ କିନ୍ତୁ ହୁଙ୍କିଲା ନାହିଁ। ମଦନ ବାବୁଙ୍କ ଚାକରକୁ ଡାକି ଆଉଥରେ ପଚାରିଲା  ମଦନବାବୁଙ୍କ ଘରେ କିଏ ସବୁ ଅଛନ୍ତି ?

ଚାକରଟି ସତ୍ୟବ୍ରତଙ୍କ ମୁହଁକୁ କିଛି ସମୟ ଅନାଇ ରହି କହିଲା  ମଦନ ବାବୁଙ୍କ ସ୍ତ୍ରୀ ପିଲାପିଲି ସମସ୍ତେ ଅଛନ୍ତି, କିନ୍ତୁ ଏଠି କେହି ରୁହନ୍ତି ନାହିଁ। ସମସ୍ତେ ଗାଁରେ ରୁହନ୍ତି । ଏଠି ବାବୁ ଏକା ରୁହନ୍ତି ଆଉ ତାଙ୍କୁ ରୋଷେଇବାସ କରିଦେବାକୁ ମୁଁ ଥାଏ ।

ରଜନୀବାବୁ ଏଠାକୁ କାହିଁକି ଆସନ୍ତି ? ସତ୍ୟବ୍ରତ ପଚାରିଲା।

ବାବୁ ଆସନ୍ତି, ଆମ ବାବୁଙ୍କ ସଙ୍ଗରେ କଥାବାର୍ତ୍ତା କରନ୍ତି । ପୁଣି ଚାଲି ଯାଆନ୍ତି ।

ଆଜି କାହିଁକି ଆସିଥିଲେ ?

ବାବୁ ଡାକି ପଠାଇଥିଲେ ।

ତା'ପରେ ?

ରଜନୀ ବାବୁଙ୍କର ଆସିବାକୁ ଡେରି ହେବାରୁ ବାବୁ ବାହାରକୁ ବାହାରି ଗଲେ । କହିଗଲେ, ସେ ଫେରିବାଯାଏ ଯେପରି ରଜନୀବାବୁ ଅପେକ୍ଷା କରନ୍ତି ।

ବୁଝିଲି । ରଜନୀ ବାବୁ ଆସି ଦେଖିଲେ ମଦନବାବୁ ନାହାନ୍ତି, ସେଠୁ ସେ ବି ବାହାରି ଗଲେ ଏବଂ କହିଗଲେ, ସେ ଶୀଘ୍ର ଫେରି ଆସିବେ ।

ହଁ ଆଜ୍ଞା, ଚାକରଟି ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ଚାକରଟି ଫେରି ଯାଉଥିଲା, ଆମେ ବି ଫେରି ଆସୁଥିଲୁ । କିନ୍ତୁ ଆମ ସମ୍ନାରେ ଜଣେ ଲୋକ ସାଇକେଲ ରିକ୍ସାରୁ ଓହ୍ଲାଇ ଆମ ଆଡ଼େ ପ୍ରଶ୍ନବାଚୀ ନୟନରେ ଅନାଇ ରହିଲେ ।

ସତ୍ୟବ୍ରତ ହଠାତ୍ ପଚାରିଦେଲା  ଆପଣଙ୍କୁ ଚିହ୍ନି ପାରିଲି ନାହିଁତ । ଆସନ୍ତୁ ।

ମଦନବାବୁ ଆଗେ ଆଗେ ଓ ଆମେ ତାଙ୍କ ପଛେ ପଛେ ଯାଇ ମଦନବାବୁଙ୍କ

ଘରେ ପହଞ୍ଚିଲୁ । ମଦନବାବୁ ତାଙ୍କ ବୈଠକଖାନାର ଦରଜା ଖୋଲି ଦେଇ କହିଲେ: ଆପଣମାନେ ବସନ୍ତୁ, ମୁଁ ସଙ୍ଗେସଙ୍ଗେ ଆସୁଛି ।

ଏବଂ ସେ ସଙ୍ଗେ ସଙ୍ଗେ ଆସି ପହଞ୍ଚିଲେ ମଧ । ସତ୍ୟବ୍ରତ ନିଜର ପରିଚୟ ଦେଇ କହିଲା  ଆମେ ରଜନୀକାନ୍ତ  ମହାପାତ୍ରଙ୍କୁ ଖୋଜି ଖୋଜି ଆପଣଙ୍କ ଏଠାରେ ପହଞ୍ଚିଛୁ । ତାଙ୍କ ସହିତ ଟିକିଏ ବିଶେଷ ଦରକାର ଥିଲା । ଦେଖା ହେବା ଖୁବ୍ ଜରୁରୀ ।

ମଦନ ମହାନ୍ତି ନୀରବରେ ଆମ ମୁହଁକୁ ଅନେକ ସମୟ ଅନାଇ ରହି କହିଲେ: ରଜନୀ ଆସିବ । ଏଠାକୁ ଆଜି ତାର ଆସିବାର କଥା । କିନ୍ତୁ କେତେବେଳେ ଆସିବ ମୁଁ ଠିକ୍ କହି ପାରୁ ନାହିଁ । ଆପଣମାନେ ବସନ୍ତୁ ।

କିଛ ସମୟ ନୀରବତା ପରେ ସତ୍ୟବ୍ରତ କହିଲା  ରଜନୀବାବୁ ଆପଣଙ୍କର କ'ଣ ହୁଅନ୍ତି ?

: ସେପରି କିଛି ନୁହେଁ । ତେବେ ଦୂରସଂପର୍କରେ ସେ ମୋର ଭଣଜା ହେବ । ରଜନୀ କିନ୍ତୁ ପିଲା ହିସାବରେ ଖୁବ୍ ଭଲ । ଆପଣ ଯାହା ସନ୍ଦେହ କରୁଛନ୍ତି, ସେପରି ଦୁଃସାହସିକତା ତା'ର ନାହିଁ । ଆପଣ ଦେଖିଲେ ବୁଝି ପାରିବେ ଯେ ! ମଦନ ମହାନ୍ତି ଶାନ୍ତସ୍ୱରରେ କହିଲେ ।

ମୁଁ କଣ ସନ୍ଦେହ କରୁଛି ବୋଲି ଆପଣ ଭାବୁଛନ୍ତି ? ସତ୍ୟବ୍ରତ ପ୍ରଶ୍ନ କଲେ ।

: ଏଇ,ମାନେ ଚାମେଲୀର ମୃତ୍ୟୁ ପଛରେ ତା'ର ହାତ ଅଛି, ବା ଚାମେଲୀ ମୃତ୍ୟୁ ସମ୍ବନ୍ଧରେ ସେ କିଛି ଜାଣିଛି, ଏହିପରି ସନ୍ଦେହ ତ ଆପଣ ତାକୁ କରୁଛନ୍ତି ?

ସତ୍ୟବ୍ରତ ହସିଲା ।

କହିଲା  ସେପରି ସନ୍ଦେହ କରିବା ସ୍ୱାଭାବିକ ମଦନବାବୁ । ଆପଣ ମୋ ଜାଗାରେ ଥିଲେ ବି ସନ୍ଦେହ କରନ୍ତେ । କାରଣ ସେମାନେ ପାଞ୍ଚଜଣଙ୍କ ଭିତରୁ ଜଣକୁ ହତ୍ୟା କରା ହୋଇଛି ।

ମଦନବାବୁ କ'ଣ କହିବାକୁ ଯାଉଥିଲେ । ଚାକର ପିଲାଟି ଆସି ସାମନାରେ ଠିଆ ହୋଇ କହିଲା  ରଜନୀବାବୁ ଆସିଥିଲେ, ଟିକିଏ ପରେ ଆସିବେ କହି ଯାଇଛନ୍ତି ।

ମଦନବାବୁ ଚାକରକୁ ଚା' କରିବା ପାଇଁ କହିଲେ । ସତ୍ୟବ୍ରତ କିନ୍ତୁ ବାରଣ କଲା ।

ମଦନବାବୁ ଆଉ ବଳେଇଲେ ନାହିଁ । କିଛି ସମୟ ପରେ ପୁଣି ସତ୍ୟବ୍ରତ କହିଲା  ରଜନୀବାବୁ କ'ଣ ଆପଣଙ୍କ ଆଖିକୁ ସବୁଦିନ ଆସନ୍ତି?

ନା, କିଛି ଦରକାର ପଡ଼ିଲେ ଆସେ ।

କିପରି ଦରକାର  ?

: ଏଇ କେବେ କେମିତି ଟଙ୍କା ପଇସାର ଦରକାର ପଡ଼ିଲେ, ତା'ଛଡ଼ା ଇମିତି ବି ବେଳେବେଳେ ଆସି ପହଞ୍ଚିଯାଏ ।

ଆଉ ଆଜି ?

ଆଜି ମୁଁ ଡାକି ପଠେଇଥିଲି । ଦରକାରଟା ଅବଶ୍ୟ ମୋର ସେପରି କିଛି ନାହିଁ । ମୁଁ ଜାଣିବାକୁ ଚାହୁଁଥିଲି ସେଇ ଚାମେଲୀ କଥା । ଶୁଣିଲି ରଜନୀ ଭାଙ୍ଗି ପଡ଼ିଛି ।

ଚାମେଲୀ ମୃତ୍ୟୁ ପରଠାରୁ ରଜନୀବାବୁଙ୍କ ସହିତ ଆପଣଙ୍କର କ'ଣ ଦେଖା ହୋଇନାହିଁ ?

ହଁ, ହୋଇଛି । ତେବେ ମୁଁ ତା' ସହିତ ନିରୋଳାରେ ବସି ସବୁ କଥା ଶୁଣିବାର ଅବକାଶ ପାଇ ନ ଥିଲି । ମୁଁ ଟିକିଏ ବ୍ୟସ୍ତଲୋକ ତ, ସେଇଥି ପାଇଁ...

ମଦନ ମହାନ୍ତିଙ୍କର କଥା ଶେଷ ହେଲା ନାହିଁ । ରଜନୀ ବାବୁ ଘର ଭିତରେ ପ୍ରବେଶ କଲେ ।

ମଦନବାବୁ ସତ୍ୟବ୍ରତର ପରିଚୟ କରାଇଦେଇ କହିଲେ, : ମହାପାତ୍ର ବାବୁ ଅନେକବେଳୁ ତୋତେ ଅପେକ୍ଷା କରି ବସିଛନ୍ତି ।

ରଜନୀକାନ୍ତ ମହାପାତ୍ର ସତ୍ୟବ୍ରତକୁ ଯୋଡ଼ ହାତରେ ନମସ୍କାର କରି କହିଲେ କ୍ଷମା କରିବେ । ଆଜି ମୁଁ ଆପଣଙ୍କର କୌଣସି କଥା ଶୁଣିବାକୁ ବା ଶୁଣାଇବାକୁ ପ୍ରସ୍ତୁତ ହୋଇ ଆସିନାହିଁ । ମୋତେ ଏଇକ୍ଷିଣା ଗୋଟାଏ ଜରୁରୀ କାମରେ ବାହାରି ଯିବାକୁ ହେବ । ମାମୁଙ୍କୁ ମଧ ସେଇ କଥା ଜଣାଇ ଦେବାକୁ ଆସିଛି । ଆପଣ କିଛି ମନେ କରିବେ ନାହିଁ ମିଷ୍ଟର ମହାପାତ୍ର, ମୁଁ କାଲି ଦଶଟାବେଳେ ଯାଇ ଆପଣଙ୍କୁ ସାକ୍ଷାତ କରିବି । ନମସ୍କାର ।

ରଜନୀକାନ୍ତ ମହାପାତ୍ର ଆଉ ମୁହୂର୍ତ୍ତେ ଛିଡ଼ା ହେଲେ ନାହିଁ । ସେ ଘରୁ ବାହାରି ଯିବା ସଙ୍ଗେସଙ୍ଗେ ସତ୍ୟବ୍ରତ ମୋତେ ଚୁମୁଟି ଦେଲା । ମୁଁ ତା'ର ଉଦ୍ଦେଶ୍ୟ ବୁଝି ପାରି ସଙ୍ଗେସଙ୍ଗେ ବାହାରକୁ ଉଠି ଆସିଲି ।

ରଜନୀକାନ୍ତ ମହାପାତ୍ର ସେଇ ସରୁ ଗଳିରାସ୍ତାରେ ଅନ୍ଧାର ଆଲୁଅ ଭିତରେ ଆଗେଇ ଯାଉଥିଲେ । ମୁଁ ତାଙ୍କଠାରୁ ଯଥେଷ୍ଟ ଦୂରତ୍ୱ ରକ୍ଷା କରି ତାଙ୍କୁ ଅନୁସରଣ କରୁଥିଲି ।

ସେ ବଡ଼ରାସ୍ତା ଉପରେ ଏକ ଅପେକ୍ଷମାଣ ରିକ୍ସା ପାଖରେ ଠିଆ ହୋଇ ପଛକୁ ଚାହିଁଲେ । ମୋତେ ସେ ଦେଖି ପାରି ନ ଥିଲେ । ମୁହୂର୍ତ୍ତକ ପରେ ସେ ରିକ୍ସାରେ ଉଠିଲେ । ମୁଁ କ୍ଷିପ୍ରଗତିରେ ଆଗେଇ ଯାଇ ଆଉ ଖଣ୍ଡିଏ ରିକ୍ସାରେ ରଜନୀବାବୁଙ୍କୁ ଅନୁସରଣ କଲି ।

ମୋତେ ବେଶୀ ଦୂର ଆଗେଇବାକୁ ହେଲାନାହିଁ । ଆଗ ରିକ୍ସାଟା ବିହାରି ବାଗ ଭିତରକୁ ମୁହାଁଇଲା । ମୁଁ ବଡ଼ରାସ୍ତା ଉପରେ ଠିଆହୋଇ ଦେଖିଲି, ସୁରଜ ଟକିଜ୍ ସାମନରେ ରଜନୀବାବୁ ଓ ଆଉ ଜଣେ ମହିଳା ରିକ୍ସାରୁ ଓହ୍ଲେଇଲେ ।

କିଏ ସେହି ମହିଳା ? ସତ୍ୟବ୍ରତ ମୋତେ ପଚାରିଲା ।

ମହିଳାଟିକୁ ଦୂରରୁ ମୁଁ ଠିକ ଚିହ୍ନି ପାରିଲି ନାହିଁ । ଭିତରକୁ ଯିବା ବେଳକୁ ସେମାନେ ହଲ୍ ଭିତରେ ପଶି ସାରିଥିଲେ ।

ହୁଁ, ଅନୁରାଧା ପଣ୍ଡା ନୁହେଁ ତ ?

: ହୋଇପାରେ । ଠିକ୍ ମୁଁ ଚିହ୍ନି ପାରିଲି ନାହିଁ । ତେବେ ଗୋଟାଏ କଥା କଲେ ହେବ ।

କ'ଣ ?

ଆମେ ଅନୁରାଧା ଘର ବାଟ ହୋଇ ଗଲେ ଘଟଣାଟା ଜଣା ପଡ଼ିଯିବ ।

ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତା କରି କହିଲା  ରଜନୀକାନ୍ତ ସମ୍ବନ୍ଧରେ ଆମେ ହରିହର ମହାପାତ୍ରଙ୍କ ଠାରୁ ଓ ମଦନ ମହାନ୍ତିଙ୍କ ଠାରୁ ଯାହା ଶୁଣିଲେ, ରଜନୀକାନ୍ତ କିନ୍ତୁ ସେପରି ନିରୀହ ଜୀବ ନୁହନ୍ତି । ହେବା ବି ଉଚିତ୍ ନୁହେଁ। କାରଣ ସେ ଜଣେ ଲେଖକ । ଲେଖକମାନଙ୍କୁ ଯଥେଷ୍ଟ ଅଭିଜ୍ଞ ହେବାକୁ ହୁଏ । ବହୁ ଘଟଣା ଦୁର୍ଘଟଣା ସହିତ ଜଡ଼ିତ ହେବାକୁ ପଡ଼େ । ତା' ନ ହେଲେ ଲେଖା ବାସ୍ତବ ହେବ କିପିରି ? ସେ ଯାହାହେଉ, ତୁ କହୁଚୁ ଆମେ ଅନୁରାଧାର ଘର ହୋଇ ଯିବା ?

ମୁଁ ତ ଭାବୁଚି । ତୁ କ'ଣ କହୁଚୁ ?

ଚାଲେ ତେବେ ।

ଆମେ ଗାଡ଼ି ଯାଇ ଅନୁରାଧା ପଣ୍ଡାଙ୍କ ଦୁଆରେ ଲାଗିଲା । ସଦର ଦରଜାର ଦୁଆର ବନ୍ଦ ଥିଲା । ଭିତରେ ପାଟିଗୋଳ କିଛି ଶୁଣା ଯାଉନଥିଲା । କିଛି ସମୟ ଅପେକ୍ଷା କରି, ଦୁଆରେ ମୁଁ ନକ୍ କଲି ।

କବାଟ ଖୋଲିଲା ।

ସ୍ୱୟଂ ଅନୁରାଧା ପଣ୍ଡା ମୋତେ ଦେଖି ବିଚଳିତ ସ୍ୱରରେ ପ୍ରଶ୍ନ କଲେ..: ପୁଣି ଆପଣ...

ହଁ, ଆସିବାକୁ ହେଲା । ଗାଡ଼ିରୁ ଓହ୍ଲାଇ ଆସି ସତ୍ୟବ୍ରତ କହିଲା: ଆପଣ କିଛି ମନେ କରିବେ ନାହିଁ । ମୁଁ ଶୁଣିଲି ଆପଣ କୁଆଡ଼େ ଅଫିସ୍ କାମରେ କିଛି ଦିନ ପାଇଁ ବାହାରକୁ ଚାଲି ଯାଉଛନ୍ତି । ଖବରଟା ସତ୍ୟ କି ନୁହେଁ ଜାଣିବାକୁ ଆସିଲି ।

ଅନୁରାଧା ମୁହଁରେ ବିରକ୍ତି ଫୁଟିଉଠିଲା । କହିଲା  ଆପଣଙ୍କୁ ଏ ସମ୍ବାଦ କିଏ ଦେଲା ? ଯେତେ ସବୁ ଗୁଲିଖଟି ଗପ ।

ସତ୍ୟବ୍ରତ ଶାନ୍ତ ସ୍ୱରରେ କହିଲା: ଆମକୁ କ୍ଷମା କରିବେ ଅନୁରାଧା ଦେବୀ । ସମ୍ବାଦଟା ତା'ହେଲେ ମିଥ୍ୟା । କିନ୍ତୁ ସତ୍ୟ ହୋଇଥିଲେ ଆମକୁ ଅସୁବିଧାରେ ପଡ଼ିବାକୁ ହୋଇ ଥାଆନ୍ତା, ସେଇଥିପାଇଁ ବାଧ୍ୟ ହୋଇ ଏତେ ରାତିରେ ଆମକୁ ଛୁଟି ଆସିବାକୁ ହୋଇଛି । ଯାହେଉ ଆମେ ନିଶ୍ଚିନ୍ତ ହେଲୁ ଯେ, ଆପଣ ଆପାତତଃ କଟକ ବାହାରକୁ ଯାଉ ନାହାନ୍ତି । ନମସ୍କାର ।

ଅନୁରାଧା ପ୍ରତିନମସ୍କାର ବି କଲା ନାହିଁ । ଧଡ଼ କରି ଦରଜା ବନ୍ଦ କରିଦେଲା । ଆମେ ଗାଡ଼ି ପାଖକୁ ଫେରି ଆସିଲୁ ।

ସତ୍ୟବ୍ରତ କହିଲା ତେବେ ?

ଆଉ କିଛି କଥାବାର୍ତ୍ତା ନାହିଁ । ସେ ଗାଡ଼ିରେ ବସିଲା । ଆମେ ସିଧା ଫେରିଗଲୁ ଇନ୍ଦ୍ରଜାଲକୁ । ସେତେବେଳ ଯାଏ ନୀଳିମା ଆମକୁ ଅପେକ୍ଷା କରି ବସିଥିଲା ।

ଆମେ ଅଫିସରେ ଗୋଡ଼ ଦେବା ମାତ୍ରକେ କହିଲା ଅଯୋଧ୍ୟା ପ୍ରସାଦ ଆସିଥିଲେ ।

ଅଯୋଧ୍ୟା ପ୍ରସାଦ କିଏ ? ସତ୍ୟବ୍ରତ ପଚାରିଲା ।

ସେ କହିଲେ ଆପଣ ତାଙ୍କୁ ଭଲ ଭାବରେ ଚିହ୍ନନ୍ତି ।

: ମୁଁ ଅଯୋଧ୍ୟା ପ୍ରସାଦକୁ ଭଲ ଭାବରେ ଚିହ୍ନେ ? ସତ୍ୟବ୍ରତ ଆଖି ଯୋଡ଼ିକ ବିସ୍ଫାରିତ କରି ନୀଳିମାକୁ ପ୍ରଶ୍ନ କଲା ।

ହଁ, ସେ ତ ସେଇଆ କହିଲେ । ଭଦ୍ରଲୋକ କଲିକତାରେ ରୁହନ୍ତି । ଆପଣ ଗତଥର ଦିଲ୍ଲୀରୁ ଫେରିଲା ବେଳେ ଏକା ପ୍ଲେନ୍‌ରେ କଲିକତା ଫେରିଥିଲେ ଏବଂ....

:ଓଃ ! ହଁ ହଁ ମନେ ପଡ଼ିଲା । ଅଯୋଧ୍ୟା ପ୍ରସାଦ ! ହଠାତ୍ ସେ କାହିଁକି? ଆଉ କ'ଣ କହୁଥିଲେ ?

ନା, ଅନେକ ବେଳଯାଏ ଅପେକ୍ଷା କଲେ । ତାଙ୍କର ଗୋଟାଏ କ'ଣ ଜରୁରୀ କାମ ଅଛି ଆପଣଙ୍କ ପାଖରେ । ବିଷୟଟା ଖୁବ୍ ଗୋପନୀୟ । ମୋତେ ଇଙ୍ଗିତରେ ବି କିଛି କହିଲେ ନାହିଁ ।

ଗଲାବେଳେ କ'ଣ କହିଗଲେ ?

ଯେତେ ରାତି ହେଉ ଆପଣଙ୍କୁ ଦେଖା କରିବାକୁ କହିଛନ୍ତି । ସେ କଟକ ହୋଟେଲରେ ଅଛନ୍ତି । ଆପଣଙ୍କ ପାଇଁ ଅପେକ୍ଷା କରିଥିବେ ।

ହୁଁ, ଆଉ କିଛି ଖବର ?

: ନା, ସତ୍ୟାନନ୍ଦ ବାବୁ ଥରେ ଫୋନ କରିଥିଲେ । କିଛି ଖବର ନାହିଁ, ଖାଲି ଇମିତି ଖୋଜୁଥିଲେ ।

ହଉ ।

ସତ୍ୟବ୍ରତ ସିଧାସଳଖ ଉପରକୁ ଉଠିଗଲା । ପଛେପଛେ ମୁଁ ଉଠି ଯାଉଥିଲି ।

ନୀଳିମା କହିଲା ମୁଁ ଏଥର ଯାଉଛି । ରାତି ଅନେକ ହେଲାଣି । ବସ୍‌ଙ୍କୁ କହି ଦେବ ।

ଆଚ୍ଛା ।

ଉପରେ ଯାଇ ଦେଖିଲି ସତ୍ୟବ୍ରତ ଚେଆର ଉପରେ ଚୁପ୍‌ଚାପ ବସି ରହି ଆଖି ବୁଜି କ'ଣ ଚିନ୍ତା କରୁଚି । ସେହିପରି ଆଖି ବୁଜି ମୋତେ କହିଲା: ବସ ।

ମୁଁ ବସିଲି ।

ତୁ ସେ ଝିଅଟିକୁ ମୋଟେ ଚିହ୍ନି ପାରିଲୁ ନାହିଁ ? ହଠାତ୍ ସତ୍ୟବ୍ରତ ମୋତେ ପଚାରିଲା ।

ନା, ହଠାତ୍ ସେମାନେ ହଲ୍ ଭିତରକୁ ଚାଲିଗଲେ ।

ଠିକ ଅଛି । ତୁ ବର୍ତ୍ତମାନ ଘରକୁ ଯା । କାଲି ଦେଖିବା କ'ଣ ହେଉଚି । ରଜନୀ ମହାପାତ୍ର ତ ଦଶଟାରେ ଆସିବ କହିଚି ।

ତୁ କଟକ ହୋଟେଲ ଯିବୁନାହିଁ ? ଅଯୋଧ୍ୟା ପ୍ରସାଦ ପରା ତୋ ପାଇଁ ଅପେକ୍ଷା କରିଛନ୍ତି !

ତୁ ଯିବୁ ନା କ'ଣ ?

କିଏ ସେ ଭଦ୍ରଲୋକ ?

ନା, ସେଠିକି ଯିବା ତୋର ଦରକାର ନାହିଁ । ଭଦ୍ରଲୋକ ଟିକିଏ ଆବନୋ଼ରମାଲ । ଭାରି ଖିଆଲୀ । ବହୁ ପଇସାର ମାଲିକ । ଭଦ୍ରଲୋକଙ୍କ ସମ୍ବନ୍ଧରେ ଅନେକ ଅଜବ କଥା ମୁଁ ଶୁଣିଛି । କେତେବେଳେ ଯେ ମୁଣ୍ଡରେ କି ଖିଆଲ ପଶେ, ସଙ୍ଗେସଙ୍ଗେ ବାହାରି ପଡ଼ନ୍ତି ଖିଆଲ ଚରିତାର୍ଥ କରିବା ପାଇଁ । ମୋର ପାଲାମ ଏଆର ପୋର୍ଟରେ ତାଙ୍କ ସହିତ ଦେଖା ହୋଇଥିଲା । ଏକାସଙ୍ଗରେ ଆସିଲୁ କଲିକତା । ଭଦ୍ରଲୋକଙ୍କର ପଢ଼ାଶୁଣା ଅଛି । ଶିଳ୍ପକଳା ସମ୍ବନ୍ଧରେ ଖୁବ୍ ପଢ଼ାପଢ଼ି କରିଛନ୍ତି । ତାଙ୍କ ଘରକୁ ଡାକି ନେଇଥିଲେ । ଘରଟା ଗୋଟାଏ ମିଉଜିଅମ୍ । ଭଦ୍ରଲୋକ କିନ୍ତୁ ଆଜିଯାଏ ଓଡ଼ିଶା ଆସି ନାହାନ୍ତି । ତାଙ୍କର ଖୁବ୍ ଇଚ୍ଛା ଶିଳ୍ପନଗରୀ ଓଡ଼ିଶାରେ କିଛି ଦିନ ରହି ପ୍ରାଚୀନ ଶିଳ୍ପକଳା ସମ୍ବନ୍ଧରେ ଜ୍ଞାନ ଆହରଣ କରିବେ ।

ମୁଁ ତାଙ୍କୁ ନିମନ୍ତ୍ରଣ କରିଆସିଥିଲି ଏବଂ କହିଆସିଥିଲି, ଓଡ଼ିଶା ଆସିଲେ ମୋତେ ଖବର ଦେବେ । ଆଜି ବୋଧହୁଏ ହଠାତ୍ ସେ ଆସି ପହଞ୍ଚିଛନ୍ତି । ତେଣୁ ତାଙ୍କ ପାଖକୁ ତୋର ଯାଇ କିଛି ଲାଭ ନାହିଁ । ମୁଁ ଟିକିଏ ପରେ ସମ୍ଭବ ହେଲେ ଥରେ ଯାଇ ଦେଖା କରି ଆସିବି । ନ ହେଲେ ଟେଲିଫୋନ୍‌ରେ ଯୋଗାଯୋଗ କରିବି ।

ତା'ହେଲେ କାଲି ମୁଁ କେତେବେଳେ ଆସିବି ?

ଯେତେ ଶୀଘ୍ର ପାରୁଚୁ ଆ । ମୋତେ କିନ୍ତୁ ଦଶଟାଯାଏ ରଜନୀକାନ୍ତ ମହାପାତ୍ର ପାଇଁ ଅପେକ୍ଷା କରିବାକୁ ପଡ଼ିବ । ତା'ପରେ ଆମେ ଯୁଆଡ଼େ ବାହାରିବା ।

ବେଶ୍, ମୁଁ କାଲି ନଅଟା ଭିତରେ ଆସି ପହଞ୍ଚିବି ?

ଓକେ ।

କଣ୍ଟାଏ କଣ୍ଟାଏ ଦଶଟାରେ ରଜନୀକାନ୍ତ ମହାପାତ୍ର ଆସି ଇନ୍ଦ୍ରଜାଲରେ ଉପସ୍ଥିତ ହେଲେ ।

ଆସନ୍ତୁ ରଜନୀବାବୁ । ଆମେ ଆପଣଙ୍କ ପାଇଁ ଅପେକ୍ଷା କରିବସିଚୁ । ସତ୍ୟବ୍ରତ ଚେଆରରୁ ଉଠି କରମର୍ଦ୍ଦନ କଲା । ମୁଁ ପ୍ରତିନମସ୍କାର ଜଣାଇ ନୀରବରେ ବସିରହିଲି ।

ରଜନୀକାନ୍ତ ମହାପାତ୍ର ଗୋଟିଏ ଚେଆର ଅଧିକାର କରି ବସିଲେ । କହିଲେ: କାଲି ମୁଁ ଟିକିଏ ଭୀଷଣ ଭାବରେ ବ୍ୟସ୍ତ ଥିଲି । ବ୍ୟସ୍ତତା ମାନେ ଆଉ କିଛି ନୁହେଁ, ମୋର ଜଣେ ବାନ୍ଧବୀଙ୍କ ସହିତ ସିନେମା ଦେଖିବାର ପ୍ରୋଗ୍ରାମ ଥିଲା, ଏବଂ ଯେତେବେଳେ ମାମୁଙ୍କ ଘରକୁ ଯାଇଥିଲି, ସେତେବେଳେ ବାନ୍ଧବୀଜଣଙ୍କୁ ରାସ୍ତାରେ ରିକ୍ସାରେ ବସାଇ ଦେଇ ଯାଇଥିଲି । ତେଣୁ ମୋର ଅବସ୍ଥା କଥା ବୁଝି ପାରୁଥିବେ । ଏତେ ସହଜରେ ଓ ସରଳ ଭାବରେ ଯେ ରଜନୀକାନ୍ତ ମହାପାତ୍ର ତାଙ୍କ ବାନ୍ଧବୀଙ୍କ ବୃତ୍ତାନ୍ତ ବ୍ୟକ୍ତ କରିଦେବେ, ସତ୍ୟବ୍ରତ ବୋଧହୁଏ ଆଦୌ ଭାବି ପାରି ନ ଥିଲା । ତେଣୁ ହଠାତ୍ ସେ କିଛି ପ୍ରଶ୍ନ ପଚାରି ନପାରି ନୀରବରେ କିଛି ସମୟ ବସି ରହିଲା ।

ରଜନୀକାନ୍ତ ମହାପାତ୍ର ପୁଣି କହିଲେ  ମୁଁ ଶୁଣିଲି ଆପଣ ମୋତେ ଯାଇ ଘରେ ବି ଖୋଜିଥିଲେ, ହରିହରବାବୁଙ୍କୁ ମୁଁ ବାହାରକୁ ଆସିବା କଥା କିଛି ଜଣାଇ ନ ଥିଲି, ସେ ଖୁବ୍ ବ୍ୟସ୍ତ ହେଲେ । ଆପଣମାନେ ମୋ ପାଇଁ କାଲି ଅନେକ ଅସୁବିଧା ଭୋଗ କରିଛନ୍ତି, ସେଥିପାଇଁ କ୍ଷମା କରିବେ ।

ଏଥର ସତ୍ୟବ୍ରତ କହିଲା : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆମେ ତ ଆପଣଙ୍କ ସହିତ ଆପଏଣ୍ଟମେଣ୍ଟ କରି ଯାଇନଥିଲୁ । ତେଣୁ ଆମର ଅସୁବିଧା ସୁବିଧା ପାଇଁ ଆମେ ମୋଟେ ବ୍ୟସ୍ତ ହେଉନାହୁଁ । ବରଂ ଆପଣଙ୍କୁ ଆମେ କିଛି ପରିମାଣରେ ହଇରାଣ କରିବାକୁ ଚାହୁଁ ।

ରଜନୀକାନ୍ତ ମହାପାତ୍ର ହସିଲେ, କହିଲେ  ଆପଣ ବୋଧହୁଏ ଜାଣନ୍ତି ମିଷ୍ଟର ମହାପାତ୍ର, ମୁଁ ଜଣେ ଲେଖକ । ତେଣୁ ଆପଣଙ୍କ ହଇରାଣଟା ମୋ ପେଷା ପକ୍ଷରେ ଆଦୌ ଅଶୋଭନ ହେବନାହିଁ । ବରଂ ମୋର ଲାଭ ହେବ ।

ସତ୍ୟବ୍ରତ କହିଲା  ଭଲକଥା । ଆମେ ତ କାହାରି ଅନିଷ୍ଟ କରିବାକୁ ଯାଉନାହୁଁ, ତେଣୁ ଆପଣ ଯଦି ଆମଦ୍ୱାରା ଉପକୃତ ହୁଅନ୍ତି, ବରଂ ଆମେ ଖୁସି ହେବୁ । ତେବେ ଅସଲ କଥା ହେଉଛି ମୁଁ ଚାମେଲୀ ସମ୍ବନ୍ଧରେ କିଛି ତଥ୍ୟ

ଆପଣଙ୍କଠାରୁ ଜାଣିବାକୁ ଚାହେଁ । ଆପଣ ହୁଏତ ଜାଣି ନାହାନ୍ତି, ମୁଁ ସେଥିପାଇଁ ନିଯୁକ୍ତି ପାଇଛି । ତେଣୁ...

ସତ୍ୟବ୍ରତ କଥା ଅସମାପ୍ତ ରଖି ନୀରବରେ ରଜନୀକାନ୍ତଙ୍କ ମୁହଁକୁ ଚାହିଁଲା ।

ରଜନୀକାନ୍ତ କହିଲେ । ମୋ ଠାରୁ କ'ଣ ଜାଣିବାକୁ ଚାହାନ୍ତି କୁହନ୍ତୁ, ଯାହା ମୋତେ ଜଣାଥିବ ମୁଁ ସବୁ କଥା ଆପଣଙ୍କୁ ଜଣାଇ ଦେବି । କାରଣ ଆପଣ ହୁଏତ ଜାଣି ନାହାନ୍ତି ଚାମେଲୀର ମୃତ୍ୟୁରେ ମୁଁ ଅତ୍ୟନ୍ତ ଦୁଃଖିତ । ଏପରି ଏକ ଅପ୍ରୀତିକର ମୃତ୍ୟୁ ବାସ୍ତବିକ ଅତ୍ୟନ୍ତ କରୁଣ । ଚାମେଲୀର ମୃତ୍ୟୁରେ ଦୁଇଦିନ ଦୁଇରାତି ମୁଁ ସ୍ତବ୍ଧ ହୋଇ ଯାଇଥିଲି । ଏପର୍ଯ୍ୟନ୍ତ ବି ସଂପୂର୍ଣ୍ଣରୂପେ ମୋର ସ୍ତବ୍ଧତା ଭାଙ୍ଗି ନାହିଁ ।

ସତ୍ୟବ୍ରତ ଗମ୍ଭୀର ହୋଇ ସବୁ ଶୁଣିସାରି କହିଲା : ରଜନୀବାବୁ, ଚାମେଲୀର ଏଇ ମୃତ୍ୟୁ, ଯାହାକୁ ଆପଣ ଏକ କରୁଣ ମୃତ୍ୟୁ ବୋଲି କହୁଛନ୍ତି, ଏହି ମୃତ୍ୟୁ କ'ଣ ଅପମୃତ୍ୟୁ ନା ଇଚ୍ଛା ମୃତ୍ୟୁ ନା କାହାରି ପରିକଳ୍ପିତ ମୃତ୍ୟୁ?

ରଜନୀକାନ୍ତ ମହାପାତ୍ର ହଠାତ୍ କିଛି ଉତ୍ତର ଦେଇ ପାରିଲେ ନାହିଁ । ମୁହଁଟା ତାଙ୍କର ମୁହୂର୍ତ୍ତକ ପାଇଁ ସତେ ଯେପରି ଯନ୍ତ୍ରଣାକାତର ହୋଇ ଉଠିଲା । ସେ ଆଖି ବନ୍ଦ କଲେ । ତା'ପରେ ଧୀରେଧୀରେ କହିଲେ : ଦେଖନ୍ତୁ ମିଷ୍ଟର ମହାପାତ୍ର, ଆପଣ ଜଣେ କ୍ରିମିନୋଲୋଜିଷ୍ଟ । ମଣିଷର ମନସ୍ତତ୍ତ୍ୱ ମଧ୍ୟ ଆପଣ କିଛି କିଛି ବୁଝନ୍ତି । ମୁଁ ବି ଜଣେ ଲେଖକ । ମଣିଷର ମନକଥା ବୁଝିବାର ଦକ୍ଷତା ମୋର କିଛି ଅଛି । କିନ୍ତୁ ଚାମେଲୀର ସେହି ମୃତ୍ୟୁ ଦେଖିବା ପରଠାରୁ ମୁଁ କିପରି ଉଦାସ ହୋଇଯାଇଛି । ଜଣେ ସୁସ୍ଥସବଳ ମଣିଷ । କେଇଘଣ୍ଟା ପୂର୍ବରୁ ଆମେ ଫୂର୍ତ୍ତି କରି ଫେରୁଛୁ । କେହି ଅସୁସ୍ଥ ନୋହୁ, ଅଥଚ ଚାମେଲୀ ସାମନ୍ତର ମୃତ୍ୟୁ ! ବାସ୍ତବିକ ଏ ମୃତ୍ୟୁ ଅବିଶ୍ୱାସ୍ୟ । ମିଷ୍ଟର ମହାପାତ୍ର । ମୋତେ କ୍ଷମା କରିବେ, ଏ ସମ୍ବନ୍ଧରେ ମୁଁ ଅନେକ ଚିନ୍ତା କରିଚି, ମୋର ବି କାହିଁକି ମନେ ହେଉଚି ଏ ମୃତ୍ୟୁ ରହସ୍ୟାବୃତ । ଏ ମୃତ୍ୟୁ ରହସ୍ୟ ଉଦ୍‌ଘାଟିତ ହେବା ଉଚିତ୍ ।

ମୁଁ ଲକ୍ଷ୍ୟ କଲି, ସତ୍ୟବ୍ରତ ମୁହଁରେ କିପରି ବିସ୍ମୟ ଫୁଟି ଉଠିଲା । ସେ ହୁଏତ ରଜନୀବାବୁଙ୍କ ମୁହଁରୁ ଏପରି ଏକ ଉତ୍ତର ଆଶା କରି ନ ଥିଲା । ଯେଉଁ ପ୍ରଶ୍ନ ସେ ରଜନୀବାବୁଙ୍କୁ ପଚାରି ଥାଆନ୍ତା, ରଜନୀବାବୁ ପୂର୍ବରୁ ତା'ର ଉତ୍ତର ଦେଇ ବସିଛନ୍ତି ।

ସତ୍ୟବ୍ରତ କହିଲା ଆପଣ ତା' ହେଲେ ଆମ ସଙ୍ଗରେ ଏକମତ ଯେ, ଚାମେଲୀ ସାମନ୍ତର ମୃତ୍ୟୁ ଆକସ୍ମିକ ନୁହେଁ, ଏହି ମୃତ୍ୟୁ ପଛରେ କାହାରି ହାତ ଅଛି ?

ରଜନୀକାନ୍ତ ନୀରବ ରହିଲେ ।

ସତ୍ୟବ୍ରତ ପୁଣି ପଚାରିଲେ ମୋ ପ୍ରଶ୍ନର କିଛି ଉତ୍ତର ଦେଲେ ନାହିଁ ଯେ !

ଉତ୍ତର ସବୁ ଶେଷ ହୋଇ ଯାଇଛି ମିଷ୍ଟର ମହାପାତ୍ର । ପ୍ରଶ୍ନର ଉତ୍ତର ଦେଇ ଗୋଟିଏ ସୁନ୍ଦର ଜୀବନ ଆଉ ବଞ୍ଚାଇ ହେବ ନାହିଁ । ମୋତେ ଆଜି ଆପଣ

ଛୁଟି ଦିଅନ୍ତୁ । ମୁଁ ଆଉ ଚାମେଲୀ ସାମନ୍ତର ମୃତ୍ୟୁ ସମ୍ବନ୍ଧରେ କିଛି କଥା ଶୁଣିବାକୁ ଚାହେଁ ନାହିଁ ।

ଏଥର ସତ୍ୟବ୍ରତ ହସିଲା ।

କହିଲା  ଆପଣ ଚାମେଲୀର ମୃତ୍ୟୁରେ ଖୁବ୍ ଆଘାତ ପାଇଛନ୍ତି ମୁଁ ଜାଣେ, କିନ୍ତୁ ଚାମେଲୀର ମୃତ୍ୟୁ-ରହସ୍ୟ ଭେଦକରିବାକୁ ହେବ, ବରଂ ଆଜି ମୁଁ ସେ ପ୍ରସଙ୍ଗ ଯଦି ଏତିକିରୁ ବନ୍ଦ ରଖେ  ତା'ହେଲେ କାଲି କିମ୍ବା ପହରିଦିନ ଆପଣ ମୋ ପାଖକୁ ବା ମୋତେ ଆପଣଙ୍କ ପାଖକୁ ଦଉଡ଼ିବାକୁ ପଡ଼ିବ ।

ରଜନୀକାନ୍ତ ମହାପାତ୍ର ସେହିପରି ବିରସ କଣ୍ଠରେ କହିଲେ,  ଚାମେଲୀର ମୃତ୍ୟୁ ସମ୍ବନ୍ଧରେ ଆପଣ କ'ଣ ଭାବୁଛନ୍ତି ମିଷ୍ଟର ମହାପାତ୍ର ?

ମୁଁ ଭାବୁଛି ଏ ମୃତ୍ୟୁ ପରିକଳ୍ପିତ ।

ତା' ମାନେ ଆପଣ ଭାବୁଛନ୍ତି ଆମେ ଯେଉଁମାନେ ସେଦିନ ଚାମେଲୀ ସହିତ ଏକା ଗାଡ଼ିରେ ବୁଲିବାକୁ ଯାଇଥିଲୁ, ଆମରି ଭିତରୁ କେହି ଏ ମୃତ୍ୟୁର ପରିକଳ୍ପନା କରିଥିଲା ?

ମୃତ୍ୟୁର ପରିକଳ୍ପନା ସେଦିନ ହୁଏତ ଆପଣମାନଙ୍କ ମଧ୍ୟରେ ନ ଥାଇ ପାରେ, କିନ୍ତୁ ହତ୍ୟାକାରୀ ଆପଣମାନଙ୍କ ଭିତରେ ଲୁଚି ରହିଥିଲା ।

ମୁଁ ଲକ୍ଷ୍ୟ କରିଥିଲି, ସତ୍ୟବ୍ରତ ମୁହଁରୁ ଏପରି ନିଷ୍ଠୁର ସତ୍ୟକଥା ଶୁଣି ମଧ ରଜନୀକାନ୍ତଙ୍କ ମୁହଁରେ କୌଣସି ବିସ୍ମୟର ଭାବ ଫୁଟିଲା ନାହିଁ । ସେ ନୀରସ କଣ୍ଠରେ କହିଲେ   ହୋଇପାରେ ।

ହୋଇପାରେ ନୁହେଁ, ହୋଇଛି । ସତ୍ୟବ୍ରତ ଦୃଢ଼କଣ୍ଠରେ କହିଲା ।

ତା'ହେଲେ ହତ୍ୟାକାରୀ ତାଲିକା ମଧ୍ୟରେ ମୋ ନାଁଟା ବି ଯୁକ୍ତ ହୋଇଛି ନିଶ୍ଚୟ । ତେଣୁ ଆପଣ ଭାବୁଛନ୍ତି କ'ଣ ମୋ ମୁହଁରୁ ସ୍ୱୀକାରୋକ୍ତି ବାହାର କରି ପାରିବେ ?

ପୁଣି ସତ୍ୟବ୍ରତ ହସିଲା । କହିଲା : ହାତ୍ୟାକାରୀଙ୍କ ତାଲିକାରୁ ଆପଣଙ୍କ ନାଁ କାଟି ଦେବାର ବେଳ ବର୍ତ୍ତମାନ ଆସିନାହିଁ ରଜନୀ ବାବୁ, ତେବେ ତାଲିକାରେ ଯେଉଁ ପାଞ୍ଚୋଟି ନାମ ଅଛି ତହିଁରୁ ଯେ ଚାରୋଟି ନିଶ୍ଚୟ କଟିଯିବ ଏ ବିଷୟରେ ମୁଁ ସ୍ଥିର ନିଶ୍ଚିତ । ତେବେ କେଉଁ ଚାରୋଟି ନାମ ମୁଁ କାଟିବି, ସେ ସମ୍ବନ୍ଧରେ ଆପଣମାନଙ୍କ ସହଯୋଗ ନ ପାଇଲେ ଚଳିବ କିପରି ?

ବେଶ୍, ମୋତେ କ'ଣ କରିବାକୁ ହେବ କୁହନ୍ତୁ ।

କେବଳ ମୋର କେତୋଟି ପ୍ରଶ୍ନର ଉତ୍ତର ଦେବେ ଏବଂ ସେ ଉତ୍ତର ଗୁଡ଼ିକ ସତ୍ୟ ହେବା ଆବଶ୍ୟକ ।

ଏଥର ରଜନୀକାନ୍ତ ହସିଲେ । ହସି ହସି କହିଲେ : ସତ୍ୟ ଉତ୍ତର ଦେବାକୁ ଚେଷ୍ଟା କରିବି ।

କେତେଥର ଏହି ପରି ପିକ୍ନିକ୍ ଟ୍ରିପ୍‌ରେ ସେମାନଙ୍କ ସହିତ ଯାଇଛନ୍ତି ?

ତିନିଥର ।

ପ୍ରଥମ ଥରରେ ଚାମେଲୀ ଥିଲା ?

: ହଁ, ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପ୍ରତି ଥରରେ ଚାମେଲୀ ଆମ ସହିତ ଥିଲା ।

ଅନ୍ୟ ବନ୍ଧୁମାନେ ?

ପ୍ରାୟ ସମସ୍ତେ ଥିଲେ, ବରଂ ଅଧିକ ଜଣେ ଦୁଇଜଣ ଥିଲେ । ତେବେ ଦ୍ୱିତୀୟ ଥର ଅନୁରାଧା ଆମ ସହିତ ଯାଇ ନ ଥିଲା ।

ଏ ଦୁଇଟି ଝିଅଙ୍କ ଭିତରୁ ଆପଣଙ୍କୁ କାହାକୁ ଭଲ ଲାଗିଥିଲା ? ଅନୁରାଧାକୁ ନା ଚାମେଲୀକୁ ?

ଦୁଇଜଣଙ୍କୁ ।

ଦୁଇ ଝିଅଙ୍କ ଭିତରେ ବନ୍ଧୁତା କିପରି ଥିଲା ?

ଭଲ ।

କେହି, କାହାକୁ ଈର୍ଷା କରୁନଥିଲେ ?

ମୋ ଆଖିରେ ସେପରି କିଛି ଧରା ପଡ଼ିନଥଲା ।

ଦୁହିଁଙ୍କ ଭିତରୁ ଆପଣଙ୍କ ଉପନ୍ୟାସର ନାୟିକା ହେବାର ଉପଯୋଗୀ କିଏ ଥିଲା ।

ଦୁଇଜଣଯାକ ।

ଏମାନଙ୍କୁ ନେଇ କିଛି ବହି ଲେଖିଛନ୍ତି ?

ନା, ଲେଖିବି ବୋଲି ଭାବୁଥିଲି ।

ହୁଁ, ଅଖିଳ ମହାନ୍ତିଙ୍କ ସମ୍ବନ୍ଧରେ ଆପଣ କିଛି କୁହନ୍ତୁ ।

ସେ ଜଣେ ସୁଗାୟକ ।

ସେ କାହାକୁ ବେଶୀ ଭଲ ପାଉଥିଲେ ?

ସଂଗୀତକୁ ।

ଝିଅ ଦୁହିଁଙ୍କ ଭିତରୁ ?

ମୁଁ ଠିକ୍ କହିପାରିବି ନାହିଁ ।

ତଥାପି ?

ନା ଏ କ୍ଷେତ୍ରରେ ତଥାପିର ଉତ୍ତର ଦେଇ ପାରିବି ନାହିଁ ।

ଆଚ୍ଛା ସେଦିନ, ଯେଉଁଦିନ ଆପଣମାନେ କାଳିଜାଈରୁ ଫେରିଲେ, ଫେରିଲାବେଳେ କିଏ କେଉଁଠି ବସିଥିଲେ ?

ରାଜକିଶୋରବାବୁ ଚାମେଲୀ ଆଉ ଅଖିଳ ମହାନ୍ତି ଆଗରେ ବସିଥିଲେ । ବାକି ଆମେ ତିନିଜଣ ପଛରେ ବସିଥିଲୁ ?

ଗାଡ଼ି ଫେରିଲା ବେଳେ କେତେ ଜାଗା ଅଟକି ଥିଲା ?

: ଜାଗାଏ ବି' ଜାଗା ଅଟକିଥିଲା, ତେବେ ମୁଁ ଶୋଇ ପଡ଼ିଥିଲି, ମୋର କିଛି ମନେ ନାହିଁ ।

ହୁଁ, କାଳିଜାଈଠାରେ ଆପଣମାନେ କେତେ ସମୟ ଥିଲେ ?

ପ୍ରାୟ ଦୁଇ ତିନିଘଣ୍ଟା ।

: ସେଠାରେ ଆଉ କେହି ନଥିଲେ ? ମାନେ ଆପଣମାନଙ୍କ ପାର୍ଟି ଛଡ଼ା ଅନ୍ୟ କୌଣସି ପାର୍ଟି ସେଦିନ ସେଠାକୁ ଯାଇଥିଲେ ?

ହଁ ଯାଇଥିଲେ ।

ସେମାନେ ଆଗେ ଫେରି ଆସିଥିଲେ ନା ଆପଣମାନେ ?

ଆମେ ଆଗ ଫେରି ଆସିଥିଲୁ ।

ସେମାନଙ୍କ ଭିତରୁ ଆପଣମାନଙ୍କର କେହି ପରିଚିତ ଥିଲେ ?

ନା ।

ସେମାନେ କେତେଜଣ ଥିଲେ ?

ପ୍ରାୟ ଆଠ ଦଶଜଣ ।

ସେମାନଙ୍କ ଦଳରେ ମହିଳା ବି ଥିଲେ ?

ହଁ ।

ସେ ମହିଳାଙ୍କ ସହିତ ଆପଣଙ୍କ ଦଳର ମହିଳାଙ୍କର ପରିଚୟ ନ ଥିଲା ?

ସେପରି ତ କିଛି ମୋର ମନେ ହେଲା ନାହିଁ ।

ଆପଣ ମନେ ପକାଇ କୁହନ୍ତୁ ।

ବେଶ୍, ତାହାହିଁ ହେଉ । କିନ୍ତୁ ଦିନେ ଆପଣ ସମୟ କରି ଆସିବେ ଏବଂ ନିଶ୍ଚୟ ଆମେ ଏ ସମ୍ବନ୍ଧରେ କଥାବାର୍ତ୍ତା ହେବା । ଏଥର ଆପଣଙ୍କ କଥା କୁହନ୍ତୁ ।

: ମୋର ଆଉ କଥା କିଛି ନାହିଁ । ସେଇ ଗୋଟିଏ କଥା । ଚାମେଲୀର ମୃତ୍ୟୁ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

ସୁଖରଞ୍ଜନ ଆମ ମୁହଁକୁ କିଛି ସମୟ ଅପଲକ ନୟନରେ ଅନାଇ ରହି କହିଲା : ଚାମେଲୀର ମୃତ୍ୟୁ । କ'ଣ କହିବି ସେକଥା । ତା' ପରମାୟୁ ଶେଷ ହେଲା, ତା'ର ମୃତ୍ୟୁ ଘଟିଲା । କିନ୍ତୁ ଆପଣମାନେ ତାହା ବିଶ୍ୱାସ କରିବାକୁ ଚାହାନ୍ତି ନାହିଁ । ତେଣୁ ଆପଣଙ୍କ ମନରେ ସ୍ୱସ୍ତି ନାହିଁ । ଯାହା ହେଉ, ଏଇ ମାୟାସଂସାରରେ ମଣିଷ ଯେତେ ଦିନ ବଞ୍ଚି ରହିବ, ତାକୁ ନାନା ସମସ୍ୟାର ସମ୍ମୁଖୀନ ହେବାକୁ ହେବ । ମୁଁ

ବି ପ୍ରସ୍ତୁତ । ଆପଣ ଚାମେଳୀ ସମ୍ବନ୍ଧରେ ପଚାରନ୍ତୁ । ମୁଁ ଉତ୍ତର ଦେବି । କିନ୍ତୁ ମୋତେ ଆଉ କେତୋଟି ମିନିଟ୍ ସମୟ ଦିଅନ୍ତୁ । ମୁଁ କଫିଟା କରି ଆଣେ ।

ମୁହୂର୍ତ୍ତେ ବି ଅପେକ୍ଷା ନକରି ସୁଖରଞ୍ଜନ ଅନ୍ୟ ଘରକୁ ଚାଲିଗଲା ।

ମୁଁ ସତ୍ୟବ୍ରତକୁ କହିଲି ଆମେ କୋଉଠି ଆସି ପହଞ୍ଚିଲେ ? ଏ କଣ୍ଟାମାଳ ଭିତରୁ ଚାମେଲୀ ହତ୍ୟା ରହସ୍ୟ ଉଦ୍‌ଘାଟନ କରିବା କ'ଣ ସମ୍ଭବ ହେବ ?

ସତ୍ୟବ୍ରତ ମୋ କଥାର କିଛି ଉତ୍ତର ନଦେଇ ଚେଆରରୁ ଉଠି ଯାଇ ଘର ଭିତରେ ଟଙ୍ଗା ହୋଇଥିବା ଫାଟୋ ଗୁଡ଼ିକୁ ଗୋଟି ଗୋଟି କରି ପରୀକ୍ଷା କଲା । ମନେ ହେଉଥିଲା ଯେପରି ସେଇ ସବୁ ଫଟୋ ଭିତରେ ଚାମେଲୀର ହତ୍ୟା ରହସ୍ୟ ଲୁଚି ରହିଛି ।

ମୁଁ ବି ଉଠିଗଲି । ତା' ପାଖକୁ । ସତ୍ୟବ୍ରତ ଗୋଟିଏ ଫଟୋ ଦିଆଲରୁ କାଢ଼ି ଆଣି ଫ୍ରେମ୍‌ର ପଛ ଆଡ଼ଟା ମୋ ଆଡ଼କୁ ଦେଖାଇ କହିଲା ଦେଖି କ'ଣ ମନେ ହେଉଛି ?

ମାନେ ?

ନୂଆ ନା ପୁରୁଣା ?

ଫଟୋଟିକୁ ହାତକୁ ନେଇ ମୁଁ ଭଲ କରି ଦେଖିଲି । ନା, ଏକଦମ୍ ସଦ୍ୟ ନୁହେଁ । ବେଶ୍ କିଛିଦିନ ଆଗରୁ ବନ୍ଧା ହୋଇଛି । ଫ୍ରେମ୍‌ର ଚାରିଧାରରେ ଯଥେଷ୍ଟ ମଇଳା ଜମି ଯାଇଛି ।

ସତ୍ୟବ୍ରତ ପୁଣି ଫଟୋଟିକୁ ଯଥା ସ୍ଥାନରେ ଟଙ୍ଗେଇ ଦେଇ ପୂର୍ବ ସ୍ଥାନକୁ ଫେରି ଆସି, ଆଖି ବୁଜି କ'ଣ ଚିନ୍ତା କଲା ।

ସୁଖରଞ୍ଜନ ବାବୁ ଗୋଟିଏ ଟ୍ରେ' ଟେବୁଲ ଉପରେ ଓହ୍ଲାଇ ରଖି କହିଲେ କଫି ପିଅନ୍ତୁ ।

ସତ୍ୟବ୍ରତ ଆଖି ଖୋଲିଲା ।

କଫି କପ୍‌ଗୁଡ଼ିକ ସେମାନଙ୍କ ହାତକୁ ବଢ଼ାଇଦେଇ, ମୁଁ ଗୋଟିଏ କପ୍ ଉଠାଇ ନେଲି ।

ସତ୍ୟବ୍ରତ କହିଲା ସୁଖରଞ୍ଜନ ବାବୁ ! ଚାମେଲୀର ମୃତ୍ୟୁ ରହସ୍ୟ ଧୀରେ ଧୀରେ ଜଟିଳ ହୋଇ ଉଠୁଛି ! ଆପଣଙ୍କର ଆଚରଣ ଯାହା, ଆପଣ ଚାମେଲୀ ଗ୍ରୁପ୍‌ରେ କିପରି ଭିଡ଼ିଲେ, ମୁଁ ବାଟ ଖୋଜି ପାଉନାହିଁ ।

ସୁଖରଞ୍ଜନ ସ୍ମିତ ହସି କହିଲେ ଆପଣ ଆଶ୍ଚର୍ଯ୍ୟ ହୁଅନ୍ତୁ ନାହିଁ ମହାପାତ୍ର ବାବୁ । ଏବେ ମୋତେ ସେ ସବୁ ବାଜେ ଟ୍ରିପ୍ ଫ୍ରିପ୍ ଆଉ ଭଲ ଲାଗୁନାହିଁ । କିନ୍ତୁ ଉପାୟ ନାହିଁ । ସେମାନେ ମୋର ବହୁଦିନର ସାଙ୍ଗସାଥୀ । ବେଳେବେଳେ ଆସି ବିରକ୍ତ କରନ୍ତି, ଟାଣି ନିଅନ୍ତି ସଙ୍ଗରେ। ମନା କରି ହୁଏ ନାହିଁ । ମୁଁ ଜାଣେ ଯେ ଏଇ ସଂସାରରେ ରହିବାକୁ ହେଲେ, ସଂସାରୀମାନଙ୍କ ସହିତ ମିଳିମିଶି ଚଳିବାକୁ ହେଲେ, କିଛି. କିଛି କାମ ଇଚ୍ଛା ବିରୁଦ୍ଧରେ କରିବାକୁ ହେବ । ତେଣୁ...

ହୁଁ, ମୁଁ ତ ସେଇକଥା କହୁଛି ସୁଖରଞ୍ଜନ ବାବୁ । ଆପଣଙ୍କ ଭାଷାରେ ଯିଏ ଯେତେ କରି କରାଉଥିଲେ ବି, ସଂସାର ପଥ ଏକ ଭିନ୍ନ ପଥ । ସେ ପଥରେ ଚଳିବାକୁ ହେଲେ କିଛି କିଛି ନିୟମ ଶୃଙ୍ଖଳା ମାନି ଚଳିବାକୁ ହେବ । ଯା'ହେଉ, ଚାମେଲୀର ମୃତ୍ୟୁ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

ମୁଁ ତ ଆପଣଙ୍କୁ ଆଗରୁ କହିଛି ମହାପାତ୍ର ବାବୁ । ଏଇ ଜନ୍ମ ମୃତ୍ୟୁ ସମ୍ବନ୍ଧରେ ମୋର ଦୃଷ୍ଟିଭଙ୍ଗୀ ଅଲଗା । ତେଣୁ ଜନ୍ମ ମୃତ୍ୟୁ ଭିତରେ ମୋ ଆଖିରେ କିଛି ପ୍ରଭେଦ ନାହିଁ । ଆପଣ ବରଂ ମୋତେ କ'ଣ କରିବାକୁ ହେବ କୁହନ୍ତୁ ।

ମୋର କେତୋଟି ପ୍ରଶ୍ନ ସୁଖରଞ୍ଜନ ବାବୁ । ଆଶା କରୁଛି, ଆପଣ ମୋର ସବୁ ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବେ । ପ୍ରଥମ ପ୍ରଶ୍ନ ହେଉଛି, ଆପଣ କ'ଣ ଲକ୍ଷ୍ୟ କରିଛନ୍ତି କି, ଯେଉଁଦିନ ଆପଣମାନେ ପିକ୍ନିକର ଟ୍ରିପ୍‌ରେ କାଳିଜାଈ ଗଲେ, ସେ ଦିନ ଚାମେଲୀ ସହିତ କାହାରି କୌଣସି କଳିଗୋଳ ହୋଇଥିଲା?

ନା ।

ଆଚ୍ଛା, ଆପଣ ଯେଉଁ ଚାରିବନ୍ଧୁ ଦୁଇ ବାନ୍ଧବୀଙ୍କ ସହିତ ଯାଇଥିଲେ, ଏଇ ଚାରିବନ୍ଧୁଙ୍କ ଭିତରୁ ଚାମେଲୀ କାହାକୁ ବେଶୀ ଭଲ ପାଉଥିଲା ବା ଚାମେଲୀକୁ କିଏ ବେଶୀ ଭଲ ପାଉଥିଲା ।

: ଏ ପ୍ରଶ୍ନ ବଡ଼ ଜଟିଳ ମହାପାତ୍ର ବାବୁ । ଭଲ ପାଇବାର ଅର୍ଥ ଏଠାରେ ହୃଦୟ ବିନିମୟ । ତେବେ ମୋର ଧାରଣା ଯାହାକୁ କହନ୍ତି ଏକାନ୍ତ ଗୋପନୀୟ, ସେଇଟା ଆମ କାହାରି ଭିତରେ ଥିବାପରି ମୋର କେବେ ମନେ ହୋଇ ନାହିଁ କିମ୍ବା ଆଜି ବି ମନେ ହେଉନାହିଁ ।

ହୁଁ, ଆପଣ ତା'ହେଲେ ଆପଣଙ୍କ ଅନ୍ୟ ବନ୍ଧୁ ତିନିଜଣଙ୍କୁ ଏବଂ ବାନ୍ଧବୀ ଦୁଇଜଣଙ୍କୁ ଖୁବ୍ ଭଲ ଭାବରେ ଷ୍ଟଡି କରିଛନ୍ତି ।

ଷ୍ଟଡିର କିଛି ଆବଶ୍ୟକତା ନାହିଁ ମହାପାତ୍ରବାବୁ, ଏଇଟା କମନସେନ୍‌ସର କଥା । ଧରନ୍ତୁ ମୁଁ ବା ମୋର ଅନ୍ୟ ବନ୍ଧୁମାନେ ଅନ୍ତର ଦେଇ ଭଲ ପାଇବେ କାହାକୁ ? ଯାହାକୁ ସେ ନିଜର ମନେ କରିବେ ଏବଂ ଭବିଷ୍ୟତରେ ନିଜର କରିବା ପାଇଁ ଆଗ୍ରହୀ ଥିବେ । ଏଠାରେ ଆମେ ଚାରିବନ୍ଧୁ ଯାଇଥିଲୁ, ସମସ୍ତଙ୍କର କିଛିନାକିଛି ମର୍ଯ୍ୟାଦା ଏବଂ ପଦ ମର୍ଯ୍ୟାଦା ରହିଛି । ତା' ବୋଲି ବାନ୍ଧବୀ ଦୁଇଜଣଙ୍କୁ ମୁଁ ହୀନ ଦୃଷ୍ଟିରେ ଦେଖୁ ନାହିଁ କିମ୍ବା ସେମାନଙ୍କର ବଂଶମର୍ଯ୍ୟାଦା କଥା ମୁଁ କହୁ ନାହିଁ । ମୁଁ କେବଳ କହୁଛି ସେମାନଙ୍କର ବର୍ତ୍ତମାନ ସ୍ଥିତି କଥା । ଜଣେ ଟାଇପିଷ୍ଟ ଆଉ ଜଣେ ନାୟିକା, ଏ ଦୁଇଜଣଙ୍କୁ ନେଇ ଘର ବାନ୍ଧିବା କଥା ନିଶ୍ଚୟ ଆମ ଚାରିବନ୍ଧୁଙ୍କ ମଧ୍ୟରୁ କାହାରି ମନରେ ଉଦୟ ହୋଇ ନଥିବ ।

ମୁଁ ଲକ୍ଷ୍ୟ କଲି, ସୁଖରଞ୍ଜନ ମୁଖରୁ ଏପରି ଉତ୍ତର ଶୁଣି, ସତ୍ୟବ୍ରତ ହଠାତ୍ ସ୍ତବ୍ଧ ହୋଇଗଲା । ତା ମୁହଁରେ କାଠିନ୍ୟ ଫୁଟି ଉଠିଲା । ମୁହୂର୍ତ୍ତକର ନୀରବତା

ପରେ ସେ କହିଲା ଏ ଦୁଇଜଣଙ୍କୁ ନେଇ ଘର କରିବାର ପରିକଳ୍ପନା ହୁଏତ ଆପଣଙ୍କ ଚାରିବନ୍ଧୁଙ୍କ ମନରେ ନ ଥିଲା । କିନ୍ତୁ ଫୁର୍ତ୍ତିକରିବାର ଅଭିଳାଷ ତ ଥାଇପାରେ ।

ସୁଖରଞ୍ଜନ ହସି ଉଠିଲା । କହିଲା ଆପଣଙ୍କ ଅନୁମାନ ଯଦି ସତ୍ୟ ହୁଏ, ତା'ହେଲେ ପ୍ରତିଯୋଗିତାର ପ୍ରଶ୍ନ ଏଠାରେ ଉଠୁନାହିଁ । ତେଣୁ ଏ କ୍ଷେତ୍ରରେ ମୃତ୍ୟୁ ସମ୍ଭବ, କିନ୍ତୁ ହତ୍ୟାର ଅବକାଶ କାହିଁ ?

ସତ୍ୟବ୍ରତ ସୁଖରଞ୍ଜନ ମୁହଁକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ କିଛି ସମୟ ଅନାଇ ରହି ଶାନ୍ତ ସ୍ୱରରେ କହିଲା : ତା'ହେଲେ ଆପଣମାନେ କାଳିଜାଈ ଫୂର୍ତ୍ତି କରିବା ଉଦ୍ଦେଶ୍ୟରେ ଯାଇଥିଲେ ?

ହଁ, ଫୂର୍ତ୍ତି ଆପଣ କହି ପାରନ୍ତି, କିନ୍ତୁ ଫୂର୍ତ୍ତି ଏଠାରେ ନିର୍ମଳ ଆନନ୍ଦ ଛଡ଼ା ଆଉ କିଛି ନୁହେଁ ।

ଆପଣ ନିଜ କଥା କହୁଛନ୍ତି ନା ସମସ୍ତଙ୍କ କଥା କହୁଛନ୍ତି ?

ମୋ କଥା ତ ନିଶ୍ଚୟ, ତେବେ ଅନ୍ୟମାନେ ମୋ ଦୃଷ୍ଟିରେ କିଛି ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ଯାଇନଥିଲେ । ତେଣୁ ପ୍ରତିଶୋଧ ବା ପ୍ରତିହିଂସାର କୌଣସି ଅବକାଶ ନ ଥିଲା ଆମ ପ୍ଲିଜାର ଟ୍ରିପ୍‌ରେ ।

ଆପଣ ଏ ଟ୍ରିପ୍‌କୁ ନିମନ୍ତ୍ରିତ ହୋଇଥିଲେ କାହା ଦ୍ୱାରା ?

ନିମନ୍ତ୍ରିତ ମାନେ ? ସୁଖରଞ୍ଜନ ସତ୍ୟବ୍ରତ ମୁହଁକୁ ବିସ୍ଫାରିତ ନୟନରେ ଚାହିଁଲେ ।

ତା'ହେଲେ ଆପଣ କ'ଣ ଏ ପ୍ଲିଜାର୍ ଟ୍ରିପ୍‌ର ଆୟୋଜନ କରିଥିଲେ ?

ମୁଁ ନ କରିଥିଲେ ବି ପ୍ରସ୍ତାବରେ ଅମତ ହୋଇନଥିଲି ।

ତା' ହେଲେ ପ୍ରସ୍ତାବକ କିଏ ?

: ପ୍ରସ୍ତାବକ ? ସୁଖରଞ୍ଜନ ଟିକିଏ ଚିନ୍ତା କଲେ । କହିଲେ, ମୋର ଯେତେଦୂର ମନେ ପଡୁଛି, ମୁଁ ଆଉ ରଜନୀବାବୁ ଦିନେ ରାଜକିଶୋର ରଥଙ୍କ ଦୋକାନରେ ବସିଥିଲୁ । ଏଣୁ ତେଣୁ କଥା ହେଉଥିଲା । ଅଖିଳ ମହାନ୍ତି ବି ଆସି ପହଞ୍ଚିଲେ । ରାଜକିଶୋର ରଥ କଥାପ୍ରସଙ୍ଗରେ କହିଲେ, ଅନେକ ଦିନ ହେବ କୁଆଡ଼େ ଯାଇ ନାହାନ୍ତି । ଝୋଟାଏ ପ୍ରୋଗ୍ରାମ ହେଉ ।

ସଂଗେସଂଗେ ଅଖିଳ ମହାନ୍ତି ପ୍ରସ୍ତାବକୁ ସମର୍ଥନ କଲେ । ମୋର ଆଉ ରଜନୀବାବୁଙ୍କର ହଁ ନା'ର ପ୍ରୟୋଜନ ହେଲା ନାହିଁ । ସେଇ ମୁହୂର୍ତ୍ତରେ ପ୍ରୋଗ୍ରାମ ପ୍ରସ୍ତୁତ ହେଲା । ଅନୁରାଧା ଓ ଚାମଲୋର ନାମ ସେଇ ଲିଷ୍ଟରେ ଉଠିଲା । ତାରିଖ ବି ଧାର୍ଯ୍ୟ ହୋଇଗଲା । ଆପଣ ନିଶ୍ଚୟ ବୁଝି ପାରୁଥିବେ ଏଗୁଡ଼ା ସବୁ ହୁଇମିଜିକାଲ ପ୍ରୋଗ୍ରାମ । ଏଥିରେ କାହାରି କିଛି ମୋଟିଭ୍ ନଥାଏ ।

ବେଶ୍ ! ତା'ପରେ କ'ଣ ହେଲା କୁହନ୍ତୁ ।

ତା'ପରେ ଆଉ କ'ଣ ହେବ ?

ଆପଣଙ୍କ ସେଇ ପ୍ରୋଗ୍ରାମ ଭିତରକୁ ଅନୁରାଧା ଆଉ ଚାମେଲୀକୁ କିଏ ଆଣିଲା ?

ଠିକ୍ ମନେ ପଡୁନାହିଁ । ବୋଧହୁଏ ରଜନୀବାବୁ ଚାମେଲୀର ନାମ ଉଠାଇଥିଲେ ଆଉ ଅଖିଳବାବୁ ଅନୁରାଧାର ନାମ ପ୍ରସ୍ତାବ କରିଥିଲେ ।

ଆପଣ ଆଉ ରାଜକିଶୋର ବାବୁ ଏହାର ପ୍ରତିବାଦ କରି ନଥିଲେ?

ଏଥିରେ ବାଦ ପ୍ରତିବାଦର କ'ଣ ଥିଲା ମହାପାତ୍ର ବାବୁ ! ମୋର ମନେ ହେଉଛି ଆପଣ ଅଯଥାରେ ସମୟ ନଷ୍ଟ କରୁଛନ୍ତି ।

ହଁ, ସମୟ ଯେ ନଷ୍ଟ ହେଉଛି ଏହା ଠିକ୍, କିନ୍ତୁ ଅଯଥାରେ ନୁହେଁ। ଯା'ହେଉ, ମୁଁ ଜାଣି ଖୁସି ହେଲି ଯେ ଆପଣଙ୍କ ଜୀବନର ଗତିଧାରା ଅତ୍ୟନ୍ତ ପବିତ୍ର ପଥରେ ପ୍ରବାହିତ ହେଉଛି । ସୁଖର କଥା । ଆଜି ଏତିକିରୁ କ୍ରମଶଃ ଥାଉ। ଆଉ ଦିନେ ଆସି ଆପଣଙ୍କୁ ଖୁବ୍ ବିରକ୍ତ କରିବୁ । କ'ଣ କହୁଛନ୍ତି ?

ସୁଖରଞ୍ଜନ ଆଉଥରେ ହସିବାକୁ ଚେଷ୍ଟା କରି କହିଲେ  କରି କରାଉ ଥାଏ ମୁହିଁ, ମୋ ବିନା ଅନ୍ୟ ଗତି ନାହିଁ ।

ସେଦିନ ମୁଁ ଇନ୍ଦ୍ରଜାଲରେ ପହଞ୍ଚିବାକୁ ଟିକିଏ ଡେରି ହୋଇ ଯାଇଥିଲା । ଯାଇ ଦେଖିଲି, ନୀଳିମା ଚେମ୍ବର ଭିତରେ ବସି ଦ୍ରୁତଗତିରେ ଟାଇପ୍ କରିଚାଲିଛି। ସତ୍ୟବ୍ରତ ଟେବୁଲ୍ ଉପରେ ଗୋଟାଏ ଫୁଲ୍‌ସ୍କେପ୍ ସାଦା କାଗଜରେ ନାଲି ନେଳିପେନ୍‌ସିଲରେ ଅନାବନା ଅଜସ୍ର ଗାର ଟଣା ହୋଇଛି । ନିଜେ ସତ୍ୟବ୍ରତ ଚେଆର ଉପରେ ଆଖି ବୁଜି ଶୋଇଚି ।

ମୁଁ ସୁଇଂଡୋର୍‌ଟା ଠେଲି ଭିତରକୁ ପଶିବା ମାତ୍ରକେ ସତ୍ୟବ୍ରତ ସେହିପରି ଆଖି ବୁଜି କହିଲା    କିଛି ସମ୍ବାଦ ଅଛି?

ମୁଁ ନୀରବରେ ଗୋଟିଏ ଚେଆର ଦଖଲ କରି ବସିଲି ।

ସତ୍ୟବ୍ରତ ପୁଣି କହିଲା : ମୁଁ ଆଶା କରୁଚି ତୁ କାଲି ରାତିରେ ନିଶ୍ଚୟ ନିର୍ଦ୍ଦିଷ୍ଟ ସ୍ଥାନରୁ କିଛି ସଂବାଦ ସଂଗ୍ରହ କରିଥିବୁ । ମୁଁ ଚାମେଲୀର ଚାରିବନ୍ଧୁଙ୍କ ଜମାନବନ୍ଦୀ ଆନାଲିସିସ୍ କରି ଦେଖିଲି, ଏମାନଙ୍କର ମୋଟିଭ୍ ଚାମେଲୀର ହତ୍ୟା ପଛରେ କାହାରି ଥିଲା ପରି ମନେ ହେଉନାହିଁ । ଯଦିଓ ଆମକୁ ଆହୁରି ଗଭୀର ଭାବରେ ଘଟଣାଟାକୁ ବିଶ୍ଳେଷଣ କରିବାକୁ ହେବ, ତଥାପି ପ୍ରାଥମିକ ତଦନ୍ତରେ ମୁଁ କାହାରିକୁ ଅପରାଧ ଭିତରକୁ ଟାଣି ଆଣି ପାରୁନାହିଁ । କିନ୍ତୁ ଏହାଦ୍ୱାରା ଗୋଟିଏ କଥା ଜାଣି ହେଉଛି ଯେ ରଜନୀକାନ୍ତଙ୍କର ଚାମେଲୀ ପ୍ରତି ଏବଂ ଅଖିଳ ମହାନ୍ତିଙ୍କର ଅନୁରାଧା

ପ୍ରତି ଅଧିକ ଆକର୍ଷଣ ଥିଲା । ଏଥର ତୋ ଅନୁସନ୍ଧାନ କଥା କହ, ମୁଁ ମିଳେଇ ଦେଖି ନେବି ।

ମୁଁ କହିଲି  ତୁ ହେଲୁ ଗୁରୁଦେବ ଲୋକ, ତୋ ଆନାଲିସିସ୍ ଖୁବ୍ କମ୍ ବ୍ୟର୍ଥ ହୋଇଥାଏ ।

ଆବେ ଫାଜିଲାମି ଛାଡ଼େ, କାମର କଥା କହ । କିଛି ସମୟ ପୂର୍ବରୁ ସତ୍ୟାନନ୍ଦ ବାବୁ ଆସିଥିଲେ । ତାଙ୍କ ଉପରେ କୁଆଡ଼େ ଚାମେଲୀର ହତ୍ୟା ରହସ୍ୟ ଉଦ୍‌ଘାଟନ ପାଇଁ ଉପର ମହଲରୁ ଖୁବ୍ ଚାପ ସୃଷ୍ଟି ହେଉଛି । ସେ ଆସି ଭାରି ବ୍ୟସ୍ତ ହେଉଥିଲେ । ଏହା ଭିତରେ ଏ ସମୟରେ ଗୋଟାଏ ସମାଧାନ କରିବାକୁ ହେବ । କ'ଣ ହେଲା ? କାଲି ରାତିରେ ତୁ ରଜନୀକାନ୍ତ ମହାପାତ୍ରଙ୍କ ସହିତ ଦେଖା କରିଥିଲୁ ? ସେଦିନ ସେ ଯେଉଁ ଝିଅଟି ସହିତ ସିନେମା ଯାଇଥିଲା ତା'ର କିଛି ସମ୍ବାଦ ପାଇଲୁ ?

ମୁଁ କହିଲି  ସେ ଝିଅଟିର ସନ୍ଧାନ ପାଇନାହିଁ ସତ, କିନ୍ତୁ ରଜନୀକାନ୍ତଙ୍କ ସମ୍ବନ୍ଧରେ ଅନେକ ସମ୍ବାଦ ସଂଗ୍ରହ କରିଛି ।

ଏଥର ସତ୍ୟବ୍ରତ ଆଖି ଖୋଲି ମୋ ଆଡ଼କୁ ଉହୁଙ୍କି ଆସି, କରମର୍ଦ୍ଦନ କରିବା ପାଇଁ ହାତଟା ବଢ଼ାଇ ଦେଇ କହିଲା  ଜରୁର୍ ସମ୍ବାଦ କିଛି ମିଳିବ, ନିଶ୍ଚୟ ମିଳିବ । ତା'ପରେ କ'ଣ ହେଲା ?

ମୁଁ କହିଲି  କିଛି ହେଲାନାହିଁ । ରଜନୀବାବୁ ଘରେ ନଥିଲେ । ହରିହର ମହାପାତ୍ର ତାଙ୍କ ଚେମ୍ବରରେ ନ ଥିଲେ । ମୁଁ ସିଧା ଉପରକୁ ଉଠିଯାଇ ଦେଖିଲି ରଜନୀବାବୁଙ୍କ ଘର ଦୁଆରଟା ଅଧାମେଲା ହୋଇ ରହିଛି । ଭିତରକୁ ପଶିଗଲି । ଲାଇଟ୍ ଜଳୁଚି । ସାମ୍ନାରେ ଖଟ ଉପରେ ବିଛଣାପତ୍ର ଅସଜଡ଼ା ହୋଇ ପଡ଼ିଛି । ଟେବୁଲ ଉପରେ ସୁଟ୍‌କେଶ୍, ଚେଆର ଉପରେ ବିଛଣା ଚାଦର, ସବୁ ଯେମିତି ଇତଃସ୍ତତ, ବିକ୍ଷିପ୍ତ ।

ତା'ପରେ ?

ତା'ପରେ ଆଉ କ'ଣ ? ଫେରି ଆସୁଥିଲି । କିନ୍ତୁ ହଠାତ୍ ସେଇ ବିକ୍ଷିପ୍ତ ଆସବାବପତ୍ର ମଧ୍ୟରେ ମୋର ଦୃଷ୍ଟି ଆକର୍ଷଣ କଲା ଗୋଟାଏ ଆଲବମ୍। ଲେଉଟି ଯାଇ ଆଲବମ୍‌ଟି ଉଠାଇ ଆଣିଲି  ଖୋଲେଇ ଦେଖିଲି, ସାତ ଆଠଖଣ୍ଡ ଫଟୋ ତା' ଭିତରେ ଅଛି ।

ଫଟୋ ଗୁଡ଼ିକ ନିଶ୍ଚୟ ରଜନୀକାନ୍ତ ଆଉ ଚାମେଲୀର !

ନା, ସବୁ ଗୁଡ଼ିକ ନୁହେଁ । ତହିଁରୁ ଦୁଇଟି ଗ୍ରୁପ୍ ଫଟୋ ଭିତରେ ଚାମେଲୀକୁ ଦେଖିଲି ।

ସେଇ ଗ୍ରୁପ୍ ଫଟୋ ମଧ୍ୟରେ ଅନ୍ୟ କିଏ ଅଛନ୍ତି ?

ଗୋଟାକରେ ଅନୁରାଧା ଅଛି । ଆଉ ଗୋଟିଏ ଅପରିଚିତ ଝିଅ ଏବଂ ଅଖିଳ ମହାନ୍ତି ଆଉ ଜଣେ ଦି'ଜଣ ଅପରିଚିତ ।

ଅନ୍ୟ ଗ୍ରୁପ୍ ଫଟୋଟାରେ ?

ସେଥିରେ ବି ଅଖିଳ ମହାନ୍ତି, ରାଜକିଶୋର ରଥ, ଚାମେଲୀ, ରଜନୀକାନ୍ତ ଏବଂ ଅନ୍ୟ ଜଣେ ଅପରିଚିତ ଝିଅ ।

ହୁଁ, ଅନ୍ୟ ଫଟୋଗ୍ରାଫ ଗୁଡ଼ିକ ?

ଅନ୍ୟ ଗୁଡ଼ିକ ସିନେରୀ । କିନ୍ତୁ ଗୋଟାଏ ସନ୍ଦେହ ଜନକ ଘଟଣା ହେଉଛି, ସେଇ ଆଲବମ୍‌ର ମୂଳ ଆଡୁ ପାଞ୍ଚ ଛଅ ପୃଷ୍ଠା ଖାଲି, ମନେ ହେଉଛି ସେଠାରେ ବି ଫଟୋ ଥିଲା ଏବଂ ଫଟୋ ଗୁଡ଼ିକ ଅଠା ଦିଆହୋଇ ପେଷ୍ଟ ହୋଇଥିଲା । କିଏ ଯେପରି ସେହି ଫଟୋ ଗୁଡ଼ିକୁ ଜୋର୍ କରି ଟାଣି ଛିଡ଼େଇ ନେଇଛି ।

ସେଉଠୁ ?

ମୁଁ ଫେରି ଆସୁଥିଲି । ହରିହର ମହାପାତ୍ର ଦରଜା ପାଖରେ ଦେଖା ହେଲେ । ମୋତେ ଦେଖି ପ୍ରଥମେ ବୋଧହୁଏ ଚିହ୍ନି ପାରିଲେ ନାହିଁ । ପଚାରିଲେ, ବନ୍ଧୁଙ୍କ ସହିତ ଦେଖା ହେଲା ?

ହଠାତ୍ ମୁଁ ତାଙ୍କ ଇଙ୍ଗିତ ବୁଝି ନପାରି ପଚାରିଲି : ବନ୍ଧୁ ! କାହା କଥା ଆପଣ କହୁଛନ୍ତି ?

ସେ ମୋତେ ମୁହୂର୍ତ୍ତେ ଭଲ ଭାବରେ ଚାହିଁ କହିଲେ : ମୁଁ ରଜନୀ ବାବୁଙ୍କ କଥା କହୁଥିଲି । ଆପଣ ତ ତାଙ୍କରି ପାଖକୁ ବୋଧହୁଏ ଆସିଥିଲେ । ତା'ଛଡ଼ା ମୁଁ ଆପଣଙ୍କୁ ପୂର୍ବରୁ କେଉଁଠି ଦେଖିଥିଲା ପରି ମନେ ହେଉଛି ।

ହିଁ ଆପଣ ମୋତେ ଦେଖିଛନ୍ତି, ସତ୍ୟବ୍ରତ ମହାପାତ୍ରଙ୍କ ସହିତ ।

ଠିକ୍ ଠିକ୍ । ଦେଖିଲେ ମୋ ସ୍ମରଣଶକ୍ତି କେତେ ଅଧିକ । ରଜନୀବାବୁଙ୍କ ସହିତ ଦେଖା ହେଲା ?

ନା, ସେ ନାହାନ୍ତି ।

ହରିହର ମହାପାତ୍ର ବସିଲେ । ମୋତେ ସାମ୍ନା ଚେଆରରେ ବସିବାକୁ ଇଙ୍ଗିତ କରି କହିଲେ : ଆପଣଙ୍କ ନାଁଟା ଭୁଲିଗଲି । ଆପଣ ସତ୍ୟବ୍ରତ ମହାପାତ୍ରଙ୍କ ସହକାରୀ ନା ?

ହଁ, ମୋ ନାଁ ସବ୍ୟସାଚୀ ଦାସ ।

ସେ ଉଚ୍ଛ୍ୱସିତ ହୋଇ କହିଲେ  ହଁ, ମିଷ୍ଟର ଦାସ । ଆପଣମାନଙ୍କ ଜୀବନ ବାସ୍ତବିକ ଆଡ଼ଭେଞ୍ଚରପୂର୍ଣ୍ଣ । ସବୁବେଳେ ଉତ୍ତେଜନା ଭିତରେ ଆପଣମାନେ ଗତି କରନ୍ତି ।

ମୁଁ କହିଲି  ଆପଣଙ୍କ ପ୍ରଫେସନଟା ବି କମ୍ ଉତ୍ତେଜକ ନୁହେଁ ।

ସେ କହିଲେ : ଆପଣମାନଙ୍କ ଭଳି ଆମେ କିନ୍ତୁ ବାସ୍ତବ ଠାରୁ ବହୁ ଦୂରରେ ରହି, କେବଳ ଆଇନ ବହି ଖେଳେଇ କ୍ଲୁ ଖୋଜୁ । ଆପଣମାନେ କିନ୍ତୁ ସିଧାସଳଖ

ଅନ୍ ଦ ସ୍ପଟ୍ ଉପରୁ କ୍ଲୁ ସଂଗ୍ରହ କରନ୍ତି । ଆପଣ ଆମ ଭିତରେ ଥ୍ରିଲରର ତଫାତ୍‌ଟା ସେଇଠି । ସେ ଯା' ହେଉ ଚାମେଲୀ ମୃତ୍ୟୁର କିଛି ସୂତ୍ର ମିଳିଲା ?

ନା, ଏପର୍ଯ୍ୟନ୍ତ କିଛି ମିଳିନାହିଁ । ତେବେ ଆଶା କରୁଚୁ ଖୁବ୍‌ଶୀଘ୍ର ଆମେ ସଫଳତା ଅର୍ଜନ କରିବୁ ।

: ନା, ମୋର ପ୍ରଶ୍ନ ହେଉଛି ଆପଣମାନେ କ'ଣ ଚାମେଲୀର ମୃତ୍ୟୁର କାରଣ କିଛି ଅସ୍ୱାଭାବିକ ବୋଲି ମନେ କରୁଛନ୍ତି ?

ଅସ୍ୱାଭାବିକ ମାନେ ? ଏଇଟା ପିଓରଲି ମର୍ଡ଼ର କେସ୍ ।

ହରିହର ମହାପାତ୍ର ମୋର କଣ୍ଠର ଦୃଢ଼ତାରେ ବୋଧହୁଏ ନୀରବ ହୋଇଗଲେ ।

ସେ ମୋ ମୁହଁକୁ ଓ ମୁଁ ତାଙ୍କ ମୁହଁକୁ କିଛି ସମୟ ଅନାଇ ରହିଲୁ । ପରେ ପୁଣି ସେ କହିଲେ : ହୋଇପାରେ, ଅସମ୍ଭବ କିଛି ନୁହେଁ ମିଷ୍ଟର ଦାସ ! ଲୋକଚରିତ୍ର ବଡ଼ ରହସ୍ୟମୟ । ବିଶ୍ଳେଷଣ କରିବା ବଡ଼ କଷ୍ଟ । କିନ୍ତୁ ଏ କ୍ଷେତ୍ରରେ ଚାମେଲୀକୁ ଯଦି ହତ୍ୟା କରା ହୋଇଥାଏ, ମୁଁ ଖୁବ୍ ବିସ୍ମିତ ହେବି । କାରଣ ଚାମେଲୀର ଯେଉଁ ଚାରି ପାଞ୍ଚଜଣ ବନ୍ଧୁ ଏ କେସ୍ ସହିତ ସଂପୃକ୍ତ ମୁଁ ସମସ୍ତଙ୍କୁ ଜାଣେ । ସେଥିପାଇଁ ବିଶ୍ୱାସ କରିପାରୁ ନାହିଁ ।

ହରିହର ମହାପାତ୍ର ନୀରବ ହେଲେ । ମୁଁ ଫେରିଆସୁଥିଲି ।

ପୁଣି ସେ ପଛରୁ ଡାକିଲେ  ଶୁଣନ୍ତୁ ମିଷ୍ଟର ଦାସ । ଆପଣଙ୍କ ପାଇଁ ରୁନୁ ଚାହା ଆଣିଛି । ପିଇଦେଇ ଯାଆନ୍ତୁ ।

ମୋର ଚା' ପିଇବାର ଆଗ୍ରହ ନ ଥିଲା । କିନ୍ତୁ ରୁନୁ ନାଁ ଶୁଣି ମୁଁ ମୁହଁ ବୁଲେଇଲି ।

ସତରେ ରୁନୁ ଦୁଇକପ୍ ଚା' ଓ କିଛି ବିସ୍କୁଟ ଗୋଟିଏ ଟ୍ରେ'ରେ ଧରି ଆସିଥିଲା । ମୁଁ ଫେରିଯାଇ ହରିହରି ବାବୁଙ୍କ ସାମ୍ନା ଚେୟାରରେ ବସିଲି ।

ରୁନୁ ମୋତେ ହାତଯୋଡ଼ି ନମସ୍କାର କଲା । ମୋ ମୁହଁକୁ ଚାହିଁ ହସିଲା । ଚା' କପ୍ ମୋ ହାତକୁ ବଢ଼ାଇଦେଲା ।

ହରିହର ବାବୁ କହିଲେ  ରୁନୁ, ମୋର ଏକମାତ୍ର ସନ୍ତାନ ।

ମୁଁ ବି ରୁନୁକୁ ପ୍ରତିନମସ୍କାର କଲି । ତା ମୁହଁକୁ ଚାହିଁଲି । ଭଲ ଝିଅଟିଏ । ସୁନ୍ଦରୀ । ଦେଖିଲେ ଚାହିଁବାକୁ ମନହୁଏ ।

ହରିହର ବାବୁ କହିଲେ  ଯା'ରି ଜନ୍ମଦିନ ଉତ୍ସବକୁ ଚାମେଲୀ ଆସିଥିଲା । ଏଇ କେଇଦିନ ତଳର କଥା ତ ! ସେଇ ଜନ୍ମଦିନର ଉତ୍ସବକୁ ଚାମେଲୀ ସେଦିନ ଜୀବନ୍ତ କରି ତୋଳିଥିଲା । ସେଥିପାଇଁ ଚାମେଲୀର ମୁହଁଟା ମୋର ଏବେ ବି ରହି ରହି ମନେ ପଡ଼ିଯାଉଛି ।

ରୁନୁ ଚାଲି ଯାଇଥିଲା । ମୁଁ ଚା' ପିଉ ପିଉ ହରିହର ବାବୁଙ୍କ କଥା ଶୁଣୁଥିଲି ।

ସେ କହି ଚାଲିଥିଲେ ଆପଣ ଯାହା ଭାବନ୍ତୁ ପଛକେ ମିଷ୍ଟର ଦାସ, ରଜନୀକାନ୍ତ କିନ୍ତୁ କେଜାଣି କାହିଁକି ଚାମେଲୀକୁ ଖୁବ୍ ଗୋଟାଏ ଲାଇକ୍ କରୁ ନ ଥିଲା । ସେଇଦିନ ରାତିରେ ମୁଁ ରଜନୀକାନ୍ତର ମନୋଭାବ ବୁଝିଛି । କାରଣ ରଜନୀକାନ୍ତର ଆଉ କେତେଜଣ ବନ୍ଧୁ ମଧ୍ୟ ସେଦିନ ନିମନ୍ତ୍ରିତ ହୋଇ ଆସିଥିଲେ । ସୁଖରଞ୍ଜନ ପଟ୍ଟନାୟକ, ରାଜକିଶୋର ରଥ ମଧ୍ୟ ଆସିଥିଲେ । ସେମାନେ ଚାମେଲୀ ସହିତ ହସି, ନାଚି ଆମୋଦ ପ୍ରମୋଦ କରି ଆସରକୁ ଜମେଇ ରଖିଥିଲେ । କିନ୍ତୁ ରଜନୀକାନ୍ତ, ଦେଖିଲି ଆସରରେ ନାହିଁ । ଘରେ ଯାଇ କବାଟ କିଳି ଶୋଇଛି । ତେଣୁ ମୋର ଧାରଣା ହେଲା ଚାମେଲୀ ସହିତ ତା'ର ସେପରି କିଛି ଆନ୍ତରିକତା ନାହିଁ । ଆପଣଙ୍କର କ'ଣ ମନେହେଉଛି?

ମୁଁ କହିଲି ମୋର କିନ୍ତୁ ଧାରଣା ଭିନ୍ନ । ସମସ୍ତଙ୍କ ଅପେକ୍ଷା ରଜନୀବାବୁଙ୍କ ସହିତ ଚାମେଲୀର ବେଶୀ ଅନ୍ତରଙ୍ଗତା ଥିଲା ।

ହରିହର ମହାପାତ୍ରଙ୍କ ସ୍ୱର ମୋତେ କିପରି ଅସ୍ୱାଭାବିକ ଶୁଣାଗଲା । ସେ କହିଲେ ଆପଣଙ୍କର କିପରି ଧାରଣ ହେଲା ଯେ ରଜନୀକାନ୍ତର ଚାମେଲୀ ସହିତ ବେଶୀ ଅନ୍ତରଙ୍ଗତା ଥିଲା ?

ମୁଁ କହିଲି : ସେଦିନ ଆପଣଙ୍କ କଥା ଶୁଣି ମୋର ସେପରି ଧାରଣା ହୋଇଥିଲା । ଯେଉଁଦିନ ପ୍ରଥମେ ଆମେ ରଜନୀବାବୁଙ୍କୁ ଖୋଜିବାକୁ ଆସି ଆପଣଙ୍କ ସହିତ ଭେଟ ହୋଇଥିଲା, ଆପଣ ସେଦିନ କ'ଣ କହିଥିଲେ ? କହିଥିଲେ ନା ରଜନୀବାବୁଙ୍କର କିଏ ଜଣେ ଆତ୍ମୀୟଙ୍କ ମୃତ୍ୟୁରେ ସେ ଖୁବ୍ ମର୍ମାହତ !

ହରିହର ମହାପାତ୍ର ଏଥର ମୋ ମୁହଁକୁ ଚାହିଁ ହସି ପକାଇଲେ । କହିଲେ: ସେଦିନ ମୋର ସେମିତି ମନେ ହୋଇଥିଲା । ଯା'ହେଉ ବର୍ତ୍ତମାନ କୁହନ୍ତୁ, ଆପଣ କେତେଦୂର ଆଗେଇଲେ ।

ଅନେକ ଦୂର । ହୁଏତ ଆଉ ଅଳ୍ପଦିନ ମଧ୍ୟରେ ଆମେ ଚାମେଲୀର ହତ୍ୟାକାରୀକୁ ଖୋଜି ବାହାର କରିପାରିବୁ ।

ମୁଁ ସହଜ ଓ ସରଳ ସ୍ୱରରେ କହିଲି । ହରିହର ବାବୁ ପଚାରିଲେ କ'ଣ ପାଞ୍ଚଜଣଙ୍କ ଭିତରୁ ସେଇ ଜଣକ ଚାମଲୀର ହତ୍ୟାକାରୀ ବୋଲି ଆପଣ ଅନୁମାନ କରୁଛନ୍ତି ?

ମୁଁ ହସିହସି ଉତ୍ତର ଦେଲି : ସେମାନଙ୍କ ଭିତରୁ କେହି ନ ହୋଇ ବି ପାରନ୍ତି ।

ତା' ହେଲେ ଏହା ଭିତରକୁ କ'ଣ କୌଣସି ବାହାରର ଲୋକ ପଶିବାର ସୁଯୋଗ ଅଛି ?

ଅଛି ବୋଲି ମୁଁ କହୁ ନାହିଁ । ତେବେ ଥାଇ ବି ପାରେ । ମଣିଷ ନିଜର ସ୍ୱାର୍ଥ ସାଧନ ପାଇଁ ସବୁ ଅସାଧ୍ୟ ସାଧନ କରିପାରେ । ଯା'ହେଉ, ମୁଁ ବର୍ତ୍ତମାନ ଉଠୁଛି ଆଜ୍ଞା । ରଜନୀବାବୁ ଆସିଲେ କହିବା ଦରକାର ନାହିଁ । ପରେ ମୁଁ ପୁଣି ଆସିବି ।

ମୁଁ ଉଠି ଚାଲିଆସିଥିଲି ।

ତା'ପରେ ? ସତ୍ୟବ୍ରତ ପଚାରିଲା ।

ତା'ପରେ ଆଉ କ'ଣ ?

ତୁ ଉଠି ଆସିଲାବେଳେ ହରିହର ମହାପାତ୍ର କ'ଣ କରୁଥିଲେ ?

ମୋ ଆଡ଼େ ଚାହିଁଥିଲେ ।

ହୁଁ । ଆଚ୍ଛା ସବ୍ୟ !

କ'ଣ କହ ।

ରୁନୁଟା ଦେଖିବାକୁ ଭଲ, ନା? ସୁନ୍ଦରୀ ତ !

ଧେତ୍, ଯେତେସବୁ ବାଜେ କଥା । ମୁଁ ଚିଡ଼ି ଉଠିଲି ।

ନାରେ ମୁଁ ସିରିଅସ୍‌ଲି ପଚାରୁଛି । ମାନେ ପ୍ରଥମ ଦର୍ଶନରେ ରୁନୁପ୍ରତି ମନରେ କିପରି ଭାବ ଜାଗେ ?

ମୁଁ କହି ପାରିବି ନାହିଁ । ମୋତେ କିନ୍ତୁ ଭଲ ଲାଗିଲା । ଭଲ ଝିଅଟି ।

ହୁଁ, ହରିହର ବାବୁ କୁହନ୍ତି, ଚାମେଲୀ ପ୍ରତି ରଜନୀବାବୁଙ୍କର ସେପରି ଆନ୍ତରିକତା ନ ଥିଲା । ନା, ସବ୍ୟ ?

ହଁ ।

ହରିହର ବାବୁ କାହିଁକି ଏ କଥା କହିଲେ ?

କାହିଁକି ମାନେ କ'ଣ ! ସେ ଜାଣିଛନ୍ତି ବୋଲି କହିଲେ ।

ସତ୍ୟବ୍ରତ ହାତଟା କ୍ଷିପ୍ର ହୋଇ ଉଠିଲା । କାଗଜ ଖଣ୍ଡିକ ଉପରେ ନାଲି ପେନ୍‌ସିଲରେ ପୁଣି ସେ ଦ୍ରୁତଗତିରେ ଗାର ଟାଣିବାକୁ ଲାଗିଲା । ହଠାତ୍ ଅଟକି ଯାଇ କହିଲା  ରଜନୀକାନ୍ତ ମହାପାତ୍ରଙ୍କର ବହି ତୁ ପଢ଼ିଛୁ ?

କି ବହି ? ମୁଁ ପଚାରିଲି ।

ସେ କି ବହି ଲେଖିଛନ୍ତି? ସତ୍ୟବ୍ରତ ମୋତେ ଓଲଟି ପ୍ରଶ୍ନ କଲା ।

ସେ କେତେଖଣ୍ଡ ଉପନ୍ୟାସ ଲେଖିଛନ୍ତି । ମୁଁ ହୁଏତ ଖଣ୍ଡେ ଦି'ଖଣ୍ଡ ପଢ଼ିଥିଲି । କିନ୍ତୁ ମୋର କିଛି ମନେ ନାହିଁ ।

ହେଲେ, ତୋତେ ତାଙ୍କ ବହି ପଢ଼ି ମନେ ରଖିବାକୁ କହୁନାହିଁ । ତେବେ ମୁଁ ତାଙ୍କର ଲାଟେଷ୍ଟ ବହି ଖଣ୍ଡେ ଦି'ଖଣ୍ଡ ପଢ଼ିବାକୁ ଚାହେଁ । ଯୋଗାଡ଼ କରି ଆଣି ପାରିବୁ ?

ହଠାତ୍ ତୋର ବହି ଆଡ଼େ ଝୁଙ୍କ୍ ହେଲା କାହିଁକି ?

ନା ଇମିତି । ସମୟ ଗୁଡ଼ାକ ଆଉ କଟୁ ନାହିଁ । ସେ ଯା'ହେଉ, ତୁ ତେବେ ରଜନୀକାନ୍ତଙ୍କ ଦେଖା ପାଇଲୁ ନାହିଁ  ?

ନା ।

ତା'ହେଲେ ତୋ ବିବରଣୀରୁ ମନେ ହେଉଛି, ତୁ ରଜନୀକାନ୍ତଙ୍କ ଘରେ

ପ୍ରବେଶ କରିବା ପୂର୍ବରୁ ଅନ୍ୟ ଜଣେ କେହି ତାଙ୍କ ଘରେ ପଶିଥିଲା ଏବଂ କୌଣସି ବସ୍ତୁ ସେ ବିଛଣାପତ୍ର ଖେଳେଇ ଖୋଜିଥିଲା ।

: ମୋର ତ ସେଇଆ ମନେ ହେଲା । ତେବେ ରଜନୀବାବୁ ନିଜେ ବି ସେପରି କିଛି ଖୋଜି ପାରି ଥାଆନ୍ତି ।

ଅଥବା....

ସତ୍ୟବ୍ରତ କ'ଣ କହିବାକୁ ଯାଇ ଚୁପ୍ ହୋଇଗଲା । ହାତଘଡ଼ି ଆଡ଼େ ଚାହିଁ କହିଲା ଆଜି ପାଞ୍ଚଟାବେଳେ ଅଖିଳ ମହାନ୍ତିଙ୍କ ଘରକୁ ଯିବା କଥା ଭୁଲି ଗଲୁଣି ?

ନା, ଯିବାକୁ ହେବ ନାହିଁ ।

କାହିଁକି ?

ସେ ନିଜେ ଆସିବେ । ରାସ୍ତାରେ ତାଙ୍କ ସହିତ ଦେଖା ହୋଇଥିଲା । ସେ କହିଛନ୍ତି ଠିକ୍ ପାଞ୍ଚଟାବେଳେ ଆସି ପହଞ୍ଚିବେ । ତାଙ୍କୁ ଧରି ତୁ କୁଆଡ଼େ ଯିବୁ ?

କୁଆଡ଼େ ଆଉ ଯିବି ? ଏଇଠି ବସିବସି ଗଳ୍ପ କରିବା ।

ସେଦିନ କହିଥିଲୁ ନା ତାଙ୍କୁ ନେଇ କୁଆଡ଼େ ବାହାରିବୁ ।

: ସେଦିନ ଆସିଥିଲେ ବାହାରି ଥାଆନ୍ତି । ଆଜି ଆଉ ଦରକାର ନାହିଁ ଆଜି ଏଇଠି ବସି ଅଖିଳ ବାବୁଙ୍କଠାରୁ ଦୁଇଟା ଗୋଟାଏ ଗୀତ ଶୁଣିବା । ତା'ପରେ

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା ।

ସତ୍ୟବ୍ରତ ରିସିଭରଟା କାନରେ ଦେଇ ଶୁଣିଲା । ନୀଳିମା ବୋଧହୁଏ କ'ଣ କହିଲା । ତା'ପରେ ରିସିଭରଟା ରଖିଦେଲା ।

ମୁଁ ପଚାରିଲି କିଏ କିରେ ?

ରଜନୀକାନ୍ତ । ତଳେ ଅପେକ୍ଷା କରିଛନ୍ତି ।

ହଠାତ୍ ରଜନୀକାନ୍ତଙ୍କର ଆବିର୍ଭାବ କାହିଁକି ? ମୁଁ ପଚାରିଲି ।

: ହିସାବ ଅନୁସାରେ ତାଙ୍କର ଆସିବା କଥା । ମୋ ହିସାବ ଠିକ୍ ମିଳିଯାଇଛି । ତୁ ତଳକୁ ଚାଲେ । ମୁଁ ଟିକିଏ ଛାଡ଼ି ଯାଉଛି । ସତ୍ୟବ୍ରତ କହିଲା ।

କିନ୍ତୁ ଆଉ ଟିକକ ପରେ ଅଖିଳ ମହାନ୍ତି ଆସିବେ ଯେ !

: ଆସନ୍ତୁ । କିଛି ଅସୁବିଧା ହେବ ନାହିଁ ବରଂ ସମସ୍ତେ ମିଶି ବୁଲି ବାହାରିବା ।

କ'ଣ ପ୍ଲିଜାର୍ ଟ୍ରିପ୍‌ରେ ? ମୁଁ ହସି ହସି ପଚାରିଲି ।

ହେଉ, ତୋ'ରି କଥା ହେଲା । ପ୍ଲିଜାର ଟ୍ରିପ୍‌ରେ ବାହାରି ପଡ଼ିବା ।

ତାହେଲେ ଦୁଇଜଣ ଝିଅ ଦରକାର ହେବେ ଯେ !

: ଝିଅର କ'ଣ ଅଭାବ ଅଛି । ଅନୁରାଧା ତ ରିଜର୍ଭ ଷ୍ଟକ୍ । ନୂଆ ଭିତରେ ଗୁନୁକୁ ନେଇଯିବା । କ'ଣ ଟ୍ରିପ୍ ଜମିବ ନାହିଁ ?

ମୁଁ ଆଉ କିଛି କହିଲି ନାହିଁ ।

ସତ୍ୟବ୍ରତ ଉଠି ପଡ଼ିଥିଲା । ମୁଁ ଧୀରେଧୀରେ ତଳକୁ ଓହ୍ଲେଇଗଲି । ନୀଳିମା

ସହିତ ରଜନୀବାବୁ ବସି କ'ଣ ଗପ କରୁଥିଲେ, ମୋତେ ଦେଖିବା ମାତ୍ରେ ଉଠିପଡ଼ି ନମସ୍କାର କଲେ ।

ମୁଁ ପ୍ରତିନମସ୍କାର କରି ବସିବାକୁ କହିଲି ।

ଆପଣ ଆଜି ଆମ ଘରକୁ ଯାଇଥିଲେ ? ଖବର ପାଇଲି । ରଜନୀକାନ୍ତ ପଚାରିଲେ

ଆପଣ କ'ଣ ସେଇଥିପାଇଁ ଆସିଛନ୍ତି ? ମୁଁ ପଚାରିଲି ।

ନା ସେଇଥିପାଇଁ ନୁହେଁ, ପଛରୁ କାହାର ସ୍ୱର ଶୁଣି ବୁଲି ଅନେଇଲି, ସତ୍ୟବ୍ରତ ଶିଡ଼ିରୁ ଓହ୍ଲାଉ ଓହ୍ଲାଉ କହୁଛି, ରଜନୀବାବୁ ସେଥିପାଇଁ ଆସିନାହାନ୍ତି, ଆସିଛନ୍ତି ଅନ୍ୟ କାରଣରୁ ।

ରଜନୀ ବାବୁ ଉଠିପଡିଥିଲେ । ନମସ୍କାର କରି କହିଲେ ଆପଣ ଠିକ୍ ଅନୁମାନ କରିଛନ୍ତି ମିଷ୍ଟର ମହାପାତ୍ର । ମନେ ହେଉଛି, ମୋ ପଛେ ପଛେ କେହି ଯେପରି ଅନୁସରଣ କରୁଛି । ଖାଲି ମୋର ଗତିବିଧି ନୁହେଁ, ମୋର ଅତୀତ କାର୍ଯ୍ୟକଳାପ ସମ୍ବନ୍ଧରେ ସେ ଯେପରି ଅନୁସନ୍ଧାନ କରିଚାଲିଛି।

ସତ୍ୟବ୍ରତ ରଜନୀବାବୁଙ୍କୁ ବସିବାକୁ କହି ନିଜେ ବସିଲା । କହିଲା: ଆପଣଙ୍କର ଏପରି ମନେ ହେବାର କାରଣ ?

: କାରଣ କିଛି ଅଛି । ସେଇ କାରଣ ଏଇ ଦିନେ ଦୁଇଦିନ ହେବ ମୁଁ ଅନୁଭବ କରୁଛି ।

ହୁଁ । କୁହନ୍ତୁ ଏଥର, ଆପଣ କ'ଣ ଅନୁଭବ କରୁଛନ୍ତି ।

ଆଜି ସକାଳୁ ଗୋଟାଏ ଜରୁରୀ କାମରେ ମୁଁ ଟିକିଏ ବାହାରକୁ ଚାଲି ଯାଇଥିଲି । ବୋଧହୁଏ ଘରେ ତାଲା ପଡି ନଥିଲା । କିନ୍ତୁ ଫେରି ଆସି ଦେଖିଲି, ଘରେ ମୋ ରୁମ ଭିତରେ ଯେପରି ଝଡ ବହି ଯାଇଛି । ମୋ ଘରର ସମସ୍ତ ଜିନିଷପତ୍ର ଓଲଟ ପାଲଟ ! କିଏ ଯେପରି ନିର୍ଦ୍ଦୟ ଭାବରେ ସବୁ ଇତସ୍ତତ ବିକ୍ଷିପ୍ତ କରି ଚାଲିଯାଇଛି ।

ଖାଲି ହାତରେ ଚାଲିଯାଇଛି ନା ତା'ର ଅଭିଳାଷ ପୂରଣ କରି ଯାଇଛି ? ସତ୍ୟବ୍ରତ ପଚାରିଲା।

ମୁଁ ଅବଶ୍ୟ ଟିକିନିଖି କିଛି ଦେଖି ନାହିଁ । ତା'ଛଡା ମୋ ଘରେ ଥିଲା କ'ଣ ଯେ ! ତଥାପି ଏକ ଅବିଶ୍ୱାସ୍ୟକର ଘଟଣା ଘଟିଲା ପରି ମନେ ହେଉଛି। ମୁଁ ଘରେ ବସି ବହୁତ ସମୟ ଚିନ୍ତା କଲି । କିନ୍ତୁ କାରଣଟା ଯେ ସେଇ ହେଇପାରେ ଏପର୍ଯ୍ୟନ୍ତ ଚିନ୍ତା କରି ପାରୁନାହିଁ । ରଜନୀକାନ୍ତ କହିଲେ।

ତା'ମାନେ ଆପଣ କହିବାକୁ ଚାହାନ୍ତି, ଘର ଭିତରୁ ଏପରି ଏକ ପଦାର୍ଥ ଯାଇଛି, ଯାହା ଆପଣ ବିଶ୍ୱାସ କରି ପାରୁ ନାହାନ୍ତି ଯେ ସେଇ ଜିନିଷଟା ନେବା ପାଇଁ ସେହି ଲୋକଟା ଆସି ଏତେ କାଣ୍ଡ ଭିଆଇ ଥିଲା। ଏଇଆ ତ ? ସତ୍ୟବ୍ରତ ପଚାରିଲା ।

ହଁ, ଆପଣ ଠିକ୍ ଅନୁମାନ କରିଛନ୍ତି ।

ସେଇ ଜିନିଷଟା କ'ଣ ?

ପାଣ୍ଡୁଲିପି !

ସତ୍ୟବ୍ରତ ଯେପରି ଆକାଶରୁ ପଡିଲା: ଆପଣଙ୍କ ପାଣ୍ଡୁଲିପି ଚୋରି ଯାଇଛି ?

ହଁ ।

ସେଇଟି କ'ଣ ଶେଷ ହୋଇଥିଲା ?

କାଲି ଅନେକ ରାତିରେ ସେଇଟିକୁ ମୁଁ ଶେଷ କରିଥିଲି ।

ବର୍ତ୍ତମାନ ଆପଣଙ୍କର ଏପରି ମାନସିକ ଦ୍ୱନ୍ଦ ଭିତରେ ଆପଣ ଲେଖି ପାରୁଥିଲେ ?

: ଲେଖାଟା ସେହିପରି, ଏ ମାନସିକ ଦ୍ୱନ୍ଦ୍ୱ ଚାଲି ଯାଇଥିଲେ, ଲେଖାଟି ଅସଂପୂର୍ଣ୍ଣ ରହି ଯାଇ ଥାଆନ୍ତା । ଯଦିଓ କେବେ ତାହା ଶେଷ ହୋଇ ଥାଆନ୍ତା, ତେବେ ଏତେ ପ୍ରାଣସ୍ପର୍ଶୀ ହୋଇ ପାରି ନ ଥାନ୍ତା ।

ହୁଁ ବୁଝିଲି । ତା'ହେଲେ ଆପଣଙ୍କର ବର୍ତ୍ତମାନର ମାନସିକ ଦ୍ୱନ୍ଦ୍ୱର ପ୍ରତିଫଳନ ହୋଇଥିଲା ବହିଟି ଉପରେ ।

ସତ୍ୟବ୍ରତ ଆଖି ବୁଜି କିଛି ସମୟ ଚିନ୍ତା କରି କହିଲା : କିଛି ମନେ କରିବେ ନାହିଁ ରଜନୀ ବାବୁ । ମୁଁ ଆପଣଙ୍କର ଏହି ପାଣ୍ଡୁ ଲିପିଟି ସମ୍ବନ୍ଧରେ ଗୋଟିଏ ପ୍ରଶ୍ନ ପଚାରିବି ।

ନିଶ୍ଚୟ, ମୁଁ ତ ଛୁଟି ଆସିଛି ଆପଣଙ୍କ ପାଖକୁ । ଯେ କୌଣସି ଉପାୟରେ ହେଉ ମୋର ସେହି ପାଣ୍ଡୁଲିପିଟି ଉଦ୍ଧାର କରିବାକୁ ହେବ ।

ସତ୍ୟବ୍ରତ ସଜାଡି ହୋଇ ବସିଲା । ତା'ମୁହଁରେ ଯେପରି ଆଲୋକର ଦୀପ୍ତି ଫୁଟି ଉଠିଥିଲା । ମୋର ମନେ ହେଉଥିଲା, ସେ ଯେପରି ସାଫଲ୍ୟର ପଥ ଖୋଜି ପାଇଛି ।

ଆପଣଙ୍କର ଏହି ପାଣ୍ଡୁଲିପିଟି କେବେ ଆପଣ ଆରମ୍ଭ କରିଥିଲେ ?

ବେଶୀଦିନ ହେବ ନାହିଁ । ଏଇ ମାସେ ଦେଢମାସ ପୂର୍ବରୁ । କିନ୍ତୁ ଏତେ କମ୍ ସମୟ ଭିତରେ ମୁଁ ମୋର କୌଣସି ବହି ଶେଷ କରିପାରି ନାହିଁ, ତା'ଛାଡ ଏତେ ପ୍ରାଣସ୍ପର୍ଶୀ ଭାଷାରେ ଏହାପୂର୍ବରୁ କୌଣସି ବହି ମୁଁ ଲେଖି ପାରି ନ ଥିଲି ।

ମୁଁ ଲକ୍ଷ୍ୟ କରୁଥିଲି, ସତ୍ୟବ୍ରତର ଉତ୍ସାହ ଯେପରି ଦି'ଗୁଣିତ ହୋଇ ଉଠୁଥିଲା । ସେ କହିଲା ନିଶ୍ଚୟ ଏହି ପାଣ୍ଡୁଲିପିଟିରେ ଏପରି କାହା ଜୀବନର ପ୍ରତିଫଳନ

ପରିସ୍ଫୁଟ ହୋଇ ଉଠିଛି, ଯାହା ଜୀବନ ସମ୍ବନ୍ଧରେ ଆମର ପ୍ରତ୍ୟକ୍ଷଦର୍ଶୀ । କୌଣସି ସତ୍ୟଘଟଣା ଉପରେ ଗଳ୍ପ ଆଧାରିତ ନହେଲେ, ଲେଖା ପ୍ରାଣସ୍ପର୍ଶୀ ହୁଏ ନାହିଁ । ମୁଁ ଯଦିଓ ଜଣେ ଲେଖକ ନୁହେଁ, ତଥାପି କେତେକ ଲେଖକଙ୍କର ଆତ୍ମଚରିତ ପଢ଼ି ମୋର ସେହିପରି ମନେ ହୋଇଛି । ଆଶା କରୁଛି, ଆପଣ ମୋ ସହିତ ଏକମତ ହେବେ ।

ହଁ ମୁଁ ଆପଣଙ୍କ ଯୁକ୍ତି ମାନୁଛି । ପ୍ରତ୍ୟେକ ଲେଖକକୁ ପ୍ରେରଣା ଯୋଗାଏ କୌଣସି ବାସ୍ତବ ଘଟଣା ପ୍ରବାହ । ମୋର ଏ ଉପନ୍ୟାସଟି ସେହିପରି ଏକ ବାସ୍ତବ ଧର୍ମୀ ହୋଇଥିଲା । ରଜନୀକାନ୍ତ କହିଲେ ।

ତା'ହେଲେ ତ ଆପଣ...

ସତ୍ୟବ୍ରତର କଥା ଶେଷ ହେଲା ନାହିଁ । ଅଖିଳ ମହାନ୍ତି ଘରେ ପ୍ରବେଶ କଲେ ।

ଆସନ୍ତୁ ଅଖିଳ ବାବୁ । ଆପଣଙ୍କ ବନ୍ଧୁ ଅନେକ ବେଳୁ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି ।

ଅଖିଳ ମହାନ୍ତି ଆସି ଆମ ପାଖରେ ବସିଲେ ।

ରଜନୀକାନ୍ତ ଅଖିଳ ମହାନ୍ତିଙ୍କ ମୁହଁକୁ ଚାହିଁ ଦୃଷ୍ଟି ନତ କଲେ ।

ଅଖିଳ ମହାନ୍ତି କହିଲେ ମୋତେ ଆଜି ଟିକେ ଢେଙ୍କାନାଳ ଯିବାକୁ ହେବ । ସେମାନେ ଆସି ଏଇ ଚାରିଟାବେଳେ ପହଞ୍ଚିଲେ । ଫଙ୍କସନ ଆଜି ରାତିରେ । କୁହନ୍ତୁ ତ ଏସବୁ କିପରି ଅତ୍ୟାଚାର। ମୁଁ ଯେତେ ମନା କଲେ ବି ସେମାନେ ଶୁଣୁ ନାହାନ୍ତି । ଖାଲି ମୋର ପାଦ ଧରିବାକୁ ଯାହା ବାକି ଅଛି। ଭଦ୍ରଲୋକମାନଙ୍କୁ ମୁଁ କୌଣସି ପ୍ରକାର ବିଦା କରି ପାରୁ ନାହିଁ ।

ସତ୍ୟବ୍ରତ ଅଖିଳ ମହାନ୍ତିଙ୍କ କଥା ଶୁଣି ସାରି କହିଲେ ହେଉ, ଆପଣ ତେବେ ଯାଆନ୍ତୁ, କିନ୍ତୁ ମନେ ରଖିଥିବେ କାଲି ନ ହେଲେ ପହରିଦିନ ସନ୍ଧ୍ୟାବେଳକୁ ଆପଣ ନିଶ୍ଚୟ ଆମ ପାଇଁ ଦୁଇଘଣ୍ଟା ସମୟ ରଖିଥିବେ ।

ଅଖିଳ ମହାନ୍ତି ଆଉ ମୁହୂର୍ତ୍ତେ ଡେରି ନ କରି ଚେଆରରୁ ଉଠିପଡିଲେ । କହିଲେ ଆପଣଙ୍କୁ ଅଜସ୍ର ଧନ୍ୟବାଦ ମିଷ୍ଟର ମହାପାତ୍ର, ଆପଣ ମୋ ଅସୁବିଧା ହୃଦୟଙ୍ଗମ କରି ପାରିଛନ୍ତି । କାଲି ନୁହେଁ, ପହରିଦିନ ଠିକ୍ ପାଞ୍ଚଟାବେଳେ ମୁଁ ନିଶ୍ଚୟ ଆସି ଏଠାରେ ପହଞ୍ଚିବି ଏବଂ ସାତଟା ଯାଏ ଆପଣଙ୍କ ସଙ୍ଗରେ ରହିବି ।

ଅଖିଳ ମହାନ୍ତି ଚାଲିଗଲେ । ରଜନୀକାନ୍ତଙ୍କୁ କେବଳ ଚାହିଁଦେଇ ହସି ଦେଲେ ଏବଂ ମୁଣ୍ଡ ହଲାଇ ଚାଲି ଯାଉଥିବାର ଇଙ୍ଗିତ ଦେଲେ ।

ସତ୍ୟବ୍ରତ ପୁଣି ପୂର୍ବ ପ୍ରସଙ୍ଗକୁ ଫେରି ଆସିଥିଲା : ତା'ହେଲେ ଆପଣ ନିଶ୍ଚିତ ଯେ ରଜନୀ ବାବୁ, ଆପଣଙ୍କ ପାଣ୍ଡୁଲିପିଟି ଚୋରି ଯାଇଛି ଏବଂ ଚୋରଟି ଆପଣଙ୍କର ଖୁବ୍ ଜଣାଶୁଣା ବ୍ୟକ୍ତି ।

ନା, ଜଣାଶୁଣା କି ନୁହେଁ, ସେକଥା ମୁଁ ଆପଣଙ୍କୁ କହି ପାରୁ ନାହିଁ। ତେବେ ମୁଁ ନିଶ୍ଚିତ ଯେ ମୋ ପାଣ୍ଡୁଲିପିଟି ଚୋରି ଯାଇଛି ।

ପାଣ୍ଡୁଲିପିଟି ଆପଣ କେଉଁଠି ରଖିଥିଲେ ?

: ମୋର ଯେତେଦୂର ମନେ ପଡୁଛି, ମୁଁ ବିଛଣା ଗଦି ତଳେ ରଖି ଦେଇଥିଲି । ଅନେକ ରାତିରେ ଲେଖାଟା ଶେଷ ହେଲା । ସକାଳୁ ଉଠୁ ଉଠୁ ଟିକିଏ ଡେରି ହୋଇ ଯାଇଥିଲା । ଉଠି ସାରି ଆଉ ଥରେ ପାଣ୍ଡୁଲିପିଟି ଖୋଲେଇ ଦେଖିଲି । କାଲି ରାତିରେ ଲେଖିଥିବା ଅଂଶତକ ବି ପଢିଲି । ତା'ପରେ ଗଦି ଟେକି ପାଣ୍ଡୁଲିପିଟି ତା'ଭିତରେ ପୂରେଇ ଦେଇ ବାହାରିଗଲି। ଫେରିଆସି ଦେଖେ ଘରେ ଯେପରି ରାମରାବଣ ଯୁଦ୍ଧ ହୋଇ ଯାଇଛି ।

ଆପଣ ଘରୁ ବାହାରି କୁଆଡେ ଯାଇଥିଲେ ? ସତ୍ୟବ୍ରତ ପଚାରିଲା ।

ମୁଁ ଅବଶ୍ୟ ଯାଇଥିଲି ରାଜକିଶୋର ରଥଙ୍କ ପାଖକୁ । ଏଇ ପାଣ୍ଡୁଲିପିଟି ପ୍ରକାଶନ ସମ୍ବନ୍ଧରେ କଥାବାର୍ତ୍ତା କରିବା ପାଇଁ ।

ରାଜକିଶୋର କଥ କ'ଣ କହିଲେ ?

ସେ ଖୁବ୍ ଆଗ୍ରହୀ । ପାଣ୍ଡୁଲିପିଟି ସମ୍ବନ୍ଧରେ ସେ ଆଗରୁ ଜାଣିଥିଲେ । ତେଣୁ ସେ ପାଣ୍ଡୁଲିପିଟି ପାଇବା ମାତ୍ରକେ ସଙ୍ଗେ ସଙ୍ଗେ ଛପା ଆରମ୍ଭ କରିଦେବାର ପ୍ରତିଶ୍ରୁତି ଦେଲେ ।

ହୁଁ, ସବୁ ବୁଝିଲି ଯେ ବର୍ତ୍ତମାନ ଉପାୟ କ'ଣ ?

ରଜନୀକାନ୍ତ ସତ୍ୟବ୍ରତ କଣ୍ଠରୁ ବୋଧହୁଏ ନୈରାଶ୍ୟବ୍ୟଞ୍ଜକ ସ୍ୱର ଶୁଣି ଟିକିଏ ବିଚଳିତ ହୋଇ ପଡିଲେ । ବ୍ୟଥିତ କଣ୍ଠରେ କହିଲେ  କିନ୍ତୁ ଆପଣଙ୍କୁ ମୋତେ ସାହାଯ୍ୟ କରିବାକୁ ହେବ ମିଷ୍ଟର ମହାପାତ୍ର । ମୋର ସେହି ପାଣ୍ଡୁଲିପିଟି ନିଶ୍ଚୟ ଆପଣଙ୍କୁ ଉଦ୍ଧାର କରି ଦେବାକୁ ହେବ ।

ସତ୍ୟବ୍ରତ ହସିଲା । କହିଲା  ମୁଁ ବୁଝୁଛି ଆପଣ ପାଣ୍ଡୁଲିପି ହରାଇ ନାହାନ୍ତି ଯେ, ନିଜର ଗୋଟିଏ ସନ୍ତାନ ହରାଇଛନ୍ତି । ମୁଁ ଚେଷ୍ଟା କରିବି । କିନ୍ତୁ ନିଶ୍ଚିତ ପ୍ରତିଶ୍ରୁତି ଦେବି କିପରି ? ଯେତେବେଳ ଯାଏ ମୁଁ ଘଟଣାସ୍ଥଳୀକୁ ନ ଯାଇ ନ ଦେଖିଛି, ସେତେବେଳ ଯାଏ ଆପଣଙ୍କୁ କୌଣସି ପ୍ରତିଶ୍ରୁତି ଦେଇ ପାରିବି ନାହିଁ।

: ତା'ହେଲେ ? ରଜନୀକାନ୍ତ କଥା ଅସମାପ୍ତ ରଖି ସତ୍ୟବ୍ରତ ଆଡେ ଅନାଇ ରହିଲେ ।

: ଆପଣ ଅଧୈର୍ଯ୍ୟ ହୁଅନ୍ତୁ ନାହିଁ । ମୁଁ ନିଶ୍ଚୟ ଆପଣଙ୍କୁ ପ୍ରାଣପଣେ ସାହାଯ୍ୟ କରିବି । କିନ୍ତୁ ଆମ ମୂଳ ପ୍ରସଙ୍ଗ ସମ୍ବନ୍ଧରେ ଏପର୍ଯ୍ୟନ୍ତ କିଛି କଥା ହେଲେ ନାହିଁ ।

ମୂଳ ପ୍ରସଙ୍ଗ ମାନେ ? ରଜନୀକାନ୍ତ ପଚାରିଲେ ।

ମୁଁ ଚାମେଲୀ ହତ୍ୟା ରହସ୍ୟ କଥା କହୁଛି । ଆଚ୍ଛା ରଜନୀବାବୁ, ଚାମେଲୀ ମୃତ୍ୟୁ ସମ୍ବନ୍ଧରେ ଆପଣ କ'ଣ ସ୍ଥିର ନିଶ୍ଚିତ ଯେ, ଚାମେଲୀର ମୃତ୍ୟୁ ସ୍ୱାଭାବିକ ମୃତ୍ୟୁ ?

ମୁଁ ଲକ୍ଷ୍ୟ କଲି ଚାମେଲୀ ନାଁ ଶୁଣିବା ମାତ୍ରକେ ରଜନୀକାନ୍ତଙ୍କ ମୁଁହଟି ଯେପରି ଝାଉଁଳି ପଡିଲା । ସେ ଶାନ୍ତ ହୋଇଗଲେ । ନୀରବ ବି ।

କେଜାଣି କାହିଁକି ସତ୍ୟବ୍ରତ ଆଉ ସେ ପ୍ରସଙ୍ଗ ଉଠାଇଲା ନାହିଁ । ନିଜେ ଉଠି ଠିଆ ହୋଇ ପଡି କହିଲା  ଚାଲନ୍ତୁ ରାଜନୀ ବାବୁ । ଆପଣଙ୍କ ଘରକୁ ଯିବା । ଘଟଣା ସ୍ଥଳଟା ମୁଁ ଥରେ ଦେଖିଆସିବି ।

ସତ୍ରବତ, ମୁଁ ଓ ରଜନୀକାନ୍ତ ତିନିଜଣଯାକ ଗାଡିରେ ଉଠି ବସିଲୁ । ସତ୍ୟବ୍ରତ ନିଜେ ଗାଡି ଡ୍ରାଇଭ କଲା ।

ଆମେ ଯାଇ ରଜନୀକାନ୍ତଙ୍କ ଘରେ ପହଞ୍ଚିଲୁ । ହରିହର ମହାପାତ୍ର ତାଙ୍କ ଚେମ୍ବରରେ ବସିଥିଲେ । ଆମକୁ ଦେଖିବାକ୍ଷଣି ଚେଆରରୁ ଉଠି ଆସି ଅଭ୍ୟର୍ଥନା ଭଙ୍ଗୀରେ କହିଲେ  ଆସନ୍ତୁ ମିଷ୍ଟର ମହାପାତ୍ର ।

ଆମେ ସମସ୍ତେ ଗାଡିରୁ ଓହ୍ଲାଇ ଯାଇ ହରିହର ମହାପାତ୍ରଙ୍କ ଚେମ୍ବରରେ ପଶିବାକ୍ଷଣି ଦେଖିଲୁ, ଜଣେ ଯୁବକ ଘରର ଗୋଟିଏ କୋଣକୁ ବସି ଆଇସକ୍ରିମ୍ ଖାଉଛି । ସେ ଆମ ଆଡକୁ ପଛ କରି ବସିଥିଲା । ଆମେ ପହଞ୍ଚିବାକ୍ଷଣି ସେ ବୁଲି ଅନେଇଲା ।

ରଜନୀକାନ୍ତ କହିଲେ  ଆରେ ଜଗଜ୍ୟୋତି ଯେ ! ତୁ କେତେବେଳୁ ?

ହରିହର ମହାପାତ୍ର ଉତ୍ତର ଦେଲେ  ସେ ପ୍ରାୟ ଘଣ୍ଟାଏ ହେବ ଆସି ଅପେକ୍ଷା କରି ବସିଛି । ଆପଣ ୟାକୁ ଚିହ୍ନନ୍ତି ମିଷ୍ଟର ମହାପାତ୍ର ? ଏ ହେଉଛି ଚାମେଲୀର ଭାଇ ।

ସତ୍ୟବ୍ରତ କହିଲା : ହଁ ମୁଁ ଚିହ୍ନେ । ତାଙ୍କ ଘରକୁ ଆମେ ଯେଉଁଦିନ ଯାଇଥିଲୁ, ତାକୁ ଦେଖିଥିଲୁ ।

ଜଗଜ୍ୟୋତି କିନ୍ତୁ ଆଉ ଆମ ଆଡେ ନ ଚାହିଁ ଆଇସକ୍ରିମ୍ ଖାଇବାରେ ଲାଗି ଯାଇଥିଲା ।

ଆମେ ଟିକିଏ ଉପରୁ ଆସୁଛୁ କହି ହରିହର ମହାପାତ୍ରଙ୍କ ଠାରୁ ବିଦାୟ ନେଇ ଉପରକୁ ଯାଇଥିଲୁ ।

ରଜନୀକାନ୍ତଙ୍କ ଘରର ଦରଜା ମେଲା ହୋଇଥିଲା । ଘର ଭିତରେ ଗୋଟିଏ ଝିଅ ରଜନୀକାନ୍ତଙ୍କ ଅସଜଡା ଜିନିଷପତ୍ର ସଜାଡିବାରେ ଲାଗିଥିଲା ।

ଆମକୁ ଏକା ସଙ୍ଗରେ ଘର ଭିତରେ ପଶୁଥିବାର ଦେଖି ସେ ମୁହୂର୍ତ୍ତେ ସ୍ତବ୍ଧ ହୋଇ ଠିଆ ହୋଇଗଲା । ହାତଯୋଡି ନମସ୍କାର କଲା ଏବଂ ପର ମୁହୂର୍ତ୍ତରେ ସ୍ମିତହସି ଘରୁ ବାହାରି ଚାଲିଗଲା ।

ରଜନୀକାନ୍ତ କହିଲେ  ରୂନୁ । ହରିହର ମହାପାତ୍ରଙ୍କର କନ୍ୟା ।

ସତ୍ୟବ୍ରତ କୌଣସି ମନ୍ତବ୍ୟ ନ କରି ଖଟ ଉପର ବସି ପଡିଲା । ଘରର ଚାରିଆଡ଼କୁ ଥରେ ଚାହିଁ ନେଇ କହିଲା ଏଇ ଘରୁ ଆପଣଙ୍କ ପାଣ୍ଡୁଲିପି ଚୋରି ଯାଇଛି ?

ହଁ ଏଇ ଘରୁ । ଏଇ ଖଟର ଗଦି ତଳେ ମୁଁ ଏଇଠି ପାଣ୍ଡୁଲିପିଟି ରଖି ଯାଇଥିଲି । ରଜନୀକାନ୍ତ ନିର୍ଦ୍ଦିଷ୍ଟ ସ୍ଥାନଟି ଗଦି ଉଠାଇ ଦେଖାଇ ଦେଲେ ।

ଆପଣଙ୍କର ଏହି ଘରକୁ ପ୍ରବେଶାଧିକାର କେଉଁମାନଙ୍କର ଅଛି ?

ମୋର ଏ ଘରକୁ ବେଳେ ବେଳେ ମୋର ବନ୍ଧୁ ବାନ୍ଧବମାନେ ଆସନ୍ତି । ହରିହରବାବୁଙ୍କ ଚାକର ଆସି ଘରଦ୍ୱାର ପରିଷ୍କାର କରି ଦେଇଯାଏ, ଆଉ ବେଳେ ବେଳେ ରୁନୁ ଆସେ ।

ଆଉ କେହି ?

ନା, ଆଉ ତ ଏଠି କେହି ନାହାନ୍ତି ।

ହରିହର ବାବୁ ?

: ନା, ସେ କେବେ ଆସନ୍ତି ନାହିଁ । ଦରକାର ହେଲେ ମୋତେ ଡାକି ପଠାନ୍ତି ।

ସତ୍ୟବ୍ରତ ଏଥର ଉଠି ଠିଆ ହେଲା । ଘର ଭିତରେ ଏପାଖ ସେପାଖ ବୁଲି, ଦୁଇ ଚାରିଟା ପଦାର୍ଥ ଉଠାଉଠି କରି ଦେଖିଲା । ତା'ପରେ ଘରର ଦରଜାଟା ଭିତରୁ ବନ୍ଦ କରି ଦେଇ ପୂର୍ବ ସ୍ଥାନରେ ଆସି ବସିଲା ।

ଆଚ୍ଛା, ଆପଣ ଏ ଘରେ କେତେଦିନ ହେବ ରହିଲେଣି ?

ପ୍ରାୟ ଦୁଇବର୍ଷ ହେବ ।

ହରିହର ମହାପାତ୍ରଙ୍କ ସହିତ ଆଗରୁ ଆପଣଙ୍କର ଜଣାଶୁଣା ଥିଲା?

ନା, ତେବେ ମୋର ଜଣେ ଆତ୍ମୀୟ ତାଙ୍କ ସହିତ ପରିଚୟ କରାଇ ଦେଇଥିଲେ, ତା'ପରେ ମୁଁ ଏଠାକୁ ଆସିଥିଲି ।

: ଆପଣ କ'ଣ ହରିହର ମହାପାତ୍ରଙ୍କର ପେଇଂ ଗେଷ୍ଟ ନା ଅଲଗା ରନ୍ଧାରନ୍ଧି କରି ଖାଆନ୍ତି ?

ପ୍ରଥମେ ମୁଁ ଅଲଗା ଥିଲି । ମାନେ ଏକା ରହୁଥିଲି ଆଉ ବାହାରେ ଖାଉଥିଲି । ଧୀରେ ଧୀରେ ହରିହର ବାବୁ ସେଇଟା ବନ୍ଦ କରିଦେଲେ । ମୁଁ ତାଙ୍କ ପରିବାରର ଜଣେପରି ହୋଇଗଲି ।

ହରିହର ବାବୁ ଏପରି କରିବାର କାରଣ ?

କାରଣ ଆଉ କ'ଣ ! ହୁଏତ ତାଙ୍କୁ ମୋତେ ଭଲ ଲାଗିଲା ଅଥବା ମୋ ପ୍ରତି ସହାନୁଭୂତି ପ୍ରବଣ ହୋଇ ସେ ଏପରି କଲେ । ତାଙ୍କର ସ୍ୱାର୍ଥ ଆଉ କ'ଣ ? ହୁଏତ ତାଙ୍କ ମନରେ କିଛି ଥାଇପାରେ, ଅଥବା...

ବାହାର ଦରଜାରେ ନକ୍ ହେଲାରୁ ସେ ନୀରବ ହୋଇଗଲେ । ସତ୍ୟବ୍ରତ ଉଠିଯାଇ ଦରଜା ଖୋଲିଦେଲା । ବାହାରେ ଜଗନ୍ନାଥ

ଜଗଜ୍ୟୋତି ହସି ହସି ନମସ୍କାର କରି କହିଲା ମୁଁ ଆପଣଙ୍କୁ ପ୍ରଥମେ ଚିହ୍ନିପାରି ନ ଥିଲି । ଚାମେଲୀ ନାନୀ କଥା କ'ଣ ହେଲା ?

ଜଗଜ୍ୟୋତି ଭିତରକୁ ପଶିଲା । ରଜନୀକାନ୍ତ କହିଲେ ତୁ କୁଆଡେ ଆସିଥିଲୁ କି ?

ଇମିତି ଚାଲି ଆସିଥିଲି ଟିକିଏ । ଅନେକ ଦିନ ହେଲା ଆସି ନ ଥିଲି । ଚାମେଲୀ ନାନୀ ଥିଲାବେଳେ ସିନା ଘନ ଘନ ଯିବା ଆସିବା ହେଉଥିଲା । ଆଇସ୍‌କ୍ରିମ ଖିଆ ବି ଲାଗିଥିଲା । ଚାମେଲୀ ନାନୀ ମଲା ନାହିଁ ଯେ, ମୋ ଆଇସ୍‌କ୍ରିମ ଖିଆ ବନ୍ଦ ହୋଇଗଲା ।

ଆଇସ୍‌କ୍ରିମ ତ ଖିଆ ସରିଛି ଏବେ ଆଉ କ'ଣ ? ରଜନୀକାନ୍ତ କହିଲେ।

ସେ ତ ହରି ମଉସାଙ୍କ ପାଖରୁ । ତମେ ଖୋଇବ ନାହିଁ ?

ଏଇକ୍ଷିଣା ନୁହେଁ । ପରେ ହେବ । ଦେଖୁଛୁ ଏମାନେ ସବୁ ଆସିଛନ୍ତି । ଏଇକ୍ଷିଣା ବଜାରକୁ ଯାଇ କିଣି ହେବ ନାହିଁ ।

ଜଗଜ୍ୟୋତି ଆଉ କିଛି କହିଲା ନାହିଁ । ଘରର ଏପାଖ ସେପାଖ ଚାହିଁ କ'ଣ ଯେମିତି ଖୋଜିବାରେ ଲାଗିଗଲା । ଶେଷରେ ନଇଁପଡି ଖଟ ତଳକୁ ଗଳିଗଲା ।

ରଜନୀକାନ୍ତ ପଚାରିଲେ କ'ଣ କିରେ ଜଗ? କଣ ହଜେଇଲୁ ?

ସେ କିଛି ଉତ୍ତର ଦେଲା ନାହିଁ । ଖଟ ତଳେ ପଶି ରହିଲା ।

ସତ୍ୟବ୍ରତ କହିଲେ ଶୁଣନ୍ତୁ ରଜନୀବାବୁ, ଆପଣଙ୍କ ପାଣ୍ଡୁଲିପି ସମ୍ବନ୍ଧରେ ମୋର ଆହୁରି କେତୋଟି ପ୍ରଶ୍ନ ଅଛି । ଯେଉଁ ପ୍ରଶ୍ନଗୁଡିକର ସଦୁତ୍ତର ମୁଁ ଆଶା କରିବି ।

ନିଶ୍ଚୟ ଆପଣ ମନେ ରଖନ୍ତୁ, ମୋ ଉତ୍ତର କେବେହେଲେ ବିଭ୍ରାନ୍ତିକର ହେବ ନାହିଁ ।

ଜଗଜ୍ୟୋତି ସେତିକିବେଳେ ଖଟତଳୁ ବାହାରି ଆସି ସମସ୍ତଙ୍କ ମୁହଁକୁ ଚାହିଁ ହସିଦେଲା ।

ସତ୍ୟବ୍ରତ କହିଲା : ବଜାରରେ ଆଇସ୍‌କ୍ରିମ କୋଉଠି ମିଳେ ତମେ ଜାଣିଚ?

ହଁ-ଅଁ-ଅଁ ।

ସତ୍ୟବ୍ରତ ପଟେକରୁ ଗୋଟିଏ ପାଞ୍ଚଟଙ୍କାର ନୋଟ୍ ବାହାର କରି ଜଗଜ୍ୟୋତି ହାତକୁ ବଢାଇ ଦେଇ କହିଲା : ନେଇ ଯା, ଗଲାବେଳେ ବଜାରରୁ କିଣି ଖାଇଯିବ ।

ଜଗଜ୍ୟୋତି ପାଞ୍ଚଟଙ୍କାର ନୋଟ୍‌ଟାଏ ଦେଖି ଆନନ୍ଦରେ ଫୁଲି ଉଠିଲା । ସତ୍ୟବ୍ରତ ହାତରୁ ନୋଟ୍‌ଟା ନେଇ ଡିଆଁ ମାରି ପଳାଇ ଗଲା । ମୁହୂର୍ତ୍ତକ ପରେ ଲେଉଟି ଆସି କହିଲା ରଜନୀ ଭାଇ, ଚାମେଲୀ ନାନୀର ସେ ବ୍ୟାଗ୍‌ଟା କୁଆଡେ ଗଲା ?

କୋଉ ବ୍ୟାଗ୍ ? ରଜନୀକାନ୍ତ ପଚାରିଲେ ।

ସେଇ ହାତ ବ୍ୟାଗ । ଯୋଉଟା ସେ ହାତରେ ସବୁବେଳେ ଧରିଥାଏ ।

କାହିଁକି ? ସେଇଟା କ'ଣ ହେବ କି ?

ଦରକାର ଥିଲା । ମୁଁ ତା'ଭିତରେ ଗୋଟାଏ ଜିନିଷ ରଖିଥିଲି । ଏତିକି କହି ଜଗଜ୍ୟୋତି ପୁଣି ଛୁଟି ପଳାଇଲା । ଉତ୍ତରର ପ୍ରତୀକ୍ଷା ଆଉ ତା'ର ଦରକାର ନଥିଲା।

ସତ୍ୟବ୍ରତ ତା' ଯିବା ପଥକୁ କିଛି ସମୟ ନୀରବରେ ଅନାଇ ରହିଲ । ପୁଣି ଆଗେଇ ଯାଇ ଦରଜାଟି ଭିତରୁ ବନ୍ଦ କରି ପୂର୍ବସ୍ଥାନକୁ ଫେରିଆସିଲ ।

ଜଗଜ୍ୟୋତିର ତା'ହେଲେ ପୂର୍ବରୁ ଏ ଘରକୁ ଅବାଧ ଗତି ଥିଲା ।

ହଁ, ଜଗଜ୍ୟୋତି ଅଧିକାଂଶ ସମୟରେ ଚାମେଲୀ ସଙ୍ଗରେ ଆସୁଥିଲା । ବେଳେ ବେଳେ ଏକା ବି ଚାଲି ଆସୁଥିଲା । ଆଇସ୍‌କ୍ରିମ ପ୍ରତି ଜଗଜ୍ୟୋତିର ଖୁବ୍ ଆସକ୍ତି । ଆପଣ ଯଦି ଆଇସ୍‌କ୍ରିମ ଦେବେ କହି ତାକୁ ଦଶ ମାଇଲ ବାଟ ଚଲେଇ ନେଇ ଯାଆନ୍ତି, ସେ ଆପଣଙ୍କ ପଛେ ପଛେ ଛୁଟିଥିବ ।

ହଁ ରଜନୀବାବୁ, ମୁଁ କ'ଣ କହୁଥିଲି କି, ସେଇ ଗଳ୍ପଟି ମୁଁ ଆପଣଙ୍କ ମୁହଁରୁ ଶୁଣିବାକୁ ଚାହେଁ, ଯେଉଁ ଗଳ୍ପଟିକୁ ଆପଣ ଏଇ ଚୋରି ଯାଇଥିବା ପାଣ୍ଡୁଲିପି ଭିତରେ ଲିପିବଦ୍ଧ କରିଥିଲେ ।

ସେଇ ଗଳ୍ପଟି ଆପଣ ଶୁଣିବେ? ଗଳ୍ପଟି କିନ୍ତୁ ଅତି ମାମୁଲି । ତହିଁରେ ଗଳ୍ପ ଅପେକ୍ଷା ଲେଖାର ଶୈଳୀରେ ନୂତନତ୍ୱ ଥିଲା । ଗଳ୍ପଟା ଗୋଟାଏ ମାମୁଲି ପ୍ରେମଗଳ୍ପ କହିଲେ ଚଳେ ।

ତଥାପି ମୁଁ ସଂକ୍ଷେପରେ ଟିକେ ଶୁଣିବାକୁ ଚାହେଁ । କହିବାରେ ଆପଣଙ୍କର କିଛି ଆପତ୍ତି ଅଛି ? ସତ୍ୟବ୍ରତ ପଚାରିଲା ।

ନା ନା, ଆପତ୍ତି କ'ଣ !

ରଜନୀକାନ୍ତ ନୀରବରେ କିଛି ସମୟ ବସି ରହିଲେ । ତା'ପରେ ଧୀରେ ଧୀରେ କହିଲେ : ଗଳ୍ପର ନାୟକ ରଜତ । ଅତି ସାଦାସିଧା ସରଳ ପ୍ରକୃତିର ଲୋକ । କେମିତି ଟିକେ ଖାମ୍‌ଖିଆଲୀ । ମଧ୍ୟବିତ୍ତ ପରିବାରରେ ତା'ର ଜନ୍ମ । ସଂସାରରେ ବିଧବା ମା'କୁ ଛାଡିଦେଲେ ଆଉ କେହି ନାହିଁ । କିନ୍ତୁ ପଢାଶୁଣାରେ ସେ ଖୁବ୍ କୃତୀ । ସ୍କୁଲ, କଲେଜ, ଇଉନଭରସିଟି ସବୁଠି ସେ କୃତିତ୍ୱ ଅର୍ଜନ କରିଥିଲା ।

ପଢା ଶେଷ ହେଲା । ପଢିଲାବେଳେ ସେ ଯେଉଁ ଭଦ୍ରଲୋକଙ୍କ ଘରେ ରହୁଥିଲା, ସେ ଭଦ୍ରଲୋକ ତା'ର ଦୂର ସଂପର୍କୀୟ ଆତ୍ମୀୟ । ଅତୀତରେ ସେ ତାକୁ ଅନେକ ସାହାଯ୍ୟ କରିଥିଲେ । କିନ୍ତୁ ତାଙ୍କର ସେହି ସାହାଯ୍ୟ ମୂଳରେ ଯେ ଗୋଟାଏ ଉଦ୍ଦେଶ୍ୟ ଥିଲା, ରଜତ ତାହା ଜାଣି ନ ଥିଲା ।

ଯାହା ହେଉ ପଢା ଶେଷ ହେବା ପରେ ବି ରଜତ ସେଇଠି ଥାଏ । ଚାକିରି

ପାଇଁ କେଉଁଠି ଦରଖାସ୍ତ କରିବାକୁ ତା'ର ସେହି ଆତ୍ମୀୟ ଜଣକ ମନା କରିନ୍ତି । ସେ କୁହନ୍ତି, ଏତେ ବ୍ୟସ୍ତ କାହିଁକି । ତୁ ପଢାପଢି କରି, ଜ୍ଞାନାର୍ଜନ କର । ଚାକିରି କରିବାର ବୟସ କ'ଣ ଗଡି ଯାଉଛି ?

ଏହା ଭିତରେ ରଜତ ଗୋଟିଏ ଝିଅକୁ ଭଲପାଇ ସାରିଥିଲା । ଝିଅଟି ଗୋଟିଏ ନିମ୍ନ ମଧ୍ୟବିତ୍ତ ଘରର । ପାଠଶାଠ କମ୍ ପଢିଛି । କିନ୍ତୁ ରଜତକୁ ସେ ଝିଅଟି ଖୁବ୍ ଭଲ ଲାଗିଥିଲା । ଝିଅଟି ଅଭିନେତ୍ରୀ ।

ଦିନେ ରଜତ ସହିତ ସେ ଝିଅଟି ତା'ଘରକୁ ଆସଥିଲା । ସେଦିନ ରଜତର ସେହି ଆତ୍ମୀୟ ଜଣକ ତାକୁ ଦେଖିଥିଲେ । ଝିଅଟି ଚାଲିଯିବା ପରେ ତାକୁ ନାନା ପ୍ରଶ୍ନ ପଚାରିଥିଲେ । ରଜତ ସରଳ ଭାବରେ ଉତ୍ତର ଦେଇଥିଲା, ଝିଅଟି ମୋର ବାନ୍ଧବୀ ।

ରଜତର ସେହି ଆତ୍ମୀୟ ଆଉ କୌଣସି ପ୍ରତିବାଦ କରି ନଥିଲେ । ଦିନ ଗଡି ଚାଲିଥିଲା । ରଜତର ସେହି ବାନ୍ଧବୀଟିର ରଜତ ଘରକୁ ଯିବା ଆସିବା ବୃଦ୍ଧି ପାଇଥିଲା । ଇମିତ ଚାଲିଥିଲା ।

ରଜତର ସେଇ ଆତ୍ମୀୟଙ୍କର ଗୋଟିଏ ଝିଅ ଥିଲା । ତା' ନାଁ ବାସବଦତ୍ତା । ଝିଅଟି ଦେଖିବାକୁ ସୁନ୍ଦରୀ । ଯାହାକୁ କହନ୍ତି ଗୋଟିଏ ଚାଉଳରେ ଗଢା । କିନ୍ତୁ ଖୁଣ ଭିତରେ ଝିଅଟି ମୂକ । ତା'ର ସେହି ଆତ୍ମୀୟଟି ଝିଅକୁ ଖୁବ୍ ଭଲ ପାଆନ୍ତି ଏବଂ ତାକୁ ଅତି ସ୍ନେହ ଆଦରରେ ଲାଳନ ପାଳନ କରି ବଡ କରିଛନ୍ତି । ବାସବଦତ୍ତା କିନ୍ତୁ ରଜତ ସଂସର୍ଗରେ କେବେ ଆସୁ ନ ଥିଲା । ଅନେକ ସମୟରେ ବାସବଦତ୍ତା ସହିତ ରଜତର ଦେଖାହୁଏ, ସେ ଖାଲି ଟିକିଏ ହସେ ଆଉ ବାଟ ଭାଙ୍ଗି ଚାଲିଯାଏ । କିନ୍ତୁ ରଜତ ଲକ୍ଷ୍ୟ କଲା, ତା' ଘରକୁ ବି ସେ ଆସୁଛି। ବେଳେବେଳେ ରଜତର ଛୋଟ ଛୋଟ କାମଦାମ ବି କରିଦେଉଛି । ତଥାପି ରଜତ କିଛି ମନେ କରି ନ ଥିଲା ।

ରଜତ ତା' ବାନ୍ଧବୀଟି ଆଡେ କିନ୍ତୁ ଦିନକୁଦିନ ଆକର୍ଷିତ ହେଉଥିଲା।

ଦିନେ ରଜତ ଘରକୁ ଫେରି ଦେଖିଲା, ତା'ର ମା' ଆସିଛନ୍ତି । ମା' ମଝିରେ ମଝିରେ ଆସନ୍ତି । ତେଣୁ ସେ ସ୍ୱାଭାବିକ ଭାବରେ ମା'ଙ୍କୁ ପ୍ରଣାମ କରି ନିଜ ଘରକୁ ଚାଲିଗଲା । ଲୁଗାପଟା ବଦଳେଇ ପଢି ବସିଲା । ଦେଖିଲା, ମା' ତା' ଘରକୁ ଆସୁଛନ୍ତି ।

କିନ୍ତୁ ମା' ଯେ ତା' ଆଗରେ ଏପରି ଏକ ପ୍ରସ୍ତାବ ବାଢି ବସିବେ, ସେ କଳ୍ପନା କରି ପାରି ନଥିଲା । ମା' କହିଲେ, ବାବୁ, ତୁ'ତ ମୋର ଏକୋଇର ବାଳା। ତୁ ମୋର ସୁଖ-ଦୁଃଖ, ତୁ ମୋର ସବୁ । ମୋର ଗୋଟିଏ ଅଳି ଅଛି, ରଖିବୁ ତ ?

ରଜତ କହିଲା, ନିଶ୍ଚୟ । ରଖିବା ଭଳି ହୋଇଥିଲେ ତୋ କଥା ମୁଁ ନିଶ୍ଚୟ ରଖିବି ।

ମା' ଏଣେତେଣେ ଟିକେ ଅନେଇଲେ । ରଜତ ପାଖକୁ ଆଗେଇ ଯାଇ, ଧୀର

ଗଳାରେ କହିଲେ, ମୁଁ ଭାବୁଛି ବାସବଦତ୍ତାକୁ ବୋହୂକରି ଘରକୁ ନେବା ପାଇଁ ।

ରଜତର ମୁଣ୍ଡରେ ଯେପରି ବଜ୍ରପାତ ହେଲା ।

ରଜତ ସ୍ତବ୍ଧ ହୋଇଗଲା ।

କିନ୍ତୁ ଏହା କିପରି ସମ୍ଭବ ? ସେ ଯେ କଥା ଦେଇଚି ଆଉଜଣକୁ। ଅନ୍ତର ଦେଇଛି ଆଉଜଣକୁ !

ମା' ପୁଅର ଅମତ ଦେଖି ରାଗ କରି ଗାଁକୁ ଚାଲିଗଲେ । ବାସବଦତ୍ତାର ବାପା କିନ୍ତୁ କିଛି ନ ଜାଣିଲା ପରି କୌଣସି ଅଭିବ୍ୟକ୍ତି ପ୍ରକାଶ କଲେ ନାହିଁ କିନ୍ତୁ ରଜତ ବୁଝିପାରିଥିଲା, ଏସବୁ ବାସବଦତ୍ତା ବାପାଙ୍କର ଚକ୍ରାନ୍ତ ।

କିନ୍ତୁ ରଜତର ତା'ମନ ଉପରେ କିଛି ହାତ ନ ଥିଲା । ତା' କଳାପ୍ରେମୀ ମନ ଯେଉଁ କଳାକାରଟି ପ୍ରତି ଆକୃଷ୍ଟ ହୋଇଥିଲା, ତା'ଆଡୁ ଫେରେଇ ଆଣିବାର ଆଉ ବାଟ ନ ଥିଲା ।

ବାସବଦତ୍ତାର ବାପା ଖବ୍ ଚତୁର ଲୋକ ଥିଲେ । ସେ କିନ୍ତୁ ମୁହଁ ଖୋଲି ରଜତକୁ ଥରଟିଏ ବି ବାସବଦତ୍ତା ସମ୍ବନ୍ଧରେ କିଛି କହି ନ ଥିଲେ । ରଜତ ସେଠାରୁ ଯେତେ ଦୂରେଇ ଯିବାକୁ ଚେଷ୍ଟା କରୁଥିଲା, ସେ କିନ୍ତୁ ତାଙ୍କୁ ସେତେ ସମବେଦନା ଜଣାଇ ପାଖକୁ ଟାଣିବାକୁ ଚେଷ୍ଟା କରୁଥିଲେ ।

ରଜତର କିନ୍ତୁ ମନ ମାନୁ ନ ଥିଲା । ସେ ଦିନକୁଦିନ କିପରି ଖାମ୍ ଖିଆଲୀ ହୋଇଉଠୁଥିଲା । କେବେକେବେ ଘର ଛାଡି କୁଆଡେ ଚାଲି ଯାଉଥିଲା । ଫେରୁଥିଲା ଦୁଇ ତିନିଦିନ ପରେ ।

ରଜତର ଏହିପରି ମାନସିକ ଦ୍ୱନ୍ଦ୍ୱ ଦେଖି ବାସବଦତ୍ତାର ବାପା ଟିକିଏ ଚିଚଳିତ ହୋଇପଡିଥିଲେ । ସେ ରଜତର ଗତିବିଧି ଲକ୍ଷ୍ୟ କରୁଥିଲେ ।

ନା, ରଜତକୁ ଉଦ୍ଧାର କରିବାକୁ ହେବ । ରଜତକୁ ଗୋଟାଏ ଅଭିନେତ୍ରୀ କବଳରୁ ଉଦ୍ଧାର କରିବାକୁ ହେବ ।

ଭଦ୍ରଲୋକ ଯେତେ ଚେଷ୍ଟା କରୁଥିଲେ, ରଜତ ସେତେ କରଛଡା ଦେଉଥିଲା । ଥରେ ପ୍ରାୟ ସାତ ଆଠଦିନ ରଜତ ଘରକୁ ଫେରିଲା ନାହିଁ । ଭଦ୍ରଲୋକ ରଜତକୁ ଖୋଜିଖୋଜି କେଉଁଠୁ ପାଇଲେ ନାହିଁ । ଶେଷରେ ଜାଣି ପାରିଲେ ରଜତ ତା'ର ସେହି ଅଭିନେତ୍ରୀ ବାନ୍ଧବୀଟି ସହିତ ଥିଏଟର ପାର୍ଟି ସହିତ ଟୁର୍ ପ୍ରୋଗ୍ରାମରେ ବାହାରକୁ ବାହାରି ଯାଇଛି ।

ସେ ଲୋକ ପଠାଇଲେ ।

ଲୋକ ଆସି ଖବର ଦେଲା, ରଜତ ଥିଏଟର ଦଳରେ ମିଶିଯାଇଛି । ତା' ବାନ୍ଧବୀ ସହିତ ମିଶି ଅଭିନୟ କରୁଚି । ସେଠାରୁ ତାକୁ ଉଦ୍ଧାର କରିବା ସହଜରେ ସମ୍ଭବ ହେବ ନାହିଁ ।

ତା'ପରେ ହଠାତ୍ ଦିନେ ରଜତ ଫେରିଆସିଲା ।

ତଥାପି ବାସବଦତ୍ତାର ବାପା ରଜତକୁ ପାଟି ଫିଟେଇ କିଛି କହିଲେ ନାହିଁ କିମ୍ବା ତା' ସହିତ କୌଣସି ଅସୌଜନ୍ୟ ବ୍ୟବହାର କଲେ ନାହିଁ । ଖାଲି ରଜତର ଗତିବିଧି ଲକ୍ଷ୍ୟ କରିଗଲେ ।

ସେ ଲକ୍ଷ୍ୟ କଲେ, ଏବେ ରଜତ ଦିନ ସାରା ଘର ଭିତରେ କବାଟ କିଳି ପଶି ରହୁଚି । ସନ୍ଧ୍ୟା ପୂର୍ବରୁ ଘରୁ ବାହାରି ଚାଲିଯାଉଚି । ଫେରୁଚି ସେଇ ରାତି ଏଗାର ବାରରେ ।

ରଜତ ତେବେ କରୁଛି କ'ଣ ? ଯାଉଛି କୁଆଡ଼େ ?

ରଜତ ଦିନଯାକ ଘରେ କବାଟ କିଳି କ'ଣ ଯେପରି ଲେଖୁଛି । କ'ଣ ? ନାଟକ । କାହା ପାଇଁ ? ତା'ର ବାନ୍ଧବୀ ପାଇଁ ? ଆଉ ସନ୍ଧ୍ୟାବେଳେ ଯାଇ ରଙ୍ଗମଞ୍ଚରେ ନାଟକ ଶେଷ ନ ହେବା ଯାଏ ବସିରହୁଛି ।

ବାସବଦତ୍ତାର ବାପା ମହାଚିନ୍ତାରେ ପଡିଗଲେ । ରଜତଟା ତେବେ କ'ଣ ହାତଛଡା ହୋଇଯିବ ? ହେବା ତ ଉଚିତ ନୁହେଁ । ହେବାକୁ ସେ ଦେବେ ବା କାହିଁକି ?

ତା'ହେଲେ ଉପାୟ ?

ବାସବଦତ୍ତାର ବାପା ଉପାୟ ଚିନ୍ତା କଲେ । ରଜତକୁ ସେ ବାସବଦତ୍ତା ସହିତ ବିବାହ ଦେବେନାହିଁ ।

ହଠାତ୍ ଦିନେ...

ରଜନୀକାନ୍ତଙ୍କ କଥା ଶେଷ ହେଲା ନାହିଁ । ଦୁଆରେ କିଏ ନକ୍ କରିବାର ଶୁଣାଗଲା ।

କିଏ ? ସତ୍ୟବ୍ରତ ନିଜେ ଯାଇ କବାଟ ଖୋଲିଲା ।

ସ୍ୱୟଂ ହରିହର ମହାପାତ୍ର ଠିଆ ହୋଇଛନ୍ତି ।

ମୁହଁରେ ହସ ଫୁଟେଇ କହିଲେ ତଳେ ମୁଁ ଅନେକ ବେଳରୁ ଅପେକ୍ଷା କରିଚି । ଚା'ଥଣ୍ଡା ହୋଇ ଯାଉଚି । ଆପଣମାନେ ଆସନ୍ତୁ ।

ସତ୍ୟବ୍ରତ ହରିହର ମହାପାତ୍ରଙ୍କ ମୁହଁରୁ ଆଖି ଉଠାଇ ପଛକୁ ମୋ ଆଡେ ଚାହିଁଲା, ତା'ପରେ ରଜନୀକାନ୍ତ ମୁହଁ ଆଡେ । ଧୀରେଧୀରେ ଆଖି ଫେରେଇନେଇ ହରିହର ମହାପାତ୍ରଙ୍କୁ କହିଲା ଚାଲନ୍ତୁ ।

ନିଜେ ସେ ହରିହର ମହାପାତ୍ରଙ୍କ ସହିତ ତଳକୁ ଓହ୍ଲାଇଲା । ଆମ ଦୁହିଁଙ୍କୁ ସଙ୍ଗରେ ଡାକିଲା । ରଜନୀକାନ୍ତଙ୍କୁ କହିଲା ଆପଣଙ୍କ ଉପନ୍ୟାସର କାହାଣୀଟା ଆଜି ଶେଷ ହୋଇ ପାରିଲା ନାହିଁ । ବାକିଟା ଆଉ ଦିନେ ଶୁଣାଇବେ ।

ହରିହର ମହାପାତ୍ର ଟିକିଏ ଯାଇ ପଛକୁ ଅନେଇଲେ ।

ନୀରବତା ଭିତରେ ଆମେ ସମସ୍ତେ ଯାଇ ହରିହର ମହାପାତ୍ରଙ୍କ ଚେୟରରେ ବସିଲୁ । ପ୍ରକୃତରେ ଚା'ରୁ ଧୂଆଁ ଉଠୁଥିଲା । ଆଉ ଡେରି କରିଥିଲେ ଥଣ୍ଡା ହୋଇଯିବାର ସମ୍ଭାବନା ଯଥେଷ୍ଟ ଥିଲା ।

ହରିହର ମହାପାତ୍ର କହିଲେ ଆପଣମାନେ ଯେପରି ଭାବରେ ଚାମେଲୀର ମୃତ୍ୟୁରହସ୍ୟ ଉଦ୍‌ଘାଟନ କରିବାରେ ଲାଗିଛନ୍ତି, ମନେ ହେଉଛି ସେ ରହସ୍ୟ ଉଦ୍‌ଘାଟନ ନ କରି ଛାଡ଼ିବେ ନାହିଁ । କିନ୍ତୁ ଗୋଟାଏ କଥା ମୁଁ ଫୋରକାଷ୍ଟ କରିପାରେ, ଚାମେଲୀ ମୃତ୍ୟୁରହସ୍ୟ ଯଦି ହତ୍ୟାକାଣ୍ଡ ହୋଇଥାଏ, ତେବେ ସେ ରହସ୍ୟ ଭିତରୁ ରଜନୀକାନ୍ତର ଗନ୍ଧ ପାଇବେ ନାହିଁ ।

ସତ୍ୟବ୍ରତ ହସିଲା । କହିଲା ଆମେ କିନ୍ତୁ ଏଠାକୁ ଏଥର ଅନ୍ୟ କାରଣରେ ଆସିଛୁ । ଆମେ ଆସିଛୁ ରଜନୀକାନ୍ତବାବୁଙ୍କର ପାଣ୍ଡୁଲିପି ଉଦ୍ଧାର କରିବା ପାଇଁ । ଯେଉଁଟା ତାଙ୍କ ଘରୁ ଚୋରି ଯାଇଛି ।

: ପାଣ୍ଡୁଲିପି ଚୋରି ଯାଇଛି ? ହରିହର ମହାପାତ୍ର ଯେପରି ଅବାକ୍ ହୋଇଗଲେ ।

ହଁ ପାଣ୍ଡୁଲିପି । ରଜନୀକାନ୍ତଙ୍କ ଘରୁ । ସତ୍ୟବ୍ରତ ସହଜ ଭାବରେ କହିଲା।

ହରିହର ମହାପାତ୍ର ଆଉ କିଛି ଉତ୍ତର ଦେଲେ ନାହିଁ । ଚା'କପ୍‌ଟା ଉଠେଇ ନେଉନେଉ କହିଲେ ଆପଣମାନେ ଚା' ପିଅନ୍ତୁ । ଥଣ୍ଡା ହୋଇ ଯାଉଚି ।

ଆମେ ନିଜ ନିଜର ଚା'କପ୍‌ଟିମାନ ଉଠାଇ ନେଇ ନୀରବରେ ପାନ କରିବାରେ ଲାଗିଲୁ । ମୁଣ୍ଡ ଉପରେ ଫ୍ୟାନ୍‌ଟା ଝଡ ବେଗରେ ଘୂରୁଥିଲା ।

ଅଖଣ୍ଡ ନୀରବତା ।

ଚା'ପିଆ ଶେଷ ହେଲା ।

ମନେ ହେଉଥିଲା ସମସ୍ତେ ଯେପରି ଗମ୍ଭୀର ହୋଇ ବସିରହିଛନ୍ତି ।

ସତ୍ୟବ୍ରତ ନୀରବତା ଭଙ୍ଗ କରି କହିଲା ଆପଣଙ୍କ ଆତିଥେୟତା ପାଇଁ ଅଶେଷ ଧନ୍ୟବାଦ ମିଷ୍ଟର ମହାପାତ୍ର । ଆଜି ଆମେ ଉଠୁଚୁ । ରଜନୀକାନ୍ତଙ୍କ ପାଣ୍ଡୁଲିପିଟି ଉଦ୍ଧାର କରିବାକୁ ହେବ । ସେଇଟା ବେଶୀ ସମୟ ଲାଗିବ ନାହିଁ । ତେବେ ଏହାଦ୍ୱାରା ଗୋଟାଏ କଥା ପରିଷ୍କାର ହୋଇଗଲା ଯେ, ଚାମେଲୀର ହତ୍ୟାରହସ୍ୟ ସହିତ ଏହି ପାଣ୍ଡୁଲିପିଟିର ସମ୍ପର୍କ ଅଛି ଏବଂ ପାଣ୍ଡୁଲିପିଟି ଉଦ୍ଧାର ହେଲେ ଚାମେଲୀର ହତ୍ୟାକାରୀ ସମ୍ବନ୍ଧରେ ଗୋଟାଏ ସ୍ପଷ୍ଟ ଧାରଣା ମିଳିଯିବ।

ସତ୍ୟବ୍ରତ ଉଠି ଠିଆ ହେଲା ।

ହରିହର ମହାପାତ୍ର କିପରି ଧ୍ୟାନଗମ୍ଭୀର ହୋଇ ପଡିଥିଲେ । ସେ ଉଠି ଠିଆ ହୋଇ ଆମମାନଙ୍କୁ ବିଦାୟ ଦେଲେ ।

ରଜନୀକାନ୍ତ ଆମ ସହିତ ରାସ୍ତାଯାଏ ଆଗେଇଆସି କରମର୍ଦ୍ଦନ କଲେ ।

ତଥାପି ସତ୍ୟବ୍ରତର ମୁହଁ ଫିଟିଲା ନାହିଁ ।

ଗାଡି ଯାଇ ଯେତେବେଳେ ଇନ୍ଦ୍ରଜାଲରେ ପହଞ୍ଚିଲା, ସତ୍ୟବ୍ରତ ଗାଡିରୁ ଓହ୍ଲେଇ ଯାଉଯାଉ କହିଲା : କାଲି ଦଶଟା ବେଳକୁ ତୁ ଜଗଜ୍ୟୋତିକୁ ସଙ୍ଗରେ ଆଣି ଏଠାରେ ପହଞ୍ଚିବୁ ।

ଇନ୍ଦ୍ରଜାଲରେ ଜଗଜ୍ୟୋତିକୁ ସଙ୍ଗରେ ଧରି ମୁଁ ଆସି ପହଞ୍ଚିଲି ।

ସତ୍ୟବ୍ରତ ବୋଧହୁଏ ଆମକୁ ଅପେକ୍ଷା କରି ବସି ରହିଥିଲା । ଜଗଜ୍ୟୋତିକୁ ଦେଖିବା ମାତ୍ରକେ ସେ ଆନନ୍ଦରେ ନାଚି ଉଠିଲା, ଆସ ଆସ ଜଗଜ୍ୟୋତି । ତମ ପାଇଁ ମୁଁ ଆଜି ଅନେକ ଆଇସକ୍ରିମ ଆଣି ରଖିଛି ।

ସତ୍ୟବ୍ରତ ଉଠିଯାଇ ଫ୍ରିଜ ଖୋଲି ଗୋଟାଏ ଟ୍ରେ' ବାହାର କରି ଆଣିଲା । ଟ୍ରେ'ରେ ଆଇସକ୍ରିମ ଭର୍ତ୍ତି ହୋଇ ରହିଥିଲା ।

ଜଗଜ୍ୟୋତି ବିସ୍ଫାରିତ ନୟନରେ ସେଇ ଆଇସକ୍ରିମ ଭରା ଟ୍ରେ'ଟା ଆଡ଼େ ଚାହିଁ, ଏକ ଦୁଇ କରି ଗଣିବାରେ ଲାଗିଲା ।

ପନ୍ଦରଟା ? ସବୁଯାକ ମୋରି ପାଇଁ ?

ହଁ, ସବୁଯାକ ତମରି ପାଇଁ ଆଣିଚି ।

ଜଗଜ୍ୟୋତିର ମୁହଁ ଆନନ୍ଦରେ ଝଲସି ଉଠିଲା । ସେ ଆଇସକ୍ରିମ ଗୁଡ଼ିକରେ ହାତ ମାରି ଯେପରି ସ୍ୱର୍ଗ ଅନୁଭବ କଲା । କହିଲା: ମୋତେ ଆଜିଯାଏ ଏତେ ଆଇସକ୍ରିମ କେହି ଦେଇ ନ ଥିଲେ ।

ଖାଲି ଏତିକି ନୁହେଁ ଜଗଜ୍ୟୋତି, ମୁଁ ଆହୁରି ଆଇସକ୍ରିମ ଦେବି । କିନ୍ତୁ ତମକୁ ଗୋଟାଏ ସତ କଥା କହିବାକୁ ହେବ । ସତ୍ୟବ୍ରତ କହିଲା ।

କୋଉ କଥା ?

ତମେ ଚାମେଲୀ ନାନୀର ହାତବ୍ୟାଗରେ କ'ଣ ରଖିଥିଲ ?

ଓଃ, ଏଇ କଥା । ଜଗଜ୍ୟୋତି ହସି ହସି ଗଡ଼ିଗଲା । କହିଲା, ଇଏ ପୁଣି ଗୋଟାଏ କଥା ? ମୁଁ ଚାମେଲୀ ନାନୀ ହାତବ୍ୟାଗରେ ଗୋଟାଏ ତାନ୍‌ସେନ୍ ଟାବଲେଟ୍ ଶିଶି ରଖିଥିଲି ।

ସତ୍ୟବ୍ରତ ଜଗଜ୍ୟୋତି ମୁହଁରୁ କଥାଟା ଶୁଣି ମୁହୂର୍ତ୍ତେ ଚୁପ୍ ହୋଇଗଲା । ଇତ୍ୟବସରେ ଜଗଜ୍ୟୋତି ଗୋଟିଏ ଆଇସକ୍ରିମ ଟ୍ରେ'ରୁ ଉଠାଇ ନେଇ ଖାଇବାକୁ ଆରମ୍ଭ କରି ଦେଇଥିଲା ।

ହୁଁ, ଆଚ୍ଛା ଜଗଜ୍ୟୋତି । ତମେ ତମ ଚାମେଲୀ ନାନୀ ହାତବ୍ୟାଗରେ କେବେ ତାନ୍‌ସେନ୍ ଟାବଲେଟ୍ ଶିଶି ରଖିଥିଲ ? ପୁଣି ସତ୍ୟବ୍ରତ ପଚାରିଲା ।

ସେଇଦିନ ମ । ଯୋଉଦିନ ଚାମେଲୀ ନାନୀ ରଜନୀ ଭାଇ ହେରିକାଙ୍କ ସାଙ୍ଗରେ ବୁଲି ଯାଇଥିଲା ।

ବେଶ୍, ସେଦିନ ତ ତା' ବ୍ୟାଗରେ ତମେ ତାନ୍‌ସେନ୍ ଟାବଲେଟ୍ ଶିଶି ରଖିଥିଲ । ଆଜି ପୁଣି ସେଇଟା ଖୋଜୁଥିଲ କାହିଁକି ?

ଜଗଜ୍ୟୋତି ଆଇସକ୍ରିମର ଗୋଟାଏ ଡବା ଖାଲି କରି ଦେଇ, ଆଉ ଗୋଟାଏକୁ ହାତ ବଢ଼ାଉ ବଢ଼ାଉ କହିଲା ଉଁ ହୁଁ । ସେକଥା ମୁଁ କହିବି ନାହିଁ ହରି ମଉସା କାହାକୁ କହିବାକୁ ମନା କରିଛନ୍ତି ।

ସତେ ? ସତ୍ୟବ୍ରତର ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଜଗଜ୍ୟୋତି ହାତକୁ ଆଉ ଗୋଟାଏ ଆଇସ୍‌କ୍ରିମ ବଢ଼ାଇ ଦେଇ କହିଲା, ନା ନା, ହରି ମଉସା ମନା କରିଛନ୍ତି ଯେତେବେଳେ ଖବରଦାର କାହାରି ଆଗରେ କହିବ ନାହିଁ । ତମେ ଡାନ୍‌ସେନ୍ ଟାବଲେଟ୍ ଶିଶି ରଖିଥିଲ, ସେକଥା ହରିମଉସା ଜାଣିଲେ କିପରି?

ଜଗଜ୍ୟୋତି ଆଇସ୍‌କ୍ରିମ ଖୋଳ ଉପରୁ କାଗଜ ଛଡ଼ାଉ ଛଡ଼ାଉ କହିଲା : ହରି ମଉସା ପରା ମତେ ଶିଶିଟା ଦେଇଥିଲେ । ଦେଇ କହିଥିଲେ ଚାମେଲୀ ନାନୀର ହାତବ୍ୟାଗରୁ ତା' ଟାବଲେଟ୍ ଶିଶିଟି ବାହାର କରି ଆଣି, ଏଇଟିକୁ ରଖି ଦେବା ପାଇଁ ।

ତା'ପରେ ? ସତ୍ୟବ୍ରତ ପଚାରିଲା ।

ସେଇଆ କରିଥିଲି । ଜଗଜ୍ୟୋତି କହିଲା ।

ବେଶ୍ ଭଲ କରିଚ । କିନ୍ତୁ ପୁଣି ସେଇ ଶିଶିଟା ଖୋଜୁଥିଲ କାହିଁକି?

ଦରକାର ଥିଲା । ସେଇଟା ଖୋଜି ପାଇଥିଲେ ଦୁଇଟା ଆଇସ୍‌କ୍ରିମ୍ ମିଳିଥାଆନ୍ତା । ଜଗଜ୍ୟୋତି କହିଲା ।

କିଏ ହରି ମଉସା ଦେଇ ଥାଆନ୍ତେ ?

ଜଗଜ୍ୟୋତି ଏଥର ହସି ହସି ଗଡ଼ିଗଲା । କହିଲା ଆପଣ ଜାଣିଲେ କିପରି ? ହରି ମଉସା ମନା କରିଥିଲେ କାହାରି ଆଗରେ କହିବୁ ନାହିଁ । ମୁଁ କ'ଣ କହିଛି ? ଆପଣ ସତ କୁହନ୍ତୁ ତ ! ମୁଁ କ'ଣ ଆପଣଙ୍କୁ କହିଛି, ହରି ମଉସା କହିଛନ୍ତି ଡାନ୍‌ସେନ୍ ଟାବଲେଟ୍ ଶିଶିଟାକୁ ଫେରେଇଦେଲେ ସେ ମୋତେ ଆଇସ୍‌କ୍ରିମ ଦେବେ ।

ନା ନା, ତମେ ସେକଥା କହିବ କାହିଁକି ? ତମେ ମୋତେ କହି ନାହଁ । ହରି ମଉସା ମୋତେ ପଚାରିଲେ ମୁଁ ମନା କରିଦେବି । ଏଥର ବସି ବସି ଆଇସ୍‌କ୍ରିମ ଖାଅ । ମୁଁ ଆସୁଚି ।

ସତ୍ୟବ୍ରତ ଉଠି ଠିଆ ହେଲା । ମେତେ ଆଖି ଠାରିଦେଲା ତା'ପଥ ଅନୁସରଣ କରିବା ପାଇଁ । ଆମେ ତଳକୁ ଓହ୍ଲେଇଗଲୁ ।

ତଳେ ନୀଳିମା ବସି ଗୋଟାଏ ବହି ପଢୁଥିଲା । ଆମକୁ ଦେଖିବାକ୍ଷଣି ସଜାଡ଼ି ହୋଇ ବସିଲା ।

ସତ୍ୟବ୍ରତ ନୀଳିମାକୁ କହିଲା ଫୋନ୍‌ଟା ଥାନା ଇନିସ୍‌ପେକ୍ଟର ସତ୍ୟାନନ୍ଦ ବେହୁରାଙ୍କ ସହିତ ସଂଯୋଗ କରି ଦେବ ପାଇଁ ।

ସତ୍ୟାନନ୍ଦ ବେହୁରା ଉପସ୍ଥିତ ଥିଲେ ।

ସତ୍ୟବ୍ରତ ପଚାରିଲା ମୃତ ଚାମେଲୀର କି କି ଜିନିଷ ଆପଣ ଥାନାରେ ରଖିଛନ୍ତି ?

ମୁଁ ଉଠିଆଇ ଫୋନ୍ ପାଖରେ କାନ ଡେରିଲି ।

ସତ୍ୟାନନ୍ଦ ବେହୁରା କହିଲେ ଟିକିଏ ଅପେକ୍ଷା କରନ୍ତୁ ମୁଁ କହୁଛି ।

କେତୋଟି ମିନିଟ ପରେ ସତ୍ୟାନନ୍ଦ ବେହୁରା ଅପର ପ୍ରାନ୍ତରୁ କହିଲେ ମୃତ ଚାମେଲୀର ହଳେ ଯୋତା ଆଉ ଗୋଟିଏ ଛୋଟ ଭ୍ୟାନିଟି ବ୍ୟାଗ ଥାନାରେ ଜମା ଅଛି । ଆଉ ନ କିଛି ନାହିଁ ।

ସତ୍ୟବ୍ରତ କହିଲା ଆପଣ ସେଇ ଭ୍ୟାନିଟ୍ ବ୍ୟାଗଟି ଧରି ସଙ୍ଗେସଙ୍ଗେ ଏଠାକୁ ଚାଲି ଆସନ୍ତୁ । ଖୁବ୍ ଜରୁରୀ । ମୋଟେ ଡେରି କରିବେ ନାହିଁ

ସତ୍ୟବ୍ରତ ରିସିଭରଟା ରଖିଦେଇ ବିଜୟଦୀପ୍ତିରେ ମୋ ମୁହଁକୁ ଥରେ ଚାହିଁଲା, ସ୍ମିତ ହସି କହିଲା : ତୁ ତ ରୁନୁକୁ ମାନେ ହରିହର ମହାପାତ୍ରଙ୍କ ଝିଅକୁ ଦେଖିଚୁ ।

ହଁ, କାହିଁକି । ତୁ ନିଜେ ତ କାଲି ଦେଖିଥିଲୁ ।

ଆରେ ରହ, ଏପରି ଉତ୍ତେଜିତ ହେଇ ପଡୁଚୁ କାହିଁକି ? ମୁଁ ପଚାରୁଥିଲି ତା' ସହିତ ତୁ କଥାବାର୍ତ୍ତା କରିଚୁ ? ସତ୍ୟବ୍ରତ ପଚାରିଲା ।

କଥାବାର୍ତ୍ତା ! କଥାବାର୍ତ୍ତା କେତେବେଳେ କଲି ?

: ରୁନୁ ତତେ ଚାହା ପେଇଲା । ଅଥଚ ତୋ ସହିତ କଥା ପଦେ ହେଲାନାହିଁ ?

: ନା, ରୁନୁ ଚା' ରଖିଦେଇ ଚାଲିଗଲା । ମୁଁ ଆଉ କଥା ହେଲି କେତେବେଳେ ?

ତା ହେଲେ ? ତା'ହେଲେ...

ସତ୍ୟବ୍ରତ ଯେପରି ଚିନ୍ତିତ ହୋଇଉଠିଲା । ସେ କୌଣସି ଗୋଟାଏ ସମସ୍ୟାକୁ ସମାଧାନ କରିପାରୁ ନଥିଲା ।

ସେତିକିବେଳେ ରଜନୀକାନ୍ତ ଆସି ସେଠାରେ ପହଞ୍ଚିଲା ।

ଆସନ୍ତୁ ରଜନୀବାବୁ, ମୁଁ ଆପଣଙ୍କୁ ଅପେକ୍ଷା କରିଥିଲି । ସତ୍ୟବ୍ରତ କହିଲା ।

ରଜନୀକାନ୍ତ ହାତରେ ଧରିଥିବା ଗୋଟିଏ ଖାତା ଟେବୁଲ ଉପରେ ଥୋଉ ଥୋଉ କହିଲେ : ମୋ ପାଣ୍ଡୁଲିପିଟା ମିଳିଛି ।

ପାଣ୍ଡୁଲିପିଟା ମିଳିଛି ମାନେ ?

ହଁ, ମୁଁ ଆଜି ଟିକେ ଡେରିରେ ଉଠିଲି । ଉଠି ଦେଖେ ମୋ ଟେବୁଲ ଉପରେ ପାଣ୍ଡୁଲିପିଟି ଥୁଆ ହୋଇଛି । କିନ୍ତୁ ଶେଷ ଆଡ଼କୁ ଆଠଦଶଟା ପୃଷ୍ଠା ନାହିଁ ।

ନାହିଁ ମାନେ ?

କିଏ ଛିଡ଼େଇ ନେଇଛି ।

ବେଶ୍ କରିଛି । ନାୟକ ନାୟିକାଙ୍କର ଶେଷ ପରିଣତି ଯାହାର ପସନ୍ଦ ହୋଇ ନ ଥିବ, ସେ ନିଶ୍ଚୟ ଛିଡ଼େଇ ନେଇ ଭଲ କରିଛି । ସତ୍ୟବ୍ରତ ବ୍ୟଙ୍ଗମିଶ୍ରିତ କଣ୍ଠରେ କହିଲା ।

: ଭଲ କରିଛି ? ମୋ ପାଣ୍ଡୁଲିପିର ଶେଷ ଅଂଶତକ ଛିଡ଼େଇ ନେଇ ଲୋକଟା ଭଲ କରିଛି !

କାରଣ ଆପଣଙ୍କ ଉପନ୍ୟାସର ଶେଷପରିଣତି ଅନ୍ୟ ପ୍ରକାର ହେବ । ଆପଣଙ୍କ ନାୟିକାର ମୃତ୍ୟୁ ହେବ । ରଜତର ବିବାହ ହେବ ବାସବଦତ୍ତା ସହିତ ।

ରଜନୀକାନ୍ତ ସତ୍ୟବ୍ରତ ମହାପାତ୍ରଙ୍କ କଥାରେ ହସି ପକାଇ କହିଲେ ପାଣ୍ଡୁଲିପିରେ ତ ମୋ ନାୟିକାର ମୃତ୍ୟୁ ହୋଇଥିଲା । କିନ୍ତୁ ବାସବଦତ୍ତା ସହିତ ରଜତର ବିବାହ ? ଏପରି ଚିନ୍ତା ଆପଣଙ୍କ ମନରେ ସ୍ଥାନ ପାଇଲା କିପରି ?

ସତ୍ୟବ୍ରତ ପଚାରିଲା ଆପଣଙ୍କ ଉପନ୍ୟାସରେ ନାୟିକାର ମୃତ୍ୟୁ ହୋଇଛି, ହଠାତ୍ ନାୟିକାର ମୃତ୍ୟୁ ଘଟିଲା କିପରି ?

ମୃତ୍ୟୁ ? ରଜନୀକାନ୍ତ ହସିଲେ । ମୃତ୍ୟୁର ପୁଣି ଗୋଟାଏ କାରଣ କ'ଣ ଥାଇପାରେ, ମୃତ୍ୟୁ, ମୃତ୍ୟୁ । କାରଣ ଥାଇ ଯାହା, ସ୍ୱାଭାବିକ ଭାବେ ବି ସେଇଆ । ମୁଁ ମୃତ୍ୟୁର ଡେଫିନେସନ କିଛି ଦେବାକୁ ଚାହେଁ ନାହିଁ । ମୃତ୍ୟୁ, ମାନେ ଶୀତଳ ମୃତ୍ୟୁ । ମାନେ ଚିରନିଦ୍ରା । ମାନେ ଶାନ୍ତି । ରଜନୀକାନ୍ତ ଆଖି ବୁଜି କିପରି ନୀରବ ହୋଇଗଲା ।

ସତ୍ୟବ୍ରତ ବୋଧହୁଏ ରଜନୀକାନ୍ତଙ୍କ ମନତଳର ଗଭୀର ବେଦନା ଅନୁଭବ କରୁଥିଲା । ସେ ବେଦନା କାହାପାଇଁ ? ରଜନୀକାନ୍ତଙ୍କର ଉପନ୍ୟାସର ନାୟିକା ପାଇଁ ନା ଚାମେଲୀ ପାଇଁ ?

କିଛି ସମୟର ନୀରବତା ପରେ ସତ୍ୟବ୍ରତ କହିଲା ଆପଣ ବଡ଼ ଭାବ-ପ୍ରବଣ ରଜନୀବାବୁ । ଲେଖକମାନେ ସେମିତି ହୁଅନ୍ତି । କିନ୍ତୁ ଆପଣ ଶୁଣିଲେ ଖୁସି ହେବେ ଯେ, ଚାମେଲୀର ହତ୍ୟା ସଂକ୍ରାନ୍ତୀୟ କେତେକ ତଥ୍ୟ ମୁଁ ସଂଗ୍ରହ କରି ସାରିଲିଣି । ବର୍ତ୍ତମାନ ମୁଁ ସ୍ଥିରନିଶ୍ଚିତ ଯେ ଚାମେଲୀକୁ ହତ୍ୟା କରା ହୋଇଛି ।

ସତ୍ୟବ୍ରତ ବୋଧହୁଏ ଭାବିଥିଲା, ରଜନୀକାନ୍ତ ଚେଇଁ ଉଠିବେ । ହୁଏତ ପ୍ରଶ୍ନ କରିବେ, ଚାମେଲୀର ହତ୍ୟାକାରୀ କିଏ ? କିନ୍ତୁ ସେ କୌଣସି ଉତ୍ସାହ ପ୍ରକାଶ କଲେ ନାହିଁ । ସେହିପରି ନୀରସ ଓ ବ୍ୟଥିତ କଣ୍ଠରେ କହିଲେ : ହତ୍ୟା ହେଉ, ଆତ୍ମହତ୍ୟା ହେଉ ଅଥବା ସ୍ୱାଭାବିକ ମୃତ୍ୟୁ ହେଉ ମୃତ୍ୟୁ ମୃତ୍ୟୁ, ଶୀତଳ ମୃତ୍ୟୁ ।

ରଜନୀକାନ୍ତ ଟେବୁଲ ଉପରେ ମୁଣ୍ଡ ରଖି ଚିନ୍ତିତ ହୋଇପଡ଼ିଲେ ।

ପୋଲିସ୍ ଇନିସ୍‌ପେକ୍ଟର ସତ୍ୟାନନ୍ଦ ବେହୁରାଙ୍କ ଜିପ୍ ଆସି ପହଞ୍ଚିଗଲା। ସତ୍ୟାନନ୍ଦ ବାବୁ ଗୋଟାଏ ଭ୍ୟାନିଟ୍ ବ୍ୟାଗ ହାତରେ ଧରି ଜିପ୍‌ରୁ ଓହ୍ଲାଇ ଆସିଲେ ।

: ଆସନ୍ତୁ ସତ୍ୟାନନ୍ଦ ବାବୁ । ଏଇ ଭ୍ୟାନିଟି ବ୍ୟାଗଟା ତା'ହେଲେ ଚାମେଲୀର ? ସତ୍ୟବ୍ରତ ପଚାରିଲା ।

ହଁ, ଏଇଟାକୁ ସେଦିନ ଆମେ ସେଇ କାର୍ ଭିତରୁ ଉଦ୍ଧାର କରିଥିଲୁ ।

ସତ୍ୟବ୍ରତ ଭ୍ୟାନିଟି ବ୍ୟାଗଟି ସତ୍ୟାନନ୍ଦ ବାବୁଙ୍କ ହାତରୁ ଟାଣିନେଇ ରଜନୀକାନ୍ତଙ୍କ ଆଡ଼େ ଚାହିଁଲା । କିନ୍ତୁ ସେ ନିରୁଦ୍‌ବିଗ୍ନ । ମୃତ୍ୟୁର ଶୀତଳଶଯ୍ୟାରେ ସେ ଶୋଇ ପାରିଲେ ଯେପରି ଶାନ୍ତି ପାଆନ୍ତେ, ସେହିପରି ତାଙ୍କର ଇଚ୍ଛା ।

ସତ୍ୟବ୍ରତ ଭ୍ୟାନିଟି ବ୍ୟାଗଟି ଖୋଲେଇ ଦେଖିବାକୁ ପାଇଲା କିଛି କାଗଜପତ୍ର, ଗୋଟିଏ ଛୋଟ ପାଉଡର ପଫ୍ । ହଁ, ଆଉ କୋଠରିରେ ତାଙ୍କ ଈପ୍‌ସିତ ସେଇ

ଟାନ୍‌ସେନ୍ ଟାବ୍‌ଲେଟ ଶିଶି । ସତ୍ୟବ୍ରତ କ୍ଷିପ୍ର ହସ୍ତରେ ସେଇଟିକୁ ବାହାର କରି ଆଣିଲା । ଅନେକ ଗୁଡ଼ିଏ ଛୋଟ ଛୋଟ ବଡ଼ି ରହିଛି ସେଇ ଶିଶିଟି ଭିତରେ । ସତ୍ୟବ୍ରତ ଶିଶିଟିକୁ ଦୁଇଥର ହଲେଇ ଦେଇ ଏକଦୃଷ୍ଟିରେ ଚାହିଁ ରହିଲା ଅନେକ ବେଳଯାଏ । ତା'ପରେ ସତ୍ୟାନନ୍ଦ ବେହୁରାଙ୍କୁ ଦେଖାଇ କହିଲା, ଏ ଶିଶି ଭିତରେ କ'ଣ ଅଛି ଜାଣନ୍ତି ?

ହୋମିଓପାଥିକ ଔଷଧ ନୁହେଁ । ବିଷ ! ବିଷ!! ସତ୍ୟବ୍ରତର କଣ୍ଠ ଉତ୍ତପ୍ତ ଶୁଣା ଯାଉଥିଲା ।

ବିଷ? ଭିତରେ ବିଷ ? ତା'ହେଲେ ଚାମେଲୀ କ'ଣ ଆତ୍ମହତ୍ୟା କରିଛି ?

: ନା, ଆତ୍ମହତ୍ୟା ନୁହେଁ । ଚାମେଲୀକୁ ହତ୍ୟା କରା ହୋଇଛି ଏବଂ ହତ୍ୟା ପଛରେ ରହିଛି ଚମତ୍କାର ପରିକଳ୍ପନା । ଯାହା ଆପଣ, ମୁଁ, କେହି ଚିନ୍ତା କରିପାରିବା ନାହିଁ ।

ରଜନୀକାନ୍ତ କିନ୍ତୁ ଏପରି ଏକ ଉତ୍ତେଜକ ପରିସ୍ଥିତିରେ ଯେପରି ଭାଗ ନେବାକୁ ଚାହୁଁ ନଥିଲେ । ସେ ଟେବୁଲ ଉପରେ ମୁଣ୍ଡ ରଖି ଯେପରି ନିଶ୍ଚିନ୍ତରେ ନିଦ୍ରା ଯାଇଥିଲେ ।

ସତ୍ୟାନନ୍ଦ ବେହୁରା କହିଲେ ଆପଣଙ୍କ କଥାର ଅର୍ଥ ମୁଁ ଠିକ୍ ଭାବରେ ବୁଝି ପାରିଲି ନାହିଁ ମହାପାତ୍ର ବାବୁ । ଚାମେଲୀକୁ ହତ୍ୟା କରିବା ପାଇଁ କିଏ ତା'ହେଲେ ଷଡ଼ଯନ୍ତ୍ର କରିଥିଲା ? ସୁଖରଞ୍ଜନ ପଟ୍ଟନାୟକ ? ରାଜକିଶୋର ରଥ ? ଅଖିଳ ମହାନ୍ତି? ରଜନୀ....

: ନା, ନା, ଏମାନେ କେହି ନୁହନ୍ତି । ସତ୍ୟବ୍ରତ ଯେପରି ଚିତ୍କାର କରିଉଠିଲା । ଏମାନେ ସମସ୍ତେ ଚାମେଲୀର ବନ୍ଧୁ । ଚାମେଲୀକୁ ଭଲ ପାଆନ୍ତି, ଚାମେଲୀକୁ ସ୍ନେହ କରନ୍ତି । କିନ୍ତୁ ଏମାନଙ୍କ ବାହାରେ ଯେ ଆଉ ଜଣେ ବସି ଷଡ଼ଯନ୍ତ୍ର କରୁଛି, ଅତି ଗଭୀର ଭାବରେ ଚିନ୍ତା ନ କଲେ ସହଜରେ ତାକୁ ଜାଣି ହେବ ନାହିଁ । ସେ ସୂତ୍ର ମୁଁ ଖୋଜି ପାଇଛି । ମୋତେ ଆଉ ଫାଙ୍କି ଦେଇ ହେବ ନାହିଁ । ମୁଁ ହତ୍ୟାକାରୀକୁ ଆବିଷ୍କାର କରିସାରିଛି ।

ସାଧାରଣତଃ ସତ୍ୟବ୍ରତକୁ ଏତେ ଉଲ୍ଲସିତ ହେବାର ମୁଁ କେବେ ଦେଖେ ନାହିଁ । ସେ ଯେପରି ଆଜି ମାତ୍ରା ଲଙ୍ଘନ କରିଥିଲା ।

ସତ୍ୟାନନ୍ଦ ବାବୁ ପଚାରିଲେ ହତ୍ୟାକ:ଷରୀକୁ ଆପଣ ଆବିଷ୍କାର କରି ସାରିଛନ୍ତି ଯେତେବେଳେ ଆମର କାମ ତ ଶେଷ ହୋଇଛି । ଏଥର ଚାଲନ୍ତୁ ତାକୁ ଗ୍ରେଫତାର କରିବା ।

ସତ୍ୟବ୍ରତ କହିଲା ଗ୍ରେଫତାର ତ ନିଶ୍ଚୟ କରିବା । କିନ୍ତୁ ଆସାମୀ ନାଁ ଶୁଣିଲେ ଆପଣ ବି ଚମକି ଉଠିବେ । ବିସ୍ଫାରିତ ନେତ୍ରରେ ମୋ ମୁହଁକୁ ଅନାଇ ରହିବେ । ଆସାମୀ କିଏ ଜାଣନ୍ତି ? ଆସାମୀ ହେଉଛନ୍ତି ଆଡ଼ଭୋକେଟ୍ ହରିହର ମହାପାତ୍ର ।

: ସତରେ ! ସତ୍ୟାନନ୍ଦ ବେହୁରାଙ୍କ ଆଖି ଯୋଡ଼ାକ ବିସ୍ଫାରିତ ହୋଇଯାଇଥିଲା । ସେ ଅବିଶ୍ୱାସ୍ୟ କଣ୍ଠରେ ପଚାରିଲେ  ହରିହର ମହାପାତ୍ର ନିଜେ ଚାମେଲୀଙ୍କୁ ହତ୍ୟା କରିଛନ୍ତି ? ଚାମେଲୀକୁ ହତ୍ୟା କରି ତାଙ୍କର ବା ଲାଭ କ'ଣ ?

ଲାଭ ଅନେକ ସତ୍ୟାନନ୍ଦ ବାବୁ । ନିଜର କନ୍ୟାଟିକୁ ସୁପାତ୍ରରେ ପ୍ରଦାନ କରିବା ପାଇଁ ହରିହର ମହାପାତ୍ର ଚାମେଲୀଙ୍କୁ ହତ୍ୟା କରିଛନ୍ତି । ସତ୍ୟବ୍ରତ ଉତ୍ସାହିତ ହୋଇ କହିଲା ।

ମୋତେ ଟିକେ ଖୋଲି କୁହନ୍ତୁ । ଘଟଣାଟି ମୁଁ ଠିକ୍ ବୁଝି ପାରୁନାହିଁ ।

ଘଟଣାଟା ଅତି ସଂକ୍ଷିପ୍ତ । ଏ କାହାଣୀର ନାୟକ ରଜନୀକାନ୍ତ । ନାୟିକା ଦୁଇଜଣ । ଚାମେଲୀ ଆଉ ରୁନୁ । ରଜନୀକାନ୍ତ ଭଲ ପାଉଥିଲେ ଚାମେଲୀଙ୍କୁ, କିନ୍ତୁ ହରିହର ମହାପାତ୍ରଙ୍କର ଇଚ୍ଛା ରୁନୁକୁ ରଜନୀକାନ୍ତ ବିବାହ କରନ୍ତୁ । ବାସ୍ତବ କ୍ଷେତ୍ରରେ ଦେଖାଗଲା ଚାମେଲୀ ବଞ୍ଚିଥିବା ଯାଏ ଏହା ସମ୍ଭବ ନୁହେଁ । ତା'ହେଲେ ଉପାୟ ?

ହରିହର ମହାପାତ୍ର ଉପାୟ ଉଦ୍ଭାବନ କଲେ । ଚାମେଲୀର ଗୋଟିଏ ଭାଇ ଅଛି । ତା ନାଁ ଜଗଜ୍ୟୋତି । ଆପଣ ତାକୁ ଦେଖିଥିବେ । ସେ ଟିକିଏ ଆବ୍‌ନୋର୍‌ମାଲ । ସେଇଆକୁ ହାତ କରି ହରିହର ମହାପାତ୍ର ଚାମେଲୀ ପାଇଁ ପଠାଇଲେ ଗୋଟିଏ ତାନ୍‌ସେନ୍ ଟାବ୍‌ଲେଟ୍ ଶିଶି । ସେଇ ଟାବଲେଟ୍ ଶିଶିରେ ବିଷ ମିଶାଇ ଦେଇଥିଲେ, କାରଣ ହରିହର ମହାପାତ୍ର ଜାଣିଥିଲେ ଚାମେଲୀ ଗଳା ସଫା ରଖିବା ପାଇଁ ତାନ୍‌ସେନ ଟାବଲେଟ ପ୍ରାୟ ଖାଏ, ଆମେ ପାନ ସିଗାରେଟ୍ ଖାଇଲା ପରି । ସେ ଜଗଜ୍ୟୋତିକୁ ଟାବଲେଟ୍ ଶିଶିଟି ଦେଇ କହିଲେ, ଏଇଟିକୁ ତୋ ଚାମେଲୀ ନାନୀ ବ୍ୟାଗରେ ରଖିଦେବୁ ।

ଜଗଜ୍ୟୋତି କିଛି ବୁଝିଲା ନାହିଁ । ଆଇସ୍କ୍ରିମ୍ ଲୋଭରେ ଟାବଲେଟ୍ ଶିଶିଟି ନେଇ ଚାମେଲୀର .ବ୍ୟାଗରେ ରଖିଦେଲା ଏବଂ ଚାମେଲୀ ବ୍ୟାଗରେ ଥିବା ଶିଶିଟି ବାହାର କରି ଆଣିଲା । ଏଇଆ ହେଲା ଘଟଣା । ଏହାପରେ ଆପଣଙ୍କର ଆଉ କିଛି ଜାଣିବାର ଅଛି ସତ୍ୟାନନ୍ଦ ବାବୁ ?

ସତ୍ୟାନନ୍ଦ ବେହୁରା ଘଟଣାଟା ଶୁଣି କିପରି ଟିକିଏ ଚକିତ ହୋଇଯାଇଥିଲେ । ସତ୍ୟବ୍ରତ କଥାର ଉତ୍ତର ଦେବାକୁ ଯାଇ କହିଲେ  ନା, ତା'ପରେ ଘଟଣା ଅତି ପରିଷ୍କାର । ଚାମେଲୀ ଯେତେବେଳେ ସେଇ ତାନ୍‌ସେନ୍ ଟାବ୍‌ଲେଟ୍ ଖାଇଚି, ଧୀରେ ଧୀରେ ତା'ର ମୃତ୍ୟୁ ହୋଇଚି । କାରଣ କେହି କିଛି ଜାଣି ପାରି ନାହାନ୍ତି ।

ହଠାତ୍ ସେତିକିବେଳେ ଟେଲିଫୋନ୍‌ଟା ବାଜିଉଠିଲା । ନୀଳିମା ସିଟ୍‌ରେ ନ ଥିଲା । ସମସ୍ତେ ଚାହିଁଲେ ଫୋନ୍ ଆଡ଼େ । ସତ୍ୟବ୍ରତ ନିଜେ ଉଠିଗଲା ଫୋନ୍‌ଟା ଆଡ଼କୁ । ରିସିଭର ଉଠାଇ କହିଲା: ହ୍ୟାଲୋ?

ଥାନରୁ ଫୋନ୍ ଆସିଛି । ତଳିଆ ଅଫିସର ସତ୍ୟାନନ୍ଦ ବେହୁରାଙ୍କୁ ଖୋଜୁଛନ୍ତି ।

ସତ୍ୟାନନ୍ଦ ବାବୁ ରିସିଭର କାନରେ ଦେଲେ । ହଠାତ୍ ତାଙ୍କ ମୁହଁରେ ଉଦ୍‌ବେଗ ଫୁଟିଉଠିଲା  କ'ଣ ହେଲା ? ହରିହର ମହାପାତ୍ରଙ୍କ ଝିଅ ରୁନୁ ଆତ୍ମହତ୍ୟା କରିଛି ?

ସତ୍ୟବ୍ରତ ମଧ ଉଦ୍‌ବିଗ୍ନ ହୋଇଉଠିଲା ।

ନା, ନା ଏହା କାହିଁକି ଘଟିଲା ? ଏପରି ତ ହେବାର ନ ଥିଲା । ହିସାବ ଅନୁସାରେ ରୁନୁ ଆତ୍ମହତ୍ୟା କରିବା କଥା ନୁହେଁ । ସତ୍ୟବ୍ରତ ଟିକିଏ ବିଚଳିତ ହୋଇପଡ଼ିଥିଲା ।

: ଆପଣଙ୍କ ଅନୁମାନ ସତ୍ୟ ମିଷ୍ଟର ମହାପାତ୍ର, ଏଇଟା ଆତ୍ମହତ୍ୟା ନୁହେଁ, ହତ୍ୟା । ରୁନୁକୁ ହତ୍ୟା କରାହୋଇଛି । ରଜନୀକାନ୍ତ ସ୍ୱପ୍ନ ଦେଖିଲା ପରି ଉତ୍ତର ଦେଲେ ।

ଆବ୍‌ସଡ଼ । ଏହା ହତ୍ୟା ହୋଇ ନପାରେ । ରୁନୁର କିଏ ଶତ୍ରୁ ଥିଲା ତାକୁ ହତ୍ୟା କରିବ ? ଆଉ ରୁନୁର ବା କ'ଣ ଦୁଃଖ ଥିଲା ଯେ ସେ ଆତ୍ମହତ୍ୟା କରିବ ?

ରଜନୀକାନ୍ତ ହସିଲେ । କହିଲେ  ମିଷ୍ଟର ମହାପାତ୍ର, ଆପଣ ଜଣେ କ୍ରିମିନଲୋଜିଷ୍ଟ । ବାସ୍ତବ ସହିତ ଆପଣଙ୍କର ସବୁବେଳେ କାରବାର । ଆଉ ମୁଁ ଜଣେ ଲେଖକ । କଳ୍ପନା ଆଉ ବାସ୍ତବର ସମ୍ମିଶ୍ରଣରେ ମୁଁ ଗଳ୍ପ ରଚନା କରେ । ଆପଣଙ୍କ ଦୃଷ୍ଟିରେ ରୁନୁର କେହି ଶତ୍ରୁ ଥିଲେ, କିନ୍ତୁ ଦରଦୀ ଲେଖକ ଦୃଷ୍ଟିରେ ରୁନୁର କେହି ଶତ୍ରୁ ନ ଥିଲେ । ଆପଣଙ୍କ ପାଠ ଅନୁସାରେ କେବଳ ଶତ୍ରୁ ହିଁ ତା ଶତ୍ରୁକୁ ବିନାଶ କରେ, କିନ୍ତୁ ଦରଦୀ ଲେଖକ ଦୃଷ୍ଟିରେ ତା'ର ପରମ ଆତ୍ମୀୟ ଯଦି ଦୁଃଖ ପାଏ, ଯନ୍ତ୍ରଣାରେ କାତର ହୁଏ, ତେବେ ସେ ତା' ଆତ୍ମୀୟର ଯନ୍ତ୍ରଣା ଚିରଦିନ ପାଇଁ ଲାଘବ କରିବା ପାଇଁ ତା' ଆତ୍ମୀୟକୁ ବି ହତ୍ୟା କରେ । ଜଣେ ଲେଖକ ଆଉ ଜଣେ କ୍ରିମିନୋଲୋଜିଷ୍ଟ ଭିତରେ ତଫାତ୍ ଏଇଠି ।

ସତ୍ୟବ୍ରତ ମୁହୂର୍ତ୍ତେ ସ୍ତବଧ ହୋଇ ରଜନୀକାନ୍ତ ମୁହଁକୁ ଚାହିଁଲା । ତା'ପରେ ଧୀରେଧୀରେ କହିଲା  ଆପଣ କ'ଣ ଆପଣଙ୍କର ଉପନ୍ୟାସର ଶେଷ ଅଂଶ କଥା କହୁଛନ୍ତି ?

ହଁ, ମୁଁ କହୁଛି ମୋ ଉପନ୍ୟାସର ଶେଷ ଅଧ୍ୟାୟ କଥା । ସେଇଟା ମୋ ଜୀବନରେ ଶେଷ ଅଧ୍ୟାୟ ।

ତା'ହେଲେ ? ତା'ହେଲେ...

ସତ୍ୟବ୍ରତ କିପରି ଉତ୍ତେଜିତ ହୋଇପଡୁଥିଲା । ସେ ବୋଧହୁଏ ହଠାତ୍ ରଜନୀକାନ୍ତଙ୍କୁ କ'ଣ ପଚାରିବ ଚିନ୍ତା କରିପାରୁ ନ ଥିଲା ।

ତା'ହେଲେ ରୁନୁ, ରୁନୁ କ'ଣ...

: ରୁନୁର ଦୁଃଖ ଥିଲା ଅଶେଷ ମିଷ୍ଟର ମହାପାତ୍ର । ଲେଖକ ନ ହେଲେ ମଣିଷର ଗହନ ମନ ତଳର ବ୍ୟଥା କେହି ବୁଝି ପାରେ ନାହିଁ । ରୁନୁ ସୁନ୍ଦରୀ ଥିଲା, ବଡ଼ଲୋକର ଆଦରଣୀୟା କନ୍ୟା ଥିଲା । କିନ୍ତୁ ତା'ର ଦୁଃଖ ଥିଲା କ'ଣ ଜାଣନ୍ତି ?

ହଁ, ଜାଣେ । ସେ ଥିଲା ମୂକ ।

ସତ୍ୟବ୍ରତ ଗମ୍ଭୀର ହୋଇ କହିଲା ।

ରଜନୀକାନ୍ତ ହସି ଉଠିଲେ । କହିଲେ  ଖାଲି ମୂକ ନୁହେଁ, ବଧୀର ବି । କିଏ ତାକୁ ଆଶ୍ରା ଦେବ ? ହରିହର ମହାପାତ୍ର କେତେକାଳ ବଞ୍ଚିବେ ? ସେଇଥିପାଇଁ ସେ ଚାହୁଁଥିଲା ମୋର ଆଶ୍ରୟ । କିନ୍ତୁ ଚାମେଲୀ, ତା'ର ଅବସ୍ଥା କ'ଣ ହେବ ? ତାକୁ କିଏ ଆଶ୍ରୟ ଦେବ ?

ତା' ପ୍ରାଣ ସହିତ ମୋ ପ୍ରାଣର ସଂପର୍କ ଯେ କେତେ ଗଭୀର, ଆଉ କେତେ ନିବିଡ ହୋଇଥିଲା, ଆପଣ ମୋର ପାଣ୍ଡୁଲିପିଟି ପଢ଼ିଲେ ବୁଝି ପାରିବେ । କିନ୍ତୁ ତା'ଠାରୁ ବେଶୀ ଅସହାୟା ରୁନୁ । ତା'ର ହୃଦୟ କି ଅନ୍ତରର କଥା ଅଭିବ୍ୟକ୍ତ କରିବାକୁ ଭାଷା ନାହିଁ । ସମବେଦନା ବାଣୀ ଶୁଣିବା ପାଇଁ ଶ୍ରବଣ ଶକ୍ତି ନାହିଁ ତଥାପି ସେ ମୋତେ ତା'ର ଅତି ପାଖକୁ ଟାଣି ନେଇ ଯାଇଥିଲା । ତା'ର ଶୀତଳ ଚାହାଣି ମୋର ସମସ୍ତ ବିବେଚନା ଶକ୍ତିକୁ ପଙ୍ଗୁକରି ପକାଇଥିଲା । ମୁଁ କାହାକୁ ମାରିବି କାହାକୁ ତାରିବି, ସେଥିପାଇଁ ଦ୍ୱନ୍ଦ୍ୱରେ ପଡି ଯାଇଥିଲି ।

: କିନ୍ତୁ ରଜନୀକାନ୍ତବାବୁ, ଆମର ଏଇ ଚାମେଲୀ ହତ୍ୟା ରହସ୍ୟଟା ଆପଣଙ୍କ ପାଣ୍ଡୁଲିପିର ସେହି କଳ୍ପିତ ଉପନ୍ୟାସ ନୁହେଁ । ତେଣୁ ଆପଣ ଆମକୁ ବାସ୍ତବ-ମୁଖୀ ହେବାକୁ ଦିଅନ୍ତୁ । ଆମେ ଆଜି ଯେମିତି ଚାମେଲୀର ହତ୍ୟାକାରୀକୁ ଆବିଷ୍କାର କରିପାରିଚେ, କାଲି ସେମିତି ରୁନୁର ମୃତ୍ୟୁରହସ୍ୟ ବି ଉଦ୍‌ଘାଟନ କରି ପାରିବୁ । ସତ୍ୟବ୍ରତ ଶାନ୍ତସ୍ୱରରେ କହିଲା ।

ରଜନୀକାନ୍ତ ହସିଲେ । କହିଲେ : ଆପଣଙ୍କର ଆବିଷ୍କୃତ ତଥ୍ୟ ଉପରେ ମୋର ଆସ୍ଥା ନାହିଁ । ଆପଣ ଯାହା ଜାଣିଛନ୍ତି, ସେଗୁଡା ସବୁ ଭୁଲ୍ ।

ଭୁଲ୍ ମାନେ ? ହରିହର ମହାପାତ୍ର ଚାମେଲୀର ହତ୍ୟାକାରୀ ନୁହନ୍ତି?

: ଜଗଜ୍ୟୋତି ହାତରେ ସେ ବିଷମିଶା ତାନ୍‌ସେନ୍  ଟାବଲେଟ୍ ଶିଶି ପଠାଇ ନ ଥିଲେ?

ନା, ନା । ରଜନୀକାନ୍ତ ଯେପରି ଚିତ୍କାର କରି କହିଉଠିଲେ । ତାନ୍‌ସେନ୍ ଟାବଲେଟ୍ ଶିଶି ପଠାଇଥିଲା ଆଉଜଣେ । ହରିହର ମହାପାତ୍ର ସେଇ ଲୋକଟିକୁ ବଞ୍ଚାଇବା ପାଇଁ ନିଜ ଉପରକୁ ଦୋଷ ଟାଣିନେଉଥିଲେ।

ତା'ହେଲେ ଚାମେଲୀର ହତ୍ୟାକାରୀ କିଏ ?

ସତ୍ୟବ୍ରତ ସେହିପରି ଶାନ୍ତ ସ୍ୱରରେ ପଚାରିଲା ।

ରଜନୀକାନ୍ତ ହସି ହସି ଗଡ଼ିଗଲେ । କହିଲେ  ଏଥର କିନ୍ତୁ ଆପଣ ହାର୍ ମାନିଲେ । ତେବେ ମୁଁ କହୁଛି ଶୁଣନ୍ତୁ, ଚାମେଲୀର ହତ୍ୟାକାରୀ ଏବଂ ରୁନୁର ହତ୍ୟାକାରୀ ଗୋଟିଏ ଲୋକ । ଆଉ ସେ ଲୋକଟି ହେଉଛି ନିଜେ ମୁଁ ।

: ଆପଣ ? ଆପଣ ଚାମେଲୀକୁ ହତ୍ୟା କରିଚନ୍ତି ? ରୁନୁକୁ ହତ୍ୟା କରିଚନ୍ତି ? କାହିଁକି ? କାହିଁକି ?

ସତ୍ୟବ୍ରତ ବ୍ୟଥିତ ସ୍ୱରରେ ପ୍ରଶ୍ନ କଲା ।

ରଜନୀକାନ୍ତଙ୍କ ମୁହଁରେ ଫିକାହସ ଟିକିଏ ଦେଖାଗଲା । ସେ କହିଲେ  ସେ ସବୁ ଅନ୍ତରର କଥା, ହୃଦୟର କଥା  ଭାଷାରେ ବ୍ୟକ୍ତ ହୁଏ ନାହିଁ । ତେବେ ମୁଁ ଏତିକି ଜାଣିଥିଲି ଯେ ଚାମେଲୀ, ରୁନୁ ଆଉ ମୁଁ, ଆମ ତିନିଜଣଙ୍କ ଭିତରୁ କେହିଜଣେ ଏ ସଂସାରରେ ବଞ୍ଚି ରହିବା ଉଚିତ୍ ନୁହେଁ । ବଞ୍ଚିଲେ ମାନସିକ ଯନ୍ତ୍ରଣା ଭିତରେ ଜଳିଜଳି ଶେଷ ହୋଇଯିବୁ । ଯାହାର ବହୁବହୁ ପ୍ରତିଫଳନ ଫୁଟିଉଠିଚି ମୋର ଏଇ ଲେଖା ଭିତରେ । ଏ ପାଣ୍ଡୁଲିପିଟି ମୁଁ ଆପଣଙ୍କ ପାଇଁ ରଖିଯାଉଚି, ପଢ଼ିବେ । ପଢ଼ିଲେ ସବୁ ବୁଝିପାରିବେ ।

କିନ୍ତୁ ଆପଣ, ଆପଣ, କ'ଣ... ଆରେ ! ମୋର ଏଇ ଟେବୁଲ ଉପରୁ ସେଇ ତାନସେନ୍ ଟାବଲେଟ୍‌ର ଶିଶିଟା ଗଲା କୁଆଡେ ?

ସତ୍ୟବ୍ରତ ଚିତ୍କାର କରି ଉଠିଲା ।

ରଜନୀକାନ୍ତ ଶାନ୍ତସ୍ୱରରେ କହିଲେ  ଅଛି, ମୋ ପାଖରେ ଅଛି, ଏଇ ନିଅନ୍ତୁ । କହି ଖାଲି ଶିଶିଟାକୁ ଟେବୁଲ ଉପରେ ଥୋଇଦେଲେ ।

ସତ୍ୟବ୍ରତ ବିଚଳିତ ହୋଇ ପଡିଥିଲା  ଆପଣ, ଆପଣ କ'ଣ ତା'ହେଲେ ?

: ହଁ, ଟାବଲେଟ୍‌ତକ ମୁଁ ଖାଇଦେଇଚି । ମୁଁ ଆଉ ବେଶୀ ସମୟ ଆପଣଙ୍କର ମୁଲ୍ୟବାନ୍ ସମୟ ନଷ୍ଟ କରିବାକୁ ରହିବି ନାହିଁ । କିନ୍ତୁ ଗୋଟାଏ କଥା ଆପଣଙ୍କୁ କହିଯାଉଚି, ଏଇଟା ହିଁ ଥିଲା ମୋ ଉପନ୍ୟାସର ଶେଷପରିଣତି । ଯେଉଁଟା ହରିହର ମହାପାତ୍ର ଚାହୁ ନ ଥିଲେ । ଏବଂ ସେ ଚାହୁ ନ ଥିଲେ ଚାମେଲୀର ହତ୍ୟାକାରୀ ରୂପେ ମୁଁ ସମାଜ ଆଗରେ ପରିଚିତ ହୁଏ । ଯେଉଁଥିପାଇଁ ସେ ମୋ ଉପନ୍ୟାସର ଶେଷ କେଇ ପୃଷ୍ଠା ଛିଣ୍ଡାଇ ନଷ୍ଟ କରିଦେଲେ । କିନ୍ତୁ ରୁନୁକୁ ସେ ବଞ୍ଚାଇ ପାରିଲେ ନାହିଁ, କିମ୍ବା ଏବେ ମୋତେ ବ ଞ୍ଚା ଇ...ପା...ରି...

ରଜନୀକାନ୍ତ ଆଉ କିଛି କହି ପାରିଲେ ନାହିଁ । ଛାଏଁ ଛାଏଁ ଟେବୁଲ ଉପରେ ତାଙ୍କର ମୁଣ୍ଡଟା ପିଟି ହୋଇଗଲା ।

ହଠାତ୍ ଯେପରି ଆମେ ସମସ୍ତେ ସଜାଗ ହୋଇଉଠିଲୁ । ସତ୍ୟବ୍ରତ ଆଉ ସତ୍ୟାନନ୍ଦବାବୁ ଛୁଟିଗଲେ ରଜନୀକାନ୍ତଙ୍କ ପାଖକୁ । ଦୁଇଜଣଯାକ ଧରାଧରି କରି ରଜନୀକାନ୍ତଙ୍କୁ ଜିପ୍ ଉପରକୁ ଟେକି ନେଇଗଲେ ।

ରଜନୀକାନ୍ତଙ୍କ ମୁହଁରେ ଟିକିଏ ଫିକା ହସ ଦେଖାଯାଉଥିଲା । ସେ ବୋଧହୁଏ କ'ଣ କହିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ଆମେ କେହି କିଛି ତାଙ୍କ  ଭାଷା ବୁଝିପାରିଲୁ ନାହିଁ ।

ରାୟ ବାହାଦୂର ଶରତଚନ୍ଦ୍ର ଦାଶ ମହାପାତ୍ର ତାଙ୍କ ବୈଠକଖାନାରେ ଟହଲୁଥିଲେ । ଏ ପାଖରୁ ସେ ପାଖ ପୁଣି ସେ ପାଖରୁ ଏ ପାଖ । ସେ ଯେପରି ଖୁବ୍ ବିଚଳିତ ହୋଇଥିଲା ପରି ମନେ ହେଉଥିଲା । ରାତ୍ର ପୋଷାକ ସେତେବେଳ ଯାଏ ଦେହରୁ କଢା ହୋଇ ନ ଥିଲା । ଟେବୁଲ ଉପରେ ଚା' ପିଆଲା ଥଣ୍ଡା ହୋଇ ଯାଇଥିଲା । ତଥାପି ସେ ସ୍ଥିର ହୋଇ ବସି ପାରୁ ନ ଥିଲେ ।

ଘଡିରେ ୯ଟା ବାଜିଗଲାଣି ।

ଚାକର ଆସି ଦୁଇଥର ଗାଧୋଇ ଯିବା କଥା ସ୍ମରଣ କରାଇ ଦେଇ ଗଲାଣି । ରାୟ ବାହାଦୂର ଏତେବେଳ ଯାଏ ତାଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ଶେଷ କରି ନାହାନ୍ତି । ଏପରି ବ୍ୟତିକ୍ରମ ତାଙ୍କ ଜୀବନରେ ଏହି ପ୍ରଥମ କହିଲେ ହେବ । ତାଙ୍କର ଜୀବନକାଳ ଭିତରେ ସେ କର୍ତ୍ତବ୍ୟରେ ଅବହେଳା କରିବା କେବେ କେହି ଦେଖି ନାହାନ୍ତି । ଘଣ୍ଟା କଣ୍ଟା ପରି ସେ ତାଙ୍କର ଦୈନନ୍ଦିନ କାର୍ଯ୍ୟ ଶେଷ କରିଥାଆନ୍ତି । ଖୁବ୍ ସକାଳୁ ଶଯ୍ୟାତ୍ୟାଗ କରି ପ୍ରଥମେ ସେ ସମ୍ବାଦପତ୍ର ପଢନ୍ତି । ଆଠଟା ଭିତରେ ପୁଣି ବୈଠକଖାନାକୁ ଆସି ସେଦିନର ସକାଳ ଡାକରେ ଆସିଥିବା ଚିଠିପତ୍ର ଖୋଲି ସାଢେ ଆଠଟା ଭିତରେ ଗାଧୋଇବାକୁ ଯାଆନ୍ତି ।

ଅନ୍ତତଃ ଏ ସମ୍ବନ୍ଧରେ ଆଉକିଏ କୌଣସି ଖବର ରଖୁ ନ ରଖୁ ରାୟ ବାହାଦୂରଙ୍କର ଅତି ପୁରାତନ ଭୃତ୍ୟ ରଘୁନାଥ ଏହା ଭଲ ଭାବରେ ଜାଣେ । ଆଜି ହଠାତ୍ ରାୟ ବାହାଦୂରଙ୍କର ଏହି ଅନିୟମିତତା ଓ ବିଚଳିତ ଭାବ ଲକ୍ଷ୍ୟ କରି ସେ ଖୁବ୍ ଚିନ୍ତିତ ହୋଇପଡିଚି ।

ରଘୁ ଯେତେବେଳେ ଦ୍ୱିତୀୟଥର ଚା' ଧରି ଆସିଥିଲା, ସେତେବେଳେ ରାୟବାହାଦୂର ବୈଠକଖାନାରେ ବସି ଚିଠିପଢା ଆରମ୍ଭ କରି ଦେଇଥିଲେ । ସେତିକିବେଳେ ରଘୁ ଯେଉଁ ଚା' କପ'କ ରଖି ଯାଇଚି, ସେ ସେଇଠି ସିମିତି ଥୁଆ ହୋଇଚି । ତେଣୁ ରଘୁ ମନରେ ସନ୍ଦେହ ହୋଇଚି ଯେ ରାୟ ବାହାଦୂର ଚିଠିରୁ ଏପରି କୌଣସି ଗୁରୁତର ଘଟଣା ଜାଣିପାରିଛନ୍ତି, ଯା' ଫଳରେ ସେ ଖୁବ୍ ବିବ୍ରତ ହୋଇପଡିଛନ୍ତି ।

ସେଇ ସମ୍ବାଦ ଜଣାଇବା ପାଇଁ ରାୟବାହାଦୂରଙ୍କ ସାନଝିଅ ସରସୀ ଦୁଆରୁ ଦୁଇଥର ଫେରି ଆସିଲାଣି । କିନ୍ତୁ ସରସୀର ଏ ଯାଏ ନିଦ ଭାଙ୍ଗି ନାହିଁ । ରଘୁ ଭୀଷଣ ସମସ୍ୟାରେ ପଡିଯାଇଚି ।

ରାୟ ବାହାଦୂର ସେହିପରି ବୈଠକଖାନାରେ ଟହଲୁଛନ୍ତି । ରଘୁ ଦୁଆର ମୁହଁରେ ଠିଆ ହୋଇ କେବଳ ଲକ୍ଷ୍ୟ କରୁଛି । ହଠାତ୍ ରାୟବାହାଦୂରଙ୍କ ଆଖି ରଘୁଆ ଉପରେ ପଡିଲାକ୍ଷଣି, ମୁହୂର୍ତ୍ତକ ପାଇଁ ସେ ସ୍ଥିର ହୋଇ ଠିଆ ହୋଇଗଲେ । ତା'ପରେ ଟିକିଏ କ'ଣ ଚିନ୍ତା କରି କହିଲେ—ରଘୁ, ତୋ ଦେଈ ଉଠିଲେଣି ?

ରଘୁ ମୁଣ୍ଡ ହଲେଇ ମନାକଲା ।

ଭଲ ହେଇଚି, ସେ ଉଠିଲେ ବି ତାକୁ ଏଇକ୍ଷଣି ଉପରକୁ ପଠାଇବୁ ନାହିଁ ମୁଁ ବର୍ତ୍ତମାନ ଗୋଟାଏ ଜରୁରୀ ବିଷୟ ଜଣେ ଭଦ୍ରଲୋକଙ୍କ ସହିତ ଆଲୋଚନା କରିବି । ସେ ଏଇକ୍ଷିଣା ଆସି ପହଞ୍ଚିବେ । ମୁଁ ତାଙ୍କୁହିଁ ଅପେକ୍ଷା କରୁଚି, ବୁଝିଲୁ! ତୁ ତଳକୁ ଯା ଫ ସରସୀ ଯଦି ଉଠିଥାଏ.....

ରାୟବାହାଦୂରଙ୍କ କଥା ଅସମାପ୍ତ ରହିଗଲା । ସେ ତାଙ୍କ ବୈଠକଖାନାରେ ବିରାଟକାୟ ଅଇନାଗୁଡିକ ମଧ୍ୟରୁ ଗୋଟିକରେ କାହାର ପ୍ରତିଛବି ପ୍ରତିଫଳିତ ହେବାର ଦେଖି ସେଇ ଆଡେ ଅନାଇ ଦେଖିଲେ । ଗୋଟାଏ ସୌମ୍ୟ ଶାନ୍ତ ସୁଦର୍ଶନ ଯୁବକ । ସ୍ମିତହସି ବୈଠକଖାନା ଭିତରକୁ ଯୋଡ ହାତରେ ପ୍ରବେଶ କରୁଛନ୍ତି ।

ନମସ୍କାର ।

ରାୟବାହାଦୂର ପ୍ରତିନମସ୍କାର ଜଣାଇ କିପରି ଜିଜ୍ଞାସୁ ଦୃଷ୍ଟିରେ ଚାହିଁ କଣ ପଚାରିବା ପୂର୍ବରୁ, ଯୁବକଟି ନିଜର ପରିଚୟ ଦେଇ କହିଲେ  ମୋ ନ"। ସତ୍ୟବ୍ରତ ମହାପାତ୍ର ।

ଓଃ ଆପଣ, ବେଶ୍ ବେଶ୍ । ମୁଁ କିନ୍ତୁ ଏତେ ଶୀଘ୍ର ଆଶା କରିପାରି ନ ଥିଲି । ରଘୁ, ଶୀଘ୍ର ଯାଇ ଚା' ଆଣିବାର ବ୍ୟବସ୍ଥା କର । ଆପଣ ବସନ୍ତୁ, ଠିଆ ହେଇ ରହିଲେ କାହିଁକି ? ରାୟବାହାଦୂର ଯେପରି ଟିକିଏ ବିଚଳିତ ହୋଇପଡିଥିଲେ ।

ସତ୍ୟବ୍ରତ ମହାପାତ୍ର ଗୋଟିଏ ସୋଫା ଉପରେ ବସୁବସୁ କହିଲେ : ଆପଣଙ୍କ ଟେଲିଫୋନ୍ ପାଇବା ବେଳକୁ ସକାଳର ସମସ୍ତ ନିତ୍ୟକର୍ମ ମୋର ପ୍ରାୟ ଶେଷ ହୋଇଯାଇଥିଲା । ତେଣୁ କାଳ ବିଳମ୍ବ ନ କରି ସଙ୍ଗେସଙ୍ଗେ ଚାଲିଆସିଲି। କ'ଣ ହେଇଚି ଆପଣଙ୍କର ?

ରାୟ ବାହାଦୂରଙ୍କ ପରି ପୁରୁଖା ଲୋକ, ପ୍ରଥମେ କିପରି କଥାଟାକୁ ଆରମ୍ଭ କରିବେ ଭାବି ପାରୁ ନ ଥିଲେ । ଖାଲି ସେତିକି ନୁହେଁ, ସେ ତ ଗୋଟାଏ ଝୁଙ୍କରେ ସତ୍ୟବ୍ରତ ମହାପାତ୍ରଙ୍କୁ ଟେଲିଫୋନ କରି ଦେଇଥିଲେ, ତା'ପରେ ସେ ଘଟଣାଟାକୁ ସତ୍ୟବ୍ରତଙ୍କ ଆଗରେ ଜଣାଇବେ କି ନାହଁ ସେଇକଥା ଭାବି ସ୍ଥିର କରି ପାରୁ ନ ଥିଲେ । ଇତି ମଧ୍ୟରେ ସତ୍ୟବ୍ରତ ମହାପାତ୍ରଙ୍କ ପ୍ରବେଶ ତାଙ୍କ ମନର ଚିନ୍ତାଧାରାକୁ ଆହୁରି ଜଟିଳ କରି ପକାଇଥିଲା ।

ସତ୍ୟବ୍ରତ ମହାପାତ୍ର ମୁହୂର୍ତ୍ତେ ନୀରବରେ ବସିରହି, ରାୟବାହାଦୂରଙ୍କ ମନର ଅବସ୍ଥା ବିଶ୍ଳେଷଣ କଲେ । ପରମୁହୂର୍ତ୍ତରେ ଉଠି ଠିଆହୋଇ କହିଲେ : ମୋତେ କ୍ଷମା

କରିବେ ଆଜ୍ଞା, ଯେତେବେଳେ ଆପଣଙ୍କ ମନର ଝଡ କମିଯିବ, ସେତେବେଳେ ଆପଣ ମୋତେ ସମ୍ବାଦ ପଠାଇବେ । ମୋର ସମସ୍ତ କାମ ଛାଡିଦେଇ ମୁଁ ସଙ୍ଗେସଙ୍ଗେ ଏଠାକୁ ଚାଲିଆସିବି । ବର୍ତ୍ତମାନ ଆପଣ ଅପ୍ରକୃତିସ୍ଥ । ତା'ଛଡା ଘଟଣାଟା ମୋ ଆଗରେ ବିବୃତ କଲେ ଭଲ ହେବ କି ମନ୍ଦ ହେବ, ଏ ପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତରେ ଆପଣ ଉପନୀତ ହୋଇ ନାହାନ୍ତି । ତେଣୁ...

ନା ନା ମିଃ ମହାପାତ୍ର, ଆପଣ ବସନ୍ତୁ । ଆପଣଙ୍କ ଅନୁମାନ ଯଥାର୍ଥ ହେଲେହେଁ, ଆଉ ଘଟଣାକୁ ଲୁଚେଇ ରଖିବା ଉଚିତ୍ ହେବ ନାହିଁ । ମୁଁ ଜାଣିପାରୁ ନାହିଁ ଆମ ବଂଶ ଇତିହାସ, ଯାହା ମୋତେ ବି ଭଲ ଭାବରେ ଜଣା ନାହିଁ, ତାହା ଅନ୍ୟଜଣେ କିପରି ଟିକିନିଖି ସଂଗ୍ରହ କରିପାରିଚି । ଆଉ ମୋତେ ଯେଉଁ ଭବିଷ୍ୟତବାଣୀ ଶୁଣାଇଚି, ତାହା ଯଦି ସତ୍ୟରେ ପରିଣତ ହୁଏ...

ରାୟ ବାହାଦୂର ଆଉ କିଛି କହିପାରିଲେ ନାହିଁ । ତାଙ୍କର ବାକ୍‌ଶକ୍ତି ଯେପରି ରୁଦ୍ଧ ହୋଇଆସୁଥିଲା । ସେ କେବଳ ଖଣ୍ଡିଏ ଚିଠି ଟେବୁଲ ଡ୍ରୟାରରୁ ବାହାର କରି ଦେଖିଲେ । ଲେଖା ହୋଇଥିଲା

ମାନ୍ୟବର ରାୟ ବାହାଦୂର ଶରତ୍‌ଚନ୍ଦ୍ର ଦାଶ ମହାପାତ୍ର

ମହୋଦୟ ସମୀପେଷୁ—

ମହାଶୟ!

ଏ ଚିଠି ପ୍ରାପ୍ତି ପରେ ଓ ପଠନ ଉତ୍ତାରୁ ଜାଣେନା ଆପଣଙ୍କ ମନର ଅବସ୍ଥା କିପରି ହେବ । ହୁଏତ ଆପଣଙ୍କ ବଂଶ ଇତିହାସ ଆପଣଙ୍କୁ ସମସ୍ତ ଅବଗତ ନ ଥିବ । ଦିନେ ଆପଣଙ୍କ ପୂର୍ବ ବଂଶଧର ଦେଶରେ ଯଥେଷ୍ଟ ପ୍ରଭାବଶାଳୀ ଥିଲେ। ସେମାନେ ରାଜ୍ୟର କେତେକ ଅଂଶରେ ଶାସକ ଥିଲେ । ଏପରିକି ଗୋଟିଏ ରାଜ୍ୟ ଶାସନ କରୁଥିଲେ କହିଲେ ଚଳିବ । ସେତେବେଳେ ଆପଣଙ୍କ ପୂର୍ବପୁରୁଷମାନଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା । ସେମାନେ ନିଜର ବଂଶ ଓ ମର୍ଯ୍ୟାଦାର ଖ୍ୟାତି ରଖିବାକୁ ଯାଇ ପ୍ରଜାମାନଙ୍କ ଉପରେ ଯଥେଷ୍ଟ ଅତ୍ୟାଚାର କରିଥିଲେ । ଆପଣଙ୍କଠାରୁ ତିନିପୁରୁଷ ଉପରେ ଯିଏ ରାଜ୍ୟ ଶାସନ କରୁଥିଲେ, ସେ ସବୁଠାରୁ ବେଶୀ ଉଚ୍ଛୃଙ୍ଖଳ ହୋଇଉଠିଥିଲେ । ପ୍ରଜା ଶୋଷଣ, ନାରୀ ହରଣ ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା । ସେତିକିବେଳେ ସେ ଏକ ସନ୍ନ୍ୟାସୀଙ୍କ ଉପରେ କୌଣସି କାରଣରୁ ଅକଥନୀୟ ଅତ୍ୟାଚାର କରିଥିଲେ । ଯାହା ସହ୍ୟ କରି ନ ପାରି ଶେଷରେ ସନ୍ନ୍ୟାସୀଙ୍କୁ ମୃତ୍ୟୁବରଣ କରିବାକୁ ପଡିଥିଲା । ମୃତ୍ୟୁ ପୂର୍ବରୁ ସେହି ସନ୍ନ୍ୟାସୀ ଯେଉଁ ଅଭିଶାପ ଦେଇଥିଲେ, ସେ କଥା ହୁଏତ ଆପଣ ଆପଣଙ୍କ ପିତାଙ୍କ ମୁଖରୁ ଶୁଣିଥିବେ ।

ସନ୍ନ୍ୟାସୀଙ୍କ ଅଭିଶାପ ଫଳବତୀ ହୋଇଥିଲା । ଗଭୀର ରାତ୍ରିରେ ଆପଣଙ୍କ ଗୃହର ପଶ୍ଚିମକୋଣରୁ ଭୈରବ ଡାକ ଶୁଣାଯାଉଥିଲା ଏବଂ ସେହି ଡାକ ଶୁଣିବାର ପନ୍ଦର ଦିନ ଭିତରେ ଆପଣଙ୍କ ବଂଶଧର ମଧ୍ୟରୁ ଜଣେ କେହି ମୃତ୍ୟୁବରଣ

କରୁଥିଲେ । ସେହି ସନ୍ୟାସୀଙ୍କ ଅଭିଶାପ ଫଳରୁ ଏପରି ଘଟୁଥିଲା । ସେହି ଅଭିଶାପରୁ ଆପଣଙ୍କ ବଂଶଧରମାନଙ୍କୁ ରକ୍ଷା କରିବା ପାଇଁ ଆପଣଙ୍କ ପ୍ରପିତାମହ ବହୁ ଚେଷ୍ଟା କରିଥିଲେ । ଦାନ, ଧ୍ୟାନ, ପୂଜାପାର୍ବଣ, ଯେତେ ଯାହା ସମ୍ଭବ ଅସମ୍ଭବ ବହୁ ଅର୍ଥ ବ୍ୟୟ କରି ସେ ସମ୍ପନ୍ନ କରିଥିଲେ । ଫଳରେ ଆପଣଙ୍କ ପିତାଙ୍କ ଅମଳଟା ନିରାପଦରେ ଅତିବାହିତ ହୋଇଥିଲା । ଆପଣଙ୍କ ପ୍ରପିତାମହଙ୍କ ପୁଣ୍ୟ ବଳରୁ ସେ ତାଙ୍କର ଅନ୍ୟ ତିନୋଟି ସନ୍ତାନ ସେହି ଭୈରବ ଡାକରେ ହରାଇଥିଲେ ମଧ୍ୟ, ଆପଣଙ୍କ ପିତାଙ୍କର କୌଣସି ଅନିଷ୍ଟ ସାଧନ ହୋଇ ପାରି ନ ଥିଲା, ଆଉ ଆପଣ ଆଜିଯାଏ ନିରାପଦରେ ଚାରୋଟି ସନ୍ତାନ ସହ ଜୀବନ ଅତିବାହିତ କରୁଛନ୍ତି ।

ଆପଣଙ୍କ ପୂର୍ବପୁରୁଷଙ୍କ ଅମଳରେ ଯେଉଁ ଭୈରବଡାକ ଏକ ଆତଙ୍କ ହୋଇ ରହିଥିଲା, ତାହା କାଳକ୍ରମେ ସମସ୍ତେ ଭୁଲି ଯାଇଛନ୍ତି ଏବଂ ଆପଣଙ୍କ ବଂଶ କ୍ରମଶଃ କ୍ଷୟିଷ୍ଣୁ ହୋଇ ଆସିଥିଲେ ମଧ୍ୟ ଆପଣଙ୍କ ପୂର୍ବପୁରୁଷମାନଙ୍କର ସେହି 'ବୁନିଆଦି ଚଳନ' ଆଜିଯାଏ କାଏମ ରଖି ଆସିଛନ୍ତି । ବଂଶ ମର୍ଯ୍ୟାଦା, ଆଭିଜାତ୍ୟ, ରାଜକୀୟ ବିଧିବିଧାନ ସବୁ ଆପଣ ଅକ୍ଷୁର୍ଣ୍ଣ ରଖିବାକୁ ଚେଷ୍ଟା କରିଛନ୍ତି ।

କିନ୍ତୁ ଦୁଃଖର କଥା, ପୁଣି ସେହି ଭୈରବ ଜାଗିଚି । ପୁଣି ସେହି ସନ୍ୟାସୀଙ୍କ ଆତ୍ମା ଆଜି ପ୍ରତିଶୋଧ ନେବାକୁ ପ୍ରସ୍ତୁତ ହେଉଚି । ଆଜି ଆଉ କୌଣସି ପ୍ରକାର ପୂଜା ଅର୍ଚ୍ଚନା ସନ୍ୟାସୀଙ୍କର ସେହି ଅତୃପ୍ତ ଆତ୍ମାକୁ ଶାନ୍ତ କରି ପାରିବ ନାହିଁ । ପୁଣି ଗୋଟିକ ପରେ ଗୋଟିଏ ସନ୍ତାନ ଆପଣଙ୍କର ଅପଘାତରେ ମରିବେ । କେବଳ ଅଶ୍ରୁଲେଖା ଲେଖିବାକୁ ଆପଣ ରହିଯିବେ ଶେଷଯାଏ ଏବଂ ଆପଣ ହେବେ ଆପଣଙ୍କ ବଂଶର ଶେଷ ଦୀପଶିଖା ।

ମୁଁ କିଏ ଏବଂ କାହିଁକି ଏ ବାର୍ତ୍ତା ଆପଣଙ୍କୁ ଦେଉଛି, ସେ କଥା ଜଣାଇ ଲାଭ ନାହିଁ । ମୁଁ କିନ୍ତୁ ସେହିପରି ନିର୍ଦ୍ଦେଶ ପାଇଚି । ମା ମଶାଣି ଚଣ୍ଡୀ ମୋତେ ସେହି ଆଦେଶ ଦେଇଛନ୍ତି । ତାଙ୍କର ତୃଷା ବଢ଼ିଚି । ସେ ଆପଣଙ୍କ ବଂଶର ରକ୍ତରେ ତାଙ୍କର ତୃଷା ମେଣ୍ଟାଇବେ । ଆପଣ ସାବଧାନ ହୁଅନ୍ତୁ ।

॥ଇତି॥

ଆପଣଙ୍କର ବିନୟାବନତ

ଜଣେ ସାଧକ

ସତ୍ୟବ୍ରତ ମହାପାତ୍ର ଚିଠିଟି ପଢିସାରି ରାୟ ବାହାଦୂରଙ୍କ ମୁହଁକୁ ଚାହିଁଲେ । ଯେପରି କଳା ବଉଦ ଘୋଟିଯାଇଚି । ରାୟ ବାହାଦୂର ଗମ୍ଭୀର ହୋଇ ବସିଚନ୍ତି । ସତ୍ୟବ୍ରତ ମହାପାତ୍ର ନୀରବତା ଭଙ୍ଗ କଲେ ।

ହୁଁ,ଏ ଚିଠି ସମ୍ବନ୍ଧରେ ଆପଣଙ୍କର ଧାରଣା କଣ ? ଏହା ମୂଳରେ କୌଣସି ସତ୍ୟତା ଆପଣ ଉପଲବ୍ଧି କରୁଛନ୍ତି କି ?

ସେଇଥିପାଇଁ ତ ଆପଣଙ୍କୁ ମୁଁ ଡାକିଲି । ଏହି ଚିଠିରେ ବର୍ଣ୍ଣିତ ପ୍ରତ୍ୟେକଟି ଘଟଣା ଅକ୍ଷରେ ଅକ୍ଷରେ ସତ୍ୟ । କିନ୍ତୁ ମୁଁ ବୁଝିପାରୁ ନାହିଁ ମିଃ ମହାପାତ୍ର, ଅନ୍ୟ ଲୋକ ଜଣେ ଆମ ବଂଶ ଇତିହାସ କିପରି ସଂଗ୍ରହ କଲା ?

ମୁଁ କିନ୍ତୁ ସେକଥା ଭାବୁନାହିଁ । ସତ୍ୟବ୍ରତ କହିଲେ ।

ଆଉ ଆପଣ କ'ଣ ଭାବୁଚନ୍ତି ?

ମୁଁ ଭାବୁଚି ଆଜିର ଏହି ବିଂଶ ଶତାବ୍ଦୀରେ, ଲୋକେ ଯେତେବେଳେ ଗ୍ରହାନ୍ତରକୁ ଯିବାପାଇଁ ପ୍ରସ୍ତୁତ ହେଉଛନ୍ତି, ଆପଣ ସେହି ମାନଧାତା ଅମଳର କଥା ଉପରେ ବିଶ୍ୱାସ କରୁଛନ୍ତି କିପରି !

ମାନେ ?

: ଏଇ ଚିଠି କଥା ଧରନ୍ତୁ । ଆପଣଙ୍କୁ ପ୍ରକାରାନ୍ତରେ ଯେଉଁ ଭବିଷ୍ୟତ ବାଣୀ ଦିଆ ଯାଇଛି, ସେଥିପାଇଁ ଆପଣ ଏପରି ଆତଙ୍କିତ ହୋଇଉଠିଲେ କିପରି?

ମୋର ଅବିଶ୍ୱାସ କରିବାର ଉପାୟ ନାହିଁ ଯେ ! ଆମ ବଂଶ ପରମ୍ପରା ସମ୍ବନ୍ଧରେ ମୋତେ ସବୁ କଥା ଜଣା ଥିବାବେଳେ, ମୁଁ ଏହି ଚିଠିକୁ ଅବିଶ୍ୱାସ କରିବି କିପରି ? ମୋର ସ୍ଥିତି ଏପରି ଏକ ଘଡିସନ୍ଧି ବେଳରେ, ଯେତେବେଳେ ପୁରାତନ ଆଉ ନୂତନର ଏକ ତୁମୁଳ ଯୁଦ୍ଧ ଚାଲିଚି । ହୁଏତ ମୋର ଉତ୍ତର-ପୁରୁଷମାନେ ଏହି ଚିଠିଟିକୁ ପାଗଳର ପ୍ରଳାପ କହି ଉଡେଇ ଦେଇ ପାରନ୍ତି । କିନ୍ତୁ ମୁଁ ପାରୁନାହିଁ ମିଃ ମହାପାତ୍ର । ମୋ ମନ କହୁଚି, ଏହା ମୂଳରେ ନିଶ୍ଚୟ କୌଣସି ରହସ୍ୟ ଲୁଚି ରହିଚି । ମୁଁ ଚାହେଁ କେବଳ ଏହି ଚିଠିର ଲେଖକକୁ ଖୋଜି ବାହାର କରିବା ପାଇଁ । ଆମର ଅତୀତ ଦିନର କାହାଣୀ ସେ କେଉଁଠୁ ସଂଗ୍ରହ କଲା, ସେତକ ଜାଣିବା ପାଇଁ ।

ସତ୍ୟବ୍ରତ ମହାପାତ୍ର ଲକ୍ଷ୍ୟ କଲେ, ରାୟ ବାହାଦୂରଙ୍କ ମନ ଉପରେ ଅଜ୍ଞାତ ଲୋକର ଏହି ଚିଠିଟି ଯଥେଷ୍ଟ ପ୍ରଭାବ ପକାଇଚି । ସେ ଯିଏ ହେଉନା କାହିଁକି, ରାୟ ବାହାଦୂରଙ୍କ ମନଟାକୁ କିପରି ବିକଳ କରିବାକୁ ହେବ, ତାକୁ ସେ ପଦ୍ଧତି ବେଶ୍ ଜଣାଅଛି । କିନ୍ତୁ ରାୟ ବାହାଦୂରଙ୍କର ସେହି ଅଜ୍ଞାତ ଶତ୍ରୁର ଭବିଷ୍ୟତ ବାଣୀ, ଅସମ୍ଭବ ଏ ଯୁଗରେ ଏପରି କୁସଂସ୍କାର ।

ସତ୍ୟବ୍ରତ ମହାପାତ୍ର କିନ୍ତୁ ଖୁବ୍ ଭାବନାରେ ପଡି ଯାଇଥିଲେ । ସେ ଚିଠିର ଖାମ୍‌ଟିକୁ ଓଲଟ ପାଲଟକରି ଦେଖିଲେ । ସ୍ଥାନୀୟ ପୋଷ୍ଟ ଅଫିସରୁ ଚିଠିଟି ପୋଷ୍ଟ କରା ହୋଇଚି । କିପରି ସେ ସେହି ଅଜ୍ଞାତ ଲୋକଟିର ସନ୍ଧାନ ପାଇବେ ?

ତା'ହେଲେ ଆପଣ କ'ଣ କହୁଛନ୍ତି ? ସତବ୍ରତ ମହାପାତ୍ର ପଚାରିଲେ ।

: ମୁଁ କେବଳ ଏହି ଚିଠିଟିର ଲେଖକର ସନ୍ଧାନ ଚାହେଁ । ଆପଣ ମୋର ସେତିକି ଉପକାର କଲେ ମୁଁ ଚିରଦିନ ପାଇଁ ଆପଣଙ୍କ ନିକଟରେ କୃତଜ୍ଞ ହୋଇ ରହିବି ।

ଆଚ୍ଛା ! ଆପଣ କ'ଣ ଚିଠିଟିର ଭବିଷ୍ୟତ ବାଣୀ ସମ୍ବନ୍ଧରେ କୌଣସି ଆଶଙ୍କା କରୁଚନ୍ତି ?

ମୁଁ ସେ ସମ୍ବନ୍ଧରେ ଆପଣଙ୍କୁ କୌଣସି ଉତ୍ତର ଦେଇପାରିବି ନାହିଁ ମିଃ ମହାପାତ୍ର । କାରଣ ମୋର ମନର ଅବସ୍ଥା ବର୍ତ୍ତମାନ ଆଦୌ ଭଲ ନାହିଁ। ମୁଁ ପୂରାମାତ୍ରାରେ ମୋର ସତ୍ତା ହରେଇ ବସିଚି । ଏଇ ଚିଠିଟି ମୋ ମନର ସମସ୍ତ ବଳ ଯେପରି ଅପହରଣ କରିନେଇଚି।

ତଥାପି ଆପଣଙ୍କୁ ଧୈର୍ଯ୍ୟ ଧରିବାକୁ ହେବ । ଏ ଚିଠି ସମ୍ବନ୍ଧରେ ଆପଣ ଘରେ ଅନ୍ୟ କାହା ଆଗରେ କିଛି କହିଛନ୍ତି ?

ନା ।

ସତ୍ୟବ୍ରତ ମହାପାତ୍ର ନୀରବରେ ବସି କିଛି ସମୟ ଚିନ୍ତା କଲେ । ରାୟ ବାହାଦୂର ତାଙ୍କ ଆଡେ ଏକଦୃଷ୍ଟିରେ ଚାହିଁ ବସିଥିଲେ ।

ତା'ହେଲେ, ଆପଣ ଏହି ଚିଠିଟିର ସତ୍ୟତା ସମ୍ବନ୍ଧରେ ଆଶଙ୍କା କରୁଛନ୍ତି। କିନ୍ତୁ ମୋର କଣ ମନେ ହେଉଛି ଜାଣନ୍ତି, ଆପଣଙ୍କର କୌଣସି ଶତ୍ରୁ ଆପଣଙ୍କ ମନରେ ଭୟ ସଞ୍ଚାର କରିବା ପାଇଁ ଏପରି ଗୋଟାଏ ବେନାମୀ ଚିଠି ଲେଖି ପଠାଇଛି। ସତ୍ୟବ୍ରତ କହିଲେ ।

: କିନ୍ତୁ କାହିଁକି ମିଃ ମହାପାତ୍ର, ମୋ ମନରେ ଭୀତି ସଞ୍ଚାର କରି ତା'ର ଲାଭ କ'ଣ ହେବ ? ସେ ବା ଆମର ବଂଶଇତିହାସ ସଂଗ୍ରହ କଲା କିପରି!

ସେଇଟା ବଡ କଥା ନୁହେଁ । ପୃଥିବୀର ବହୁ ଗୋପନ ତଥ୍ୟ ଯାହାକି ଯୁଗଯୁଗ ଧରି ଲୁଚି ରହିଥିଲା, ହଠାତ୍ ଦିନେ କୌଣସି ସୂତ୍ରରେ ଆବିଷ୍କୃତ ହୋଇ ପଡୁଚି। ଆଚ୍ଛା, ଆପଣଙ୍କର ବଂଶର ଏହି ଗୋପନ ତଥ୍ୟ ଅନ୍ୟ କେହି, ମାନେ ଆପଣଙ୍କ ପୁଅଝିଅ କାହାରିକୁ କିଛି ଜଣା ନାହିଁ ?

ନା,ସେମାନେ କେହି ଘୁଣାକ୍ଷରେ ସୁଦ୍ଧା କିଛି ଜାଣନ୍ତି ନାହିଁ ।

ହୁଁ, ଆପଣଙ୍କର ବର୍ତ୍ତମାନ ସନ୍ତାନସନ୍ତତି କେତୋଟି !

ତିନୋଟି ପୁଅ, ଆଉ ସବୁଠୁ ଯିଏ ସାନ ସେ ଝିଅ ।

ସେମାନେ କ'ଣ ସମସ୍ତେ ଏଇଠି ଥାଆନ୍ତି !

ହଁ, ବଡ଼ ପୁଅର ବୟସ ପଚିଶ । ସେ ବ୍ୟବସାୟ ଦେଖାଚାହାଁ କରେ! ଅନ୍ୟ ସମସ୍ତେ ପଢ଼ନ୍ତି ।

କେହି ବିବାହ କରି ନାହାନ୍ତି ?

ନା ।

: ତା'ହେଲେ ଆପାତତଃ ସେମାନଙ୍କ ନିକଟରେ ଏହି ଚିଠି ସମ୍ବନ୍ଧରେ କୌଣସି ଆଲୋଚନା କରନ୍ତୁ ନାହିଁ । ଏହି ଚିଠିର ଲେଖକଟିକୁ ଖୋଜି ବାହାର କରିବାକୁ ମୁଁ ଯଥାସମ୍ଭବ ଚେଷ୍ଟା କରୁଚି । ଆପଣ ଅବିଚଳିତ ରହନ୍ତୁ । ଆଜି ମୁଁ ଉଠୁଚି, ପୁଣି ଦରକାର ବେଳେ ଆପଣଙ୍କ ସହିତ ସାକ୍ଷାତ କରିବି ।

* *

ହଠାତ୍ ସତ୍ୟବ୍ରତ ମହାପାତ୍ରଙ୍କ ଟେଲିଫୋନଟା ବାଜି ଉଠିଲା ।

ସେତେବେଳକୁ ରାତି ପାହି ନାହିଁ । ସତ୍ୟବ୍ରତଙ୍କ ନିଦ ଭାଙ୍ଗି ନ ଥିଲା, କିନ୍ତୁ ନିଦ ପତଳା ହୋଇ ଆସିଲାଣି । ଟିକିଏ ବିରକ୍ତ ହୋଇ ସେ ଉଠିଲେ । ଟେଲିଫୋନ୍ ରିସଭରଟା କାନରେ ଦେଲାକ୍ଷଣି, ପର ମୁହୂର୍ତ୍ତରେ ତାଙ୍କର ଦେହ ଓ ମନ କିପରି ତରଙ୍ଗାୟିତ ହୋଇଉଠିଲା । ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଅପଘାତରେ ମୃତ୍ୟୁ?

ଅପର ପ୍ରାନ୍ତରୁ କି ଉତ୍ତର ପାଇଲେ କେଜାଣି, ସଙ୍ଗେସଙ୍ଗେ କହିଲେ ଆପଣ ଲାସ୍‌କୁ ସ୍ଥାନାନ୍ତରିତ କରନ୍ତୁ ନାହିଁ ।

ସତ୍ୟବ୍ରତ ଦୁଇ ମିନିଟ୍ ଭିତରେ ସକାଳର ନିତ୍ୟକର୍ମ ଶେଷ କରି ସଙ୍ଗେ ସଙ୍ଗେ ବାହାରି ପଡିଲେ ।

ରାୟ ବାହାଦୂର ଶରତ୍ ଚନ୍ଦ୍ର ଦାଶ ମହାପାତ୍ର । ସତ୍ୟବ୍ରତ ମହାପାତ୍ର ତାଙ୍କୁ ଚିହ୍ନି ପାରିଲେ ନାହିଁ । ଏହା ଭିତରେ ବୟସ ଯେପରି ତାଙ୍କର ପନ୍ଦର ବର୍ଷ ବଢି ଯାଇଛି । ସେ ନୀରବ । ସେ ମୂକ । ବୈଠକଖାନାରେ ଉଦାସ ହୋଇ ବସିଚନ୍ତି । ସତ୍ୟବ୍ରତଙ୍କୁ ଦେଖିଲାକ୍ଷଣି, ଭୋ ଭୋ ହୋଇ କାନ୍ଦି ଉଠିଲେ : ମିଃ ମହାପାତ୍ର, ମୋର ସର୍ବନାଶ ହୋଇଚି । କାଲି ରାତିରେ ନିରଞ୍ଜନର ଅପଘାତରେ ମୃତ୍ୟୁ ଘଟିଚି । ଆପଣ ଦେଖିବେ ଯାଆନ୍ତୁ, ନା ମୁଁ ଆଉ ସହ୍ୟ କରି ପାରୁନାହିଁ ମିଃ ମହାପାତ୍ର, ମୋର ସର୍ବନାଶ ହେବ । ସେହି ଅଜ୍ଞାତନାମା ଲୋକର ଭବିଷ୍ୟତବାଣୀ ସାର୍ଥକ ହୋଇଚି ।

ସତ୍ୟବ୍ରତ ମହାପାତ୍ର କୌଣସି ଉତ୍ତର ଦେଲେ ନାହିଁ । ସେ ଧୀରେଧୀରେ ସେଠାରୁ ଚାଲିଗଲେ । ନିରଞ୍ଜନର ଲାସ୍ ଏ ପର୍ଯ୍ୟନ୍ତ ବଗିଚାର ଗୋଟିଏ ଜଙ୍ଗଲିଆ ଜାଗାରେ ପଡିଥିଲା । ଘରର ପ୍ରାୟ ସମସ୍ତେ ତାଙ୍କୁ ବେଷ୍ଟନ କରି ଠିଆ ହୋଇଥିଲେ। ରାୟ ବାହାଦୂରଙ୍କର ଧାରଣା ସେ ଅପଘାତରେ ମରିଛି ।

ସତ୍ୟବ୍ରତ ମହାପାତ୍ର ଭିଡ ଠେଲି ଲାସ୍ ପାଖରେ ଯାଇ ପହଞ୍ଚିଲେ । ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ ନିରଞ୍ଜନ ଶୋଇଚି । ତା' ଉପରେ ଗୋଟାଏ ସଫାଚଦର ଘୋଡେଇ ଦିଆ ହୋଇଚି ।

ସତ୍ୟବ୍ରତ ମହାପାତ୍ର ଚଦରଟି ବାହାର କରି ଦେଖିଲେ । ନିରଞ୍ଜନ ମୁହଁରେ ଅସୀମ ଯନ୍ତ୍ରଣାର ଚିହ୍ନ । କିନ୍ତୁ ମୃତ୍ୟୁ ହେଲା କିପରି ? ସେ ଦେହର ସମସ୍ତ ଅଂଶ ତନ୍ନତନ୍ନ କରି ପରୀକ୍ଷା କଲେ । କେଉଁଠି ହେଲେ କିଛି କ୍ଷତଚିହ୍ନର ସନ୍ଧାନ ପାଇଲେ ନାହିଁ । ତା'ହେଲେ ?

ସେ ପୁଣି ଥରେ ନିରଞ୍ଜନକୁ ପରୀକ୍ଷା କରିବାରେ ଲାଗିଲେ । ବାଁ ହାତର ପାପୁଲି ତଳକୁ ଗୋଟିଏ ଜାଗାରେ ବୁନ୍ଦାଏ ରକ୍ତ ଜମି ଶୁଖି ଯାଇଥିଲା । ବାସ୍ ସେତିକି । ତା'ଛଡା ଆଉ କୌଣସିଠାରେ କିଛି କ୍ଷତଚିହ୍ନର ଆଭାସ ପର୍ଯ୍ୟନ୍ତ ନାହିଁ ।

ସେଠାରେ ରାୟ ବାହାଦୂରଙ୍କ ମଧ୍ୟମ ପୁତ୍ର ସୁରଞ୍ଜନ ଓ କନିଷ୍ଠା କନ୍ୟା ସରସୀ ଉପସ୍ଥିତ ଥିଲେ । ଅନ୍ୟାନ୍ୟ ଚାକର ଚାକରାଣୀମାନେ ଧୀରେଧୀରେ ଗୋଟିକ ପରେ

ଗୋଟିଏ ଭିଡ ଭାଙ୍ଗି ଚାଲି ଯାଉଥିଲେ । ସତ୍ୟବ୍ରତ ମହାପାତ୍ର ଲାସ୍ ଉପରେ ଚଦରଟିଏ ଘୋଡେଇଦେଇ କହିଲେ ସୁରଞ୍ଜନ ବାବୁ ! ମୋତେ ଆପଣଙ୍କୁ ସାହାଯ୍ୟ କରିବାକୁ ହେବ ! ମୁଁ ଦେଖିଆସିଲି ବର୍ତ୍ତମାନ ରାୟ ବାହାଦୂରଙ୍କର ମନର ଅବସ୍ଥା ଯାହା, ସେଥିରେ ତାଙ୍କଠାରୁ ସଠିକ୍ ସମ୍ବାଦ ପାଇବାର କୌଣସି ସମ୍ଭାବନା ନାହିଁ, ତାଙ୍କର ମନ ଭୀଷଣ ଦୁର୍ବଳ ହୋଇ ପଡିଚି । ଯା'ହେଉ, ଆପଣ ଏହି ମୃତ୍ୟୁବିବରଣୀ ବୋଧହୁଏ ଜାଣିଥିବେ ।

ସୁରଞ୍ଜନ ଆଖିରେ ମଧ ଲୁହ ଢଳଢଳ ହେଉଥିଲା । ସେ ନିଜକୁ ଅତି କଷ୍ଟରେ ସମ୍ବରଣ କରି ରଖିଥିଲା !

ସତ୍ୟବ୍ରତ ମହାପାତ୍ରଙ୍କ ଅନୁରୋଧରେ ସୁରଞ୍ଜନ କହିଲା ଭାଇଙ୍କ ମୃତ୍ୟୁ ବିବରଣୀ ଆମ କାହାକୁ କିଛି ଜଣା ନାହିଁ । ବାପା ମଧ ସେ ସମ୍ବନ୍ଧରେ କିଛି ଜାଣିଥିବେ ମୋର ମନେ ହେଉ ନାହିଁ । ତା'ଛଡା ଭାଇ ଗତ କାଲି ରାତିରେ ୧୧ଟା ପର୍ଯ୍ୟନ୍ତ ଘରକୁ ଫେରି ନ ଥିଲେ ।" କେତେବେଳେ ଫେରିଲେ, ଖାଇଲେ କି ନାହିଁ, ମୋତେ ସେ ସବୁ କିଛି ଜଣାନାହିଁ । ଆଜି ଭୋରରୁ ପାଟିଗୋଳ ଶୁଣି ମୋ ନିଦ ଭାଙ୍ଗିଗଲା । ଆସି ଦେଖିଲି ଆପଣ ଯାହା ଦେଖୁଛନ୍ତି ।

: ହୁଁ, ସରସୀ ଦେବୀ ଆପଣ ? ଏହି ହତ୍ୟାକାଣ୍ଡ ସମ୍ବନ୍ଧରେ କିଛି ଜାଣିଛନ୍ତି ?

ନା, ମୁଁ କାଲି ସୁରଭାଇ ଫେରିବା ଆଗରୁ ଖାଇ ଶୋଇପଡିଥିଲି ।

ତା'ହେଲେ ନିରଞ୍ଜନ କାଲି ରାତିରେ ଘରକୁ ଆସିଥିଲେ କି ନାହିଁ, ସେ ସମ୍ବନ୍ଧରେ କିଏ ସବୁ କଥା କହି ପାରିବ ? ସତ୍ୟବ୍ରତ ପଚାରିଲେ ।

ମୁଁ ସବୁ କହି ପାରିବି ମିଃ ମହାପାତ୍ର । କାଲି ରାତିରେ ଘଟଣା ମୋତେ ସବୁ ଜଣା ଅଛି ।

ରାୟ ବାହାଦୂରଙ୍କ ବ୍ୟାକୁଳ କଠିନ କଣ୍ଠସ୍ୱର ଶୁଣି ସମସ୍ତେ ସେଇଆଡେ ବୁଲି ଅନାଇଲେ ।

ଆପଣ ଯାହା କୁହନ୍ତୁ ମିଃ ମହାପାତ୍ର ନିରଞ୍ଜନର ଅପଘାତରେ ମୃତ୍ୟୁ ହୋଇଛି । ପୁଣି ଦୈବ ଅଭିଶାପ ଆମ ବଂଶ ଉପରେ ପଡ଼ିବାକୁ ଆରମ୍ଭ ହୋଇଛି । ଆପଣ ସେ ଦିନ ସେହି ଚିଠି କଥା ହସିହସି ଉଡେଇ ଦେଲେ । ସେ ଆଜିକୁ କେତେ ଦିନର ବା ଘଟଣା । କିନ୍ତୁ ଆଜି ମୋର ଏ ସର୍ବନାଶ କିପରି ହେଲା କହି ପାରିବେ ମିଃ ମହାପାତ୍ର ? ନିରଞ୍ଜନ ମୋର ଏକମାତ୍ର ଆଶା ଭରସା, ଯାହା ଉପରେ ମୁଁ ନିର୍ଭର କରୁଥିଲି । ଯିଏ ସଂସାରର ବହୁ ଭାର ଗ୍ରହଣ କରି ମୋତେ ଅବସର ଦେଇଥିଲା । ତା'ର ଅପଘାତରେ ମୃତ୍ୟୁ ହୋଇଛି । ମୋତେ ଚାରିଦିଗ ଅନ୍ଧାର ଦିଶୁଚି । ସେହି ଦୈବ ଅଭିଶାପରୁ କିଏ ମୋତେ ମୁକ୍ତ କରିବ ?

ସତ୍ୟବ୍ରତ ମହାପାତ୍ର ଦେଖିଲେ, ରାୟ ବାହାଦୂର ଖୁବ୍ ଭାଙ୍ଗି ପଡିଛନ୍ତି। ଏପରିକି ତାଙ୍କର ହିତାହିତ ଜ୍ଞାନ ମଧ ହରେଇ ବସିଲେଣି । ହୁଏତ ଏହି ବୟସରେ ଅଧିକ ଉତ୍ତେଜିତ ହେଲେ, ମସ୍ତିଷ୍କ ତାଙ୍କର ବିକୃତ ହୋଇ ଯାଇ ପାରେ ।

ଧୀରେଧୀରେ ସତ୍ୟବ୍ରତ ମହାପାତ୍ର କହିଲେ  ଆପଣ ମୋ ସହିତ ଆସନ୍ତୁ । ଯାହା ହେବାର ଥିଲା ହୋଇଯାଇଛି । ବର୍ତ୍ତମାନ ଆମର କର୍ତ୍ତବ୍ୟ ହେଉଛି- ଅପରାଧୀକୁ ଖୋଜି ବାହାର କରିବା । ହତ୍ୟାକାରୀଠାରୁ ପ୍ରତିଶୋଧ ନେବା ।

ରାୟ ବାହାଦୂର ହୋ ହୋ ହସିଉଠିଲେ ।

ଅପରାଧୀ କିଏ ? କାହାଠାରୁ ଆପଣ ପ୍ରତିଶୋଧ ନେବେ ମିଃ ମହାପାତ୍ର ? ସେ ଅଶରୀରୀ । ଆପଣ ମୁଁ ବା ଆମପରି ରକ୍ତମାଂସର ଶରୀରଧାରୀ କେହି ଅପରାଧୀକୁ ଖୋଜି ବାହାର କରି ପାରିବେ ନାହିଁ । ନିରଞ୍ଜନର ଅପଘାତରେ ମୃତ୍ୟୁ ଘଟିଛି । ମୁଁ ଜାଣେ ଦୈବ ଅଭିଶାପ ପୁଣି ଆମ ବଂଶ ଉପରେ ପଡିଛି । କେହି ସେଥିରୁ ବାଦ ପଡିବେ ନାହିଁ ।

ସତ୍ୟବ୍ରତ ମହାପାତ୍ର ଆଉ କିଛି କହିବା ଉଚିତ୍ ମନେ କଲେ ନାହିଁ । ସେ ରାୟବାହାଦୂରଙ୍କ ହାତ ଧରି ସେଠାରୁ ଟାଣିଟାଣି ନେଇଗଲେ । ବୈଠକ ଖାନାରେ ଗୋଟାଏ ସୋଫା ଉପରେ ବସାଇ ଦେଇ, ତାଙ୍କରି ମୁହଁ ଆଡେ ମୁହୂର୍ତ୍ତେ ଚାହିଁରହିଲେ । ରାୟ ବାହାଦୂରଙ୍କ ନାକରୁ ଘନଘନ ଖରଶ୍ୱାସ ବାହାରୁଥିଲା। ସେ ନିଜକୁ ଆୟତ୍ତରେ ରଖିପାରୁ ନ ଥିଲେ ।

ଶୁଣନ୍ତୁ । ସତ୍ୟବ୍ରତ କହିଲେ । ନିରଞ୍ଜନର ଅପଘାତରେ ମୃତ୍ୟୁ ହୋଇ ନାହିଁ । ତାକୁ କେହି ହତ୍ୟା କରିଚି ।

ହତ୍ୟା ?

ରାୟବାହାଦୂର ଯେପରି ହଠାତ୍ ଚିତ୍କାର କରିଉଠିଲେ ।

ହଁ ତାକୁ କେହି ହତ୍ୟା କରିଛି । ଆଉ ସେଇ ହତ୍ୟାକାରୀ ଯିଏ ହେଉ ନା କାହିଁକି ମୁଁ ତାକୁ ଖୋଜି ବାହାର କରିବି । ଆପଣ ଖାଲି ମୋତେ ଗତରାତିର ଘଟଣାଟା ଜଣାନ୍ତୁ ।

ଗତରାତିର ଘଟଣା ?

ରାୟବାହାଦୂର କିଛି ବୁଝି ନ ପାରିଲା ଭଳି ପଚାରିଲେ ।

: ଗତ ରାତିର ଘଟଣାମାନେ, କାଲି ନିରଞ୍ଜନ କେତେବେଳେ ଘରକୁ ଫେରିଲା । ତା'ସହିତ ଆଉ କିଏ ଆସିଥିଲା । ସେ ଘରକୁ ଆସି କେତେବେଳଯାଏ ଶୋଇ ନଥିଲା । ଘରେ ପହଞ୍ଚି କ'ଣ କ'ଣ କରିଥିଲା । ଏଇସବୁ ସମ୍ବନ୍ଧରେ ମୁଁ ସମ୍ପୂର୍ଣ୍ଣ ବିବରଣୀ ଜାଣିବାକୁ ଚାହେ । ସତ୍ୟବ୍ରତ ମହାପାତ୍ର କହିଲେ ।

ଲାଭ ?

ଲାଭକ୍ଷତିର ହିସାବ କଷିବାକୁ ଆପଣଙ୍କୁ ମୁଁ କହୁନାହିଁ । ଆପଣ ଯାହା ଜାଣିଛନ୍ତି, ମୋତେ ଗୋଟିଗୋଟି କରି ସବୁ କୁହନ୍ତୁ ।

ବେଶ୍ ତା'ହେଲେ ଶୁଣନ୍ତୁ ।

ରାୟବାହାଦୂର ଆରମ୍ଭ କଲେ ।

ନିରଞ୍ଜନ କାଲି ରାତିରେ ଯେତେବେଳେ ଘରକୁ ଫେରିଲା, ସେତେବେଳକୁ ବାରଟା ବାଜି ଯାଇଥିଲା । ମୁଁ ସେତେବେଳଯାଏ ଶୋଇ ନ ଥିଲି । ସେ ଏତେ ରାତିଯାଏ କୋଉଠି ଥିଲା ବା କ'ଣ କରୁଥିଲା ମୁଁ କିଛି ପଚାରି ନାହିଁ । ମଝିରେ ମଝିରେ ସେ ପ୍ରାୟ ଏହିପରି ଡେରି କରି ଫେରେ । କାଲି ରାତିରେ ବା ଅନ୍ୟ କୌଣସି ଦିନ ଡେରିରେ ଫେରିଲା ବେଳେ ତା'ସଙ୍ଗରେ ଅନ୍ୟ କେହି ଆସିବାର ମୁଁ କେବେ ଦେଖି ନାହିଁ । କାଲି ମଧ କେହି ଆସିଥିଲା ବୋଲି ମୋର ମନେ ହେଉ ନାହିଁ ।

ହିଁ, ତା'ହେଲେ ନିରଂଜନର ମଝିରେ ମଝିରେ ଡେରି କରି ରାତିରେ ଫେରିବାର ଅଭ୍ୟାସ ଥିଲା ? ଆଚ୍ଛା, ସେ ଏତେ ରାତିଯାଏ କେଉଁଠି କ'ଣ କରେ ବୋଲି ଆପଣଙ୍କର ଧାରଣା ?

: ମୁଁ ଥରେ ତାକୁ ସେ ସମ୍ବନ୍ଧରେ ପଚାରିଥିଲି । ସେ ମୋତେ କହିଥିଲା, ସେ ଗୋଟାଏ କ୍ଲବ୍‌ରେ ଯାଇ ଖେଳାଖେଳି କରେ । କ୍ଲବର ଯେଉଁ ଦିନ ବିଶେଷ କୌଣସି ପ୍ରୋଗ୍ରାମ ଥାଏ, ସେଦିନ ତା'ର ଫେରିବାକୁ ଡେରି ହୁଏ ।

: ବୁଝିଲି । କାଲି ରାତିରେ ଫେରିବା ପରେ ନିରଂଜନର କାର୍ଯ୍ୟକ୍ରମ ସମ୍ବନ୍ଧରେ ଆପଣଙ୍କୁ ତା'ହେଲେ ବିଶେଷ କିଛି ଜଣା ନାହିଁ ।

ନା ।

କିଏ ସବୁ କହି ପାରିବ ?

ରଘୁ ହୁଏତ କହି ପାରିବ । କାରଣ ସେ ତା'ର ଖିଆପିଆ ସମ୍ବନ୍ଧରେ ସମସ୍ତ ବୁଝାସୁଝା କରେ ।

ସତ୍ୟବ୍ରତ ମହାପାତ୍ର ରଘୁକୁ ଡାକି ପଚାରିଲେ ।

ରଘୁ ଆସି କହିଲା:ସାନ ସାଆନ୍ତେ କାଲି ରାତିରେ ଫେରି କିଛି ଖିଆପିଆ କରି ନଥିଲେ । ଯେଉଁଦିନ ସେ ବେଶୀ ରାତିରେ ଫେରନ୍ତି, ସେଦିନ ପ୍ରାୟ ସେ କିଛି ଖିଆପିଆ କରନ୍ତି ନାହିଁ । କାଲି ରାତିରେ ତାଙ୍କ ସହିତ କେହି ଆସି ନଥିଲେ ।

ଅନ୍ୟଦିନ କ'ଣ କେହି ଆସନ୍ତି ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

ରଘୁ ଥରେ ରାୟ ବାହାଦୂରଙ୍କ ମୁହଁକୁ ଓ ଆଉ ଥରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ଯେପରି ଇତସ୍ତତଃ ହୋଇ ଚୁପ୍ ରହିଲା । କ'ଣ ଯେପରି କହିବା ପାଇଁ ଯାଇ କହି ପାରିଲା ନାହିଁ । ସତ୍ୟବ୍ରତ ରଘୁର ମନୋଭାବ ବୁଝିପାରି ସେଠାରୁ ଉଠିଗଲେ ଏବଂ ରଘୁକୁ ଅନ୍ୟ ଗୋଟିଏ ଘରକୁ ଡାକିନେଇ କହିଲେ : ଦେଖ୍ ରଘୁ ! ତୋ'ରି କଥା ଉପରେ ସବୁ ନିର୍ଭର କରୁଚି । ନିରଞ୍ଜନକୁ ତୁ କାଖରେ କୋଳରେ ଧରି ମଣିଷ କରିଚୁ । ମୁଁ ଜାଣେ ତା'ପ୍ରତି ତୋର ଯଥେଷ୍ଟ ମମତା ରହିଛି । ତୁ ଯଦି ସତକଥା ନ କହୁ, ତା'ହେଲେ ନିରଂଜନର ହତ୍ୟାକାରୀ ଧରା ପଡିବ ନାହିଁ । ରାୟ ବାହାଦୂରଙ୍କ ମନର ଅବସ୍ଥା ତ ଦେଖୁଚୁ । ଏପରି ସ୍ଥଳରେ ତୋର କୌଣସି କଥା ଗୋପନ ନ ରଖି ସବୁ ଗୋଟି ଗୋଟି କହିଦେବା ଉଚିତ୍ । କହ କାଲି ନିରଂଜନ ସାଙ୍ଗରେ ଅନ୍ୟ କିଏ ଆସିଥିଲା ।

କାଲି କେହି ଆସି ନ ଥିଲେ । ରଘୁ କହିଲା ।

ତା'ହେଲେ ଅନ୍ୟ ଦିନ କିଏ ଆସେ ?

ସୁଷମା ଦେଇ କେବେକେବେ ଆସନ୍ତି ।

ସୁଷମା ଦେଇ ? ସତ୍ୟବ୍ରତ ମହାପାତ୍ର ଯେପରି ଚମକି ଉଠିଲେ । ସୁଷମା ଦେଇ କିଏ ?

ସେ ଜଣେ ଡାକ୍ତରଙ୍କ ଝିଅ । ସାନ ସାଆନ୍ତେ ତାକୁ ଭାରି ଭଲ ପାଆନ୍ତି । ଏ କଥା ବଡ ସାଆନ୍ତେ ଜାଣନ୍ତି ନାହିଁ । ସାନ ସାଆନ୍ତେ ମୋତେ କଥାଟା କାହାରି ଆଗରେ ନ କହିବା ପାଇଁ ବାରଣ କରିଥିଲେ ।

ହୁଁ । ସତ୍ୟବ୍ରତ ମହାପାତ୍ର ଗୋଟିଏ ଦୀର୍ଘ ନିଃଶ୍ୱାସ ତ୍ୟାଗକରି ରଘୁ ମୁହଁକୁ ଏକଦୃଷ୍ଟିରେ ଅନାଇ ରହିଲେ ।

ଆଚ୍ଛା ରଘୁ । ତୋ ସାନ ସାଆନ୍ତେ ମାନେ ନିରଂଜନ ବାବୁ କାଲି ରାତିରେ ଯେତେବେଳେ ଘରକୁ ଫେରିଲେ ତାଙ୍କର ଅବସ୍ଥା କିପରି ଥିଲା ?

ରଘୁ ବୋଧେ କିଛି ବୁଝି ପାରିଲା ନାହିଁ । ସେ ସତ୍ୟବ୍ରତ ମୁହଁକୁ କେବଳ ଏକଦୃଷ୍ଟିରେ ଅନାଇ ରହିଲା ।

ଏଇ, ମାନେ ସେ କ'ଣ ନିଶାଫିଶା କିଛି କରି ଆସିଥିଲେ ?

ରଘୁ ଚମକି ପଡିଲା ।

: ନାଇଁ ବାବୁ । ସାନ ସାଆନ୍ତେ କେବେ ନିଶାପାଣି କରନ୍ତି ନାହିଁ । କେତେବେଳେ ହେଲେ ମୁଁ ତାଙ୍କୁ ମାତାଲ ହବାର ଦେଖିନାହିଁ ।

: ତା'ହେଲେ ମୁଁ ବୁଝିପାରୁ ନାହିଁ ରଘୁ, ତୋ ସାନ ସାଆନ୍ତେ ଶୋଇଲା ପରେ ମଧ୍ୟ ବଗିଚା ଭିତରକୁ କାହିଁକି ଯାଇଥିଲେ । ତୁ କିଛି ଗୋପନ କରୁ ନାହୁଁ ତ ?

ନାଇଁ ଆଜ୍ଞା । ମୁଁ ଆପଣଙ୍କ ପାଖରେ କପଟ କାହିଁକି କରିବି । ସାନ ସାଆନ୍ତେ ମୋତେ କେତେ ଯେ ଭଲ ପାଉଥିଲେ, ଆପଣଙ୍କୁ ସେ କଥା କେମିତି ବୁଝେଇବି । ମୋ ପାଇଁ ସେ ଥିଲେ ଦୟାର ସାଗର । ଶୁଣିବେ ବାବୁ! ଦିନେ ମୁଁ ଘରୁ ଚିଠି ପାଇଥାଏ, ଝଡବତାସରେ ଘରଦ୍ୱାର ସବୁ ଭାଙ୍ଗି ଯାଇଚି । ପିଲା ଛୁଆମାନେ ଗଛମୂଳେ ଆଶ୍ରା ନେଇଚନ୍ତି । ସେଦିନ ମୁଁ ମନଦୁଃଖ କରି ବସିଥାଏ । ସାନ ସାଆନ୍ତେ ମୋର ବିରସ ମନ ଦେଖି ପଚାରିଲେ— କି ରଘୁ, ତୋର ହେଇଚି କ'ଣ । ମୁଁ ସବୁ କଥା କହିଲି । ସଙ୍ଗେସଙ୍ଗେ ସେ ମୋତେ ପାଞ୍ଚଶ ଟଙ୍କା ଦେଇ ଘରକୁ ବିଦା କରିଦେଲେ । କହିଲେ—ତୁ ଆମକୁ ମଣିଷ କରିଚୁ । ଆମେ ତୋ ପିଲାଛୁଆଙ୍କୁ ଦେଖିବୁ ନାହିଁ ! ସାନ ସାଆନ୍ତେ ଦୟାର ସାଗର ଥିଲେ ଆଜ୍ଞା । ତାଙ୍କ ସମ୍ବନ୍ଧରେ ମିଛକଥା କହିବାକୁ ଜିଭ ଲେଉଟିବ କିପରି !!!

ରଘୁର ଆଖି ଛଳଛଳ ହୋଇଆସିଲା ।

ଆଚ୍ଛା ରଘୁ, ତୁ ସୁଷମା ଦେଈଙ୍କ ଘର ଚିହ୍ନିଚୁ ?

ନା ।

ସୁଷମାର ବାପା କିଏ ଜାଣିଚୁ ?

ନା, ସାନ ସାଆନ୍ତେ ସେ କଥା ମତେ କିଛି କହି ନାହାନ୍ତି । ଦିନେ ଖାଲି ପଚାରୁ ପଚାରୁ ପଚାରି ଦେଲି । ସେ କହିଲେ—ସୁଷମା ଦେଈ ଜଣେ ବଡ଼ ଡାକ୍ତରଙ୍କ ଝିଅ ।

ତା'ହେଲେ ସୁଷମା ଦେଈଙ୍କର ଏ ଘରେ ପ୍ରବେଶ ସମ୍ବନ୍ଧରେ ରାୟ ବାହାଦୂର କିଛି ଜାଣନ୍ତି ନାହିଁ । ତାଙ୍କର ଅନ୍ୟ ଭାଇ ଭଉଣୀ ମାନେ ବି କିଛି ଜାଣନ୍ତି ନାହିଁ ?

: କିପରି ଜାଣିବେ କୁହନ୍ତୁ । ସାନ ସାଆନ୍ତେ ତ ଏପରି ଏକ ଘରେ ରୁହନ୍ତି, ଯେଉଁ ଘରଟା ସହିତ କାହାରି କିଛି ସମ୍ପର୍କ ନ ଥାଏ । ପୁଣି ସୁଷମା ଦେଈଙ୍କୁ ମୁଁ ଯେଉଁ କେତେଥର ସାନ ସାଆନ୍ତଙ୍କ ସହିତ ଦେଖିଛି, ସେ କେବଳ ରାତିରେ । ସାନ ସାଆନ୍ତେ ମୋତେ ଭାରି ବିଶ୍ୱାସ କରନ୍ତି । କାହାରି ଆଗେରେ ସୁଷମା ଦେଈଙ୍କ କଥା କହିବାକୁ ମନା କରିଥିଲେ ଯେତେବେଳେ, ମୁଁ ବା ସେ କଥା ଅନ୍ୟ ଆଗରେ କହନ୍ତି କିପରି !!

ତା' ହେଲେ ସତ କହୁଚୁ ତ କାଲି ରାତିରେ ସୁଷମା ଦେଈ ଆସି ନ ଥିଲେ ?

ଆଜ୍ଞା, କହିଲି ପରା ଆପଣଙ୍କ ପାଖରେ ମିଛ କହିଲେ ମୋ ଛାତି ଫାଟିଯିବ ।

: ତୋ ସାନ ସାଆନ୍ତେ କାଲି ରାତିରେ ବାହାରୁ ଫେରିବା ସଙ୍ଗେସଙ୍ଗେ କ'ଣ ଶୋଇପଡ଼ିଥିଲେ ?

: ନା । ସେ ଆସିବା ପରେ ମୁଁ ତାଙ୍କୁ ଦୁଧ ପିଇବାକୁ ଦେଲି । ଦୁଧ ପିଇସାରି ସେ କ'ଣ ଖଣ୍ଡେ ବହି ଖୋଲେଇ ପଢ଼ିଲେ । ମୁଁ ଅପେକ୍ଷା କଲି । କିଛି ସମୟ ପରେ ସେ ମୋତେ ଚାଲି ଯିବାକୁ କହିଲେ । ତା'ପରେ ମୁଁ ଚାଲି ଆସିଲି ।

ତୁ ଯେତେବେଳେ ଚାଲି ଆସୁଥିଲୁ, ସେତେବେଳେ ଆଉ କାହାକୁ ଦେଖି ନାହୁଁ ? ଏଇ ଧର ଏଣେତେଣେ ଯାଉଥିବାର ଅଥବା ଘରେ ନ ଶୋଇ ବତି ଜଳେଇ ବହି ପଢୁଥିବାର ବା ସେହିପରି କିଛି କରୁଥିବାର । ମାନେ ସେତେବେଳେ ଯାଏ ଶୋଇ ନଥିବା ?

ନା କେବଳ ବଡ଼ ସାଆନ୍ତଙ୍କ ଘରେ ବତି ଜଳୁଥିଲା । ଅନ୍ୟ ସମସ୍ତେ ଶୋଇ ପଡ଼ିଥିଲେ ।

ପ୍ରଥମେ ନିରଞ୍ଜନର ମୃତଦେହ କିଏ ଦେଖିଲା ?

ସାଆନ୍ତେ ନିଜେ । ସବୁଦିନ ସକାଳୁ ଉଠି ବଗିଚା ଆଡ଼େ ବୁଲି ଯାଆନ୍ତି । ମୁଁ ତାଙ୍କ ପଛେ ପଛେ ଉଠି ଚା' ତିଆରି କରେ । ବଗିଚାରୁ ଫେରି ଆସି ଚା' ଖାଇ ସେ ଖବରକାଗଜ ପଢ଼ନ୍ତି । ଆଜି ସକାଳୁ ବଗିଚାକୁ ଯାଇ ଚିତ୍କାର କରିଉଠିଲେ । ମୋ ନିଦ ଭାଙ୍ଗି ଯାଇଥିଲା । ମୁଁ ଛୁଟିଯାଇ ଦେଖିଲି ସାନ ସାଆନ୍ତେ ସେଇ ବେଞ୍ଚ ଉପରେ ଶୋଇଛନ୍ତି । ବଡ଼ ସାଆନ୍ତେ ହାଉହାଉ ହୋଇ କାନ୍ଦୁଛନ୍ତି ।

ତା'ପରେ ?

ତା'ପରେ ସମସ୍ତେ ଧାଇଁ ଆସିଲେ । ବଡ଼ ସାଆନ୍ତଙ୍କୁ ମୁଁ ଆଉ ସୁରବାବୁ ଧରା ଧରି କରି ନେଇ ବୈଠକଖାନାରେ ବସାଇଲୁ ।

ହୁଁ । ଆଚ୍ଛା ରଘୁ, ରାୟ ବାହାଦୂରଙ୍କ ସାନପୁଅ କାହିଁ ? ସେ କ'ଣ ଘରେ ନାହିଁ ନା କ'ଣ ?

କିଏ ବୀରଞ୍ଜନ ବାବୁ ?

ହଁ । ବୀରଞ୍ଜନ କାହିଁ ?

ରଘୁ ଏତେବେଳ ଯାଏ ସେକଥା ଭାବି ନଥିଲା । ସତରେ ସେ ଏଇ ଗୋଳମାଳ ଭିତରେ ବୀରଞ୍ଜନକୁ ତ କେଉଁଠି ଦେଖି ନାହିଁ! ତା'ହେଲେ ସେ କ'ଣ ଏତେବେଳ ଯାଏ ଉଠି ନାହିଁ । ସତ୍ୟବ୍ରତ ମହାପାତ୍ରଙ୍କ ପ୍ରଶ୍ନର କୌଣସି ଉତ୍ତର ରଘୁ ଦେଇପାରିଲା ନାହିଁ ।

ଯେଉଁ ଘରେ ଠିଆ ହୋଇ ସତ୍ୟବ୍ରତ ମହାପାତ୍ର ଆଉ ରଘୁ କଥାବାର୍ତ୍ତା ହେଉଥିଲେ, ତା'ରି ପାଖ ଘରଟା ହେଉଚି ବୀରଞ୍ଜନର । ରଘୁ ସେଇ ମୁହୂର୍ତ୍ତରେ ସେଠାରୁ ବାହାରି ଯାଇ ଦେଖିଲା ଦେଈ ଭିତରକୁ ପଶିଲେ । ବୀରଞ୍ଜନ ନିଘୋଡ଼ ନିଦରେ ଶୋଇଛି । ସତ୍ୟବ୍ରତ ମହାପାତ୍ର ମଧ ରଘୁ ପଛେପଛେ ବୀରଞ୍ଜନ ଘର ମଧ୍ୟରେ ପ୍ରବେଶ କଲେ ।

ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ବୀରଞ୍ଜନ ପ୍ୟାଣ୍ଟ, କୋର୍ଟ ଓ ଟାଇ ପିନ୍ଧି ଶୋଇଛି । ଗୋଡ଼ରୁ ଯୋତା ମଧ ଓହ୍ଲେଇ ନାହିଁ । ଦିନ ଆସି ପହଡ଼େ ହେଲାଣି । ଘର ଭିତରେ ଗୋଟାଏ ଏତେବଡ଼ ଦୁର୍ଘଟଣା ଘଟିଗଲାଣି ! ଏତେ ଗୋଳମାଳ ଭିତରେ ବି ବୀରଞ୍ଜନ ଆରାମରେ ଶୋଇରହିଛି । ସତ୍ୟବ୍ରତ ଖଟ ପାଖକୁ ଯାଇ ଭଲ

ଭାବରେ ଦେଖିଲେ । ତାଙ୍କର ମନେ ହେଲା ଗତ କାଲି ରାତିରେ ବୀରଞ୍ଜନ ହୁଏତ କେଉଁଠାକୁ ଯାଇଥିଲା, ସେଠାରୁ ଫେରି ଲୁଗାପଟା ନ ବଦଳେଇ ସେହିପରି ଶୋଇଯାଇଛି । ସେ ଘରେ ରଘୁକୁ ଆଉ କିଛି ପଚାରିଲେ ନାହିଁ ।

ତା' ନିଦ୍ରାରେ ବ୍ୟାଘାତ ନ କରିବା ପାଇଁ ଇଂଗିତରେ ରଘୁକୁ କହି ବାହାରକୁ ବାହାରି ଆସିଲେ ।

ବୈଠକ ଖାନାରେ ଆସି ଦେଖିଲେ ପୋଲିସ ଇନ୍‌ସପେକ୍ଟର ରସିକ ମୋହନ ବାବୁ ତାଙ୍କର ପୃଥୁଳ ଶରୀରଟା ଘେନି ଗୋଟାଏ ସୋଫା ଉପରେ ରାୟ ବାହାଦୂରଙ୍କ ମୁହଁକୁ ଚାହିଁ ବସିଛନ୍ତି । ରାୟ ବାହାଦୂର ଆଖି ବୁଜି କ'ଣ ଯେପରି ଗଭୀର ଭାବରେ ଚିନ୍ତା କରୁଛନ୍ତି ।

ସତ୍ୟବ୍ରତ ମହାପାତ୍ର ଆଉ ସେଠାକୁ ଯାଇ ଅଯଥାରେ ସମୟ ନଷ୍ଟ କରିବା ଉଚିତ ମନେ କଲେ ନାହିଁ । ତାଙ୍କର ଆଉଥରେ ନିରଞ୍ଜନର ମୃତଦେହଟାକୁ ଦେଖି ଆସିବାକୁ ଇଚ୍ଛା ହେଲା । ସେ ବୁଝିପାରୁ ନ ଥିଲେ, ନିରଞ୍ଜନର କିପରି ମୃତ୍ୟୁ ଘଟିଛି । ବାଁ ହାତର ପାପୁଲି ତଳକୁ ସାମାନ୍ୟ ଟିକିଏ କ୍ଷତଚିହ୍ନର ସନ୍ଧାନ ଛଡ଼ା ସେ ଆଉ ନିରଞ୍ଜନ ଦେହରେ କିଛି ପାଇ ନାହାନ୍ତି । ତେଣୁ ତାହା ଯେ ହତ୍ୟାକାଣ୍ଡ, ସେକଥା ପ୍ରମାଣ କରିବା ସହଜ ନୁହେଁ । ତେବେ ସତ୍ୟବ୍ରତଙ୍କର ଦୃଢ଼ ଧାରଣା ଯେ, କୌଣସି ଉପାୟରେ ବାଁ ହାତର ସେହି ପାପୁଲି ତଳେ ନିରଞ୍ଜନ ରକ୍ତରେ ବିଷ ମିଶାଇ ଦିଆଯାଇଛି । ହୁଏତ ଇଞ୍ଜେକ୍ସ କରି ହେଉ ନତୁବା...

ହଠାତ୍ ସତ୍ୟବ୍ରତ ମହାପାତ୍ରଙ୍କ ଭାବନା ଅଟକିଗଲା । କ'ଣ ଗୋଟାଏ ପଦାର୍ଥ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସେ ଦୁଇ ପାହୁଣ୍ଡ ଆଗେଇ ଯାଇ ଘାସ ବୁଦା ମୂଳରୁ ପଦାର୍ଥଟି ଉଠାଇ ଆଣିଲେ । ଗୋଟାଏ ମୁଣ୍ଡକଣ୍ଟା । ସାଧାରଣତଃ ଝିଅମାନେ ମୁଣ୍ଡ ବାନ୍ଧି ସାରି ଯେଉଁ ଗୁଡ଼ାକ ଖୋଷାରେ ଖୋସନ୍ତି । ଏଇଟା ଏଠାକୁ ଆସିଲା କିପରି ? ସେ କଣ୍ଟାଟିକୁ ଭଲ ଭାବରେ ଦେଖିଲେ । ଅଗଟା ଖୁବ୍ ମୁନିଆ ହୋଇଚି । ମୁଣ୍ଡଟାରେ ପ୍ଲାଷ୍ଟିକ୍‌ର ଏକ ଗୋଲାକାର ପଦାର୍ଥ ଲାଗିଛି । କିନ୍ତୁ ଏଇଟା ଅପେକ୍ଷାକୃତ ଟିକିଏ ମୋଟା ।

କେଜାଣି କାହିଁକି ସତ୍ୟବ୍ରତଙ୍କ ମନରେ କିପରି ଏକ ଭାବନା ସୃଷ୍ଟି ହେଲା । ସେ କଣ୍ଟାଟିକୁ ବୁଲେଇ ଚଲେଇ ଦେଖିଲେ । କାହାର ଏଇଟା ହୋଇପାରେ ? ଆଜିକାଲିର ଝିଅମାନେ ଏଗୁଡ଼ାକ ପ୍ରାୟ ବ୍ୟବହାର କରୁ ନାହାନ୍ତି । ଆଉ କ'ଣ ରାୟବାହାଦୂରଙ୍କର କୌଣସି ଚାକରାଣୀ ମୁଣ୍ଡରୁ ଏଇଟା ଏଠାରେ ଖସି ପଡ଼ିଚି !! ହୋଇପାରେ । ଅସମ୍ଭବ କିଛି ନୁହେଁ । ତଥାପି ସେଇଟିକୁ ସେ ପକେଟରେ ରଖିଲେ ।

ରସିକ ମୋହନ ବାବୁ ତେଣୁ ଆସୁଥିବାର ଦେଖି ସତ୍ୟବ୍ରତ ମହାପାତ୍ର ଦୂରେଇ ଯାଉଥିଲେ । କିନ୍ତୁ ସମ୍ଭବ ହେଲା ନାହିଁ । ରସିକ ମୋହନ ସେଇଠୁ ପାଟିକରି

ଉଠିଲେ : ଆରେ ମହାପାତ୍ର ବାବୁ ଯେ ! ଆପଣ କେତେବେଳୁ ! ବେଶ୍ ଭଲହୋଇଚି । ଆପଣଙ୍କ ସହଯୋଗ ପାଇବି ଏ ଆଶା ମୋର ନ ଥିଲା ।

ସେ ଆଶା ନ ରହିବାହିଁ ଭଲ । ସତ୍ୟବ୍ରତ ମହାପାତ୍ର କହିଲେ ।

କାହିଁକି ? ମୁଁ ଆପଣଙ୍କ ନିକଟରେ କ'ଣ ଏମିତି ଅପରାଧ କଲିକି?

ନା, ନା । ଆପଣ ସେପରି କାହିଁକି ଭାବୁଚନ୍ତି ! ମୋର ସମୟ ନାହିଁ । ତା'ଛଡ଼ା ମୋତେ ବି ଏ ସବୁ ଆଉ ଭଲ ଲାଗୁନାହିଁ ।

ଆପଣ ନିରଂଜନ ବାବୁଙ୍କ ମୃତଦେହଟା ନିଶ୍ଚୟ ଦେଖିଥିବେ ।

ଦେଖିଚି ।

ଆପଣଙ୍କର କ'ଣ ମନେ ହେଉଚି ? ରସିକ ମୋହନ ପଚାରିଲେ ।

ମୁଁ ତ ଏପର୍ଯ୍ୟନ୍ତ କିଛି ଠିକ୍ କରିପାରି ନାହିଁ ।

ମୁଁ କିନ୍ତୁ କ'ଣ ଭାବୁଚି ଜାଣନ୍ତି ସତ୍ୟବ୍ରତ ବାବୁ, ରାୟବାହାଦୂର ଯାହା କହୁଚନ୍ତି, ସେଇଆ ସତ୍ୟ । ନିରଞ୍ଜନବାବୁଙ୍କର ଅପଘାତରେ ମୃତ୍ୟୁ ଘଟିଚି ।

ସତ୍ୟବ୍ରତ ମହାପାତ୍ର କୌଣସି ଉତ୍ତର ଦେଲେ ନାହିଁ । ତାଙ୍କର ଆଖି ଯୋଡ଼ାକ କେବଳ ରସିକ ମୋହନଙ୍କ ମୁହଁ ଉପରେ ବୁଲି ଆସିଲା । କହିଲେ ସମ୍ଭବ ହେଲେ ପୋଷ୍ଟମର୍ଟମ ରିପୋର୍ଟଟା ମୋତେ ଟିକେ ଦେଖେଇବେ । ଆଉ ଅପେକ୍ଷା ନ କରି ସେ ସେଠାରୁ ଦୂରେଇ ଗଲେ ।

ସତରେ କ'ଣ ନିରଞ୍ଜନ ଅପଘାତରେ ମରିଚି ? ତେବେ କ'ଣ କୌଣସି ବିଷାକ୍ତ ପ୍ରାଣୀ ନିରଞ୍ଜନକୁ ଦଂଶନ କରିଚି ? ସେ ବା ସିମେଣ୍ଟ ବେଞ୍ଚଟା ଉପରେ ଶୋଇଥିଲା କାହିଁକି ? ଆଉ କ'ଣ ନିଘୋଡ଼ ରାତିରେ ସୁଷମା ନିରଞ୍ଜନ ସହିତ ଦେଖା କରିବାକୁ ଆସିଥିଲା ? ସେଇ କ'ଣ ନିରଞ୍ଜନକୁ ହତ୍ୟା କରିଚି? ତାରି ଖୋଷାରୁ କ'ଣ କଣ୍ଟାଟା ଏଠାରେ ଖସି ପଡ଼ିଚି ? କିନ୍ତୁ ସୁଷମା, ସୁଷମା କିଏ ?

ମିସ୍ ସୁଷମା ଗନ୍ତାଏତ । ଡକ୍ଟର ଦୀନନାଥ ଗନ୍ତାଏତଙ୍କର ଏକମାତ୍ର ସନ୍ତାନ । ଅଧୁନିକା, ଶିକ୍ଷିତା, ରୂପସୀ । ମୋଟ ଉପରେ କହିବାକୁ ଗଲେ ସର୍ବଗୁଣ ସମ୍ପନ୍ନା । ବହୁ ଅନୁସନ୍ଧାନ ପରେ ସତ୍ୟବ୍ରତ ମହାପାତ୍ର ସୁଷମା ଗନ୍ତାଏତଙ୍କର ସନ୍ଧାନ ପାଇଲେ ।

ଆପଣ ନିରଞ୍ଜନ ଦାଶ ମହାପାତ୍ରଙ୍କୁ ଚିହ୍ନନ୍ତି ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

ନିରଞ୍ଜନ ଦାଶ ମହାପାତ୍ର ? ସୁଷମାର ଭ୍ରୂରୁ ଯୋଡ଼ିକ ନାଚି ଉଠିଲା ।

ରାୟ ବାହାଦୂର ଶରତ୍‌ଚନ୍ଦ୍ର ଦାଶ ମହାପାତ୍ରଙ୍କର ପୁତ୍ର ।

ଓଃ, ହଁ । କିନ୍ତୁ କାହିଁକି କୁହନ୍ତୁତ ।

ଆପଣ ଏତେବେଳଯାଏ କିଛି ଶୁଣି ନାହାନ୍ତି ?

ନାଇଁତ ।

ଗତ ରାତିରେ ତାଙ୍କର ମୃତ୍ୟୁ ଘଟିଚି ।

ମୃତ୍ୟୁ !

ହଠାତ୍ ଯେପରି ଘରେ ବଜ୍ରପାତ ହେଲା । ସୁଷମା ଦେବୀ ଚେଆର ଉପରୁ ଉଠି ଠିଆ ହୋଇପଡ଼ିଲେ । ବିଚଳିତ ସ୍ୱରରେ କହିଲେ ଗତ ରାତ୍ରିରେ ତାଙ୍କର ମୃତ୍ୟ ଘଟିଚି ! ଅସମ୍ଭବ ! ଆପଣ ମିଥ୍ୟା କଥା କହୁଚନ୍ତି । ଏହା କିପରି ମୁଁ ବିଶ୍ୱାସ କରିବି ? ସେ କାଲି ରାତି ଏଗାରଟା ପରେ ମୋ ଠାରୁ ବିଦାୟ ନେଇ ଯାଇଛନ୍ତି । ନା ନା ଆପଣଙ୍କ କଥା ମୁଁ ବିଶ୍ୱାସ କରିପାରୁ ନାହିଁ ।

ସୁଷମା ପୁଣି ଚେଆର ଉପରେ ବସିଲା ।

ସତ୍ୟବ୍ରତ ମହାପାତ୍ର ମୁହୂର୍ତ୍ତେ ନୀରବ ରହି କହିଲେ : ଶୁଣନ୍ତୁ ମିସ୍ ସୁଷମା ! ମୁଁ ମିଥ୍ୟା କଥା କହି ଆପଣଙ୍କ ମନରେ କଷ୍ଟ ଦେବାକୁ ଆସିନାହିଁ । କିମ୍ବା ନିରଞ୍ଜନ ବାବୁଙ୍କ ସହିତ ମୋର କୌଣସି ଶତ୍ରୁତା ନାହିଁ । କିନ୍ତୁ ମୁଁ ଏତିକି ଜାଣେ ଯେ ଆପଣଙ୍କ ସହିତ ତାଙ୍କର ଯଥେଷ୍ଟ ଆନ୍ତରିକତା ଥିଲା । ତା'ଛଡ଼ା ଗତ ରାତିରେ ଆପଣ ଏଗାରଟା ଯାଏ ଏକତ୍ର ଥିଲେ । ତେଣୁ ମୋର ବିଶ୍ୱାସ ଆପଣ ମୋତେ ଟିକିଏ ସାହାଯ୍ୟ କଲେ, ନିରଞ୍ଜନର ହତ୍ୟାକାରୀକୁ ଖୋଜି ବାହାର କାରିବାକୁ ମୋତେ ସହଜ ହେବ ।

ତା' ହେଲେ ନିରଞ୍ଜନବାବୁଙ୍କୁ ହତ୍ୟା କରାହୋଇଛି ?

ହଁ, ମୋର ଧାରଣା ସେଇଆ । ତାଙ୍କର ମୃତ୍ୟୁ ରହସ୍ୟଜନକ ଭାବରେ ଘଟିଚି । ଆପଣ ତାଙ୍କର ବନ୍ଧୁ । ଅନ୍ତରଙ୍ଗ । ତାଙ୍କର ମୃତ୍ୟୁସମ୍ବାଦ ଆପଣଙ୍କ ପ୍ରାଣରେ ଯେ କିପରି ଆଘାତ ଦେବ, ତାହା ମୁଁ ବୁଝୁଚି । ତଥାପି ଏ ଦୁଃସମ୍ବାଦ ଆପଣଙ୍କ ନିକଟକୁ ମୋତେହିଁ ବହନ କରି ଆଣିବାକୁ ପଡିଲା ।

ମିସ୍ ସୁଷମା ଗନ୍ତାଏତଙ୍କର ମୁଖମଣ୍ଡଳ ଉପରେ ହଠାତ୍ ଯେପରି ବିଷାଦର କାଳିମା ଘୋଟି ଯାଇଥିଲା । ତଥାପି ସେ ନିଜର ସେଇ ବିଷାଦ ଭାବ ଲୁଚେଇବାକୁ ଚେଷ୍ଟା କରୁଥିଲେ । କଣ୍ଠରେ ଯଥାସମ୍ଭବ ଦୃଢ଼ତା ଫୁଟାଇବାକୁ ଚେଷ୍ଟା କରି କହିଲେ: ପ୍ରକୃତରେ ନିରଞ୍ଜନ ବାବୁଙ୍କ ସମ୍ବନ୍ଧରେ ଏପରି ଏକ ଦୁଃସମ୍ବାଦ ଏକା ମୋ ପକ୍ଷରେ ନୁହେଁ, ଅନେକଙ୍କ ପକ୍ଷରେ ଖୁବ୍ କଷ୍ଟଦାୟକ ହେବ । ସେ ଦେଶର ଆଉ ଜାତିର ଜଣେ ହିତାକାଂକ୍ଷୀ ଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ଖୁବ୍ ସୁଦୂର ପ୍ରସାରୀ ଥିଲା । କିନ୍ତୁ ମୁଁ ଆପଣଙ୍କୁ କିପରି ସାହାଯ୍ୟ କରି ପାରିବି, କିଛି ଭାବି ପାରୁ ନାହିଁ । କାରଣ ନିରଞ୍ଜନ ବାବୁଙ୍କ ସମ୍ବନ୍ଧରେ ମୋତେ ଏପରି କିଛି ଜଣା ନାହିଁ, ଯାହା ତାଙ୍କର ହତ୍ୟାକାରୀକୁ ଧରିବା ଦିଗରେ ଆପଣଙ୍କୁ ସହାୟ ହେବ ।

ମୁଁ ବୁଝୁଚି ସୁଷମା ଦେବୀ ! ଆପଣ ନିରଞ୍ଜନ ବାବୁଙ୍କର ଅନ୍ତରଙ୍ଗ ଥାଇ

ମଧ୍ୟ ଆଜି ତାଙ୍କ ସମ୍ବନ୍ଧରେ କିଛି କଥା ଗୋପନ କରି ଯିବାକୁ ଚାହୁଁଛନ୍ତି, ହୁଏତ ଆପଣଙ୍କ ମନରେ ଧାରଣା ଜନ୍ମିଚି, ଜଣକ ମୃତ୍ୟୁ ପରେ ଆଉ ତା ସମ୍ବନ୍ଧୀୟ ସମସ୍ୟାରେ ଜଡ଼ିତ ରହି ଲାଭ କ'ଣ । କିନ୍ତୁ ସୁଷମା ଦେବୀ, ଆପଣ ଶିକ୍ଷିତା, ଦେଶ ଓ ଜାତି ପାଇଁ ଆପଣଙ୍କର ମଧ୍ୟ ଯଥେଷ୍ଟ କର୍ତ୍ତବ୍ୟ ଅଛି । ନିରଞ୍ଜନ ବାବୁଙ୍କ ହତ୍ୟାକାରୀକୁ ଖୋଜି ବାହାର କରିବା ମୋ ପରି ଆପଣଙ୍କର ମଧ୍ୟ କର୍ତ୍ତବ୍ୟ ହେବା ଉଚିତ । ଆପଣ ଅଧିକ କିଛି ନ କୁହନ୍ତୁ, ବରଂ ମୋ ପ୍ରଶ୍ନର ଉତ୍ତରଗୁଡ଼ିକ ଠିକ୍ ଠିକ୍ ଦେଇ ପାରିଲେ, ସେତିକି ଯଥେଷ୍ଟ ହେବ ।

ସୁଷମା ଦେବୀ ନୀରବରେ ବସି ଶୁଣୁଥିଲେ । ତାଙ୍କ ଦେହମନରେ ଯେପରି ଗୋଟାଏ ପରିବର୍ତ୍ତନ ଦେଖା ଦେଇଥିଲା । ସତ୍ୟବ୍ରତ ମହାପାତ୍ରଙ୍କ କଥାର ଉତ୍ତର ଦେବାକୁ ଯାଇ ସେ କହିଲେ, ଆପଣ ଯାହା ପଚାରିବେ ପଚାରନ୍ତୁ । ମୁଁ ଯାହା ଜାଣେ ତାହା ଲୁଚେଇବାକୁ ମୋଟେ ଚେଷ୍ଟା କରିବି ନାହିଁ ।

ବେଶ୍ । ମୋର କେବଳ ଆପଣଙ୍କ ନିକଟରୁ ସେତିକି ଆନ୍ତରିକତା ପାଇଲେ ଯଥେଷ୍ଟ ହେବ । ନିରଞ୍ଜନ ଯେ ଆପଣଙ୍କୁ ଭଲ ପାଉଥିଲା, ଏ କଥା ତାଙ୍କ ପରିବାରରେ ଅନ୍ୟ କେହି ଜାଣି ନ ଥିଲେ, ଏହା କ'ଣ ସତ୍ୟ ?

ହଁ ।

ନିରଞ୍ଜନ ସହିତ ଆପଣଙ୍କର ବୈବାହିକ ସମ୍ବନ୍ଧରେ ଆବଦ୍ଧ ହେବା ପାଇଁ କୌଣସି କଥାବାର୍ତ୍ତା ହୋଇଥିଲା କି ?

ହୋଇଥିଲା ।

ପ୍ରସ୍ତାବଟା ଆପଣ ଦେଇଥିଲେ ନା ସେ ଦେଇଥିଲେ ?

: ମୁଁ ଦେଇଥିଲି ।

ଉତ୍ତରରେ ସେ କ'ଣ କହିଥିଲେ ?

ବିବେଚନା କରି ଦେଖିବେ ବୋଲି କହିଥିଲେ ।

ତଥାପି ଆପଣଙ୍କର ତାଙ୍କ ସହିତ ଅବାଧ ମିଳାମିଶା ଥିଲା ?

: ବନ୍ଧୁତା ଆଉ ବନ୍ଧନ ଦୁଇଟା ଅଲଗା ଜିନିଷ । ତେଣୁ ଆମର ବନ୍ଧୁତାରେ କୌଣସି ପ୍ରକାର ଆଞ୍ଚ ଆସି ନ ଥିଲା ।

: ବୁଝିଲି । ଆପଣଙ୍କ ପ୍ରସ୍ତାବ ସମ୍ବନ୍ଧରେ ପରେ ସେ କୌଣସି ବିବେଚନା କରି କହିଥିଲେ ?

ନା ।

ଆପଣ ଆଉ ସେ ସମ୍ବନ୍ଧରେ କେବେ ତାଙ୍କୁ କିଛି ପଚାରି ନ ଥିଲେ?

: ପଚାରିଥିଲି ! ଗତରାତିରେ ଆମର ସେଇ କଥା ଆଲୋଚନା ହୋଇ ଥିଲା । ଏବଂ ସେ ଆଜି ସକାଳେ ତାଙ୍କ ବାପାଙ୍କ ସହିତ ଏଇ ସମ୍ବନ୍ଧରେ ଆଲୋଚନା କରି ମୋତେ ଆଜି କ୍ଲବରେ ସବୁକଥା ଜଣେଇବେ ବୋଲି କହିଥିଲେ ।

ସତ୍ୟବ୍ରତ ମହାପାତ୍ର ଯେପରି ସୁଷମା କଥାକୁ ବିଶ୍ୱାସ କରି ପାରୁ ନଥିଲେ, ସେହିପରି ଚାହାଣିରେ ଅନେଇ ରହି କହିଲେ ତା' ହେଲେ ଆପଣ ଏତେବଡ଼ ଗୋଟାଏ ସତ୍ୟ ମୋ ପାଖରେ ଗୋପନ କରି ଯାଉଥିଲେ । ହେଉ ଛାଡ଼ନ୍ତୁ, ଏଥର କହିଲେ କାଲି ଆପଣଙ୍କ କଥା ଯେତେବେଳେ ଆଲୋଚନା କରୁଥିଲେ, ସେତେବେଳେ ଆପଣମାନଙ୍କ କଥା ଆଉ କେହି ଶୁଣିଥିଲା କି ?

ମାନେ ?

ସୁଷମା ଦେବୀ କିପରି ଏକ ବେଖାପ ଚାହାଣିରେ ଅନାଇ ପଚାରିଲେ ।

ଏଇ ଧରନ୍ତୁ ଆପଣ ଆଉ ନିରଞ୍ଜନ । ଦୁଇଜଣଙ୍କ ଭିତରେ ଏ କଥା ଯେତେବେଳେ ଆଲୋଚନା ହେଉଥିଲା, ସେତେବେଳେ ନିଶ୍ଚୟ ଆପାଣଙ୍କ ପାଖ ଆଖରେ କେହି ବସିଥିଲେ ।

ହିଁ, ବସିଥିଲେ ଅନେକ । କିନ୍ତୁ ନାଇଟ୍‌କ୍ଲବରେ ସେତେବେଳେ ନୃତ୍ୟଗୀତ ଚାଲିଥିଲା । ତେଣୁ ଆମ ଆଲୋଚନା ଆଡେ କାହାରି ଯେ କାନ ଥିବ ମୋର କାହିଁକି ସେପରି ମନେ ହେଉ ନାହିଁ ।

ଆପଣଙ୍କ ମନେ ହେବା ନ ହେବା ଉପରେ ମୁଁ ଆସ୍ଥା ସ୍ଥାପନ କରି ପାରୁ ନାହିଁ । ତେବେ କେଉଁମାନେ ଆପଣଙ୍କ ଆଲୋଚନା ବେଳେ ପାଖରେ ବସିଥିଲେ ବୋଧହୁଏ ଚେଷ୍ଟା କଲେ ମନେ ପଡିବ । ତା'ପରେ ଆଉ ଗୋଟିଏ କଥା, ଯଦି ଆପଣ କିଛି ନ ଭାବନ୍ତି ମୁଁ ପଚାରିବି ।

ପଚାରନ୍ତୁ । ମୁଁ କଥା ଦେଇଚି ଯେତେବେଳେ ଆପଣଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟା କରିବି । ମୋ ଭାବିବା ନ ଭାବିବା କଥା ଆପଣ ମୋଟେ ଭାବନ୍ତୁ ନାହିଁ ।

କଥା କ'ଣ କି ସୁଷମା ଦେବୀ, ପ୍ରତି ମଣିଷର ଜୀବନରେ ଏପରି କେତେ ଗୁଡିଏ ଗୋପନ ଘଟଣା ଥାଏ, ଯାହା ସବୁବେଳେ ସମସ୍ତଙ୍କ ଆଗରେ କହିବା ସମ୍ଭବ ହୁଏ ନାହିଁ । ଏପରିକି କେବେ ବା କୌଣସି ସୂତ୍ରରେ ଥରେ ତାହା ବାହାରେ ପ୍ରକାଶ ପାଇଗଲେ, ବେଳେବେଳେ ତା'ର ପରିଣତି ସାଂଘାତିକ ହୋଇ ଉଠେ । ଆଉ କେତେ ଗୁଡିଏ ଘଟଣା ଥାଏ ଯେଉଁ ଗୁଡାକ ମୁହାଁମୁହିଁ ବସି ପଚରା ଯାଇ ପାରେ ନାହିଁ । ମୋର ଆପଣଙ୍କୁ ଏ ପ୍ରଶ୍ନଟି ଠିକ୍ ସେଇ ଭଳି । ଯା ହେଉ ଆପଣ ମୋତେ କ୍ଷମା କରିବେ । ମୋ ମନରେ ଯେଉଁ ପ୍ରଶ୍ନ ଜାଗିଚି, ତାହା ହେଉଚି, ଆପଣ ନିରଞ୍ଜନ ଛଡା ଆଉ କାହାକୁ ଭଲ ପାଉଥିଲେ କି? ଅଥବା ଆପଣଙ୍କୁ ଅନ୍ୟ କେହି ଭଲ ପାଉଥିବାର ଆପଣ ଜାଣିଛନ୍ତି କି ?

ସତ୍ୟବ୍ରତ ଦେଖିଲେ, କ୍ଷଣକ ପାଇଁ ସୁଷମା ଦେବୀଙ୍କ ମୁଖ ରକ୍ତାଭ ହୋଇ ଉଠିଲା । ସେ ଯେପରି ଟିକିଏ ଉତ୍ତେଜିତ ହୋଇ ପଡିଲେ, କିନ୍ତୁ ପରମୁହୂର୍ତ୍ତରେ ନିଜକୁ ସମ୍ବରଣ କରିନେଇ କହିଲେ ଆପଣଙ୍କ ପ୍ରଶ୍ନ ନିତାନ୍ତ ଅବାନ୍ତର ହେଲେ ମଧ୍ୟ ମୋର ଉତ୍ତର ନ ଦେବାର କୌଣସି କାରଣ ନାହିଁ । କାହାକୁ ମୁଁ ଭଲ ପାଏ ଆଉ କାହାକୁ ଘୃଣା କରେ ସେ ମୋର ନିଜସ୍ୱ ଅଭିରୁଚି । ମୁଁ ସମାଜରେ ଜଣେ ପର୍ଦ୍ଦାନସୀନ ଝିଅ ନୁହେଁ ଯେ, ମୋ ପକ୍ଷରେ ଅନ୍ୟ ପାଞ୍ଚଜଣଙ୍କ ସହିତ ମିଳାମିଶା କରିବାକୁ ଅସୁବିଧା ହେବ । ତେଣୁ ମୋ ଜୀବନ କ୍ଷେତ୍ରରେ କେତେ ଲୋକଙ୍କ ସହିତ ଭେଟ ହେଉଚି ଏବଂ ହେବ ମଧ୍ୟ । କାହାର ଆନ୍ତରିକତା ମୋ ଜୀବନ ଉପରେ କିପରି ରେଖାପାତ କରିବ, ସେ ଅଲଗା କଥା । କିନ୍ତୁ ମୁଁ ବୁଝିପାରୁ ନାହିଁ, ଆପଣ କାହିଁକି ସ୍ଥିରନିଶ୍ଚିତ ଯେ ନିରଞ୍ଜନବାବୁ ମୋର ଏକମାତ୍ର ଅନ୍ତର ମନର ଅଧିକାରୀ ଥିଲେ ବୋଲି । ଏହା ବଦଳରେ ଆପଣ ହୁଏତ ଜାଣିବାକୁ ଚାହିଁବେ, ତା'ହେଲେ ମୋତେ ସେ ବିବାହ କରିବାକୁ କାହିଁକି ମୁଁ ପ୍ରସ୍ତାବ ଦେଇଥିଲି । ଏଇଟା ତ ଅତି ମାମୁଲି କଥା । ପ୍ରତ୍ୟେକ ନାରୀର ଗୋଟାଏ ଆଶ୍ରୟ ଲୋଡା । ଆଉ ସେ ଆଶ୍ରୟ ଯଦି ସୁଦୃଢ ହୋଇଥାଏ, ତା'ହେଲେ ଜୀବନ ଭରି କୌଣସି ଦୁଃଖ କଷ୍ଟର ସମ୍ମୁଖୀନ ହେବାକୁ ପଡେ ନାହିଁ । ସେହ ଦୃଷ୍ଟିରୁ ବିଚାରିଲେ, ଜଣେ ନାରୀର ଆଶ୍ରୟ ଦାତା ଭାବରେ ସେ ଉପଯୁକ୍ତ ଥିଲେ । ତେଣୁ ମୋର ଏଇ ପ୍ରସ୍ତାବଟା ନିଶ୍ଚୟ ଅଯୌକ୍ତିକର ନ ଥିଲା ।

ସତ୍ୟବ୍ରତ ମହାପାତ୍ର ସୁଷମା ଦେବୀଙ୍କ କଥାରେ ସ୍ମିତ ହସି କହିଲେ ଆପଣଙ୍କ ଯୁକ୍ତି ସମର୍ଥନଯୋଗ୍ୟ । କିନ୍ତୁ ସୁଷମା ଦେବୀ, ଜୀବନଟା କେବେ ଥିଓରି ନୁହେଁ, ଜୀବନଟା ନିରାଟ ବାସ୍ତବ । କେବଳ ସୁଦୃଢ ଆଶ୍ରୟ ଉପରେ ଜୀବନ ଲଟେଇ ପାରିବ ନାହିଁ । ଜୀବନ ଲତାରେ ସବୁଜପତ୍ର ପଲ୍ଲବିତ ହେବା ପାଇଁ ବହୁ ଉପାଦାନ ଲୋଡା । ସ୍ନେହ, ପ୍ରେମ, ଆନ୍ତରିକତା ଏ ସବୁ ନ ପାଇଲେ ଜୀବନ ବ୍ୟର୍ଥ ହୋଇଯିବ । ଆଶ୍ରୟ ଭୁଶୁଡି ପଡିବ । ଯା'ହେଉ, ସେ ସବୁ ଜୀବନତତ୍ତ୍ୱ ଆଲୋଚନା କରିବାର ବେଳ ଏ ନୁହେଁ । ତେବେ ଆଜିକାଲି ଆପଣଙ୍କ ପରି ଆଧୁନିକାମାନଙ୍କର ଭଲ ପାଇବାର ଦୁଇଟି ତିନୋଟି ଦିଗ ଏବେ ଦେଖା ଦେଲାଣି । କେହି କେହି କୌଣସି ଧନୀ ଯୁବକ ସହିତ ଭଲ ପାଇବାର ଛଳନା କରି ମିଶନ୍ତି ଧନ ଲୋଭରେ । ଆଉ କେହି ମିଶନ୍ତି ଉଦ୍ଦେଶ୍ୟ ସାଧନ ପାଇଁ । ଅବଶ୍ୟ ଆପଣଙ୍କୁ ଏହି ଧରଣର ଭଲ ପାଇବା ଭିତରକୁ ମୁଁ ଟାଣି ପାରୁନାହିଁ । କାରଣ ଆପଣଙ୍କର ବୋଧହୁଏ ଧନର ଅଭାବ ନାହିଁ । ତେବେ ଆପଣ ଯେଉଁ ଉଗ୍ର ଆଧୁନିକତା ଭିତରେ ଜୀବନକୁ ଭସେଇ ନେଉଛନ୍ତି... ଛାଡନ୍ତୁ । ମୋତେ କ୍ଷମା କରିବେ । ମୁଁ ଆପଣଙ୍କୁ ସମାଲୋଚନା କରୁନାହିଁ । ତେବେ ମୋତେ ଖୋଲାଖୋଲି ଭାବରେ ସବୁକଥା କହିଥିଲେ ମୋର ଟିକିଏ ସୁବିଧା ହୋଇ ଥାଆନ୍ତା ।

ଆପଣ କ'ଣ ଭାବୁଛନ୍ତି, ମୁଁ କୌଣସି କଥା ଆପଣଙ୍କ ନିକଟରେ ଗୋପନ କରୁଚି ? ତା' ଯଦି ଭାବୁଥାନ୍ତି ମୋର କହିବାର କିଛି ନାହିଁ ।

ଛାଡନ୍ତୁ । ଏଥର କହିଲେ, ଗତକାଲି ନିରଞ୍ଜନ ସହିତ ଆପଣଙ୍କର ବିବାହ ପ୍ରସ୍ତାବ ନେଇ ଆଲୋଚନା ହେଉଥିବା ବେଳେ ସେଠାରେ ଆଉ କିଏ କିଏ ଥିଲେ ?

ଆମରି କ୍ଲବର ମେମ୍ବର କେହି ଥିବେ । ମୋର ଠିକ୍ ମନେ ପଡୁ ନାହିଁ। ସେତେବେଳେ ଯଦି ଜାଣି ଥାଆନ୍ତି ଏଇଭଳି ଏକ ପ୍ରଶ୍ନର ଉତ୍ତର ଦେବାକୁ ମୋତେ ପଡିବ, ତା'ହେଲେ ମନେ ରଖି ଥାଆନ୍ତି ।

ହୁଁ ।

ସତ୍ୟବ୍ରତ ମହାପାତ୍ର ନୀରବରେ ବସି କିଛି ସମୟ ଚିନ୍ତା କଲେ । ତା'ପରେ ହଠାତ୍ ପଚାରିଲେ: ଆପଣ ନିରଞ୍ଜନ ବାବଙ୍କୁ ବିବାହ ପ୍ରସ୍ତାବ ଦେବାପରେ ସେ ଆପଣଙ୍କୁ କ'ଣ ଉତ୍ତର ଦେଲେ ?

କ'ଣ ଆଉ ଦିଅନ୍ତେ ! ସଚାରାଚର ଯାହା କହି ଥାଆନ୍ତି ସେ ବି ସେଇଆ କହିଲେ । କହିଲେ—ଏ ସମ୍ବନ୍ଧରେ ମୁଁ ବାପାଙ୍କ ସହିତ ଟିକିଏ ପରାମର୍ଶ କରେ। କାଲି ତମକୁ ସବୁ କଥା ଖୋଲାଖୋଲି ଭାବରେ କହିବି ।

ସୁଷମା ଦେବୀ ଆଉ କିଛି କହିଲେ ନାହିଁ । ଆଖି ଯୋଡିକ ଅର୍ଦ୍ଧନିମୀଳିତ କରି ଯେପରି ବିଶେଷ କୌଣସି ଚିନ୍ତାରେ ବୁଡି ଯାଇଥିଲେ । ସତ୍ୟବ୍ରତ ମହାପାତ୍ର ସୁଷମା ଦେବୀଙ୍କୁ ବିଶ୍ଳେଷଣ କରି ପାରୁ ନ ଥିଲେ । ତେବେ ଆଶାର କଥା ଏତିକି ଯେ, ନିରଞ୍ଜନ ସହିତ ସୁଷମାର ବିବାହ ସମ୍ପର୍କରେ ଆଲୋଚନା ହୋଇଥିଲା । ଗୋଟିଏ ହତ୍ୟାକାରୀକୁ ଖୋଜି ବାହାର କରିବା ପାଇଁ ଏହି ସାମାନ୍ୟ ସୂତ୍ରଟି କ'ଣ କୌଣସି ସହାୟକ ହୋଇପାରିବ !

ଦୁଇଜଣଙ୍କର ନୀରବତା ଭଙ୍ଗ କଲେ ଡକ୍ଟର ଦୀନନାଥ ଗନ୍ତାଏତ ।

ଶୁଣିଛୁ ସୁଷମା, ଗୋଟାଏ ଦୁଃସମ୍ବାଦ ।

ଦୀନନାଥ ଗନ୍ତାଏତ ଅଟକି ଗଲେ । ସତ୍ୟବ୍ରତ ମହାପାତ୍ର ଉପରକୁ ମୁହଁ ଟେକି ଦେଖିଲେ, ଡକ୍ଟର ଗନ୍ତାଏତ ହଠାତ୍ ଯେପରି ସତ୍ୟବ୍ରତକୁ ସେଠାରେ ଦେଖି ସ୍ତବ୍ଧ ହୋଇ ଯାଇଛନ୍ତି । ସତ୍ୟବ୍ରତଙ୍କ ଆଖି ଦୁଇଟି ଡକ୍ଟର ଗନ୍ତାଏତଙ୍କ ଆଖି ସହିତ ମିଶିଯିବା କ୍ଷଣି ସେ ଶିହରି ଉଠିଲେ । ପ୍ରୌଢ଼ ଦୀନନାଥ ଗନ୍ତାଏତ। ବୟସ ପଞ୍ଚାବନ ଷାଠିଏରୁ ଅଳ୍ପ ହେବ ନାହିଁ । ମୁଣ୍ଡର ବାଳ ପାଚି ଗଲାଣି! କିନ୍ତୁ ମୁହଁର ଦୀପ୍ତି, ଆଉ ଆଖିର ତେଜ ଏତେ ତୀବ୍ର ଯେ, ସେ ବେଶୀ କ୍ଷଣ ତାଙ୍କ ମୁହଁକୁ ଚାହିଁ ପାରିଲେ ନାହିଁ । ସୁଷମା ଦୁହିଁଙ୍କର ପରିଚୟ କରାଇଦେଲା । ଡକ୍ଟର ଗନ୍ତାଏତ ଆସନ ଗ୍ରହଣ କରୁ କରୁ କହିଲେ ମୁଁ ଆପଣଙ୍କ ନାମ ଶୁଣିଛି ମିଃ ମହାପାତ୍ର । ଆପଣ ଜଣେ ଖ୍ୟାତନାମା କ୍ରିମିନଲୋଜିଷ୍ଟ, ବୋଧହୁଏ ମୋର ସ୍ମରଣଶକ୍ତି ଅଦ୍ୟାବଧି ସତେଜ ଅଛି ।

ଆପଣଙ୍କ ଅନୁମାନ ସତ୍ୟ । ମୁଁ ଏଠାକୁ ସୁଷମା ଦେବୀଙ୍କ ନିକଟକୁ ଗୋଟାଏ ଜରୁରୀ କାର୍ଯ୍ୟରେ ଆସିଥିଲି । ଆପଣଙ୍କ ସହିତ ପରିଚିତ ହୋଇ ନିଜକୁ ଭାଗ୍ୟବାନ ମନେ କରୁଚି । ସତ୍ୟବ୍ରତ ମହାପାତ୍ର ସହଜ ଓ ଶାନ୍ତ ସ୍ୱରରେ କହିଲେ ।

ଡକ୍ଟର ଗନ୍ତାଏତ ହୋ ହୋ ହୋଇ ହସିଉଠିଲେ ।

ଗୋଟିଏ କଥା ମିଃ ମହାପାତ୍ର । ମୁଁ ଏହି ଆଧୁନିକ ଫମ୍ପା ସୌଜନ୍ୟର ପକ୍ଷପାତୀ ମୋଟେ ନୁହେଁ । ତଥାପି ଆମେ ସେ କାଳର ଲୋକ ହେଲେ ମଧ୍ୟ ଆମକୁ ଏ କାଳ ସହିତ ଖାପ ଖୁଆଇ ଚଳିବାକୁ ହେଉଛି । ଛାଡ଼ନ୍ତୁ, ସୁଷମା ସହିତ ଆପଣଙ୍କର ପରାମର୍ଶ ଶେଷ ହୋଇଛି ?

ଆପାତତଃ ଶେଷ ହୋଇଛି । ପୁଣି ଦରକାର ହେଲେ ଆସିପାରେ ।

ନିଶ୍ଚୟ, ନିଶ୍ଚୟ ଆସିବେ । ଆପଣଙ୍କୁ ଦେଶର ପ୍ରତ୍ୟେକ ନାଗରିକ ସାହାଯ୍ୟ ଓ ସହଯୋଗ କରିବାର କଥା । ଆପଣ ଚାହା ଖାଆନ୍ତି ନିଶ୍ଚୟ ! ଆରେ ସୁଷମା ଭଦ୍ରଲୋକଙ୍କୁ ଚାହା କପେ ବି ଦେଇ ନାହୁଁ । ତମେ ସବୁ କିଛି ଶିଖିଲ ନାହିଁ । ଯା, ଯା ଚା' ଦୁଇକପ୍ ବରାଦ କରି ଆସିବୁ । ସେତେବେଳଯାଏ ମୁଁ ମିଃ ମହାପାତ୍ରଙ୍କ ସହିତ ବସିବସି ଗଳ୍ପ କରୁଚି ।

ସୁଷମା ଉଠିଗଲା ।

ଡକ୍ଟର ଗନ୍ତାଏତ ଆରମ୍ଭ କଲେ : ବୁଝିଲେ ମିଃ ମହାପାତ୍ର, ଆଜିକାଲିର ଏହି ପିଲାମାନଙ୍କୁ ନେଇ ଚଳିବା ସହଜ କଥା ନୁହେଁ । ମୁଁ ଏଇ ସୁଷମା କଥା କହୁଚି । ଅବଶ୍ୟ ପିଲାଟିଦିନରୁ ସେ ତା'ର ମା'ଙ୍କୁ ହରେଇଚି । ତା'ବୋଲି ସଂସାରରେ କୌଣସି ଦାୟିତ୍ୱ ନ ନେଲେ ଚଳିବ କିମିତି ! ମୁଁ ଯେତେ ବୁଝେଇଲେ ବି ସେ କିଛି ବୁଝିବାକୁ ଚାହେଁ ନାହିଁ । ଆମ ଅମଳରେ ୟା'ରି ବୟସର ଝିଅମାନେ ଗୋଟାଏ ଗୋଟାଏ ଘର ସମ୍ଭାଳିବାକୁ ସମର୍ଥ ହୋଇପାରୁଥିଲେ ।

ସେଇଟା ସତ ଯେ ! ଆଜି ମଧ୍ୟ ସୁଷମା ଦେବୀଙ୍କ ବୟସର ଝିଅମାନେ ଅନେକ କ୍ଷେତ୍ରରେ ବଡ ବଡ ଦାୟିତ୍ୱ ବହନ କରି ଶୃଙ୍ଖଳିତ ଭାବରେ ସବୁ ପରିଚାଳନା କରୁଛନ୍ତି । କିନ୍ତୁ ସୁଷମା ଦେବୀଙ୍କ କଥା ସ୍ୱତନ୍ତ୍ର । ଯେଉଁଭଳି ପରିବେଶ ଭିତରେ ତାଙ୍କର ଜୀବନ ଆରମ୍ଭ ହେଲା, ସେଥିରେ ସେ କେବଳ ବିଳାସିତା ଶିଖିଲେ, ତେଣୁ...

ସତ୍ୟବ୍ରତ ମହାପାତ୍ରଙ୍କ କଥା ଅସମାପ୍ତ ରହିଗଲା । ତେଣୁ ସୁଷମା ଦେବୀ ଦୁଇ ହାତରେ ଦୁଇକପ୍ ଚା'ଧରି ଆସୁଥିଲେ । ଚା' କପ୍ ଦୁଇଟା ଥରି ଉଠୁଥିଲା । ଯେପରି ଆଉ ଟିକିଏ ଅସାବଧାନ ହେଲେ ଡିସ୍ ଉପରୁ କପ୍ ଦୁଇଟି ଅଲଗା ହୋଇଯିବ । ସତ୍ୟବ୍ରତ ମହାପାତ୍ର ଉଠିପଡ଼ି ଡିସ୍ ଉପରୁ କପ୍ ଦୁଇଟି ଦୁଇ ହାତରେ ଧରି ସମ୍ଭାଳି ନେଲେ ।

ଡକ୍ଟର ଗନ୍ତାଏତ ଟିକିଏ ବିରକ୍ତିମିଶା ସ୍ୱରରେ କହିଲେ, ଦୁଇଟା କପ୍‌ଧରି ଦୁଇ ହାତରେ ଆଣିବା ଭଳି ଯୋଗ୍ୟତା ବି ଏମାନଙ୍କର ନାହିଁ । କିନ୍ତୁ ଆମ ଜୀବନ ଯେ କି କଠୋର ପରିଶ୍ରମ ଭିତରେ ଗଢ଼ି ଉଠିଥିଲା, ଦେଶ ମାଟି ଛାଡ଼ି ସୁଦୂର ଆସାମ ଚା' ବଗିଚାରେ...

ଡକ୍ଟର ଗନ୍ତାଏତ ମଧ୍ୟ ହଠାତ୍ ଚୁପ୍ ରହିଗଲେ । ସତ୍ୟବ୍ରତ ମହାପାତ୍ର ଚା' କପ୍‌ରେ ଥରେ ମୁହଁ ଲଗାଇ ପଚାରିଲେ: କୁହନ୍ତୁ, ଅଟକିଲେ କାହିଁକି!

: ନା, ଥାଉ ସେ ସବୁ ଅତୀତର କଥା । ଦେଖୁ ନାହାନ୍ତି, ମା ମୋର କିପରି ମୁହଁ ଶୁଖେଇ ବସିପଡ଼ିଲାଣି । ସେ ଥରେ ହାତଘଡ଼ିକୁ ଚାହିଁ କହିଲେ, ସମୟ ଢେର ହୋଇଗଲାଣି ମି: ମହାପାତ୍ର । ମୋର କ୍ଲବକୁ ଯିବାର ବେଳ ହୋଇଗଲାଣି । ଆପଣଙ୍କ ସହିତ ପରିଚୟ ହେଲା ଯେତେବେଳେ, ମଝିରେ ମଝିରେ ଆସିବେ । ଆପଣ ବସି ସୁଷମା ସହିତ ଗଳ୍ପ କରନ୍ତୁ, ମୁଁ ଉଠିଲି ।

ସଙ୍ଗେସଙ୍ଗେ ଡକ୍ଟର ଗନ୍ତାଏତ ଉଠି ପଡୁଥିଲେ । ସତ୍ୟବ୍ରତ ପଚାରିଲେ ପଦେକଥା ଡକ୍ଟର ଗନ୍ତାୟତ ! ଆପଣ ଯେଉଁ ଦୁଃସମ୍ବାଦ ବହନ କରି ସୁଷମା ଦେବୀଙ୍କୁ ଶୁଣାଇବାକୁ ଆସିଥିଲେ, କାହିଁ କିଛି କହିଲେ ନାହିଁ ତ !

ମୁହୂର୍ତ୍ତକ ପାଇଁ ଡକ୍ଟର ଗନ୍ତାଏତଙ୍କ ଆଖିଦୁଇଟା ଆଉଥରେ ଜଳି ଉଠିଲା । ପରମୁହୂର୍ତ୍ତରେ ସେ ନିଜକୁ ଅତି ସହଜ କରିବାକୁ ଚେଷ୍ଟା କରି ହସି ହସି କହିଲେ: ସେ କିଛି ନୁହେଁ ମିଃ ମହାପାତ୍ର । ଆମ ପାରିବାରିକ ଜୀବନର ଗୋଟାଏ କ୍ଷୁଦ୍ର ଘଟଣା । ଯେଉଁଟା ସମ୍ବନ୍ଧରେ ମୁଁ କିଛି ସମୟ ଆଗରୁ ଖଣ୍ଡେ ଚିଠି ପାଇଚି । ସେଇଟା ଆପଣଙ୍କୁ ଶୁଣାଇବାର ନୁହେଁ, ସୁଷମାକୁ ପରେ ଶୁଣାଇଲେ ମଧ୍ୟ ଚଳିବ । ଡକ୍ଟର ଗନ୍ତାଏତ ସେଠାରୁ ବାହାରିଗଲେ ।

ସୁଷମା ନୀରବରେ ବସିଥିଲା । ସତ୍ୟବ୍ରତ ଡକ୍ଟର ଗନ୍ତାଏତଙ୍କ ଯିବା ପଥକୁ ଚାହିଁଥିଲେ । ଭାବୁଥିଲେ ଏମାନଙ୍କ କ୍ଲବ ଜୀବନ କଥା । ଆଉ କିଛି ସମୟ ପରେ ହୁଏତ ସୁଷମା କ୍ଲବକୁ ବାହାରି ଯିବ । ଘରେ ରହିବେ କେବଳ ଚାକର ଚାକରାଣୀ କେତେଜଣ । କ'ଣ ଅଛି ଏମାନଙ୍କ ଜୀବନର ସାର୍ଥକତା ! ଏହି ଉଗ୍ର ଆଧୁନିକତା ଧୀରେଧୀରେ ମଣିଷ ମନର ସମସ୍ତ ଭାବଧାରା କାଢ଼ିନେଇ, ମଣିଷକୁ ଫମ୍ପା କରିଦେବ, ପଙ୍ଗୁ କରିଦେବ ।

ମିଃ ମହାପାତ୍ର !

ସୁଷମା ଡାକରେ ସତ୍ୟବ୍ରତଙ୍କ ଭାବନା ଥମିଗଲା । ସେ ସୁଷମା ମୁହଁକୁ ଚାହିଁଲେ ।

ହଠାତ୍ ସୁଷମାର ଏପରି ପରିବର୍ତ୍ତନର କାରଣ ସତ୍ୟବ୍ରତ କିଛି ଜାଣି ପାରୁ ନ ଥିଲେ । ତଥାପି ସେ କହିଲେ ଆପଣ ଯେଉଁ ସତକଥା ଗୁଡ଼ିକ ଗୋପନ କରିଗଲେ, ସେଇ ଗୁଡ଼ିକ ମୁଁ ଜାଣି ନ ପାରିଲେ ନିରଞ୍ଜନର ହତ୍ୟାକାରୀକୁ ଖୋଜି ବାହାର କରିବା ସମ୍ଭବ ହେବ ନାହିଁ ।

ସୁଷମା ଯେପରି ଟିକିଏ ଅନ୍ୟମନସ୍କ ହୋଇଉଠିଥିଲା । ସତ୍ୟବ୍ରତଙ୍କ କଥା ଶୁଣି ଶୁଖିଲା ହସିଟିକେ ହସି ଅବଶ ସ୍ୱରରେ କହିଲା, : ଆପଣ ମୋତେ ଭୁଲ୍ ବୁଝିଲେ ମିଃ ମହାପାତ୍ର । ଯା' ହେଉ, ଆପଣଙ୍କ ମନରେ ବିଶ୍ୱାସ ସ୍ଥାପନ କରେଇଲା ଭଳି କୌଣସି ଶକ୍ତି ମୋର ନାହିଁ । ଆଚ୍ଛା, ଆପଣ ଆଜି ଆମ ନାଇଟ୍ କ୍ଲବକୁ ଆସିପାରିବେ ନାହିଁ ?

ସତ୍ୟବ୍ରତ ମହାପାତ୍ର ଉତ୍ସାହିତ ହୋଇ କହିଲେ : ନ ପାରିବି କାହିଁକି? କିନ୍ତୁ ସେଠାରେ କିଛି ଲାଭ ହେବ ବୋଲି ଆପଣ ଭାବୁଚନ୍ତି !!

: ଆପଣ ଆସନ୍ତୁ । ଯେଉଁମାନେ ନିରଞ୍ଜନ ବାବୁ ଓ ମୋ ବିବାହ ଆଲୋଚନା ବେଳେ ସେଠାରେ ଉପସ୍ଥିତ ଥିଲେ, ମୁଁ ସେମାନଙ୍କୁ ଚିହ୍ନେଇଦେବି । ଆପଣଙ୍କ ମନରେ କୌଣସି ଅବିଶ୍ୱାସ ମୋ ପ୍ରତି ଜିଇ ରହୁ, ଏହା ମୁଁ ଚାହେଁ ନାହିଁ ।

ସୁଷମା ସଙ୍ଗେସଙ୍ଗେ ଉଠିଲା । ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା । ସତ୍ୟବ୍ରତ ତା'ର ଯିବା ପଥକୁ ଚାହିଁ ଭାବୁଥିଲେ— ନାଇଟ୍ କ୍ଲବ...

ନାଇଟ୍ କ୍ଲବ । ସୁଇଂଡୋର ଠେଲି ଭିତରକୁ ପଶିଲେ ସତ୍ୟବ୍ରତ ମହାପାତ୍ର । ଧୀର ନୀଳ ଆଲୋକର ବନ୍ୟା ଲହଡ଼ି ମାରୁଚି । ରଙ୍ଗବେରଙ୍ଗ ପୋଷାକରେ ଅଙ୍ଗ ମଣ୍ଡନ କରି କେତେ ଯୁବକ ଯୁବତୀ ପ୍ରଜାପତି ପରି ଉଡ଼ିବୁଲୁଚନ୍ତି । ଗୋଟାଏ ହାଲ୍କା ମଧୁର ଗନ୍ଧ ମନରେ କିପରି ମାଦକତା ସୃଷ୍ଟି କରୁଚି । ସତ୍ୟବ୍ରତ ମହାପାତ୍ର ଚାରିଆଡ଼କୁ ଚାହିଁଚାହିଁ ଭିତରକୁ ପ୍ରବେଶ କରୁଛନ୍ତି । ଗୋଟିଏ ବୟ ସଲାମ ବଜେଇ ସତ୍ୟବ୍ରତଙ୍କୁ ଚାହିଁଲା । ସତ୍ୟବ୍ରତ ମ୍ୟାନେଜରଙ୍କ ନିକଟକୁ ଯିବା ପାଇଁ କହିଲେ ।

ମ୍ୟାନେଜର ଆଗମନର ଉଦ୍ଦେଶ୍ୟ ପଚାରିଲେ ।

ସୁଷମା ଦେବୀଙ୍କ ସହିତ ମୋର ପ୍ରୟୋଜନ । ସତ୍ୟବ୍ରତ କହିଲେ ।

କେବିନ ନମ୍ବର ୧୭ ରେ ସେ ଅଛନ୍ତି । ମ୍ୟାନେଜର ବୟକୁ କହିଲେ ସତ୍ୟବ୍ରତ ମହାପାତ୍ରଙ୍କୁ ସେଠାକୁ ନେଇ ଯିବା ପାଇଁ ।

ଆଉ କିଛି କଥାବାର୍ତ୍ତା ନାହିଁ । ବୟ ଆଗେଆଗେ ଓ ସତ୍ୟବ୍ରତ ମହାପାତ୍ର ପଛେପଛେ ଚାଲିଥିଲେ । ସେଇ ବିରାଟ ହଲ ଘରଟାକୁ ଅତିକ୍ରମ କରି ସାରିଲେ, ପୂର୍ବ କୋଣର ଉପରକୁ ଉଠିବା ପାଇଁ ଗୋଟାଏ ସିଡ଼ି ଅଛି । ଉପର ମହଲାଟାରେ କେବିନ ଗୁଡ଼ିକ । ସତ୍ୟବ୍ରତ ମହାପାତ୍ର ବୟକୁ ଚାଲିଯିବା ପାଇଁ କହିଲେ ଏବଂ ୧୭ ନମ୍ବର କେବିନ ନିଜେ ସେ ଖୋଜି ନେବାକୁ ଆଉ ଅସୁବିଧା ହେବ ନାହିଁ ବୋଲି ଜଣାଇଲେ । ବୟଟି କିନ୍ତୁ କିପରି ବେଖାପ ଦୃଷ୍ଟିରେ ସତ୍ୟବ୍ରତଙ୍କ ଆଡ଼େ ଅନାଇଲା ।

ସତ୍ୟବ୍ରତ ପକେଟରୁ ପାଞ୍ଚଟଙ୍କାର ଖଣ୍ଡିଏ ନୋଟ ବାହାର କରି ବୟ ହାତକୁ ବଢ଼ାଇ ଦେଇ କହିଲେ, ଧନ୍ୟବାଦ । ମୋ ପାଇଁ ଯଥେଷ୍ଟ ପରିଶ୍ରମ କଲଣି ।

ବୟଟି ପାଞ୍ଚଟଙ୍କାର ନୋଟ ଖଣ୍ଡିକ ଦେଖି ଆତ୍ମସମ୍ବରଣ କରିପାରିଲା ନାହିଁ । ସେଇ ମୁହୂର୍ତ୍ତରେ ହାତ ବଢ଼େଇ ତାହା ଗ୍ରହଣ କଲା ଓ ବିନା ବାକ୍ୟବ୍ୟୟରେ ସତ୍ୟବ୍ରତ ମହାପାତ୍ରଙ୍କୁ ସେଠାରେ ଛାଡ଼ିଦେଇ ପୁଣି ତଳକୁ ଓହ୍ଲେଇଗଲା ।

ସତ୍ୟବ୍ରତ ମହାପାତ୍ର କେବିନଗୁଡ଼ିକ ଅତିକ୍ରମ କରିଗଲା ବେଳକୁ ହାସ୍ୟରୋଳ ଶୁଣୁଥିଲେ । କେଉଁଠି କେଉଁଠି ଉଚ୍ଚସ୍ୱରରେ କେହି କେହି କଥାବାର୍ତ୍ତା ହେବାର ତାଙ୍କ ଶ୍ରୁତିଗୋଚର ହେଉଥିଲା । କେବିନ ଗୁଡ଼ିକ ଏପରି ଭାବରେ ତିଆରି ହୋଇଥିଲା, ଭିତରେ କିଏ କ'ଣ କରୁଚି ନ କରୁଚି ବାହାରୁ ଥାଇ ସବୁ ଦେଖି ହେଉଥିଲା । ହୁଏତ କେବିନ ଭିତରେ ଯେପରି କୌଣସି ଅଶୋଭନୀୟ ଘଟଣା ନ ଘଟୁ ସେଥିପାଇଁ କର୍ତ୍ତୃପକ୍ଷ ପ୍ରତ୍ୟେକ କେବିନର କିଛି ଅଂଶରେ କାଚ ଲଗେଇ ଦେଇଥିଲେ ।

ସତ୍ୟବ୍ରତ ମହାପାତ୍ର ଯିବାବେଳେ ପ୍ରତ୍ୟେକ କେବିନ ଆଡ଼େ ଆଖି ବୁଲେଇ ଦେଇ ଯାଉଥିଲେ । କେବଳ ଯୁବକ ଯୁବତୀମାନଙ୍କ ଭିଡ଼ । ପ୍ରତି କେବିନ୍‌ରେ ଦୁଇଜଣ କରି ବସିଛନ୍ତି, ଗୋଟିଏ ଯୁବକ ଗୋଟିଏ ଯୁବତୀ । କେଉଁ କେଉଁ କେବିନରେ ତିନିଚାରିଜଣ ଏକତ୍ର ବସିଥିବାର ମଧ୍ୟ ଦେଖାଯାଉଚି । ଖାଲି ଗଳ୍ପ ହସ୍ୟରୋଳ ଆଉ ଟେବୁଲ ଉପରେ ବିଭିନ୍ନ ଧରଣର ପାନୀୟ । କେଉଁଠି କେଉଁଠି ଖେଳ ମଧ୍ୟ ଚାଲିଚି । ସତ୍ୟବ୍ରତ ମହାପାତ୍ର ଗୋଟିକ ପରେ ଗୋଟିଏ କେବିନ ଅତିକ୍ରମ କରି ଚାଲିଥିଲେ । ୧୭ ନମ୍ବର କେବିନ ପାଖରେ ତାଙ୍କ ଗୋଡ଼ ଅଟକି ଗଲା । ସେ ସ୍ତବ୍ଧ ହୋଇ ଦେଖିଲେ, ସେହି କେବିନରେ ରାୟ ବାହାଦୂରଙ୍କ ଦ୍ୱିତୀୟ ପୁତ୍ର ସୁରଞ୍ଜନ । ସୁଷମା ସୁରଞ୍ଜନ ଉପରକୁ ଏକପ୍ରକାର ଆଉଜି କରି ବସିଚି । ସୁରଞ୍ଜନର ହାତଯୋଡ଼ିକ ସୁଷମାର କଟି ବେଷ୍ଟନ କରିଚି । ଦୁହେଁ ଦୁହିଁଙ୍କୁ କରୁଣ ଆଖିରେ ଚାହିଁ ରହିଛନ୍ତି ।

ସତ୍ୟବ୍ରତ ମହାପାତ୍ରଙ୍କ ପାଦ ଯୋଡ଼ିକ ଅଟକିଗଲା । ସେ ଏପରି ପରିଣତି କଳ୍ପନା ସୁଦ୍ଧା କରିପାରି ନଥିଲେ । ସୁଷମା ଆଉ ସୁରଞ୍ଜନ । ଗତ କାଲି ରାତ୍ରିରେ ନିରଞ୍ଜନର ମୃତ୍ୟୁ ହୋଇଚି । ସୁରଞ୍ଜନ ନିରଞ୍ଜନର ଭାଇ । ଦିନକ ଭିତରେ ସମସ୍ତ ଶୋକ ଭୁଲି, ସେ ଆଶ୍ରୟ ନେଇଚି ସୁଷମାର ଭୂଜ ବଲ୍ଲରୀ ତଳେ । ସତ୍ୟବ୍ରତଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ସୁଷମା ବା କିପରି ଏହା କରି ପାରିଲା । ସେ ଯଦି ନିରଞ୍ଜନକୁ ଭଲ ପାଉଥିଲା, ତା' ପ୍ରେମିକର ମୃତ୍ୟୁର ଦିନଟିଏ ନ ବିତୁଣୁ ସେ ଆଉ ଜଣେ ପ୍ରେମିକ ନିକଟରେ ଆତ୍ମସମର୍ପଣ କଲା । ଏହା କିପରି କଥା । ସତ୍ୟବ୍ରତ ମହାପାତ୍ର ଆଉଥରେ ଚାହିଁଲେ । ଦୁହେଁ ଖୁବ୍ ଅସଂଯତ ଦେଖା ଯାଉଥିଲେ । ଦୁହିଁଙ୍କ

ଅଧର ଧୀରେଧୀରେ ଲମ୍ବି ଲମ୍ବି ଆସୁଥିଲା । ସତ୍ୟବ୍ରତ ଆଉ ସେଠାରେ ଠିଆ ହୋଇ ପାରିଲେ ନାହିଁ । ସେହି ଗହଳି ଭିତରେ ଗୋଟିଏ କୋଣକୁ ଖଣ୍ଡିଏ ଚେଆର ଦଖଲ କରି ବସିଲେ ।

ବୟ ଆସି ଟେବୁଲ ପାଖରେ ଠିଆ ହେଲା ।

ବୟଟି ଥରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲା । ଆଉ ମୁହୂର୍ତ୍ତେ ଅପେକ୍ଷା କଲା । ତା'ପରେ ପୁଣି ପଛକୁ ଚାହିଁଚାହିଁ ଅଗେଇଗଲା । ସତ୍ୟବ୍ରତ ମହାପାତ୍ର ଯେପରି ଏକ ସମସ୍ୟାରେ ପଡ଼ିଯାଇଥିଲେ । ସୁଷମା ନିଜେ ତାଙ୍କୁ ନାଇଟ୍‌କ୍ଲବକୁ ଡାକିଚି, ଅଥଚ ଆସିବା ଜାଣି ମଧ... ଆଉ କ'ଣ ସେ ସତ୍ୟବ୍ରତଙ୍କ ଆସିବା କଥା ଭୁଲି ଯାଇଚି ନା ଜାଣିଜାଣି ସତ୍ୟବ୍ରତକୁ ଦେଖାଇବା ପାଇଁ ଏପରି ଅଭିନୟ କରୁଚି !

ବୟ ଆଣି ଗୋଟାଏ କୋକାକୋଲା ବୋତଲ ଟେବୁଲ ଉପରେ ଥୋଇ ଦେଇଗଲା । ସତ୍ୟବ୍ରତ ଶବ୍ଦ ଅନୁସରଣ କରି ହାତ ବଢ଼ାଇଲେ । ସେ କାହାର ଶୀତଳ ସ୍ପର୍ଶ ପାଇ ଯେପରି ଶିହରି ଉଠିଲେ । ଆଖି ଖୋଲି ଚାହିଁଲେ ତାଙ୍କରି ସାମନା ଚେୟାର ଉପରେ ବସିଚି ଗୋଟାଏ ସୁନ୍ଦରୀ ତରୁଣୀ । କୋକାକୋଲା ଶିଶିଟି ଦୁଇ ହାତରେ ଧରି ହସୁଚି ଖିଲି ଖିଲି ହୋଇ । ସତ୍ୟବ୍ରତ ହଠାତ୍ ତା' ଆଡ଼େ ଚାହିଁ ଗମ୍ଭୀର ହୋଇଗଲେ, ପଚାରିଲେ, ଆପଣ କ'ଣ ଚାହାନ୍ତି?

ମୁଁ ! ତରୁଣୀଟି ପୁଣି ହସି ଉଠିଲା । କହିଲା, ମୋ ନାଁ ଲିଲି । ମୁଁ କିଛି ଚାହେଁନା, କେବଳ ଆପଣମାନଙ୍କ ପରି ରସିକ ଲୋକମାନଙ୍କ ସହିତ ଖେଳିବାକୁ ମୋତେ ଭଲ ଲାଗେ ।

ସତ୍ୟବ୍ରତ ମହାପାତ୍ର ଯେପରି ବିଚଳିତ ହୋଇପଡ଼ିଲେ । କ'ଣ ଏ କହୁଚି ? ମୋ ପରି ରସିକ ଲୋକଙ୍କ ସହିତ ଖେଳିବାକୁ ତାକୁ ଭଲଲାଗେ । ସେ ତରୁଣୀଟି ଆଡ଼େ ଜ୍ୱଳନ୍ତ ଦୃଷ୍ଟିରେ ଚାହିଁ ଦେଖିଲେ ତରୁଣୀଟି କୋକାକୋଲା ଶିଶିଟିରୁ ନିର୍ବିକାର ଚିତ୍ତରେ ଅଧେ ଖାଲି କରିସାରିଲାଣି ।

ସତ୍ୟବ୍ରତ ଆଉ କିଛି ନ କହି ଉଠିବାକୁ ଚେଷ୍ଟା କଲେ । ଲିଲି କିନ୍ତୁ ହାତ ଧରି ଚେୟାର ଉପରେ ଆଉଥରେ ବସେଇଲା, ନିର୍ଲଜ୍ଜଙ୍କ ପରି କହିଲା: ସୁନ୍ଦର ପଦାର୍ଥ ଆପଣଙ୍କ ଆଖିକୁ ଭଲ ଦିଶେ ନାହିଁ? ଲିଲି ତା'ର ଭ୍ୟାନିଟ୍ ବ୍ୟାଗ ଖୋଲିଲା ଏବଂ ଲିପ୍‌ଷ୍ଟିକଟା ବାହାର କରି ଗୋଟାଏ ଛୋଟ ଆଇନା ସାହାଯ୍ୟାରେ ଆଉଥରେ ଅଧର ରଞ୍ଜିତ କଲା ।

ସେହି ଅବସରରେ ସତ୍ୟବ୍ରତ ଲିଲିର ଭ୍ୟାନିଟି ବ୍ୟାଗ ଭିତରକୁ ଚାହିଁ ଦେଖିଲେ, କେତେଗୁଡ଼ିଏ ଛୋଟ ଛୋଟ ଫଟୋଗ୍ରାଫ୍ ସେହି ଭ୍ୟାନିଟି ଭିତରେ ରହିଛି ଏବଂ ସେହି ଅଳ୍ପ ସମୟ ଭିତରେ ଯେତିକି ସମୟ ସେ ଚାହିଁବାକୁ ଅବକାଶ

ପାଇଥିଲେ, ମନେହେଲା ନିରଞ୍ଜନର ଗୋଟାଏ ଫଟୋ ମଧ୍ୟ ଲିଲିର ଭ୍ୟାନିଟ୍ ବ୍ୟାଗରେ ରହିଚି । ଏଥର ସେ ଭଲ ଭାବରେ ଲିଲି ମୁହଁକୁ ଚାହିଁଲେ।

ଲିଲି ଭ୍ୟାନିଟି ବନ୍ଦ କରି ହସ ହସ ମୁହଁରେ ସତ୍ୟବ୍ରତ ଆଡ଼େ ଚାହିଁ କହିଲା ଉଠନ୍ତୁ ।

ସତ୍ୟବ୍ରତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ  କେଉଁଠାକୁ !

ଲିଲି ହସିଲା, ଖାଲି ହସିଲା । ଘରେ ଆଲୋକଗୁଡ଼ିକ ଧୀରେଧୀରେ ନିଷ୍ପ୍ରଭ ହୋଇ ଆସୁଥିଲା । ଅର୍କେଷ୍ଟ୍ରା ଶବ୍ଦତରଙ୍ଗ ସମସ୍ତ ହଲ ଘରଟା ଭିତରେ ସ୍ପଷ୍ଟରୁ ସ୍ପଷ୍ଟତର ହେଉଥିଲା । ଲିଲି ହସ ଥମେଇ କହିଲା  ବଲ୍‌ଡାନସର ସମୟ ହୋଇଆସିଲାଣି ।

ସତ୍ୟବ୍ରତ ପଛକୁ ଚାହିଁ ଦେଖିଲେ : କେହି କେହି ଏହା ଭିତରେ ନୃତ୍ୟ ଆରମ୍ଭ କରିଦେଲେଣି । ଉପର କେବିନରେ ଯେଉଁମାନେ ଥିଲେ, ସେମାନେ ଗୋଟିକ ପରେ ଗୋଟିଏ ତଳକୁ ଓହ୍ଲେଇ ଆସୁଛନ୍ତି । ସତ୍ୟବ୍ରତ କିଛି ସମୟ ସେଇଆଡ଼େ ଚାହିଁ ରହିଲେ । ସାମ୍‌ନାରେ ଲିଲି, ତା' ଭ୍ୟାନିଟି ଭିତରେ ନିରଞ୍ଜନର ଫଟୋ ।

ଲିଲି ହାତର ସ୍ପର୍ଶରେ ସେ ଫେରିଚାହିଁଲେ । ଲିଲି ଠିଆ ହୋଇଚି । ପାଦ ଯୋଡ଼ିକ ହୁଏତ ବାଦ୍ୟର ତାଳେତାଳେ ଛନ୍ଦ ସୃଷ୍ଟି କରିବା ପାଇଁ ବ୍ୟାକୁଳ ହୋଇ ଉଠିଲାଣି । ସମସ୍ତ ଚେୟାର ଟେବୁଲ ଖାଲି କରି ସମସ୍ତେ ଯାଇ ବଲ୍‌ଡାନସ୍‌ରେ ଯୋଗଦାନ କଲେଣି । ଲିଲି ଆଜି ସାଥୀହରା କାହିଁକି? ସତ୍ୟବ୍ରତ ଭାବୁଥିଲେ ତା'ହେଲେ ନିରଞ୍ଜନର ଅଭାବ କ'ଣ ଲିଲି ଅନୁଭବ କରୁଚି !

କିଛି ପଚାରି ପାରିଲେ ନାହିଁ । ଧୀରେଧୀରେ ଚେଆରରୁ ଉଠିଲେ । ଲିଲି ଗୋଟାଏ ହାତରେ ତାଙ୍କ କଟି ବେଷ୍ଟନ କଲା । ସେ ଗୋଟାଏ ହାତରେ ଲିଲିର କଟି ବେଷ୍ଟନ କଲେ ।

ଅନ୍ୟାନ୍ୟ ଯୁବକ ଯୁବତୀମାନେ ସେତେବେଳକୁ ନୃତ୍ୟରେ ମଜ୍ଜି ଯାଇଥିଲେ । ସତ୍ୟବ୍ରତ ଓ ଲିଲି ଯାଇ ସେମାନଙ୍କ ସହିତ ମିଶିଗଲେ । ନାଚିବା ଭିତରେ ବି ସତ୍ୟବ୍ରତ ଖୋଜୁଥିଲେ ସୁଷମାକୁ ! କିନ୍ତୁ ସେମାନେ ଦୃଷ୍ଟିଗୋଚର ହେଲେ ନାହିଁ । ଲିଲି ସତ୍ୟବ୍ରତଙ୍କୁ ଧୀରେଧୀରେ ଗୋଟାଏ ନିରୋଳାସ୍ଥାନକୁ ଟାଣିନେଇଗଲା । ଯେଉଁଠି କୋଳାହଳ ନ ଥିଲା, ଜନଗହଳି ନ ଥିଲା । ସତ୍ୟବ୍ରତ ମଧ୍ୟ ଇଚ୍ଛା କରି ଟାଣି ହୋଇଯାଇଥିଲେ । ତାଙ୍କ ମନ ଭିତରେ ଲିଲି ଭ୍ୟାନିଟିରେ ନିରଞ୍ଜନ ସମସ୍ୟା ସୃଷ୍ଟି କରିଥିଲା । ଫଟୋଟାକୁ ଥରେ ଭଲ ଭାବରେ ଦେଖି ପାରିଲେ ସେ ନିଶ୍ଚିନ୍ତ ହେବେ ।

ଲିଲି ନୃତ୍ୟ ବନ୍ଦ କରି ସତ୍ୟବ୍ରତଙ୍କ କଟିଦେଶରେ ସେହିପରି ହସ୍ତ ବେଷ୍ଟନ କରି ଦର ନିମୀଳିତ ନୟନରେ ଚାହିଁ ଖାଲି ହସୁଥିଲା ।

ସତ୍ୟବ୍ରତ ଯଦିଓ ଲିଲିର ଏପରି ଆଚରଣ ସହ୍ୟକରି ପାରୁନଥିଲେ, ତଥାପି

ତା ମନରେ ସନ୍ଦେହ ଦୂର କରିବାକୁ ହେବ । ସେଥିପାଇଁ ଲିଲି ସହିତ ପ୍ରଗାଢ଼ ବନ୍ଧୁତ୍ୱର ପ୍ରୟୋଜନ ।

ସତ୍ୟବ୍ରତ ତା' ପଛେପଛେ ଆଗେଇଲେ । ସେତେବେଳକୁ ରାତି ପ୍ରାୟ ଏଗାରଟା ହେବ । ଲିଲି ସତ୍ୟବ୍ରତଙ୍କୁ ନାଇଟ୍ କ୍ଲବରୁ ପଦାକୁ ବାହାର କରି ଆଣିଲା । ସତ୍ୟବ୍ରତ ଓ ଲିଲି ଟ୍ୟାକ୍ସିରେ ବସିଲେ । ଟ୍ୟାକ୍ସି ଆଗେଇଲା । ଲିଲି ତା'ର ସମସ୍ତ ଦେହର ଭାର ସତ୍ୟବ୍ରତଙ୍କ ଉପରେ ନଦିଦେଇ ଯେପରି ନିଶ୍ଚିନ୍ତରେ ଆଖି ବୁଜିଦେଲା ।

ସତ୍ୟବ୍ରତ ସୁଯୋଗ ପାଇଲେ । ସେ ଧୀରେଧୀରେ ତା' ପିଠିରେ ହସ୍ତ ସଞ୍ଚାଳନ କରି ତାକୁ ଆହୁରି ଅବଶ କରି ପକାଇଲେ । ଭ୍ୟାନିଟି ବ୍ୟାଗ୍‌ଟି ଟ୍ୟାକ୍ସିର ସିଟ୍ ଉପରେ ପଡ଼ିଥିଲା । ସତ୍ୟବ୍ରତ ଉଠେଇ ନେଇ ଧୀରେଧୀରେ ଖୋଲିଲେ । ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ତା' ଭିତରେ ନିରଞ୍ଜନର ଖଣ୍ଡିଏ ଛୋଟ ଫଟୋ ତ ରହିଛି, ତା' ଛଡ଼ା ଅନ୍ୟ କେତେଜଣଙ୍କର କେତେଖଣ୍ଡି ଫଟୋ ମଧ୍ୟରେ ସ୍ୱୟଂ ସତ୍ୟବ୍ରତ ମହାପାତ୍ରଙ୍କର ଖଣ୍ଡିଏ ଫଟୋ ରହିଛି । ସବୁଗୁଡ଼ିକ ପୁଣି ଯଥା ସ୍ଥାନରେ ରଖି ବନ୍ଦ କଲେ । ଲିଲି ତାଙ୍କର କୋଳ ଉପରେ ତା'ର ସମସ୍ତ ଦେହଭାର ନଦି ଦେଇ ନିର୍ଜୀବଙ୍କ ପରି ପଡ଼ିଥିଲା । ଟ୍ୟାକ୍ସି ଆଗଉଥିଲା । ସତ୍ୟବ୍ରତ ମହାପାତ୍ର ଚିନ୍ତା କରୁଥିଲେ   କିଏ ଏହି ରହସ୍ୟମୟୀ ଲିଲି ?

ସତ୍ୟବ୍ରତ ଧୀରେଧୀରେ ଡାକିଲେ   ଲିଲି, ଲିଲି !

ଲିଲି ଯେପରି ଟିକିଏ ସଚେତନ ହୋଇଉଠିଲା ।

ତମେ କେଉଁଠାକୁ ଯିବ ? ସତ୍ୟବ୍ରତ ପଚାରିଲେ ।

ଷ୍ଟାର କ୍ଲବ । ଲିଲି ଜଡ଼ିତ କଣ୍ଠରେ କହିଲା ।

ଟ୍ୟାକ୍ସି 'ଷ୍ଟାର କ୍ଲବ' ଦୁଆରେ ଭିଡ଼ିଲା ।

ସେଇ ମୁଖ, ସେଇ ଆଖି, ସେଇ ଚାହାଣି । ବେଶ ପରିପାଟୀରେ ସେଇ ଜୌଲୁସ । କାଲି ରାତିରେ ସତ୍ୟବ୍ରତ ମହାପାତ୍ର  ତା' ସହିତ 'ବଲଡାନ୍‌ସ' ନାଚିଥିଲେ, ଗୋଟିଏ ଟ୍ୟାକ୍ସିରେ ବସି ଦୀର୍ଘ ପଥ ଅତିକ୍ରମ କରିଥିଲେ । ଅଥଚ ଆଜି ସେ ସତ୍ୟବ୍ରତ ମହାପାତ୍ରଙ୍କ ସାମ୍‌ନାରେ ବସି ପଚାରୁଚି, ଆପଣଙ୍କ ନାଁ ସତ୍ୟବ୍ରତ ମହାପାତ୍ର ?

ସତ୍ୟବ୍ରତ ମହାପାତ୍ର ନିଜ ଆଖିକୁ ବିଶ୍ୱାସ କରି ପାରୁ ନ ଥିଲେ । ତାଙ୍କର ଯେପରି ବାକ୍‌ଶକ୍ତି ରୁଦ୍ଧ ହୋଇ ଯାଇଥିଲା । ସେ କେବଳ ଆଗନ୍ତୁକାଟି ଆଡ଼କୁ ଚାହିଁଥିଲେ । ହିତାହିତ ଜ୍ଞାନ ଯେପରି ତାଙ୍କର ଲୋପ ପାଇଥିଲା । ଆଗନ୍ତୁକାଟି ପୁଣି ପ୍ରଶ୍ନ କଲା: ଆପଣଙ୍କ ନାଁ ସତ୍ୟବ୍ରତ ମହାପାତ୍ର ? ଆପଣ ସେହି ବିଖ୍ୟାତ କ୍ରିମିନଲୋଜିଷ୍ଟ ।

ହଁ, ସତ୍ୟବ୍ରତ ମୁହଁ ଖୋଲିଲେ । ଆଉ ଆପଣ ।

ମୋ ନାଁ ଲାଇଲା ସାମୁଏଲ । ମୁଁ ଖୁବ୍ ବିପଦରେ ପଡ଼ିଚି । ମୋତେ ଆପଣ ଟିକେ ସାହାଯ୍ୟ କରିପାରିବେ ? ମୋର କିନ୍ତୁ ଆପଣଙ୍କ ଫିସ୍ ଦେବାପାଇଁ ଟଙ୍କା ନାହିଁ ।

ଲାଇଲା ସାମୁଏଲ କଥା କହିଲା ବେଳେ ସ୍ୱର ତା'ର ଅତ୍ୟନ୍ତ ବିଚଳିତ ମନେ ହେଉଥିଲା । ଏବଂ ସେ ମଝିରେ ମଝିରେ ଆଗକୁ ପଛକୁ ବୁଲି ଅନାଉଥିଲା । ଯେପରି କେହି ତାର ଅନୁସରଣ କରୁଚି ।

ଲାଇଲା ! ସତ୍ୟବ୍ରତଙ୍କ ପ୍ରାଣରେ ଯେପରି ସଂଘାତ ସୃଷ୍ଟି କଲା । କାଲି ରାତ୍ରିର ଲିଲି ଆଜି ଦିନରେ ଲାଇଲା ! ଆଶ୍ଚର୍ଯ୍ୟ ! ନା ସେ କାଲି ରାତିରେ ଯାହାକୁ ଭେଟିଥିଲେ ସେ ଆଉ ଜଣେ ? କିନ୍ତୁ ଦୁହିଁଙ୍କ ଭିତରେ ଏତେ ସାମଞ୍ଜସ୍ୟ କିପରି ସମ୍ଭବ !

ଲାଇଲା ରହିରହି ଯେପରି ଶିହରି ଉଠୁଥିଲା । ସେ ଉତ୍ତର ପ୍ରତୀକ୍ଷାରେ ସତ୍ୟବ୍ରତଙ୍କ ମୁହଁକୁ ଏକଦୃଷ୍ଟିରେ ଚାହିଁରହିଥିଲା ।

ସତ୍ୟବ୍ରତ ନିଜକୁ ଟିକିଏ ସଂଯତ କରିନେଇ ଧୀର ଓ ଗମ୍ଭୀର କଣ୍ଠରେ କହିଲେ ଲାଇଲା ମାଡ଼ାମ୍ ଆପଣ ବର୍ତ୍ତମାନ ଯେଉଁଠି ବସିଚନ୍ତି, ସେଠାରେ କାହାରିକୁ ଭୟ କରିବାର କିଛି କାରଣ ନାହିଁ । ମୋ ଫିସ୍ ପାଇଁ ଆପଣ ଭାବନ୍ତୁ ନାହିଁ । ନିଜେ ଟିକିଏ ପ୍ରକୃତିସ୍ଥ ହୋଇ ମୋତେ ସବୁ କଥା କୁହନ୍ତୁ । ଆପଣ ଚା' ଖାଆନ୍ତି ନିଶ୍ଚୟ ।

ସତ୍ୟବ୍ରତ ମହାପାତ୍ର ତାଙ୍କ ସହକାରୀ ଅଭିମନ୍ୟୁକୁ ଡାକି ଚାକର ହାତରେ ଦୁଇକପ୍ ଚା' ପଠାଇ ଦେବାକୁ କହିଲେ ।

ଲାଇଲା ସାମୁଏଲ ଦେହମନରେ ଯେପରି ଟିକିଏ ଦମ୍ଭ ଧରିଲା । ସେ ତା' ଭ୍ୟାନିଟି ବ୍ୟାଗଟି ସହ ବାମ ହାତଟି ଶାଢ଼ିର ଆବରଣ ତଳୁ ବାହାର କରି ଟେବୁଲ ଉପରେ ରଖିଲା । ସତ୍ୟବ୍ରତ ମହାପାତ୍ର ସେଆଡ଼େ ଥରେ ଦୃଷ୍ଟି ବୁଲାଇ ନେଇ, ଗୋଟିଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ ।

ଅଳ୍ପ ସମୟର ନୀରବତା ।

ତା'ପରେ ଲାଇଲା ସାମୁଏଲ ନିଜେ ଆରମ୍ଭ କଲା : ମୋର ଆତ୍ମପରିଚୟ ଆପଣଙ୍କ ନିକଟରେ ଦେବା ପାଇଁ କୁଣ୍ଠିତ ହେବାର କିଛି ନାହିଁ । 'ଷ୍ଟାର କ୍ଲବ'ର ମୁଁ ଜଣେ ନର୍ତ୍ତକୀ । ଖାଲି ନୃତ୍ୟ ପରିବେଷଣ କରି ନୁହେଁ, 'ଷ୍ଟାର କ୍ଲବ'ର ପ୍ରତିଟି ଅତିଥିମାନଙ୍କ ମନୋରଞ୍ଜନ କରିବା ମୋ କାମ । ସେଇଆ କରି ନ ପାରିଲେ ଜୀବିକା ନିର୍ବାହ କରିବା ମୋ ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ ।

ଲାଇଲା ସାମୁଏଲ ଟିକିଏ ଅଟକିଲା ।

ସତ୍ୟବ୍ରତ ମହାପାତ୍ର ଆରାମ ଚେଆର ଉପରେ ଦରଶୁଆ ହୋଇ ଆଖିବୁଜି ସିଗାରେଟ ଟାଣୁଥିଲେ ।

ମୋର 'ଷ୍ଟାର କ୍ଲବ'ର ଚାକିରି କରିବା ଆଜକୁ ବର୍ଷକରୁ ଅଧିକ ହେବ । ବେଶ୍ ଚଳି ଯାଉଥିଲା । ସନ୍ଧ୍ୟା ସାତଟାରୁ ରାତି ଏଗାରଟା ଡିଉଟି । ତା'ପରେ ଶ୍ରାନ୍ତ କ୍ଲାନ୍ତ ଦେହଟାକୁ ନେଇ କୌଣସି ପ୍ରକାରେ ଘରକୁ ଫେରିଯାଇ ନିଘୋଡ଼ ନିଦରେ ଶୋଇପଡୁଥିଲି । ମୋ ପାଇଁ ପ୍ରତିଦିନ ସକାଳଟି ଥିଲା ସବୁଠାରୁ ବେଶୀ ମନୋରମ ଆଉ ପବିତ୍ର । ସେତିକିବେଳେ ମୁଁ ଯିଶୁଙ୍କ ନାମ ସ୍ମରଣ କରି ଗତ ଦିନ ଗୁଡ଼ିକର ଦୁଷ୍କର୍ମ ପାଇଁ କ୍ଷମା ମାଗୁଥିଲି । କିନ୍ତୁ ମିଃ ମହାପାତ୍ର... ।

ଲାଇଲା ଅଟକିଗଲା । ତା ବାକ୍‌ଶକ୍ତି ଯେପରି ରୁଦ୍ଧ ହୋଇଗଲା । ସତ୍ୟବ୍ରତ କେବଳ ଆଖିମେଲି ଥରେ ତା' ଆଡ଼େ ଚାହିଁଲେ ।

ଲାଇଲା ନିଜକୁ ସମ୍ଭରଣ କରିନେଇ ପୁଣି ଆରମ୍ଭ କଲା : କିନ୍ତୁ ମିଃ ମହାପାତ୍ର, ଏ କେତେଦିନ ହେବ ସେହି ପବିତ୍ର ସକାଳଟି ବି ମୋ ପାଇଁ ଦିନେ ଦିନେ ବିଷାକ୍ତ ହୋଇ ଦେଖା ଦେଉଚି । ଏଇ ଦେଖନ୍ତୁ ଆଜି ସକାଳୁ ମୁଁ ଭ୍ୟାନିଟିରୁ ବାଇବେଲ ଖୋଜିବାକୁ ଯାଇ ପ୍ରେମପତ୍ର ପାଇଲି ଆଉ କେତେଖଣ୍ଡ ଫଟୋ । ଏହା ପୂର୍ବରୁ ପାଇଥିଲି ଗୋଟାଏ ରିଭଲଭର । ଏ ସବୁର ରହସ୍ୟ ମୁଁ କିଛି ବୁଝି ପାରୁ ନାହିଁ ମିଃ ମହାପାତ୍ର । ପୋଲିସ୍‌ରେ କହିବାର ସତ୍‌ସାହସ ମଧ୍ୟ ମୋର ନାହିଁ ।

ସତ୍ୟବ୍ରତ ମହାପାତ୍ର ଆଖି ଖୋଲିଥିଲେ । ଲାଇଲା ସାମୁଏଲ କଥା ଶେଷ କରି କାତର ଦୃଷ୍ଟିରେ ତାଙ୍କରି ଆଡ଼େ ଅନାଇଥିଲା ।

ହୁଁ, ଏପରି କେତେଦିନ ହେବ ଘଟୁଚି ? ସତ୍ୟବ୍ରତ ପଚାରିଲେ ।

ପନ୍ଦରଦିନ ହେବ ।

ପ୍ରଥମ ଯେତେବେଳେ ରିଭଲଭରଟି ଆପଣ ଭ୍ୟାନିଟ୍ ଭିତରେ ଦେଖିଲେ,ଆପଣଙ୍କର କ'ଣ ଧାରଣା ହେଲା ?

ମୁଁ ଭାବିଥିଲି, କେଉଁ ଦୁଷ୍ଟଲୋକ ମୋ ଠାରୁ ଦାଉ ସାଧିବା ପାଇଁ କୌଶଳରେ ରିଭଲ୍‌ଭର୍‌ଟି ମୋ ବ୍ୟାଗ ଭିତରେ ରଖି ଦେଇଚି । ପରେ ପରେ ପୋଲିସରେ ଖବର ଦେଇ ମୋତେ ଧରାଇ ଦେବ ।

ତା'ରେ ଆପଣ ରିଭଲଭରଟି ନିଶ୍ଚୟ ଫୋପାଡ଼ି ଦେଇଥିବେ ।

ହଁ ।

ଆଉ ଯେଉଁଦିନ ଚିଠି ପାଇଥିଲେ ?

: ସେ'ତ କେବଳ ଅଶ୍ଳୀଳ ଇଙ୍ଗିତ । ଚିଠିଟି ସଙ୍ଗେ ସଙ୍ଗେ ନିଆଁରେ ଜଳେଇ ଦେଲି ।

ଆଉ ଆଜି ଏଇ ଫଟୋଗୁଡ଼ିକ ପାଇ ଆପଣଙ୍କର କ'ଣ ମନେ ହେଉଚି?

ଏହାପରେ ମୁଁ ଭାବୁଚି ନିଶ୍ଚୟ ମୋ ବିରୁଦ୍ଧରେ କିଏ କୌଣସି ଷଡ଼ଯନ୍ତ୍ର କରୁଚି । କାଲି ହୁଏତ ଅଫିମ ବାହାରିବ, ତା'ପରଦିନ କୋକେନ । ତା'ପରେ ମୋତେ ଆରାମରେ ଲୁହା ଗାରଦ ଭିତରେ ସମୟ କଟାଇବାକୁ ହେବ । ମୋତେ

ଏହି ଆସନ୍ନ ବିପଦରୁ ଆପଣଙ୍କୁ ରକ୍ଷା କରିବାକୁ ହେବ ମିଃ ମହାପାତ୍ର । ମୋତେ ବିଶ୍ୱାସ କରନ୍ତୁ, ମୁଁ ନିର୍ଦ୍ଦୋଷ ।

ଲାଇଲା ସାମୁଏଲ ଆଖିରେ ଲୁହ ଜକେଇ ଆସିଲା ।

ସତ୍ୟବ୍ରତ ମହାପାତ୍ର ସଜାଡ଼ି ହୋଇ ବସିଲେ । ଲାଇଲା, ଟେବୁଲ ଉପରେ ରଖିଥିବା ଫଟୋ କେତେଖଣ୍ଡ ଉଠାଇ ଦେଖିଲେ ଏ ସେଇ ଫଟୋ । ଗତ କାଲି ରାତିରେ ଯେଉଁ ଫଟୋ କେତେଖଣ୍ଡି ଦେଖିଥିଲେ ଲିଲିର ଭ୍ୟାନିଟି ଭିତରୁ । କୌଣସି ଉତ୍ସୁକତା ପ୍ରକାଶ ନ କରି ସେ ଫଟୋଯାକ ଖଣ୍ଡଖଣ୍ଡ କରି ଟେବୁଲ ଉପରେ ସଜାଇଲେ । ସର୍ବମୋଟ ସାତଖଣ୍ଡି ଫଟୋ । ତା'ପରେ ଲାଇଲା ଆଡ଼େ ଚାହିଁ କହିଲେ : ଆଚ୍ଛା, ଏଥର କୁହନ୍ତୁ ତ ଏଇ ଫଟୋଗୁଡ଼ିକ ମଧ୍ୟରୁ ଆପଣ କାହାକୁ କାହାକୁ ଚିହ୍ନନ୍ତି ?

ଲାଇଲା ସବୁ ଫଟୋଗୁଡ଼ିକ ଉପରେ ଥରେ ଆଖି ବୁଲେଇ ନେଇ ଆଶ୍ଚର୍ଯ୍ୟ ହେଲା ପରି ସତ୍ୟବ୍ରତଙ୍କୁ ଚାହିଁଲା ।

ଏହା ଭିତରେ ଯେ ଆପଣଙ୍କର ଖଣ୍ଡେ ଫଟୋ ରହିଚି ।

ହଁ, ମୁଁ ଦେଖିଚି । ସତ୍ୟବ୍ରତ କହିଲେ । ଆଉ ?

ଲାଇଲାର ଆଖି କିଛି କ୍ଷଣ ପାଇଁ ନିରଞ୍ଜନର ଫଟୋ ଉପରେ ନିବଦ୍ଧ ରହି ପୁଣି ଫେରି ଆସିଲା । ସେ ମୁଣ୍ଡ ହଲାଇ କହିଲା: ନା ଆଉ କାହାରିକୁ ମୁଁ ଚିହ୍ନିପାରୁ ନାହିଁ ।

ଲାଇଲା ଦେବୀ ! ସତ୍ୟବ୍ରତ ଯେପରି ଗର୍ଜନ କରି ଉଠିଲେ । ଆପଣ ଇଗଲ ଆଖିକୁ ଫାଙ୍କି ଦେଇ ପାରିବେ ନାହିଁ । ସଙ୍ଗେସଙ୍ଗେ ନିରଞ୍ଜନର ଫଟୋ ଖଣ୍ଡିକ ଉଠାଇ ଆଣି କହିଲେ   ୟାକୁ ଆପଣ ଚିହ୍ନି ନାହାନ୍ତି ?

ଲଇଲା ସାମୁଏଲ ପାଟିରୁ ହଠାତ୍ କୌଣସି କଥା ବାହାରିଲା ନାହିଁ

: ମିଥ୍ୟାର ଆଶ୍ରୟ ନେଲେ ମୁଁ ଆପଣଙ୍କର କୌଣସି ଉପକାର କରି ପାରିବି ନାହିଁ । ମୁଁ ଜାଣେ ଆପଣ ନିରଞ୍ଜନର ମୃତ୍ୟୁସମ୍ବାଦ ପାଇଚନ୍ତି, ସେଥିପାଇଁ ତା' ସହିତ ପରିଚୟ ଥିବା କଥା ଫାଙ୍କି ଦେବାକୁ ଚାହୁଁଛନ୍ତି । କାଳେ ଯଦି ଭବିଷ୍ୟତରେ ତାଙ୍କର ହତ୍ୟାକାରୀ ରୂପେ ଆପଣଙ୍କୁ ସନ୍ଦେହ କରାହୁଏ ।

: ନା, ନା ମିଃ ମହାପାତ୍ର । ମୋତେ ବିଶ୍ୱାସ କରନ୍ତୁ । ନିରଞ୍ଜନ ବାବୁଙ୍କୁ ମୁଁ ଯଦିଓ ଚିହ୍ନିଚି, ତାଙ୍କ ସହିତ ମୋର କୌଣସି ଘନିଷ୍ଠତା କେବେ ନ ଥିଲା । ସେ କେବଳ ବେଳେବେଳେ ଆମ କ୍ଲବକୁ ଯାହା ଆସୁଥିଲେ ସେତିକି । ତା'ଛଡ଼ା, ନା, ନା ତା' ଛଡ଼ା...

ମୁଁ ଜାଣେ ଲାଇଲା ଦେବୀ । ତା' ଛଡ଼ା ଆପଣଙ୍କର ନିରଞ୍ଜନ ସହିତ କୌଣସି ଘନିଷ୍ଠତା ନ ଥିଲା । ତଥାପି ଆପଣ ମିଥ୍ୟାର ଆଶ୍ରୟ ନେଉଛନ୍ତି କାହିଁକି ? ଏଥର କୁହନ୍ତୁ, ଏ ଫଟୋଗୁଡ଼ିକ ମଧ୍ୟରୁ ଆଉ କିଏ କିଏ ଆପଣଙ୍କର ଚିହ୍ନା ।

ଲାଇଲା ଏଥର ଯେପରି ଖୁବ୍ ସମସ୍ୟାରେ ପଡ଼ିଗଲା । ସେ ଫଟୋଗୁଡ଼ିକୁ ବାରମ୍ବାର ଚାହୁଁଥିଲେ ମଧ୍ୟ ନୀରବ ରହିଥିଲା ।

ସତ୍ୟବ୍ରତ ମହାପାତ୍ର କଥାର ମୋଡ଼ ବୁଲେଇଲେ ।

ଆଚ୍ଛା ଲାଇଲା ଦେବୀ, ଗୋଟାଏ ପ୍ରଶ୍ନ । ଅବଶ୍ୟ ସେଇଟା ଆପଣଙ୍କର ନିତାନ୍ତ ବ୍ୟକ୍ତିଗତ ସମସ୍ୟା । ତଥାପି ପଚାରିବାକୁ ପଡୁଚି । ଆଶା କରୁଚି କିଛି ଭାବିବେ ନାହିଁ । ଆପଣଙ୍କର ଆଉ ଭଉଣୀ ଅଛନ୍ତି ?

ଲାଇଲା ମୁହୂର୍ତ୍ତେ ନୀରବ ରହି କହିଲା  ନା, ମୋ ନିଜର ଆଉ କୌଣସି ଭଉଣୀ ନାହାନ୍ତି । ମୋ ବାପା ମା'ଙ୍କର ମୁଁ ଏକମାତ୍ର ସନ୍ତାନ । ବର୍ତ୍ତମାନ କହିବାକୁ ଗଲେ ମୁଁ ଆମ ବଂଶର ଶେଷ ଦୀପଶିଖା ।

ହୁଁ ।

ସତ୍ୟବ୍ରତ ଯେପରି ମହାସମସ୍ୟାରେ ପଡ଼ିଗଲେ । ସେ ଗତ ରାତିରେ ଯାହା ସହିତ ନାଇଟ୍ କ୍ଲବରେ ଏତେ ସମୟ କଟାଇଲେ, ସେ ତେବେ କିଏ? ଲିଲି ଯଦି ଲାଇଲା ହୋଇଥାଆନ୍ତା, ତା'ହେଲେ ସେ ଗତ ରାତ୍ରୀରେ ଏପରି କୌଣସି ଅପରାଧମୂଳକ କାର୍ଯ୍ୟ କରିନାହିଁ, ଯାହା ଫଳରେ ତାକୁ ଆଜି ଆତ୍ମଗୋପନ କରିବାକୁ ପଡ଼ନ୍ତା । କିନ୍ତୁ ଲାଇଲା ଯଦି ଲିଲି ନୁହେଁ ତା'ହେଲେ ଲିଲି କିଏ ? ଦୁହିଁଙ୍କଠାରେ ଏତେ ସାମଞ୍ଜସ୍ୟ ! ହୁଏତ ଯାଆଁଳା ଭଉଣୀ ହୋଇଥିଲେ ଅବା ଏହି ସାମଞ୍ଜସ୍ୟ ବିଶ୍ୱାସଯୋଗ୍ୟ ହୋଇଥାଆନ୍ତା । ଏଣେ ଲାଇଲା କୁହେ, ଯେ ସେଇ ତା' ବାପା ମା'ଙ୍କର ଏକମାତ୍ର ସନ୍ତାନ । ଅଥଚ ସେ ଆଉ ଗୋଟିଏ ଲାଇଲା ସହିତ ଗତକାଲି ପ୍ରାୟ ଦୁଇଘଣ୍ଟା ଅତିବାହିତ କରିଆସିଲେ ।

: ଆଚ୍ଛା, ଲାଇଲା ଦେବୀ ! ସତ୍ୟବ୍ରତ ପଚାରିଲେ- ଆପଣ କେବେ ନାଇଟ୍ କ୍ଲବକୁ ଯାଆନ୍ତି ?

ସତ୍ୟବ୍ରତ ଆଶା କରିଥିଲେ ହୁଏତ ନାଇଟ୍ କ୍ଲବ ନାଁ ଶୁଣି ଲାଇଲା ଦେହ ମୁହଁରେ ଗୋଟାଏ ଆଶ୍ଚର୍ଯ୍ୟ ପରିବର୍ତ୍ତନ ପରିଲକ୍ଷିତ ହେବ, କିନ୍ତୁ ଲାଇଲା ଯେପରି କାଠପାଷାଣର ପ୍ରତିମା । ସେହିପରି ଅବିଚଳିତ କଣ୍ଠରେ ଉତ୍ତର ଦେଲା  ଷ୍ଟାର କ୍ଲବରେ ଚାକିରି ନେବା ପରଠାରୁ ମୁଁ ନାଇଟ୍ କ୍ଲବକୁ କେବେ ଯାଇନାହିଁ । ତା'ପୂର୍ବରୁ ମାନେ ଷ୍ଟାରକ୍ଲବର ଚାକିରି କରିବା ଆଗରୁ ଅନେକଥର ନାଇଟ୍ କ୍ଲବକୁ ଯାଇଚି ।

: ହୁଁ ।

କିଏ ତେବେ ଲିଲି । ସତ୍ୟବ୍ରତ ଚିନ୍ତା କରୁଥିଲେ । ଲିଲି ଯିଏ ହେଉନା କାହିଁକି ଲାଇଲା ସହିତ ତା'ର ଗଭୀର ସମ୍ପର୍କ ଅଛି । ତା' ନହେଲେ, ସେ ଲାଇଲାର ଏଇ ଭ୍ୟାନିଟିକୁ ବ୍ୟବହାର କରିବାକୁ ପାଇ ନଥାନ୍ତା ।

ସତ୍ୟବ୍ରତ ପଚାରିଲେ   ଆପଣ ଲିଲିକୁ ଚିହ୍ନନ୍ତି ?

କୋଃଉ ଲିଲି ? ନାଇଟ୍ କ୍ଲବର ନର୍ତ୍ତକୀ ?

ସତ୍ୟବ୍ରତ ମୁଣ୍ଡ ହଲେଇ ସମ୍ମତି ଜଣାଇଲେ ।

ହଁ ତା' ସହିତ ମୋର ଅଗାଧ ବନ୍ଧୁତ୍ୱ, ସେଇ ତ ମୋତେ ଆପଣଙ୍କ ନିକଟକୁ ଆସିବାକୁ ପ୍ରଠାଇଲା ।

ସତ୍ୟବ୍ରତ ଯାହା ଟିକିଏ ଆଲୋକ ପାଇଥିଲେ, ପୁଣି ଗମ୍ଭୀର ହୋଇଗଲେ । କହିଲେ   ଲିଲି ଆପଣଙ୍କୁ ମୋ ନିକଟକୁ ଆସିବାକୁ ପଠାଇଲା?

ହଁ, ତାକୁ ମୁଁ ମୋ ଜୀବନର ଦୁର୍ଘଟଣା କଥା ସବୁ କହିଲି । ସେ ବହୁତ ଭାବି ବିଚାରି ମୋତେ ଉପଦେଶ ଦେଲା, ଯେ ଆପଣଙ୍କ ପାଖକୁ ମୁଁ ଯଦି ଆସେ ତା'ହେଲେ ଆପଣ ମୋତେ ଏହିସବୁ ଦୁର୍ଘଟଣାର କାରଣ କହିପାରିବେ ଏବଂ ସମ୍ଭବ ହେଲେ ମୋ ବିରୁଦ୍ଧରେ ଚକ୍ରାନ୍ତ କରୁଥିବା ଲୋକଟିକୁ ଖୋଜି ବାହାର କରିବେ ।

ସତ୍ୟବ୍ରତ ଆଗ୍ରହରେ ଶୁଣୁଥିଲେ ।

କହିଲେ   ଲିଲି ତା'ହେଲେ ଆପଣଙ୍କୁ ମୋ ପାଖକୁ ପଠାଇଚି । କିନ୍ତୁ ଗୋଟିଏ କଥା ଲାଇଲା ଦେବୀ, ଲିଲି କ'ଣ ଦେଖିବାକୁ ଠିକ୍ ଆପଣଙ୍କ ପରି ? ଏପରିକି ତା'ର ଉଚ୍ଚତା, ଗଠନ, କହିବାର ଭଙ୍ଗୀ, ପୋଷାକ ପରିପାଟୀ, ସବୁ ଆପଣଙ୍କ ପରି ?

ଲାଇଲା ବିସ୍ମିତ ବିସ୍ଫାରିତ ନେତ୍ରରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ କହିଲା   ଏ କଥା ଆପଣଙ୍କୁ କିଏ କହିଲା ? ଆପଣ ତା' ହେଲେ ସଂପୂର୍ଣ୍ଣ ଭୁଲ ସମ୍ବାଦ ପାଇଛନ୍ତି । ଲିଲି ଓ ମୋ ଭିତରେ କେବଳ ଆନ୍ତରିକତା ଆଉ ବନ୍ଧୁତ୍ୱ ଛଡ଼ା ଅନ୍ୟ କୌଣସିଥିରେ ସାମଞ୍ଜସ୍ୟ ନାହିଁ । ତା' ଚହେରା ମୋଠାରୁ ସଂପୂର୍ଣ୍ଣ ଅଲଗା । ତା' ଦେହର ରଙ୍ଗ ମୋଠାରୁ ଆହୁରି ସଫା । ସେ ମୋଠାରୁ ଯଥେଷ୍ଟ ପତଳା । ମୋ ଓଜନ ୧୩୮ ପାଉଣ୍ଡ, ତା' ଓଜନ ୧୦୫ ପାଉଣ୍ଡ । ମୋର ଉଚ୍ଚତା ୫ ଫୁଟ୍ ୩ ଇଞ୍ଚ, ସେ ମୋଟେ ୫ ଫୁଟ ଏକ ଇଞ୍ଚ । ଆଉ...

ସତ୍ୟବ୍ରତ ବାଧା ଦେଲେ   ଥାଉ, ମୁଁ ଖାଲି ଇମିତି ଗୋଟାଏ ଖିଆଲରେ ପଚାରୁଥିଲି । ତେବେ ସେ ମୋତେ ଚିହ୍ନିଲା କିପରି । ଯା'ହେଉ ଆପଣ ଆଉଥରେ ଆସିଲା ବେଳେ ଲିଲିକୁ ସାଙ୍ଗରେ ଆଣିବେ । ହଁ, ଆପଣଙ୍କ ବିପଦର କାହାଣୀ ସବୁ ଶୁଣିଲି । ଏଣିକି ଆପଣଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଥିବା ଲୋକଟିକୁ ଖୋଜି ବାହାର କରିବାକୁ ପଡ଼ିବ । ଶୁଣନ୍ତୁ, ମୁଁ ଗୋଟିଏ କଥା ପଚାରିବି, ଆପଣ କିଛି ଭାବିବେ ନାହିଁ । ଆଚ୍ଛା କହିଲେ: ଆପଣ କୌଣସି ମାଦକ ଦ୍ରବ୍ୟ ଖାଆନ୍ତି କି ନାହିଁ ।

ଲାଇଲା ଚୁପ୍ ହୋଇ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଥିଲା । ଏ ପ୍ରଶ୍ନର କି ଉତ୍ତର ସେ ଦେବ ।

ସତ୍ୟବ୍ରତ କହିଲେ   ଏଇ ଧରନ୍ତୁ ବ୍ରାଣ୍ଡି, ହ୍ୱିସ୍କି, ବିଅର ଏହି ଜାତୀୟ କୌଣସି ପାନୀୟ ଆପଣ ପାନ କରନ୍ତି କି ନାହିଁ ?

କରେ । ଲାଇଲାର ଉତ୍ତର ଖୁବ୍ ସ୍ପଷ୍ଟ । ଏହା ସବୁ ପାନ କରିବାକୁ ମୁଁ ବାଧ ହୋଇଛି । ଯେଉଁ ଭଦ୍ରଲୋକମାନେ ଷ୍ଟାର କ୍ଲବକୁ ଆସନ୍ତି, ସେମାନେ ସମସ୍ତେ ପ୍ରାୟ ବଡ଼ଘରର ସନ୍ତାନ । ସମସ୍ତେ ଘର ଛାଡ଼ି ଆସି ଗୁଣ୍ଡ ହୁଅନ୍ତି ଏକା ଜାଗାରେ । ତେଣେ ନିଜ ନିଜର ଘର ଭିତରେ ଜିଇ ରୁହେ ସେମାନଙ୍କର ଆଭିଜାତ୍ୟ, ନିଜ ନିଜର ସ୍ତ୍ରୀ କନ୍ୟା ସେମାନଙ୍କୁ ଆପ୍ୟାୟିତ କରିପାରନ୍ତି ନାହିଁ, ସ୍ନେହ ଦେଇପାରନ୍ତି ନାହିଁ । ଦେହ ମନର କ୍ଳାନ୍ତି ହରଣ କରିପାରନ୍ତି ନାହି । ସେ ଦାୟିତ୍ୱ ଆମମାନଙ୍କର । ତେଣୁ ଆମେମାନେ ସେମାନଙ୍କ ସହିତ ମଦ୍ୟପାନ କରିବାକୁ ବାଧ ହେଉ । ପ୍ରଜାପତି ଫୁଲଘୁ ଫୁଲକୁ ଉଡ଼ି ମଧୁ ଶୋଷିଲା ପରି ଆମେମାନେ ଟେବୁଲ ବଦଳେଇ ପେଗ୍ ପରେ ପେଗ୍ ନିଃଶେଷ କରୁ । ଆପଣଙ୍କୁ ତ ଆଗରୁ ମୋ ଜୀବନ ଇତିହାସ କହିଚି, ତେଣୁ ଆଉ କିଛି ଲୁଚେଇବାର ଅଭିଳାଷ ମୋର ନାହିଁ ।

ଲାଇଲା ଏହି ସବୁ କଥା କହିଲାବେଳେ ତା' ସ୍ୱର ଭାରି ଭାରି ଶୁଣା ଯାଉଥିଲା । ନାକରୁ ଖରଶ୍ୱାସ ବାହାରୁଥିଲା । ଯେପରି ଅଭିମାନରେ ସେ ଫାଟି ପଡ଼ିବ । ତା'ର କାହା ବିରୁଦ୍ଧରେ ଏଇ ଅଭିମାନ ! ଆଭିଜାତ୍ୟ ବିରୁଦ୍ଧରେ ନା ସମାଜ ବିରୁଦ୍ଧରେ ?

ସତ୍ୟବ୍ରତ କିନ୍ତୁ ସେହିପରି ଅବିଚଳିତ ଶାନ୍ତ ଓ ଧୀର ସ୍ୱରରେ କହିଲେ ଆପଣଙ୍କୁ ଏପରି ପ୍ରଶ୍ନ କରି ମୁଁ ଯଥେଷ୍ଟ ଆଘାତ ଦେଇଚି, କ୍ଷମା କରିବେ । କିନ୍ତୁ ନ ପଚାରି ଯେ ଉପାୟ ନାହିଁ । ଆପଣ ଯେଉଁ ଦାୟିତ୍ୱଟି ମୋ ମୁଣ୍ଡ ଉପରେ ଲଦି ଦେଇସାରିଲେଣି, ସେ ଦାୟିତ୍ୱର ବୋଝ ଲାଘବ କରିବା ପାଇଁ, ମୋତେ ବେଳେବେଳେ ଏହାଠାରୁ ଆହୁରି ଅବାନ୍ତର ପ୍ରଶ୍ନର ଆଶ୍ରୟ ନେବାକୁ ପଡ଼ିବ ।

ଲାଇଲା ଚୁପ୍ ହୋଇ ବସିଥିଲା ।

ସତ୍ୟବ୍ରତ ପୁଣି କହିଲେ : ଆପଣଙ୍କର ଗତକାଲି ରାତିଟିର କଥା ନିଶ୍ଚୟ ସବୁ ମନେଥିବ ।

: ନା, ନାହିଁ । ସବୁକଥା ମୋର ମନେ ନାହିଁ । ଲାଇଲା ଯେପରି ଉତ୍ତେଜିତ ହୋଇ ପଡ଼ିଥିଲା । ଗତକାଲି ରାତି ୯ଟା ପରେ ମୁଁ ଏପରି ଏକ ଅବସ୍ଥାରେ ଯାଇ ପହଞ୍ଚିଲି ଯେ, ମୁଁ ମୋର ସମସ୍ତ ଜ୍ଞାନ ହରେଇ ବସିଲି । ଯେତେବେଳେ ମୁଁ ସଚେତନ ହେଲି ସେତେବେଳେ ଦେଖିଲି ଷ୍ଟାର କ୍ଳବ୍‌ର ରେଷ୍ଟ ରୁମ୍‌ରେ ଗୋଟିଏ ସୋଫା ଉପରେ ଶୋଇଚି ।

: ହୁଁ, ସତ୍ୟବ୍ରତ ସଜାଡ଼ି ହୋଇ ବସିଲେ । ତା'ହେଲେ ଆପଣ ଏପରି ଅଜ୍ଞାନ ହେବାର କାରଣ ?

ଆଉ କିଛି ନୁହେଁ, କାଲି ଅତ୍ୟଧିକ ମାତ୍ରାରେ ମୋତେ ପାତ୍ର ନିଃଶେଷ କରିବାକୁ ପଡ଼ିଥିଲା । ଯାହା କଥା ନ ରଖିଲେ ସେ ଦୁଃଖ ପାଇବ । ତେଣୁ ସମସ୍ତଙ୍କ ମନ ରଖିବାକୁ ହୋଇଥିଲା ଏବଂ ଷ୍ଟାର କ୍ଳବର ନର୍ତ୍ତକୀ ହିସାବରେ ସେଇଟା ମଧ ମୋର କର୍ତ୍ତବ୍ୟ ।

ଲାଇଲାର କଥାଗୁଡ଼ାକ ସତ୍ୟବ୍ରତଙ୍କ ଦେହରେ ଛୁଞ୍ଚ ଭେଦିଲା ପରି ଭେଦ କରୁଥିଲା । ଲାଇଲାର ଏହା ସୁସ୍ଥ ମନର କଥା ନୁହେଁ, ତା' ବିକଳ ମନର ପ୍ରତିଧ୍ୱନି, ସତ୍ୟବ୍ରତ ଲକ୍ଷ୍ୟ କରିଥିଲେ ।

ତା' ହେଲେ, ଆପଣ କହିବାକୁ ଚାହାନ୍ତି, ଗତକାଲି ରାତିରେ ଷ୍ଟାର କ୍ଲବରେ ଆପଣ ଏପରି ଅତ୍ୟଧିକ ମାତ୍ରାରେ ମଦ୍ୟପାନ କରିଥିଲେ ଯେ, ନିଜର ସତ୍ତା ହରେଇ ପକାଇଥିଲେ । କିନ୍ତୁ ଏହା ପରେ ବି ଆପଣଙ୍କୁ ମୋର ପ୍ରଶ୍ନ ଅଛି । ସେହି ଅବସ୍ଥାରେ ଆପଣ 'ରେଷ୍ଟରୁମ୍'ରେ ଯାଇ ବିଶ୍ରାମ କରିଥିଲେ ନା ଅନ୍ୟ କେଉଁଠାକୁ ଯାଇଥିଲେ, ସେ ସମ୍ବନ୍ଧରେ ନିଶ୍ଚୟ ଆପଣଙ୍କର କିଛି ମନେ ଥିବ ।

ନା, ତା' ନୁହେଁ । ଆପଣ ଏଇଠି ଟିକେ ଭୁଲ୍ କରୁଚନ୍ତି । ଯେତେବେଳେ ମୁଁ ଅତି ମାତ୍ରାରେ ମଦ୍ୟ ପାନ କରି ପକାଏ ଏବଂ ଦେହ ଉପରେ ତା'ର ପ୍ରତିକ୍ରିୟା ଉପଲବ୍ଧି କରେ, ସେତେବେଳେ ମୁଁ ଯେଉଁ ଅବସ୍ଥାରେ ଥାଏ ନା କାହିଁକି, ସେ ଅବସ୍ଥାରୁ ଶୀଘ୍ର ବିଦାୟ ନେଇଯାଇ ରେଷ୍ଟ ରୁମ୍‌ରେ ଆଶ୍ରୟ ଗ୍ରହଣ କରେ । ମାତଲାମି ମୋତେ ମୋଟେ ଭଲ ଲାଗେ ନାହିଁ ।

ତା'ହେଲେ ଗତ ରାତିରେ ଯେତେବେଳେ ଆପଣ ନିଜର ସତ୍ତା ହରେଇ ଥିଲେ, ସେତେବେଳେ କ'ଣ ରେଷ୍ଟ ରୁମ୍‌ରେ ଆଶ୍ରୟ ନେଇ ଥିଲେ?

ହଁ ।

ଠିକ୍ ମନେ ଅଛି ?

ସେତେବେଳର ଅବସ୍ଥା ମନେ ନ ଥିଲେ ବି ପରବର୍ତ୍ତୀ କଥା ଖୁବ୍ ମନେ ଅଛି । ମାନେ ମୁଁ ଯେତେବେଳେ ସଚେତନ ହେଲି, ସେତେବେଳେ ରେଷ୍ଟ ରୁମ୍‌ରେ ଶୋଇଥିଲି ।

ବୁଝିଲି ।

ସତ୍ୟବ୍ରତ ମହାପାତ୍ର ଟିକିଏ ଚିନ୍ତିତ ହୋଇପଡ଼ିଥିଲେ । ସେ ମନେମନେ ଅନୁସନ୍ଧାନ କରୁଥିଲେ ଗତ ରାତ୍ରିର ଲିଲିକୁ । ତାକୁ ମଧ ଷ୍ଟାର କ୍ଲବ ଦୁଆରେ ଛାଡ଼ି ଦେଇ ଯାଇଥିଲେ । ସେ ତା' ହେଲେ ଗଲା କୁଆଡ଼େ? ଯା'ହେଉ ଦେଖାଯିବ ।

: ଲାଇଲା ଦେବୀ ! ଆପଣ ଏଥର ଯାଆନ୍ତୁ । ମୋର ଯାହା ଜାଣିବାର କଥା ସବୁ ମୁଁ ଆପଣଙ୍କଠାରୁ ଜାଣି ନେଇଛି । ଯଦି ଅନ୍ୟକିଛି ଘଟଣା ଘଟେ ତୁରନ୍ତ ମୋତେ ଜଣାଇବେ । ଆଉ ଏ କେତେଦିନ ମାନେ ଛ' ସାତ ଦିନ ଅନ୍ତତଃ ପ୍ରତିଦିନ ଥରେ ଆସି ମୋତେ ଦେଖା କରି ଯାଉଥିବେ । ଏଥର ଆସିଲାବେଳେ ଲିଲିକୁ ସଙ୍ଗରେ ଆଣିବେଟି ! ମନେ ରହିଲା ?

ଲାଇଲା ଆଉ କିଛି କହିଲା ନାହିଁ । ଆସନ ତ୍ୟାଗ କରି ଉଠିଲା । ଘରୁ ପଦାକୁ ବାହାରି ଆସିବା ପୂର୍ବରୁ ସତ୍ୟବ୍ରତ ଫଟୋଗୁଡ଼ିକ ଟେବୁଲରୁ ଗୋଟେଇ ଲାଇଲା ହାତକୁ ବଢ଼ାଇଦେଲେ ।

ଏଗୁଡ଼ିକ ଭ୍ୟାନିଟିରେ ଭରନ୍ତୁ । ଯେପରି ଥିଲା ସେହିପରି ରଖି ଦିଅନ୍ତୁ । ଆଉ ଗୋଟାଏ କଥା, ଆପଣ ମୋ ପାଖକୁ ଆସିଥିଲେ ବୋଲି ଅନ୍ୟ କାହାରି ଆଗରେ କିଛି କହିବେ ନାହିଁ । ମନେ ରହିଲା ? ଏବେ ଯାଆନ୍ତୁ ।

ଲାଇଲା ନମସ୍କାର ଜଣାଇ କ୍ଳାନ୍ତ ପାଦ ପକାଇ ଘରୁ ବାହାରିଗଲା ।

ସତ୍ୟବ୍ରତ ସଙ୍ଗେସଙ୍ଗେ ଅଭିମନ୍ୟୁକୁ ଡାକିଲେ । ଲାଇଲାର ଚାଲିଯିବା ପଥକୁ ଆଙ୍ଗୁଳି ନିର୍ଦ୍ଦେଶ କରି କହିଲେ  ଚେହେରାଟା ମନେ ରହିଲା ତ !

ହଁ ।

ସେ ଷ୍ଟାର କ୍ଳବର ନର୍ତ୍ତକୀ । ତୁମେ ଆଜିଠାରୁ ରୋଜ୍ ଷ୍ଟାର କ୍ଳବକୁ ଯାଇ ତା'ର ଗତିବିଧି ସମ୍ବନ୍ଧରେ ଲକ୍ଷ୍ୟ ରଖିବ । ଆଉ ଗୋଟାଏ କଥା ଅଛି, ଲାଇଲା ସାଦୃଶ୍ୟର ଆଉ ଗୋଟିଏ ଝିଅ ଥିଲା ପରି ମୋର ଧାରଣା ହେଉଚି, ଦୈବାତ୍ ଯଦି କୌଣସିଠାରେ ସନ୍ଦେହରେ ପଡ଼ିଯାଅ, ତେବେ ଯାହାକୁ ହେଉ ଜଣକୁ ଫଲୋ କରିଯିବ ।

ମୁଁ ଷ୍ଟାର କ୍ଳବକୁ କ'ଣ ଛଦ୍ମବେଶରେ ଯିବି ?

: ଦରକାର ନାହିଁ । ସେଠାରେ ତୁମକୁ କିଏ ଚିହ୍ନିଚି ? ମୋର ମନେ ହେଉନାହିଁ । ଚିହ୍ନିଥିଲେ ବି ଆମ ପକ୍ଷରୁ କୌଣସି ଅସୁବିଧା ନାହିଁ । ତେଣୁ ଛଦ୍ମବେଶର କୌଣସି ଆବଶ୍ୟକତା ନାହିଁ ।

ଅଭିମନ୍ୟୁ ନୀରବ ରହିଲା ।

ସତ୍ୟବ୍ରତ ମହାପାତ୍ର ମଧ ନୀରବ ରହିଲେ । ତାଙ୍କ ମୁଣ୍ଡ ଭିତରେ ଘଟଣା ଗୁଡ଼ିକ ପ୍ରତିକ୍ରିୟା ସୃଷ୍ଟି କଲା । ରାୟ ବାହାଦୂରଙ୍କ ଟେଲିଫୋନ୍ ପାଇବା ପରଠାରୁ ଏତେବେଳଯାଏ ଯାହା ଘଟିଗଲାଣି ଓ ଯେଉଁ ଯେଉଁ ଲୋକମାନଙ୍କ ସଂସର୍ଗରେ ସେ ଆସିଲେଣି, ସବୁ ଘଟଣା ଓ ସବୁ ଲୋକମାନେ ଯେପରି ରହସ୍ୟମୟ ମନେ ହେଉଛନ୍ତି । ଏ ଘଟଣାର ଗତିଧାରା ଯେପରି ଭିନ୍ନମୁଖୀ ମନେ ହେଉଚି । ରାୟ ବାହାଦୂରଙ୍କ ନିକଟକୁ ସେହି ଅଜ୍ଞାତ ବ୍ୟକ୍ତିର ପତ୍ର, ତା' ପରଠାରୁ ଯେପରି ଘଟଣାର ଆରମ୍ଭ । ନିରଞ୍ଜନର ମୃତ୍ୟୁ, ଆଉ ସୁଷମା, ଲିଲି, ଲଇଲା ଏମାନଙ୍କର ଆବିର୍ଭାବ । ଏ ନାଟକରେ କାହାର କେଉଁ ଭୂମିକା ? ଏମାନେ କ'ଣ ସମସ୍ତେ ଏଥିରେ ଅଂଶ ଗ୍ରହଣ କରିଛନ୍ତି ?

ସୁଷମା ଗନ୍ତାଏତ ! ସବୁଠାରୁ ଯେପରି ବେଶୀ ରହସ୍ୟ ତା'ରି ଭିତରେ ଲୁଚି ରହିଚି । ନିରଞ୍ଜନର ମୃତ୍ୟୁର ଦିନଟିଏ ଅତିବାହିତ ନ ହେଉଣୁ ସୁରଞ୍ଜନ ସହିତ ତା'ର ଏପରି ଘନିଷ୍ଠତା କୌଣସି ଦୃଷ୍ଟିରୁ ସମୀଚୀନ ନୁହେଁ । ତେଣେ ସୁରଞ୍ଜନ, ସେ ବା କିପରି ଏତେ ଶୀଘ୍ର ଭାଇର ମୃତ୍ୟୁ ବିଷୟ ଭୁଲି ଯାଇଚି ? ଆଉ ରାୟ ବାହାଦୂର ! ତାଙ୍କର ଅବସ୍ଥା ଚିନ୍ତା କରି ହେଉନାହିଁ । ସତ୍ୟବ୍ରତ ଧୀରେ ଧୀରେ ଚକ୍ଷୁ ଦୁଇଟି ମୁଦ୍ରିତ କଲେ ।

ସେଇ ଦିନ । ରାତି ପ୍ରାୟ ଦଶଟାରୁ ଅଧିକ ହେବ । ନାଇଟ୍ କ୍ଲବରେ ସେତେବେଳକୁ ଜୁଆର ଉଠିଛି । ସୁଇଂଡୋର ଠେଲି ଧୀରେଧୀରେ ପ୍ରବେଶ କଲେ ସତ୍ୟବ୍ରତ ମହାପାତ୍ର । ସେ ଛଦ୍ମବେଶରେ ନିଜକୁ ସଜ୍ଜିତ କରି ଯାଇଥିଲେ; ଢିଲା ପାଇଜାମା ସାଙ୍ଗକୁ ସିଲ୍କି ପଞ୍ଜାବି ଏବଂ ମୁହଁରେ ବାଘୁଆ ନିଶ, ପାଦରେ ନାଏଗ୍ରା ସାଣ୍ଡେଲ, ଆଖିରେ ରୋଲ୍ଡଗୋଲ୍ଡ ଫ୍ରେମର ଚଷମା ଏବଂ ହାତରେ ଖଣ୍ଡେ ଦାମୀ ବେତ ।

ସତ୍ୟବ୍ରତ ମହାପାତ୍ର ଧୀରେ ପଦ ଚାଳି, ଚାରିଆଡ଼କୁ ଚାହିଁ ଚାହିଁ ଭିତରକୁ ପ୍ରବେଶ କରୁଥିଲେ । ନାଇଟ୍ କ୍ଲବର ମ୍ୟାନେଜର ଉଠି ଆସି ଅଭିବାଦନ ଜଣାଇଲେ ।

ସତ୍ୟବ୍ରତ ମହାପାତ୍ର ପାଦେପାଦେ କରି ଆଗଉଥିଲେ । ହଲ୍ ଘରଟାର ଚାରିଆଡ଼େ ତାଙ୍କର ଆଖି ବୁଲୁଥିଲା । ଦଳ ଦଳ ଯୁବକ ଯୁବତୀଙ୍କର ହାସ୍ୟରୋଳ ଓ କଥାବାର୍ତ୍ତାରେ ଘରଟା ଯେପରି ଫାଟି ପଡୁଥିଲା । ସତ୍ୟବ୍ରତ ଦେଖିଲେ, ସେଇ ହଲ୍‌ଘର ଭିତରେ ଗୋଟିଏ କୋଣକୁ ଅପେକ୍ଷାକୃତ ନିରୋଳା ସ୍ଥାନିଟରେ ଗୋଟିଏ ଟେବୁଲ ଅଧିକାର କରି ବସିଛନ୍ତି ସୁଷମା ଓ ସୁରଞ୍ଜନ । ଟେବୁଲ ଉପରେ ନାନା ପ୍ରକାରର ଖାଦ୍ୟ ଓ ପାନୀୟ ରଖା ହୋଇଚି । ଦୁହେଁ ମୁହାଁମୁହିଁ ବସିଚନ୍ତି । କିନ୍ତୁ ଦୁହିଁଙ୍କର ମନ ଯେପରି ବିମର୍ଷ ।

ସତ୍ୟବ୍ରତ ସେଇ ଭିଡ଼ ଭିତରେ ପାଦେପାଦେ କରି ଯାଇ ସେଇମାନଙ୍କ ନିକଟରେ ଗୋଟାଏ ଚେଆର ଦଖଲ କଲେ । ସୁରଞ୍ଜନ ଓ ସୁଷମା ଦୁହିଁଙ୍କର ଆଖି ସତ୍ୟବ୍ରତଙ୍କ ଉପରେ ପଡ଼ିଥିଲେ ମଧ ସେମାନେ ଦେଖି ନ ଥିଲା ପରି ଆଖି ଫେରାଇନେଲେ । ସତ୍ୟବ୍ରତ ବୟକୁ କିଛି ଖାଦ୍ୟ ଓ ପାନୀୟ ଆଣିବା ପାଇଁ ନିର୍ଦ୍ଦେଶ ଦେଇ ଖଣ୍ଡିଏ ଖବର କାଗଜ ଖୋଲି ନିଜ ମୁହଁ ଘୋଡ଼େଇ ବସିଲେ ।

ଚତୁର୍ଦ୍ଦିଗରେ କୋଳାହଳ । କିନ୍ତୁ ସୁଷମା ଓ ସୁରଞ୍ଜନ ଯେପରି ମୁହଁ ବନ୍ଦ କରି ବସିରହିଚନ୍ତି । କୌଣସି ଏକ ଗଭୀର ସମସ୍ୟାକୁ ସମାଧାନ କରି ନ ପାରି ଯେପରି ସେମାନେ ଦୁଶ୍ଚିନ୍ତାରେ ପଡ଼ିଯାଇଛନ୍ତି ।

ବର୍ତ୍ତମାନ ବାପାଙ୍କର ମନର ଅବସ୍ଥା ଯେପରି, ସତ୍ୟବ୍ରତ ହାତର ଖବର କାଗଜଟାକୁ ଟିକିଏ ତଳେଇ ଦେଇ ଦେଖିଲେ, ସୁରଞ୍ଜନ ଟେବୁଲ ଉପରେ ଗାର କାଟୁ କାଟୁ କହୁଚି, ଏ ଅବସ୍ଥାରେ ତାଙ୍କୁ ବିରକ୍ତ କରିବା ମୋଟେ ଉଚିତ ହେବ ନାହିଁ ।

ମୁଁ ତାଙ୍କୁ ବିରକ୍ତ କରିବାକୁ କହୁ ନାହିଁ । ସୁଷମା କହିଲା ।

ନା, ସୁଷମା, ତମେ ମତେ ବର୍ତ୍ତମାନ ପାଇଁ କ୍ଷମା କର । ସୁରଞ୍ଜନ ସୁଷମାର ଦୁଇଟିଯାକ ହାତ ଚାପିଧରି କିପରି ବିକଳ ସ୍ୱରରେ କହିଲା ।

ତମେ ମୋ କଥା କେଉଁଦିନ ରଖିଚ ଯେ, ଆଜି ନ ରଖିଲେ ମୁଁ ଦୁଃଖ ପାଇବି ! ମୁଁ କେବଳ ତମରି ନିରାପତ୍ତା ପାଇଁ କହୁଥିଲି । ତମ ମୁହଁରୁ ତମ ବଂଶ ଇତିହାସ କଥା ଶୁଣିଲା ପରଠାରୁ ମୋ ଛାତିଟା ଖାଲି କମ୍ପୁଚି । ନିରଞ୍ଜନ ବାବୁ ପୁଣି

ତା'ର ସାକ୍ଷ୍ୟଲକ୍ଷ୍ୟ ପ୍ରମାଣ । ସେଇଥିପାଇଁ ମୁଁ କହୁଥିଲି, ଚାଲ ଏ ସହର ଛାଡ଼ି ଅନ୍ୟ କେଉଁଠାରେ ମାସେ ଦୁଇମାସ କଟେଇ ଆସିବା । ବାପାଙ୍କ ଠାରୁ କେବଳ ଟିକିଏ ଅନୁମତି ଲୋଡ଼ା । ଏଥିରେ ସେ କଷ୍ଟ ପାଇବେ କାହିଁକି?

: ନା ସୁଷମା, ତମେ ଭାବିଚ କ'ଣ ସେ ମୋ କଥାରେ ସମ୍ମତି ଜଣେଇବେ ? ମୋଟେ ନୁହେଁ ।

ମୋତେ କିନ୍ତୁ ଆଉ ଭଲ ଲାଗୁନାହିଁ । ସବୁବେଳେ ତମରି ସଙ୍ଗେ ସଙ୍ଗେ ଛାଇ ପରି ଲାଗି ରହିବାକୁ ଇଚ୍ଛା ହେଉଚି, ଚବିଶ ଘଣ୍ଟା ଭିତରେ କ୍ଲବରେ ମାତ୍ର ଦୁଇଘଣ୍ଟା ଦେଖା, ମୁଁ ମୋଟେ ସହ୍ୟ କରିପାରୁନାହିଁ ।

: ଆଉ ଟିକିଏ ଅପେକ୍ଷା କର ସୁଷମା । ତମେ କ'ଣ ଭାବିଚ ମୁଁ ସବୁବେଳେ ତମ ସାନ୍ନିଧ ଲୋଡୁନାହିଁ, ମୋ ଦେହମନ ତମର ନିବିଡ଼ ସ୍ପର୍ଶ ପାଇବାକୁ ବ୍ୟାକୁଳ ହୋଇ ଉଠୁନାହିଁ ? କିନ୍ତୁ କ'ଣ କରିବି କୁହ, ହଠାତ୍ ଏପରି ଗୋଟାଏ ଦୈବ ଦୁର୍ଘଟଣା ଆମର ସୁଖସୌଧଟିକୁ ଭାଙ୍ଗି ଛାରଖାର କରିଦେଲା ।

ମୁଁ କିଛି ଭାବି ପାରୁ ନାହିଁ ସୁଷମା । ମୋତେ ଆଉ କିଛି କହ ନାହିଁ। କାଲିଠାରୁ ହୁଏତ ଏତିକି ସୁବିଧା ସୁଯୋଗରୁ ଆମେ ବଞ୍ଚିତ ହେବା ।

କାହିଁକି ? ସୁଷମା ଯେପରି ଚମକି ଉଠିଲା ।

ବାପା ସ୍ଥିର କରିଛନ୍ତି, କାଲିଠାରୁ ଆମ ସମସ୍ତଙ୍କୁ 'ନୀଳନିଳୟ'କୁ ପଠାଇ ଦେବେ । ତମେତ ଜାଣିଚ ଆମର ସେହି କୋଠାଟା ସହରଠାରୁ ପ୍ରାୟ ପାଞ୍ଚ ସାତ ମାଇଲ ଦୂରରେ । ସେଠାରୁ ପ୍ରତିଦିନ ଛୁଟି ଆସିବା କ'ଣ ସମ୍ଭବ ହେବ । ତା'ଛଡ଼ା ସେଇଟାତ ଆମମାନଙ୍କ ପାଇଁ ଜତୁଗୃହ କହିଲେ ଚଳେ । ପିଲାଦିନେ ଆମେ ଦୁଷ୍ଟାମି କଲେ ବାପା ଆମକୁ 'ନୀଳ ନିଳୟ'ର ଭୟ ଦେଖାନ୍ତି । ଆମର ସେଇ ଘରଟା କୁଆଡ଼େ ପୂର୍ବପୁରୁଷମାନେ ଗଢ଼ିଥିଲେ ପିଲାମାନଙ୍କୁ ଶାସନ କରିବା ପାଇଁ । ସେଇଥିପାଇଁ ସେଠାକାର ଆଇନ୍ କାନୁନ୍ ବଡ଼ କଡ଼ା । ଯେଉଁ କେତେଜଣ ସେଇ କୋଠା ଦାୟିତ୍ୱରେ ଅଛନ୍ତି, ସେମାନେ ଆଜିଯାଏ ବି ଜାଗିରୀ ଖାଉଛନ୍ତି । ସେମାନଙ୍କ ନାମରେ ଜମିବାଡ଼ି ଖଞ୍ଜି ଦିଆହୋଇଛି ।

ସେଠାକୁ ତମେ ସବୁ ଯାଇ କ'ଣ କରିବ ?

: କରିବୁ ଆଉ କ'ଣ ! ବାଆକୁ ବତାପରି ବାପାଙ୍କର ଗୋଟିଏ ଧାରଣା ଯେ, ନୀଳ ନିଳୟରେ ହୁଏତ ଆମର ଅଜ୍ଞାତଶତ୍ରୁ ପ୍ରବେଶ କରିପାରିବ ନାହିଁ । ତେଣୁ ଆମେ ନିରାପଦରେ ରହିଯିବୁ ।

ଆଉ ମୁଁ ? ସୁଷମାର ସ୍ୱର ଖୁବ୍ କରୁଣ ।

ସୁରଞ୍ଜନ କେବଳ ସୁଷମାର ମେଘଢଙ୍କା ମୁହଁଟି ଆଡ଼େ ନୀରବରେ ଚାହିଁଥିଲା । ହୁଏତ ଭାଷା ଖୋଜି ପାଉ ନ ଥିଲା ଉତ୍ତର ଦେବା ପାଇଁ ।

ମୋତେ ନୀଳ ନିଳୟକୁ ନେଇଯିବ ? ସୁଷମା ପଚାରିଲା ।

ଅସମ୍ଭବ । ସେଠାକାର ପାଣି ପବନରେ ବି ଆଭିଜାତ୍ୟର ଗନ୍ଧ ପୂରି ରହିଚି । ଆମ ବୁନିଆଦ୍‌ର ଚଳନ କେବଳ ସେଇଠି ସଜୀବ କରି ରଖା ହୋଇଛି । ସେଇଠି ତ ଆମ ସମସ୍ତଙ୍କର ରହିବା କଥା । କିନ୍ତୁ ବାପାଙ୍କର ଦୃଷ୍ଟିଭଙ୍ଗୀ ଟିକିଏ ସ୍ୱତନ୍ତ୍ର । ପୁରାତନ ବାଦ ଆଉ ନୂତନବାଦର ମଝିରେ ଠିଆ ହୋଇ ତାଙ୍କ ଚିନ୍ତାଧାରା ଏକ ସ୍ୱତନ୍ତ୍ର ପଥରେ ପରିଚାଳିତ ହେଉଚି । ସେ ଆମମାନଙ୍କୁ ଆଦୌ ପୁରାତନ ବାଦରେ ଆସ୍ଥା ସ୍ଥାପନ କରିବାକୁ ଦେଉ ନାହାନ୍ତି ।

କିନ୍ତୁ ମୁଁ କ'ଣ କରିବି ।

କିଛି ଦିନ ପାଇଁ ତମୁକୁ ଟିକିଏ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ ସୁଷମା । ଏହିପରି ତ ଆଉ ସବୁଦିନ ରହିବ ନାହିଁ । ଘଟଣାର ସ୍ରୋତ ଭିନ୍ନମୁଖୀ ହୋଇଗଲେ ପୁଣି ସବୁ ଅଦଳ ବଦଳ ହୋଇଯିବ । ଚିନ୍ତା କରିବାକୁ କିଛି ନ ଥିବ ।

ମୋର ଗୋଟିଏ କାମନା ପୂରଣ କରିବ ?

କ'ଣ ?

: ଆଜି ରାତିଟା ମୁଁ ତମ ସହିତ ନିରୋଳାରେ କଟାଇବାକୁ ଚାହେଁ । ଜାଣେନି ପୁଣି କେବେ ତମ ସହିତ ଦେଖା ହେବ ।

: କିନ୍ତୁ ସୁଷମା ! ମୋତେ ଯେ ଶୀଘ୍ର ଫେରିଯିବାକୁ ହେବ । ତା' ନ ହେଲେ ଆମ ପରିବାରରେ ଚହଳ ପଡ଼ିଯିବ ।

: ମୁଁ ଆଜି କିଛି ଶୁଣିବି ନାହିଁ । ଆସ ମୋ ସହିତ । ଆମ ଘରକୁ ଯିବା । ବାପା ବର୍ତ୍ତମାନ ଘରେ ନ ଥିବେ । ସେ ଫେରୁ ଫେରୁ ରାତି ଦାର । ସେତେବେଳଯାଏ ଅନ୍ତତଃ ନିର୍ଶ୍ଚିନ୍ତରେ ତମ କୋଳରେ ମୁଣ୍ଡ ରଖି ମୁଁ ଶୋଇପାରିବି ।

ସୁଷମା ସଙ୍ଗେସଙ୍ଗେ ଉଠି ଠିଆ ହୋଇ ଯାଇଥିଲା । ସୁରଞ୍ଜନ ଆଉ ବାଧା ଦେଇ ପାରିଲା ନାହିଁ । ସୁଷମା ଅନୁରୋଧ ଏଡ଼େଇଦେବା ମଧ୍ୟ ସହଜ ହେଲା ନାହିଁ । ସୁରଞ୍ଜନ ସୁଷମାର ପଛେପଛେ ନାଇଟ୍ କ୍ଲବ୍‌ରୁ ପଦାକୁ ବାହାରିଗଲା ।

ସତ୍ୟବ୍ରତ ମଧ୍ୟ ସେମାନଙ୍କ ପଛେପଛେ ଉଠିଲେ । ତାଙ୍କର କାମ ସେଠାରୁ ଶେଷ ହୋଇଛି । ସୁଷମା ଆଉ ସୁରଞ୍ଜନ ସହିତ ସେ ମଧ୍ୟ ଡାକ୍ତର ଗନ୍ତାଏତଙ୍କ ଘରକୁ ଯିବା ଉଚିତ ।

ସତ୍ୟବ୍ରତ ମହାପାତ୍ର ଡକ୍ଟର ଦୀନନାଥ ଗନ୍ତାଏତଙ୍କ ଘରେ ପହଞ୍ଚିଲେ। ସେତେବେଳ ଯାଏ ସୁରଞ୍ଜନ ଓ ସୁଷମା ଆସି ପହଞ୍ଚି ନାହାନ୍ତି । ସେମାନେ ଆଗେ ଟ୍ୟାକ୍‌ସିରେ ବସି ଆସିଥିଲେ । ଏତେବେଳଯାଏ ଫେରି ନାହାନ୍ତି ! ଘଟଣା କ'ଣ ? ଆଉ କ'ଣ ବାଟରେ ପୁଣି ପ୍ରୋଗ୍ରାମ ଚେଞ୍ଜ କଲେ ! ହୁଏତ ସେଇଆ ହୋଇଚି । ସେମାନେ ଅନ୍ୟ କେଉଁଠାକୁ ଯାଇ ବାକି ସମୟଟା ଅତିବାହିତ କରିବା ପାଇଁ ସ୍ଥିର କରିଛନ୍ତି । କିନ୍ତୁ କେଉଁଠାକୁ ?

ସତ୍ୟବ୍ରତ ଡକ୍ଟର ଗନ୍ତାଏତଙ୍କ ବୈଠକଖାନାରେ ବସିରହିଥିଲେ । ରହିରହି କେବଳ ହାତ ଘଡ଼ିକୁ ଚାହୁଁଥିଲେ । ସମୟ ବଢ଼ିଚାଲିଥିଲା । ସେ ବିଚଳିତ ହୋଇପଡ଼ିଥିଲେ ।

ବାରଟା ବାଜିବାକୁ ଆଉ ଦଶ ମିନିଟ୍ ବାକି ।

ଏପର୍ଯ୍ୟନ୍ତ ସୁରଞ୍ଜନ ବା ସୁଷମା କେହି ଫେରିଲେ ନାହିଁ । ହୁଏତ ଆଉ ଅଳ୍ପ ସମୟ ପରେ ଡକ୍ଟର ଗନ୍ତାଏତ ଫେରି ଆସିବେ । ତାଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେବାକୁ ହେବ । ତେଣୁ ଆଉ ଅପେକ୍ଷା କରିବା ସମ୍ଭବ ନୁହେଁ । ରାତି ପାହି ସକାଳ ହେଲେ ସୁରଞ୍ଜନଠାରୁ ସବୁକଥା ଆଦାୟ କରି ହେବ ।

କିନ୍ତୁ ସୁରଞ୍ଜନର ଆଜିର ରାତିଟା ପାହିବ ତ !

ହଠାତ୍ କାହିଁକି ସତ୍ୟବ୍ରତଙ୍କ ମନଟା କିପରି ଦୁର୍ବଳ ହୋଇପଡ଼ିଲା । ସୁଷମାକୁ ସେ ବିଶ୍ୱାସ କରିପାରୁ ନ ଥିଲେ । ସୁରଞ୍ଜନ ସହିତ ତା'ର ଆଚାର ବ୍ୟବହାର ଯଦିଓ ଦୁଇଜଣଙ୍କର ଆନ୍ତରିକତା ସମ୍ବନ୍ଧରେ ଯଥେଷ୍ଟ ସୂଚନା ଦେଉଥିଲା, ତଥାପି ସେ ସୁଷମାକୁ ସନ୍ଦେହ କରୁଥିଲେ । କାରଣ ଏହା ପୂର୍ବରୁ ସୁଷମାର ହୁଏତ ନିରଞ୍ଜନ ପ୍ରତି ଏହିପରି ସମବ୍ୟବହାର ଥିଲା । ନିରଞ୍ଜନକୁ ପାଇବା ପାଇଁ ସୁଷମା ହୁଏତ ଆଜିପରି ପାଗଳୀ ହୋଇ ଉଠିଥିଲା । କିନ୍ତୁ ଏହା କିପରି ସମ୍ଭବ ? ସତ୍ୟବ୍ରତଙ୍କ ଭାବନା ବାଧାପ୍ରାପ୍ତ ହେଲା ।

ସୁଷମାର ନିରଞ୍ଜନ ସହିତ ଏହି ସମ୍ପର୍କ ସମ୍ବନ୍ଧରେ ସୁରଞ୍ଜନ ନିଶ୍ଚୟ ଜାଣିଥିବ । ଜାଣିଜାଣି ସେ ପୁଣି ସୁଷମା ସହିତ ଏପରି ସମ୍ପର୍କ ସ୍ଥାପନ କରି ପାରିଲା କିପରି ? ନାଁ ସେ କିଛି ଜାଣି ନାହିଁ । ତା'ହେଲେ ନିରଞ୍ଜନ ସହିତ ସୁଷମାର ଏପରି ଏକ ନଗ୍ନ ସମ୍ପର୍କ ପରିକଳ୍ପନା କ'ଣ ଭୁଲ୍ ? ଯଦି ତାହା ହିଁ ହୁଏ, ତେବେ ସୁଷମା ନିରଞ୍ଜନଙ୍କ ସହିତ ତାଙ୍କ ଘରକୁ ଯାଉଥିଲା କାହିଁକି ! ରଘୁ ତ ଆଉ ମିଛ କହିବ ନାହିଁ । ତା'ଛଡ଼ା ସୁଷମା ତ ନିଜେ ସ୍ୱୀକାର କରିଥିଲା, ତା'ହେଲେ ? ଆଜି ପୁଣି ସୁରଞ୍ଜନ ସହିତ ଏତେ ଆନ୍ତରିକତା ଗଢ଼ି ଉଠିଥିଲା କିପରି !

ସତ୍ୟବ୍ରତ ଅମୀମାଂସିତ ଭାବନା ଗୁଡ଼ିକ ସଙ୍ଗରେ ଧରି ଉଠିଲେ । ଆଉ ଅପେକ୍ଷା କରିବା ଉଚିତ ନୁହେଁ । ତେଣେ ହୁଏତ ଅଭିମନ୍ୟୁ କୌଣସି ପ୍ରକାର ସମ୍ବାଦ ଆଣି ଅପେକ୍ଷା କରି ବସିଥିବ । ସତ୍ୟବ୍ରତ ରାସ୍ତା ଉପରକୁ ବାହାରି ପଡ଼ିଲେ ।

ଅଭିମନ୍ୟୁ ଫେରି ଆସିଥିଲା । ଖିଆପିଆ ଶେଷ କରିସାରି ବି ଶୋଇ ପାରୁନଥିଲା । କାରଣ ସତ୍ୟବ୍ରତଙ୍କ ଆଗରେ ରିପୋର୍ଟଟା ନ ଦେଲା ପର୍ଯ୍ୟନ୍ତ ଶୋଇ କିଛି ଆରାମ ନାହିଁ । ଅଭିମନ୍ୟୁ ଜାଣିଥିଲା ଯେ, ସତ୍ୟବ୍ରତ କାମ ଆଦାୟ କରିବାରେ ଓସ୍ତାଦ୍ । ତେଣୁ ରିପୋର୍ଟ ନ ଦେଇ ଶୋଇଲେ ସତ୍ୟବ୍ରତ କିଛି ଶୁଣିବେ ନାହିଁ । ସିଧା ପାଣି ବାଲଟିଏ ଧରି ଅଭିମନ୍ୟୁ ଉପରେ ଢାଳିଦେବେ ।

ତା'ପରେ? ଆଶା କରୁଚି ଷ୍ଟାର କ୍ଲବରେ ତମେ ଲାଇଲାର ସଂଧାନ ପାଇଥିବ ।

ସତ୍ୟବ୍ରତ ତାଙ୍କର ଛଦ୍ମ ଆବରଣଗୁଡ଼ିକ ଆସ୍ତେଆସ୍ତେ ଖୋଲୁଖୋଲୁ କହିଲେ ।

ହଁ, ପାଇଥିଲି । ଖୁବ୍ ଚମତ୍କାର ସେଇ ଲାଇଲାଟି । ଅନ୍ୟ ଝିଅମାନଙ୍କ ସହିତ ତା'ର ତୁଳନା ହୁଏନା । ଯେମିତି ସ୍ମାର୍ଟ, ସେମିତି...

ଅଭି ! ସତ୍ୟବ୍ରତ ମହାପାତ୍ରଙ୍କ ସ୍ୱର ଶୁଣି ଅଭିମନ୍ୟୁର ପାଟିରେ କଥା ଅଟକି ଗଲା । ମୁଁ ତା'ର ରୂପ ଗୁଣର ବର୍ଣ୍ଣନା କରିବାକୁ କହୁନାହିଁ । ତା'ର କାର୍ଯ୍ୟଧାରା ସମ୍ପର୍କରେ ମୋତେ କୁହ ।

: ହଁ କହିବି ଯେ, ମୋତେ କିନ୍ତୁ ଝିଅଟାର ବ୍ୟବହାର ବେଶ୍ ଭଲ ଲାଗିଲା । ଷ୍ଟାର କ୍ଲବର ଲକିଷ୍ଟାର । ସେ ନ ହେଲେ କାହାରି ଜମୁ ନାହିଁ । ଲାଇଲା ନିଜ ହାତରେ ପାନୀୟ ଢାଳି ନ ଦେଲେ ବା ଗ୍ଲାସ ଉଠାଇ ନ ଦେଲେ ଯେପରି ଅନେକଙ୍କର ବାସନା ଅତୃପ୍ତ ରହି ଯାଉଚି ।

: ସେ କଥା ମୁଁ ଜାଣିଚି ଅଭି । ଲାଇଲାର ଗତିବିଧି ସମ୍ବନ୍ଧରେ ନୂଆ କ'ଣ ଲକ୍ଷ୍ୟ କଲ କୁହ ।

: ନୂଆ ଆଉ କ'ଣ । ମୁଁ ତ ଷ୍ଟାର କ୍ଲବରେ ପ୍ରବେଶ କରିବାଠାରୁ ଦେଖିଲି ଲାଇଲାର ସେଠାରେ ଖ୍ୟାତି ଖୁବ୍ ବେଶୀ । ଯିଏ ଆସୁଚି ସେ ଡାକୁଚି ଲାଇଲାକୁ, ସେ ଚାହୁଁଚି ଲାଇଲା ତା' ସହିତ ମୁହୂର୍ତ୍ତେ ବସି ଗଳ୍ପ କରୁ । ଟିକିଏ ହସି ତା' ଆଡ଼କୁ ଚାହୁଁଚି । ଲାଇଲା ବି କାର୍ପଣ୍ୟ ପ୍ରକାଶ କରୁନାହିଁ । ଯେତେଟା ସମ୍ଭବ ସେ ପ୍ରତ୍ୟେକଙ୍କ ଯତ୍ନ ନେବାକୁ ଚେଷ୍ଟା କରୁଚି ।

ହୁଁ, ଆଉ କ'ଣ ଦେଖିଲ । ଲାଇଲା ପେଗ୍ ପରେ ପେଗ୍ ବହୁ ପେଗ୍ ନିଃଶେଷ କରୁଚି, ନା ?

ଅଭିମନ୍ୟୁ ସତ୍ୟବ୍ରତଙ୍କ ମୁହଁକୁ କିଛି ସମୟ ଅନେଇ ରହି କହିଲା: ଆପଣ ତା' ହେଲେ ଭୁଲ ସମ୍ବାଦ ପାଇଚନ୍ତି ।

ମାନେ ?

ମୋର ଧାରଣା ଲାଇଲା ମଦ ପିଏ ନାହିଁ ।

ସତ୍ୟବ୍ରତ ଅଭିମନ୍ୟୁର କଥା ଶୁଣି ହସିଲେ ।

ତମର ହଠାତ୍ ଲାଇଲା ପ୍ରତି ଏପରି ପବିତ୍ର ଧାରଣା ଜନ୍ମିଲା କିପରି?

ମୁଁ ଯାହା ଦେଖିଲି ସେଇଆ କହୁଚି ।

କ'ଣ ଦେଖିଲ ?

ଲାଇଲା କାହାରି ଟେବୁଲରୁ ଗୋଟିଏ ହେଲେ ପେଗ୍ ଛୁଇଁବାର ମୁଁ ଦେଖିଲି ନାହିଁ । ଅନେକେ ନାନା ପ୍ରକାର ଅନୁରୋଧ କଲେ ମଧ୍ୟ ସେ କାହାରି ପାଖରୁ ଗୋଟିଏ ପେଗ୍ ବି ଗ୍ରହଣ କରିନାହିଁ ।

ସତ୍ୟବ୍ରତ ମହାପାତ୍ର ଯେପରି ଅଭିମନ୍ୟୁକୁ ବିଶ୍ୱାସ କରି ପାରୁ ନଥିଲେ ! ଲାଇଲା ନିଜେ ସ୍ୱୀକାର କରି ଯାଇଚି ମଦ ସେ ପିଏ, ଅତ୍ୟଧିକ ପରିମାଣରେ ପିଏ । ଅଥଚ ଅଭିମନ୍ୟୁ ଏ କ'ଣ କହୁଚି । ଦିନକ ଭିତରେ ଜଣେ ମଣିଷ ସ୍ୱଭାବ ଏତେଟା ପରିବର୍ତ୍ତନ ହୋଇ ପାରେନା । ତା'ଛଡ଼ା ଲାଇଲା ଯେ ସତ୍ୟବ୍ରତ ଆଗରେ ମିଛି କହି ଯାଇଚି, ସେପରି ମଧ୍ୟ କୌଣସି କାରଣ ନାହିଁ।

ଆଉ କ'ଣ ଦେଖିଲୁ ! ସତ୍ୟବ୍ରତ ପଚାରିଲେ ।

ମୁଁ ଆଠଟା ଠାରୁ ଏଗାରଟା ଯାଏ ଷ୍ଟାର କ୍ଲବରେ ଥିଲି । ଲାଇଲାକୁ ମିନିଟ୍‌କ ପାଇଁ ବି ଆଖିରୁ ଅନ୍ତର କରିନାହିଁ । ତା'ର ରୀତିନୀତି, ଚାଲିଚଳନରେ ବିଶେଷ କୌଣସି ସନ୍ଦେହଜନକ ଲକ୍ଷଣ ପ୍ରକାଶ ପାଇବାର ଦେଖିଲି ନାହିଁ । ମନେ ହେଲା, ଲାଇଲା ଯେପରି ତା' କର୍ତ୍ତବ୍ୟରେ ବୁଡ଼ି ରହିଚି, ପଛକୁ ଫେରି ଚାହିଁବାର ମଧ୍ୟ ଅବକାଶ ନାହିଁ । ଯେତେ ଲୋକ ଆସିଲେ ଗଲେ, ସେମାନଙ୍କ ଭିତରୁ କାହାରି ଜଣକ ପ୍ରତି ତା'ର ଏକାନ୍ତ ଅନୁଗତ ଭାବ ମଧ୍ୟ ଲକ୍ଷ୍ୟ କଲି ନାହିଁ।

ହୁଁ, ତା' ସହିତ ତମେ କଥାବାର୍ତ୍ତା କରିଥିଲ?

ନା ।

: ଏଗାରଟା ପରେ ତମେ ଯେତେବେଳେ ଚାଲି ଆସିଲ ଲାଇଲା ସେତେବେଳକୁ କ'ଣ କରୁଥିଲା ?

ସେ 'ରେଷ୍ଟ ରୁମ୍'କୁ ଚାଲିଗଲା । ଗୋଟିଏ ବୟକୁ ପଚାରି ବୁଝିଲି ଯେ, ଲାଇଲା ଯେବେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼େ ରେଷ୍ଟ ରୁମ୍‌ରେ ଯାଇ ବିଶ୍ରାମ କରେ । ତା'ପରେ ମୁଁ ଚାଲି ଆସିଲି ।

ତା' ସହିତ କେହି କୌଣସିଠାରେ ବସି ବିଶେଷ କୌଣସି ବିଷୟରେ ଆଳାପ ଆଲୋଚନା କରିବାର ଦେଖିଲ ନାହିଁ?

ନା, ମୁଁ ଲକ୍ଷ୍ୟ କରିଚି, କାହାରି ପାଖରେ ସେ ଦୁଇ ତିନି ମିନିଟ୍‌ରୁ ଅଧିକ ସମୟ ଅତିବାହିତ କରିଲା ପରି ମନେ ହେଲା ନାହିଁ ।

ହୁଁ, ଆଚ୍ଛା ଲାଇଲା ପରି ଅନ୍ୟ କୌଣସି ଝିଅ, ଦେଖିବାକୁ ଠିକ୍ ଲଇଲା ପରି, ତମେ ସେଠାରେ ଦେଖିଲ କି ?

ନା, ଅନେକ ଝିଅ ଆସୁଥିଲେ ଯାଉଥିଲେ, କିନ୍ତୁ ଲାଇଲା ପରି ଅନ୍ୟ କୌଣସି ଝିଅ ମୋ ଆଖିରେ ପଡ଼ିନାହିଁ ।

ହେଉ, ତମେ ତା'ହେଲେ ଯାଇ ବିଶ୍ରାମ କର । କାଲି ପୁଣି ଯିବ । ଯେତେଦିନ ଯାଏ ମୁଁ ବାରଣ ନ କରିଛି ପ୍ରତିଦିନ ତମେ ଯାଇ ଷ୍ଟାର କ୍ଲବରେ ଲାଇଲା ଉପରେ ନଜର ରଖିବ ।

ସକାଳୁ ଉଠି ନିଜର ନିତ୍ୟକର୍ମ ଶେଷ କରି, ସତ୍ୟବ୍ରତ ମହାପାତ୍ର ରାୟବାହାଦୂରଙ୍କ ନିକଟକୁ ଟେଲିଫୋନ କଲେ । ରାୟବାହାଦୂର ଅପରପ୍ରାନ୍ତରୁ ନିଜର ଉପସ୍ଥିତି ସୂଚେଇଲେ ।

ସତ୍ୟବ୍ରତ ମହାପାତ୍ର ପଚାରିଲେ : ଆଉ କୌଣସି ନୂତନ ଘଟଣା ଘଟିଛି କି ?

ରାୟ ବାହାଦୂର ଅପରପ୍ରାନ୍ତରୁ ଉତ୍ତର ଦେଲେ ନା, କୌଣସି ଘଟଣା ଆଉ ଘଟି ନାହିଁ । କିନ୍ତୁ ମୁଁ ପିଲାମାନଙ୍କୁ ଏଠାରୁ ଅନ୍ୟତ୍ର ବିଦାକରି ଦେଉଚି ।

ନୀଳ ନିଳୟକୁ ? ସତ୍ୟବ୍ରତ ପଚାରିଲେ ।

ଆପଣ କିପରି ଜାଣିଲେ, ରାୟବାହାଦୂର ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

: ମୋତେ ଏହା ଭିତରେ ବହୁତ ଖବର ସଂଗ୍ରହ କରିବାକୁ ପଡ଼ିଚି । ଯା'ହେଉ, ଆଉ ଗୋଟାଏ କଥା । ସୁରଞ୍ଜନ କାଲି ରାତିରେ କେତେବେଳେ ଘରକୁ ଫେରିଲା ?

: ସୁରଞ୍ଜନ ତ ସବୁବେଳେ ଘରେ ଥିଲା । ବାହାରକୁ ଯିବା ମୁଁ ଦେଖି ନାହିଁ ।

: କାଳେ କୁଆଡ଼େ ବାହାରକୁ ଯାଇଥିବ, ସନ୍ଦେହ କରି ଆପଣଙ୍କୁ ପଚାରୁଥିଲି ।

: ନା, ମୁଁ ପିଲାମାନଙ୍କୁ ବାହାରକୁ ବାହାରିବା ପାଇଁ ମନା କରିଦେଇଚି । ଆପଣ ନିରଞ୍ଜନର ହତ୍ୟାକାରୀର କୌଣସି ସନ୍ଧାନ ପାଇଲେ?

ଆପାତତଃ କିଛି ପାଇ ନାହିଁ । ହତ୍ୟାକାଣ୍ଡଟା ଖୁବ୍ ରହସ୍ୟମୟ ମନେ ହେଉଚି, ଯା'ହେଉ ମୁଁ ଆଶା କରୁଚି ଏହାର ଚରମ ସୀମା ପର୍ଯ୍ୟନ୍ତ ପହଞ୍ଚିବାକୁ ଯଥା ସାଧ୍ୟ ଚେଷ୍ଟା କରିବି । ଆଉ ଗୋଟାଏ କଥା, ଆଚ୍ଛା ଆପଣ ଡକ୍ଟର ଦୀନନାଥ ଗନ୍ତାଏତଙ୍କୁ ଚିହ୍ନନ୍ତି ?

ଅପର ପ୍ରାନ୍ତରରୁ କିଛି ସମୟ ଯାଏ କୌଣସି ଶବ୍ଦ ଶୁଣାଗଲା ନାହିଁ । ସତ୍ୟବ୍ରତ ହ୍ୟାଲୋ, କହି ଦୁଇ ଚାରି ଥର ଡାକିଲେ । କିନ୍ତୁ କୌଣସି ଶବ୍ଦ ଅପର ପ୍ରାନ୍ତରୁ ଶୁଣାଗଲା ନାହିଁ । ପଛଆଡୁ କିଏ ଯେପରି କହିଲା ନମସ୍କାର ମିଃ ମହାପାତ୍ର ।

ସତ୍ୟବ୍ରତ ରିସିଭରଟା ସେହିପରି କାନରେ ଦେଇ ବୁଲି ଅନେଇଲେ। ଲାଇଲା ସାମୁଏଲ । ସାଙ୍ଗରେ ଆଉ ଜଣେ ମହିଳା ।

ସତ୍ୟବ୍ରତ ମହାପାତ୍ର ସେମାନଙ୍କୁ ବସିବାକୁ ଇଙ୍ଗିତ ଦେଇ ପୁଣି ଡାକିଲେ ହ୍ୟାଲୋ, ହ୍ୟାଲୋ ।

ମନେ ହେଲା, ଯେପରି ଅପର ପ୍ରାନ୍ତରୁ ରିସିଭରଟି ଟେଲିଫୋନ ଉପରେ କିଏ କଚାଡ଼ି ଦେଲା । ସତ୍ୟବ୍ରତ ହଠାତ୍ କିଛି ବୁଝି ପାରିଲେ ନାହିଁ । ସେ ମଧ୍ୟ ରିସିଭରଟା ଟେଲିଫୋନ ଉପରେ ରଖି ଦେଇ ଲାଇଲା ସାମୁଏଲ ନିକଟକୁ ଫେରିଆସିଲେ । ତା' ସହିତ ଆସିଥିବା ଝିଅଟି ଆଡ଼େ ଚାହିଁ କହିଲେ ଆପଣଙ୍କ ନାମ ବୋଧହୁଏ ଲିଲି ଦେବୀ ।

ଲିଲି ସ୍ମିତ ହସି ସମ୍ମତି ଜଣାଇଲା ।

ଆପଣ ମୋତେ ଚିହ୍ନିଲେ କିପରି ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

ଆପଣଙ୍କୁ ଚିହ୍ନିଥିବା ଲୋକ ଦେଶରେ ମୋ ଅପେକ୍ଷା ଢେର ଅଛନ୍ତି । ଖବର କାଗଜରୁ ବହୁତ ଥର ମୁଁ ଆପଣଙ୍କର କାର୍ଯ୍ୟକଳାପର ବିବରଣୀ ପାଠ କରିଛି ଏବଂ ଫଟୋ ମଧ୍ୟ ଦେଖିଛି । ବିଶେଷ କରି କିଛିଦିନ ପୂର୍ବରୁ କିଷଣଲାଲର ଯେଉଁ ଚାଞ୍ଚଲ୍ୟକର କେସ୍‌ଟି ଆପଣ ଧରିଥିଲେ, ସେତେବେଳକାର ସମସ୍ତ ଘଟଣା ମୁଁ ଖବର କାଗଜରୁ ପାଠ କରୁଥିଲି ।

ହୁଁ, ତା'ହେଲେ ଲାଇଲା ଦେବୀ ଆପଣଙ୍କର ବାନ୍ଧବୀ ।

ଆଜ୍ଞା ।

କୁହନ୍ତୁ ଲାଇଲା ଦେବୀ, ଗତ ରାତିରେ ଆଉ କୌଣସି ସମସ୍ୟାର ସମ୍ମୁଖୀନ ହୋଇ ନ ଥିଲେ ତ ?

ନା ।

ସତ୍ୟବ୍ରତ ଲିଲି ମୁହଁକୁ ବାରମ୍ବାର ଚାହୁଁଥିଲେ ଏବଂ ଭାବୁଥିଲେ ସେ ରାତିର ଘଟଣା । ତାଙ୍କ ସହିତ ଯେଉଁ ଲିଲି ବଲ୍‌ଡାନ୍‌ସ କରିଥିଲା, ସେ କାହିଁକି ଏ ଲିଲି ହେବ । ଲାଇଲା ଠିକ୍ କହିଚି, ତା' ସହିତ ଲିଲିର କୌଣସି ସାମଞ୍ଜସ୍ୟ ନାହିଁ । ତା'ହେଲେ କିଏ ସେହି ଲିଲି ! ନିଶ୍ଚୟ ଲାଇଲା ସେଦିନ ତାଙ୍କ ସହିତ ସେପରି ଆଚରଣ କରି ପୁଣି ଅସ୍ୱୀକାର କରୁଚି । ତା'ଛଡ଼ା ଲାଇଲାର କୌଣସି ମୁଣ୍ଡଦୋଷ ନାହିଁତ ! ଅନେକେ ଏପରି କୌଣସି ବିକୃତ ରୋଗରେ ଭୋଗୁଥିବାର ଜଣା ଯାଇଛି, ଯେତେବେଳେ ରୋଗୀର କୌଣସି ହିତାହିତ ଜ୍ଞାନ ନ ଥାଏ, ସେ ଯେ କ'ଣ କରେ, କୁଆଡ଼େ ଯାଏ କିଛି ବୁଝିପାରେ ନାହିଁ, ପର ମୁହୂର୍ତ୍ତରେ ଯେତେବେଳେ ରୋଗମୁକ୍ତ ହୋଇଯାଏ, ସେତେବେଳେ ସେ ତା'ର ହିତାହିତ ଜ୍ଞାନ ଫେରି ପାଏ ଏବଂ ରୋଗୀ ଅବସ୍ଥାର ଘଟଣା କିଛି ମନେ ପକେଇ ପାରେ ନାହିଁ । ଲାଇଲା ହୁଏତ...

ସତ୍ୟବ୍ରତ ସଚେତନ ହୋଇଉଠିଲେ । ଲିଲିକୁ ସେ ଏପରି ଏକ ଧ୍ୟାନରେ ଚାହିଁ ବସିଥିଲେ ଯେ ଲାଜରେ ସେ ସଢ଼ି ଯାଇଥିଲା ଏବଂ ଶେଷକୁ ଉଠି ଠିଆ ହୋଇପଡ଼ିଲା । ସତ୍ୟବ୍ରତ ଅବସ୍ଥାଟା ବୁଝିପାରି ଟିକିଏ ଲଜ୍ଜିତ ହୋଇପଡ଼ିଲେ ।

ଆପଣ ବସନ୍ତୁ ଲିଲି ଦେବୀ, ଠିଆ ହୋଇ ପଡ଼ିଲେ କାହିଁକି?

ଲିଲି ଲାଜଲାଜ ଆଖିରେ ପୁଣି ଆସନ ଗ୍ରହଣ କଲା ।

ଆଚ୍ଛା ଲିଲି ଦେବୀ, ଆପଣଙ୍କ ବାନ୍ଧବୀଙ୍କର ଏପରି ଅବସ୍ଥା ଦେଖି କ'ଣ ମନେ ହେଉଚି । ତାଙ୍କର କୌଣସି ଶତ୍ରୁ ଥିବା କଥା ତ ନିଜେ ସେ ସ୍ମରଣ କରି ପାରୁ ନାହାନ୍ତି । ଆପଣଙ୍କର କ'ଣ ଧାରଣା ।

ମୋର ଗୋଟାଏ ଧାରଣା ଏ ସମ୍ବନ୍ଧରେ ଜନ୍ମିଚି, କିନ୍ତୁ ସେ କଥା କହିଲେ ଆପଣ ହୁଏତ ହସରେ ଉଡେଇ ଦେବେ ।

ସତ୍ୟବ୍ରତ ଲିଲି ଆଡ଼େ ଥରେ ଚାହିଁ ସଜାଡ଼ି ହୋଇ ବସିଲେ ।

ଆପଣଙ୍କର ଯାହା ମନେ ହେଉଚି କୁହନ୍ତୁ । ପ୍ରତ୍ୟେକ କଥାର ସାମାନ୍ୟ କୌଣସି ଟିକିଏ ଭିତ୍ତି ବାସ୍ତବ ସହିତ ରହିବା ଅତି ସ୍ୱାଭାବିକ । ତେଣୁ ଆପଣଙ୍କ କଥା ଯେତେ ଭିତ୍ତିହୀନ ହୋଇପାରେ ବୋଲି ଭାବୁଚନ୍ତି, ମୋ ପାଖରେ ଅନ୍ତତଃ ସେତେଟା ମନେ ହେବ ନାହିଁ । ଆଚ୍ଛା, ଟିକିଏ ଅପେକ୍ଷା କରନ୍ତୁ, ମୁଁ ଟା ପାଇଁ କହି ଆସେ ।

ସତ୍ୟବ୍ରତ ସେଠାରୁ ଉଠି ଚାଲିଗଲେ । ଆର ଘରେ ଅଭିମନ୍ୟୁ ବସି ଖଣ୍ଡିଏ ମାସିକ ପତ୍ରିକା ମନେଯୋଗ ସହକାରେ ପାଠ କରୁଥିଲା । ସେ ଅଭିମନ୍ୟୁର ଧ୍ୟାନ ଭଙ୍ଗ କରି କହିଲେ ଅଭି, ତୁମେ ବର୍ତ୍ତମାନ ରାୟ ବାହାଦୂରଙ୍କ ଘରକୁ ଚାଲିଯାଅ । ମୋର କାହିଁକି ମନେ ହେଉଚି, ସେଠାରେ କିଛି ନା କିଛି ଗୋଟାଏ ଦୁର୍ଘଟଣା ଘଟିଛି । ତା' ନ ହୋଇଥିଲେ ମୁଁ ରାୟବାହାଦୂରଙ୍କ ସହିତ କଥା କହୁ କହୁ ହଠାତ୍ ସେ ଟେଲିଫୋନ୍ ରିସିଭରଟା ଛାଡ଼ିଦେଲେ କାହିଁକି । ଯାଅ, ଆଉ ଡେରି ନୁହେଁ । ସେପରି ଯଦି କିଛି ମନେ କର, ସଙ୍ଗେସଙ୍ଗେ ମୋତେ ଟେଲିଫୋନ କରି ଜଣାଇ ଦେବ ।

ସତ୍ୟବ୍ରତଙ୍କ କଥା ଶେଷ ନ ହେଉଣୁ ସେ ଶୁଣିଲେ, ଆରଘରେ ଟେଲିଫୋନ୍‌ଟା ବାଜୁଛି । ସଙ୍ଗେସଙ୍ଗେ ସେ ଉଠି ଚାଲିଗଲେ । ଲାଇଲା ଓ ଲିଲି ଚିତ୍ରପ୍ରତିମା ପରି ସୋଫା ଉପରେ ବସିଛନ୍ତି । ସତ୍ୟବ୍ରତ ଟେଲିଫୋନ ରିସିଭରଟା କାନରେ ଦେଲେ । ହ୍ୟାଲୋ !

: କିଏ? ରାୟବାହାଦୂର! ସତ୍ୟବ୍ରତଙ୍କ ସ୍ୱରରୁ ଯେପରି ଉତ୍କଣ୍ଠା ଫୁଟି ଉଠୁଥିଲା । ସେ ଲିଲି ଓ ଲାଇଲାକୁ ଇଙ୍ଗିତରେ ଟିକିଏ ପାଖଘରକୁ ଚାଲିଯିବାକୁ କହିଲେ ।

ହଁ, ହଁ, ମୁଁ ସତ୍ୟବ୍ରତ ମହାପାତ୍ର କହୁଚି । ଆପଣ ହଠାତ୍ କଥା କହୁ କହୁ ସେତେବେଳେ ରିସିଭରଟା ରଖିଦେଲେ କାହିଁକି ?

ଶୁଣନ୍ତୁ ମିଃ ମହାପାତ୍ର । ଆପଣଙ୍କ ଅନୁମାନ ସତ୍ୟ ହୋଇଚି । ମାନେ ସୁରଞ୍ଜନ କାଲି ରାତିରେ କୁଆଡ଼େ ବାହାରକୁ ଯାଇଥିଲା, ଆଉ ଏତେବେଳଯାଏ ଫେରି ନାହିଁ । ଆପଣ ଟିକିଏ ଶୀଘ୍ର ଚାଲି ଆସନ୍ତୁ । ମୁଁ ବାଡ଼ିବଗିଚା ଚାରିଆଡ଼ ଖୋଜେଇ ସାରିଲିଣି, ସୁରଞ୍ଜନ ନାହିଁ ।

ଆପଣ କିଛି ସମୟ ଆଗରୁ କହିଲେ, ସୁରଞ୍ଜନ ଘରେ ଅଛି ।

ଥିଲା ବୋଲି ମୋର ଧାରଣା ଥିଲା । କିନ୍ତୁ ସେ ନାହିଁ । ଆପଣ ଚାଲି ଆସନ୍ତୁ । ସବୁ କଥା ଶୁଣିବେ । ଏମାନେ ମୋତେ ଆଉ ବଞ୍ଚିବାକୁ ଦେବେ ନାହିଁ ।

ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ସୁରଞ୍ଜନ ଯେଉଁଠି ଥାଉନା କାହିଁକି ତା'ର କୌଣସି ଅନିଷ୍ଟ ହୋଇନାହିଁ । ମୁଁ ଯାଉଚି ।

ସେ ରିସିଭରଟା ରଖିଦେଲେ ଏବଂ ଆର ଘରେ ଯାଇ ଦେଖିଲେ ଲାଇଲା ଓ ଲିଲି ଚୁପ୍‌ଚାପ୍ ବସି ରହିଚନ୍ତି!

ମୋତେ ଆପଣମାନେ କ୍ଷମା କରିବେ । ଗୋଟାଏ ଜରୁରୀ ଡକରା ପାଇ

ଟିକିଏ ବାହାରକୁ ଚାଲିଯିବାକୁ ହେଉଚି । ଲିଲି ଦେବୀ, ବିଶେଷ କରି ଲାଇଲା ଦେବୀଙ୍କ ସମ୍ବନ୍ଧରେ ଆପଣଙ୍କ ଧାରଣାର କାହାଣୀ ବର୍ତ୍ତମାନ ମୁଁ ଶୁଣି ନପାରି ଖୁବ୍ ଦୁଃଖିତ । ଯଦି କିଛି ମନେ ନ କରନ୍ତି, ତା'ହେଲେ ଚାରିଟା ପାଞ୍ଚଟା ବେଳକୁ ଥରେ ଆସିବେ । ନ ହେଲେ କୁହନ୍ତୁ ମୁଁ ଆପଣଙ୍କ ଠିକଣାରେ ଯାଇ ଦେଖା କରିବି ।

ଲିଲି ଓ ଲାଇଲା ଉଠି ଠିଆ ହୋଇଥିଲେ ।

ସେମାନଙ୍କ ନୀରବତା ସହ୍ୟ କରି ନ ପାରି ସତ୍ୟବ୍ରତ କହିଲେ ନ ହେଲେ କାଲି ସକାଳୁ ଆସନ୍ତୁ । ନମସ୍କାର । ମୋତେ କ୍ଷମା କରିବେ । ସେ ସଙ୍ଗେସଙ୍ଗେ ବାହାରି ଚାଲିଗଲେ ।

ମଟର ବାଇକ୍‌ଟି ତାଙ୍କର ଗର୍ଜ୍ଜନ କରିଉଠିଲା । ସେ କେଉଁଠାକୁ ଯିବେ? ପ୍ରଥମେ ରାୟ ବାହାଦୂରଙ୍କ ଘରକୁ ଯାଇ କିଛି ଲାଭ ନାହିଁ । ହୁଏତ ରାୟ ବାହାଦୂରଙ୍କୁ ସେ ଅର୍ଦ୍ଧପାଗଳ ଅବସ୍ଥାରେ ଭେଟିବେ । ତା'ଛଡ଼ା ଡକ୍ଟର ଦୀନନାଥ ଗନ୍ତାଏତଙ୍କ ଘରକୁ ଗଲେ, ସୁଷମାଠାରୁ ସୁରଞ୍ଜନର ଖବର ମିଳିବ । ନିତାନ୍ତ ଯଦି ସେ କିଛି କହିବାକୁ ଅସ୍ୱୀକାର କରେ, ସେ ତା'ଠାରୁ ଜୋର କରି କଥା ଆଦାୟ କରିବେ ।

ଡକ୍ଟର ଦୀନନାଥ ଗନ୍ତାଏତ ତାଙ୍କ ଡ୍ରଇଂରୁମ୍‌ରେ ବସି ଖଣ୍ଡିଏ 'ମେଡ଼ିକାଲ ଜର୍ଣ୍ଣାଲ' ମନଯୋଗ ସହକାରେ ପାଠ କରୁଥିଲେ । ସତ୍ୟବ୍ରତଙ୍କ ଉପସ୍ଥିତି ପର୍ଯ୍ୟନ୍ତ ସେ ଅନୁଭବ କରିପାରି ନ ଥିଲେ । କିଛି ସମୟ ନୀରବରେ ଠିଆ ହୋଇ ରହିଲା ପରେ ସତ୍ୟବ୍ରତ ମହାପାତ୍ର କଥା କହିବାକୁ ବାଧ ହେଲେ କ୍ଷମା କରିବେ ଡକ୍ଟର ଗନ୍ତାଏତ !

: ଓଃ ମିଃ ମହାପାତ୍ର । ନମସ୍କାର, ନମସ୍କାର । ମୁଁ ଭାବିଥିଲି ଆଉ କିଛି ସମୟ ପରେ ଆପଣଙ୍କ ନିକଟକୁ ଫୋନ କରିଥାଆନ୍ତି, ଅଥବା ନିଜେ ଯାଇଥାଆନ୍ତି ।

ସତ୍ୟବ୍ରତ ମହାପାତ୍ର ଚେଆରରେ ବସୁବସୁ କହିଲେ, ହଠାତ୍ ମୋ ପ୍ରତି ଏ କରୁଣା ପ୍ରଦର୍ଶନ କାହିଁକି?

: ଶୁଣ ହେ, ଶୁଣ । ମୋ ପାଖକୁ ଟିକିଏ ଘୁଞ୍ଚିଆସ । ଡକ୍ଟର ଗନ୍ତାଏତ ହଠାତ୍ ଯେପରି ସଚେତନ ହୋଇ ପୁଣି କହିଲେ—କ୍ଷମା କରିବେ ମିଃ ମହାପାତ୍ର। ବୟସ ଯଥେଷ୍ଟ ହୋଇ ଗଲାଣି କି ନା, ଆପଣମାନଙ୍କ ପରି ପିଲାମାନଙ୍କୁ ଦେଖିଲେ, ଆଉ ଭଦ୍ରତା ରକ୍ଷା କରିବା କଥା ମନେ ରହୁନାହିଁ ।

ନା, ନା, ଡକ୍ଟର ଗନ୍ତାଏତ । ଆପଣ କିଛି ମନେ କରନ୍ତୁ ନାହିଁ, ମୋତେ ଆପଣ ସମ୍ବୋଧନ କରିବା ମୋଟେ ଆବଶ୍ୟକ ନାହିଁ । ମୁଁ ଆପଣଙ୍କର ପୁଅ ବୟସର ।

ବେଶ୍ ବେଶ୍ । ଡକ୍ଟର ଗନ୍ତାଏତ ଯେପରି ଉତ୍ସାହିତ ହୋଇ କହିଲେ: ତୁମେ

ତ କ୍ରିମିନାଲ ସାଇକୋଲଜି ଅନେକ ଷ୍ଟଡି କରିଚ, କିନ୍ତୁ ଫିମେଲ୍ ସାଇକୋଲୋଜି ସମ୍ବନ୍ଧରେ ତମର କିଛି ଧାରଣା ଅଛି?

ହଠାତ୍ ଏ ପ୍ରଶ୍ନ କାହିଁକି ? ସତ୍ୟବ୍ରତ ମହାପାତ୍ର ପଚାରିଲେ ।

: ମୁଁ ବଡ଼ ସମସ୍ୟାରେ ପଡ଼ିଯାଇଚି ମିଃ ମହାପାତ୍ର । ମୋରି ଝିଅ ସୁଷମା । ତାକୁ ମୁଁ ଯଥେଷ୍ଟ ସ୍ନେହ କରେ । ପିଲାଟି ଦିନରୁ ସେ ମା'କୁ ହରେଇଚି । ତେଣୁ ବୁଝିପାରୁଥିବେ, ମୁଁ ତାକୁ କିପରି ମଣିଷ କରିଥିବି । ବର୍ତ୍ତମାନ ଦେଖୁଚି ସେ ମୋ ପାଇଁ ଗୋଟାଏ ଚିନ୍ତାର କାରଣ ହୋଇଉଠିଲାଣି । ମୁଁ ଯେତେ ଚେଷ୍ଟା କରୁଚି, ତାକୁ ମୋଟେ ଷ୍ଟଡି କରି ପାରୁନାହିଁ । କାଲି ରାତିରୁ କେଉଁଆଡ଼େ ଯାଇଚି ଯେ, ଏତେବେଳଯାଏ ଫେରି ନାହିଁ ।

ସତ୍ୟବ୍ରତ ମହାପାତ୍ର ସ୍ତବ୍ଧ ହୋଇ ଡକ୍ଟର ଗନ୍ତାଏତଙ୍କ ମୁହଁକୁ ଅନାଇ ରହିଲେ । ତାଙ୍କ ମନର ସମସ୍ତ ଆଶା, ସମସ୍ତ ଚିନ୍ତାଧାରା ଯେପରି ଗୋଟିଗୋଟି ହୋଇ ଝରି ଯିବାକୁ ଲାଗିଲା । ସେ କେବଳ ଡକ୍ଟରଙ୍କ ମୁହଁକୁ ଅନାଇଲେ ।

ମିଃ ମହାପାତ୍ର ! ଡକ୍ଟର ଗନ୍ତାଏତ ପୁଣି କହିଲେ, ସୁଷମା, ମୋ ଝିଅ ସୁଷମା କଥା ମୁଁ କହୁଚି । ନିଜେ ତାକୁ ମୁଁ କୋଳରେ କାଖରେ ଧରି ମଣିଷ କରିଚି । ଏଇ ଅଚିହ୍ନା ପୃଥିବୀ ସହିତ ତାର ପରିଚୟ କରେଇଚି । ଦିନ ପରେ ଦିନ ତାକୁ ଆଲୋକ ଦେଖାଇଚି, ଶିକ୍ଷା ଦେଇଚି, ଚାହିଁଚି ମୋରି ଆଦର୍ଶରେ ମୁଁ ତାକୁ ଅନୁପ୍ରାଣିତ କରିବା ପାଇଁ । କିନ୍ତୁ ମିଃ ମହାପାତ୍ର ମୁଁ ଆଜି ଆଶ୍ଚର୍ଯ୍ୟ ହେଉଚି, ମୋର ସମସ୍ତ ଶିକ୍ଷା, ଦୀକ୍ଷା, ଆଦର୍ଶ ସବୁ ଯେପରି ବ୍ୟର୍ଥ ହୋଇଚି । ସୁଷମାକୁ ମୁଁ ଚିହ୍ନିପାରୁ ନାହିଁ । ତାର ସାଇକଲୋଜି ମୁଁ ଷ୍ଟଡି କରି ପାରୁ ନାହିଁ । ତମେ କହି ପାରିବ ମିଃ ମହାପାତ୍ର, ଉମ୍ୟାନ ସାଇକଲୋଜି ସମ୍ବନ୍ଧରେ ମୋତେ କିଛି ଶିକ୍ଷା ଦେଇପାରିବ ?

ଡକ୍ଟର ଗନ୍ତାଏତଙ୍କ କଥା କହିବାର ଭଙ୍ଗୀରୁ ସତ୍ୟବ୍ରତ ମହାପାତ୍ର ବୁଝି ପାରିଲେ ଯେ, ଏଠାରୁ ଖସିବା ସହଜ ନୁହେଁ ! ବୃଦ୍ଧ ଯେଉଁପରି ଭାବରେ ଫିମେଲ ସାଇକଲୋଜି ନେଇ ଚର୍ଚ୍ଚା ଆରମ୍ଭ କରି ଦେଲେଣି, ସେ ସମ୍ବନ୍ଧରେ କଥା ଆରମ୍ଭ କଲେ ଆଉ ଶେଷ ହେବନାହିଁ । ଖାଲି ଚକ୍ଷୁ କୁଟିବା ସାର ହେବ । ସମୟ କାହିଁ?

ସତ୍ୟବ୍ରତ ମହାପାତ୍ର ପଚାରିଲେ : ତା'ହେଲେ ସୁଷମା ଦେବୀ କାଲି ରାତିରୁ ଫେରି ନାହାନ୍ତି ?

ମୁଁ ତ ସେଇ କଥା ତୁମକୁ କହୁଚି ମିଃ ମହାପାତ୍ର । ସୁଷମା କାଲି ରାତିରୁ କ୍ଲବରୁ ଆଉ ଫେରି ନାହିଁ ।

: ହୁଁ, ସେ କ'ଣ ମଝିରେ ମଝିରେ ହଠାତ୍ ଦିନେ ଦୁଇଦିନ ଅନ୍ତର୍ଦ୍ଧାନ ହୁଅନ୍ତି ?

: ଏକ୍‌ଜାକ୍‌ଟିଲି ମିଃ ମହାପାତ୍ର । ସୁଷମା ମଝିରେ ମଝିରେ ଏହିପରି ଅନ୍ତର୍ଦ୍ଧାନ ହୁଏ । କିନ୍ତୁ ଏ ସମ୍ବନ୍ଧରେ ପ୍ରଶ୍ନ କରି କୌଣସି ଦିନ ସୁଷମାଠାରୁ ସନ୍ତୋଷଜନକ ଉତ୍ତର ପାଇ ନାହିଁ ।

ହୁଁ, ମୁଁ ତା'ହେଲେ ବର୍ତ୍ତମାନ ଆସୁଚି ଡକ୍ଟର ଗନ୍ତାଏତ ।

କିନ୍ତୁ ସୁଷମା ସମ୍ବନ୍ଧରେ ଆପଣ କୌଣସି ମତାମତ ପ୍ରକାଶ କଲେ ନାହିଁ ତ !

: ସେ ସୁଷମା ଦେବୀଙ୍କର ସମ୍ପୂର୍ଣ୍ଣ ବ୍ୟକ୍ତିଗତ ସମସ୍ୟା । ସେଥିରେ ହସ୍ତକ୍ଷେପ କରିବା ଅଥବା ସେପରି ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ ଆପାତତଃ ସମ୍ଭବ ନୁହେଁ । ତେବେ ଭବିଷ୍ୟତରେ ଏ ସମ୍ବନ୍ଧରେ ମୁଁ ଆପଣଙ୍କୁ ଉତ୍ତର ଦେଇ ପାରିବି, ଆଶା କରୁଚି ।

ବେଶ୍, ମୁଁ ତା'ହେଲେ ସେଇଦିନଯାଏ ଅପେକ୍ଷା କରିବି । କିନ୍ତୁ ମିଃ ମହାପାତ୍ର, ଏହାର ଗୋଟାଏ ସମାଧାନ ଚାହେଁ । ଆଉ ଏଥିପାଇଁ ମୁଁ ତମ ଉପରେ ଭରସା କରୁଚି ।

ସତ୍ୟବ୍ରତ ମହାପାତ୍ର ସ୍ମିତହସି କହିଲେ  ଆଜିଯାଏ ମୋ ଉପରେ ଭରସା ରଖି କେହି ନିରାଶ ହୋଇ ନାହାନ୍ତି । ଆଉ ଏ କ୍ଷେତ୍ରରେ ଖାଲି ଆପଣଙ୍କ ସ୍ୱାର୍ଥ ପାଇଁ ନୁହେଁ, ମୋ ସ୍ୱାର୍ଥ ଦୃଷ୍ଟିରୁ ମଧ୍ୟ ଏହାର ନିଗୂଢ ତଥ୍ୟ ଆବିଷ୍କାର କରିବା ପ୍ରୟୋଜନ ହୋଇପଡିଚି । ଆଚ୍ଛା, ନମସ୍କାର ଡକ୍ଟର ଗନ୍ତାଏତ ।

ସତ୍ୟବ୍ରତ ମହାପାତ୍ର ଚାଲିଯିବା ପୂର୍ବରୁ ଥରେ ଡକ୍ଟର ଗନ୍ତାଏତଙ୍କ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ । ନା, କୌଣସି ପରିବର୍ତ୍ତନ ନାହିଁ । ସେହିପରି ନିଶ୍ଚଳ ଆଖି, ଅବିଚଳିତ ମୁଖଭଙ୍ଗୀ, ସହଜ ଓ ଅପରିବର୍ତ୍ତିତ ।

ସତ୍ୟବ୍ରତ ରାସ୍ତାକୁ ଓହ୍ଲେଇ ପଡି ମଟର ବାଇକ୍‌ଟିରେ ଆରୋହଣ କଲେ। ଆରୋହଣ ଆଉ ଅବତରଣ ଯେପରି ଏ କେତେଦିନ ହେବ ତାଙ୍କ ଦୈନନ୍ଦିନ ଜୀବନର କାର୍ଯ୍ୟ ହୋଇପଡିଚି । ତା'ଛଡା କୌଣସି ତଥ୍ୟ ସହାୟତାରେ ଆଗେଇବାର ମାର୍ଗ ସେ ଦେଖିପାରୁ ନାହାନ୍ତି । ଘଟଣାଟା ବି ଯେପରି ବୈଚିତ୍ର୍ୟମୟ ମନେ ହେଉଚି । ଅନେକଟା ଅବାସ୍ତବ ପରି ମଧ୍ୟ ଲାଗୁଚି ।

ସୁଷମା ଆଉ ସୁରଞ୍ଜନ, କୁଆଡେ ଗଲେ ଏମାନେ ! ହୁଏତ ସୁଷମା ସୁରଞ୍ଜନକୁ କୌଣସି ନିଭୃତ ସ୍ଥାନକୁ ଡାକି ନେଇ, ଦୁହେଁ ଏକାଠି ସମୟ କଟାଉଛନ୍ତି । ଅଥବା ସୁରଞ୍ଜନ ଏପରି କୌଣସି ପରିସ୍ଥିତି ଭିତରେ ଛନ୍ଦି ହୋଇ ପଡିଚି, ଯେଉଁଠାରୁ ସହଜରେ ମୁକ୍ତିଲାଭର ଉପାୟ ନାହିଁ । କେଉଁଠୁ ସେ ଆବିଷ୍କାର କରିବେ ସୁରଞ୍ଜନକୁ ?

ମଟର ବାଇକ୍‌ଟି ରାୟ ବାହାଦୂରଙ୍କ ବିରାଟ ପ୍ରାସାଦ ଭିତରକୁ ପ୍ରବେଶ କରୁଥିଲା । ରାୟ ବାହାଦୂର ଦୋତାଲା ବାରଣ୍ଡା ଉପରେ ଠିଆ ହୋଇ ଯେପରି ଏକ ଧ୍ୟାନରେ ପ୍ରତୀକ୍ଷା କରୁଥିଲେ । ସତ୍ୟବ୍ରତଙ୍କ ମଟର ବାଇକ୍‌ଟି ଦେଖିବାକ୍ଷଣି ସେ କ୍ଷିପ୍ର ଗତିରେ ତଳକୁ ଓହ୍ଲେଇ ଆସିଲେ ।

ମିଃ ମହାପାତ୍ର ! ରାୟ ବାହାଦୂରଙ୍କ କଣ୍ଠରୁ ଯେପରି ଉତ୍କଣ୍ଠା ଝରି ପଡୁଥିଲା ।

ସତ୍ୟବ୍ରତ ମଟର ସାଇକେଲରୁ ଓହ୍ଲେଇ ପଛକୁ ଚାହିଁଲେ, କିଏ ? ହଠାତ୍ ସତ୍ୟବ୍ରତ ଚିହ୍ନି ପାରିଲେ ନାହିଁ । ଏ ଯେପରି ରାୟ ବାହାଦୂରଙ୍କ ପ୍ରେତମୂର୍ତ୍ତି, କରୁଣ ଆଉ ଆକୁଳ ନୟନରେ ଅନାଇ ରହିଚି ।

ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ସୁରଞ୍ଜନ ନିରାପଦରେ ଅଛି ।

ସତ୍ୟବ୍ରତ ପରିସ୍ଥିତିକୁ ଟିକିଏ ହାଲୁକା କରିଦେବା ପାଇଁ ସହଜ ଓ ସରଳ ସ୍ୱରରେ କହିଲେ ।

ସୁରଞ୍ଜନର ସମ୍ବାଦ ଆପଣ ପାଇଚନ୍ତି ମିଃ ମହାପାତ୍ର !

ହଁ, ଆପଣ ଆସନ୍ତୁ । ବୈଠକଖାନାରେ ବସି ଆଲୋଚନା କରିବା ।

ରାୟ ବାହାଦୂର ସତ୍ୟବ୍ରତ ପଛେପଛେ ଆଗେଇଲେ । ଯେପରି ନିଜର ଶରୀରଟାକୁ ବହନ କରିବାର ଶକ୍ତି ସେ ହରେଇଚନ୍ତି । ମଦନିଶାରେ ମାତାଲ ହେଲାପରି ରାୟ ବାହାଦୂରଙ୍କ ପାଦ ଏଣେତେଣେ ପଡୁଥିଲା । ବୈଠକଖାନାର ସୋଫା ଉପରେ ବସି ଗୋଟିଏ ଦୀର୍ଘ ନିଃଶ୍ୱାସ ତ୍ୟାଗ କରି ସତ୍ୟବ୍ରତଙ୍କ ଆଡେ ଆକୁଳ ନୟନରେ ଅନାଇ ରହିଲେ ।

ଆପଣ ଡକ୍ଟର ଦୀନନାଥ ଗନ୍ତାଏତଙ୍କୁ ଚିହ୍ନନ୍ତି ? ସତ୍ୟବ୍ରତ ପଚାରିଲେ ।

ରାୟ ବାହାଦୂର କିଛି ସମୟ ଚିନ୍ତା କରି କହିଲେ  ନା, ମନେ ପଡୁନାହିଁ । କିନ୍ତୁ ତାଙ୍କ ସହିତ ଆମର ବର୍ତ୍ତମାନ ପରିସ୍ଥିତିର ସଂପର୍କ କ'ଣ ?

ତାଙ୍କ ସହିତ ନୁହେଁ, ତେବେ ତାଙ୍କ ଝିଅ ସୁଷମା ସହିତ ଏ ଘଟଣାର ସାମାନ୍ୟ ଯୋଗସୂତ୍ର ଥିଲା ପରି ମନେ ହେଉଚି ।

ମାନେ ? ରାୟ ବାହାଦୂର ଯେପରି ଚମକି ଉଠିଲେ ।

: ହଁ, ସୁଷମା ଗନ୍ତାଏତ । ଡକ୍ଟର ଦୀନନାଥ ଗନ୍ତାଏତଙ୍କର ଏକମାତ୍ର ସନ୍ତାନ । ଆଧୁନିକା, ଶିକ୍ଷିତା । କାଲି ସୁରଞ୍ଜନ ସହିତ ସୁଷମାକୁ ମୁଁ ନାଇଟ୍ କ୍ଲବରେ ଦେଖିଥିଲି ।

ନା, ନା ମିଃ ମହାପାତ୍ର । ଏହା କିପରି ସମ୍ଭବ । ସୁରଞ୍ଜନ କ'ଣ ଏତେ ତଳକୁ ଖସି ଯାଇଚି ? ରାୟ ବାହାଦୂର ଶରତଚନ୍ଦ୍ର ଦାଶ ମହାପାତ୍ର ବଂଶର ରକ୍ତ କ'ଣ ଏତେ ଅପବିତ୍ର ହୋଇଉଠିଛି !

ସତ୍ୟବ୍ରତ ମହାପାତ୍ର ମୁହୂର୍ତ୍ତେ ଚୁପ୍ ରହିଲେ । ସେ ରାୟ ବାହାଦୂରଙ୍କ ବିକଳ ମୁଖମଣ୍ଡଳ ଆଡେ ଚାହିଁ ଧୀରେଧୀରେ କହିଲେ : ଏହା ରକ୍ତର ଦୋଷ ନୁହେଁ, ସଂସର୍ଗର ଦୋଷ, ଆଧୁନିକ ସଭ୍ୟତାର ଧାରା, ଯୁଗର ରୁଚି । ଆଉ ମୋର ଅନୁମାନ ଯଦି ସତ୍ୟ ହୁଏ, ତା'ହେଲେ ନିରଞ୍ଜନର ମୃତ୍ୟୁ ମୂଳରେ ସୁଷମାର ହାତ ଥିଲା ।

: ମୁଁ ଆପଣଙ୍କ କଥାରୁ କିଛି ବୁଝି ପାରୁ ନାହିଁ ମିଃ ମହାପାତ୍ର । ମୁଁ ଆପଣଙ୍କର ଏପରି ଏକ ଇଙ୍ଗିତକୁ ବିଶ୍ୱାସ କରି ପାରୁନାହିଁ । କାରଣ ରାୟ ବାହାଦୂର ବଂଶର ଗରିମାମୟ ଇତିହାସ ଭିତରେ ଏପରି କଳୁଷ କାଳିମା ପ୍ରବେଶ କରିବାର ନୁହେଁ । ମୋର ସନ୍ତାନମାନଙ୍କ ଉପରେ ଯଥେଷ୍ଟ ଆସ୍ଥା ଥିଲା । ମୁଁ ସେମାନଙ୍କୁ ନିଜ ହାତରେ

ମଣିଷ କରିଛି । ଆଧୁନିକ ଦୁନିଆ ସହିତ ତାଳ ରଖି ଆଗେଇବାର ଶିକ୍ଷାରେ ସେମାନଙ୍କୁ ଶିକ୍ଷିତ କଲେ ମଧ ଆମ ବଂଶର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ପାଇଁ ସେମାନଙ୍କୁ ଶିକ୍ଷା ଦେଇଚି ।

ମୁଁ ଆପଣଙ୍କ କଥା ବୁଝୁଚି । ସତ୍ୟବ୍ରତ ମହାପାତ୍ର କହିଲେ । କିନ୍ତୁ ଗୋଟାଏ କଥା କ'ଣ ଜାଣନ୍ତି, ଆଜିର ଏହି ସଭ୍ୟତା, ଯାହା ଉଗ୍ର ଆଧୁନିକତାରେ ଆଖ୍ୟାୟିତ ହେଉଚି, ସେହି ସଭ୍ୟତା ଏକ ଅନୁକରଣୀୟ ଅବସ୍ଥାରେ ରହିଥିବାରୁ ଆମେ ଭଲ ଅପେକ୍ଷା ମନ୍ଦକୁ ବେଶୀ ଭାବରେ ଗ୍ରହଣ କରିନେଉଚୁ । ତେଣୁ ନିରଞ୍ଜନଙ୍କର ଏପରି ଏକ ଅବସ୍ଥାକୁ ଗ୍ରହଣ କରିନେବା ମୂଳରେ ଯେ ଯଥେଷ୍ଟ ଦୋଷତ୍ରୁଟି ଥିଲା ବା ଅଛି, ତାହା ସେମାନେ ଅନୁଭବ କରି ପାରି ନାହାନ୍ତି । ଏପରି କରିବା ମୂଳରେ ଯେ ରାୟ ବାହାଦୂର ବଂଶଗୌରବ କ୍ଷୁଣ୍ଣ ହେଉଛି, ସେକଥା ସେମାନଙ୍କ ଆଖିରେ ହୁଏତ ଅତି ସାଧାରଣ ଭାବରେ ଦେଖା ଦେଇଚି । ଯା'ହେଉ ସେଇଟା ବର୍ତ୍ତମାନ ଆମର ଆଲୋଚ୍ୟ ବିଷୟ ନୁହେଁ । ସୁରଞ୍ଜନ ସମ୍ବନ୍ଧରେ ମୋର ଧାରଣା ହେଉଚି, ଗତ ରାତ୍ରିଠାରୁ ସୁରଞ୍ଜନ ଆଉ ସୁଷମା କେଉଁଠି ଏକତ୍ର ବାସ କରୁଚନ୍ତି ।

ରାୟ ବାହାଦୂରଙ୍କର ଯେପରି ବାକ୍‌ଶକ୍ତି ରୁଦ୍ଧ ହୋଇଆସିଲା । ସେ ମସ୍ତକ ଅବନତ କରି ବସି ରହି ସତ୍ୟବ୍ରତ ମହାପାତ୍ରଙ୍କ କଥା ଶୁଣୁଥିଲେ ।

ମୁଁ ଆପଣଙ୍କ ନିକଟକୁ ଆସିବା ପୂର୍ବରୁ ଡକ୍ଟର ଦୀନନାଥ ଗନ୍ତାଏତଙ୍କ ଘର ବାଟ ଦେଇ ଆସିଥିଲି । ଭଦ୍ରଲୋକ ଉଗ୍ର ଆଧୁନିକପନ୍ଥୀ । ସେ ତାଙ୍କର ଝିଅକୁ ପୂର୍ଣ୍ଣସ୍ୱାଧୀନତା ଦେଇଚନ୍ତି । ତା'ଛଡା ସୁଷମା ଅତି ପିଲାଟି ଦିନରୁ ମା'ଙ୍କୁ ହରେଇ ବାପାଙ୍କ ହାତରେ ମଣିଷ ହୋଇଚି । ତେଣୁ ନାରୀଧର୍ମର ଯେଉଁ ପରମ୍ପରା, ଯାହା ରକ୍ଷା କଲେ ନାରୀ ଦେବୀ ହୁଏ, ସେପରି ଶିକ୍ଷା ସୁଷମା ପାଇନାହିଁ । କିନ୍ତୁ ଡକ୍ଟର ଗନ୍ତାଏତ ସୁଷମାକୁ ନିଜ ଆଦର୍ଶରେ ଗଢି ମଧ ଆଜି ନିଜର ସନ୍ତାନ ପ୍ରତି ତାଙ୍କର ଅବିଶ୍ୱାସ ଜନ୍ମିଚି । ସେ ସୁଷମାକୁ ଚିହ୍ନିପାରୁ ନାହାନ୍ତି । ତାଙ୍କ ମନରେ ସନ୍ଦେହ ଜାଗିଚି । ସୁଷମା ମଧ କାଲି ରାତିରୁ ଆଜିଯାଏ ଘରକୁ ଫେରି ନାହିଁ ।

ମିଃ ମହାପାତ୍ର ! ରାୟ ବାହାଦୂରଙ୍କ ସ୍ୱର ଯେପରି କଠିନ ହୋଇ ଉଠିଥିଲା । ଆପଣ ସେ ପ୍ରସଙ୍ଗ ବନ୍ଦ ରଖନ୍ତୁ । ରାୟ ବାହାଦୂର ବଂଶର ଜଣେ ଭବିଷ୍ୟତ ଭାଗ୍ୟଧର ସମ୍ପର୍କରେ ଏପରି କୁତ୍ସିତ କଥା ଶୁଣିବାକୁ ମୋର ଆଉ ଧୈର୍ଯ୍ୟ ନାହିଁ । ଆପଣ କୁହନ୍ତୁ ସୁରଞ୍ଜନ କେଉଁଠି ଅଛି । ତାକୁ ଖାଲି ଆଣି ମୋ ପାଖରେ ପହଞ୍ଚାଇ ଦିଅନ୍ତୁ । ହୁଏତ ତାର ଏପରି ସାମୟିକ ଦୁର୍ବଳତା ପାଇଁ ସେ ଗୋଡ ଖସାଇଚି, କିନ୍ତୁ ମୋର ବିଶ୍ୱାସ ରାୟ ବାହାଦୁର ବଂଶର ରକ୍ତ ଏବେ ବି ବିଶୁଦ୍ଧ । ସୁରଞ୍ଜନ ତା'ର ଏଇ ସାମୟିକ ଦୁର୍ବଳତା ଅପେକ୍ଷା ବଂଶର ଗୌରବ ରକ୍ଷା କରିବା ଭଲ ଭାବରେ ଶିଖିଛି । ଆପଣ ସୁରଞ୍ଜନକୁ ମୋତେ ଫେରାଇ ଦିଅନ୍ତୁ ।

ରାୟ ବାହାଦୂର ଉଠିପଡି ସତ୍ୟବ୍ରତଙ୍କର ହାତଯୋଡିକୁ ଜାବୁଡି ଧରିଲେ ।

ସତ୍ୟବ୍ରତ ଉଠି ଠିଆ ହୋଇପଡିଲେ । ରାୟ ବାହାଦୂରଙ୍କ ପରି ଏକ ପ୍ରବୀଣ ଓ ପ୍ରାଚୀନ ଲୋକ ଏତେ ଯେ ଦୁର୍ବଳ ହୋଇପଡିବେ, ସତ୍ୟବ୍ରତ ମୋଟେ ଆଶା କରି ନ ଥିଲେ । ସେ ସହଜ ଓ ସଂଯତ ସ୍ୱରରେ କହିଲେ : ଆପଣ ଧୈର୍ଯ୍ୟ ହରାନ୍ତୁ ନାହିଁ । ମୋର ବିଶ୍ୱାସ ସୁରଞ୍ଜନ ଯେଉଁଠି ଥାଉନା କାହିଁକି ସେ ଭଲରେ ଅଛି । ଆଉ ଆପଣଙ୍କୁ ମୁଁ କଥା ଦେଉଚି, ସୁରଞ୍ଜନକୁ ଖୋଜି ଆପଣଙ୍କ ହାତରେ ଅର୍ପଣ କରିବି ।

ସତ୍ୟବ୍ରତ ଆଉ ଅପେକ୍ଷା କଲେ ନାହିଁ । ଆଉ ଅଧିକ ସମୟ ବସି ରହି ତାଙ୍କ ସହିତ କୌଣସି ବିଷୟରେ ଆଲୋଚନା କରିବାକୁ ମଧ ସେ ଉଚିତ୍ ମନେ କଲେ ନାହିଁ । ରାୟ ବାହାଦୂରଙ୍କ ଅବସ୍ଥା ଯାହା, ସେଥିରେ ସେ କୌଣସି ପ୍ରକାର ଆଲୋଚନାରେ ଅଂଶ ଗ୍ରହଣ କରିବାକୁ ସମର୍ଥ ନୁହନ୍ତି । ନମସ୍କାର ଜଣାଇ ସତ୍ୟବ୍ରତ ମହାପାତ୍ର ଦ୍ରୁତ ପଦକ୍ଷେପରେ ସେଠାରୁ ବାହାରି ଆସିଲେ । ମନ ଭିତରେ ଦ୍ୱନ୍ଦ୍ୱଯୁଦ୍ଧ ଲାଗିଥିଲା । ସମସ୍ୟାଟାକୁ ଠିକ୍ ସେ ଅନୁସରଣ କରିପାରୁ ନ ଥିଲେ ।

କିଏ ଅପରାଧୀ ? କ'ଣ ଏହି ଅପରାଧର ଭିତ୍ତି ? ଏ ପର୍ଯ୍ୟନ୍ତ ସେ କିଛି ଗୋଟାଏ ସ୍ପଷ୍ଟ ଧାରଣା କରି ପାରୁ ନ ଥିଲେ । ନିରଞ୍ଜନକୁ ଯେ ବିଷ ପ୍ରୟୋଗ କରା ହୋଇ ହତ୍ୟା କରାଯାଇଚି, ଏହା ଅସ୍ୱୀକାର କରିବାର ନୁହେଁ । ପୋଷ୍ଟମର୍ଟମ ରିପୋର୍ଟ ଅନୁଯାୟୀ ନିରଞ୍ଜନ ରକ୍ତରେ ତୀବ୍ର ବିଷ ମିଶି ସମସ୍ତ ରକ୍ତକୁ ପାଣି କରିଦେଇଚି । କିନ୍ତୁ କ'ଣ ଯେ ସେଇ ବିଷମିଶା ପ୍ରଣାଳୀ, ତାହା ଧରା ହୋଇପାରୁ ନାହିଁ । ଆଉ କ'ଣ ରାୟ ବାହାଦୂରଙ୍କ କହିବା ଅନୁସାରେ ନିରଞ୍ଜନର ଅପଘାତରେ ମୃତ୍ୟୁ ହୋଇଚି ! ମାନେ ସର୍ପଦଂଶନ ବା ସେହିପରି ଦୈବଦୁର୍ଘଟଣାର ସମ୍ମୁଖୀନ ହୋଇ ନିରଞ୍ଜନର ମୃତ୍ୟୁ ହୋଇଚି !!

ନା ନା, ରାୟବାହାଦୁରଙ୍କ ପରି ସେ ଏପରି ଗୋଟାଏ ଅନ୍ଧବିଶ୍ୱାସକୁ କିପରି ପ୍ରଶ୍ରୟ ଦେବେ ! ରାୟ ବାହାଦୂରଙ୍କ ବଂଶନାଶ ମୂଳରେ ନିଶ୍ଚୟ କାହାର ଏକ ଚକ୍ରାନ୍ତ କାର୍ଯ୍ୟ କରୁଛି । ସେ ଏହାର ମୂଳ ଖୋଜି ବାହାର କରିବେ । ହେଉ ସେ ଯେତେ ଗଭୀର, ହେଉ ସେ ଯେତେ କୌଶଳପୂର୍ଣ୍ଣ, ସତ୍ୟବ୍ରତ ମହାପାତ୍ର ଆଖିରେ ଧୂଳି ଫିଙ୍ଗିବା ଏତେ ସହଜ ହେବ ନାହିଁ ।

ଗୋଟାଏ ମୁଣ୍ଡ କଣ୍ଟା, କେଇଖଣ୍ଡ ଫଟୋ, ଲିଲି, ଲାଇଲା ଆଉ ସୁଷମା । ଏତିକି ମାତ୍ର ସମ୍ବଳ କରି ସତ୍ୟବ୍ରତ ମହାପାତ୍ର ରାୟ ବାହାଦୂର ବଂଶ ରକ୍ଷା କରିବାକୁ ଦୃଢପ୍ରତିଜ୍ଞ ହୋଇଛନ୍ତି । ସେଦିନ ସମ୍ବାଦପତ୍ରଟା ଆଖି ଆଗରେ ମେଲେଇ ଧରି ସେ ଏହି ବିଷୟ ଚିନ୍ତା କରୁଥିଲେ । ସମ୍ବାଦପତ୍ର ଉପରେ ଆଖି ବୁଲେଇ ମଧ ସେଥିରୁ କୌଣସିଟାକୁ ଆହରଣ କରି ପାରୁ ନ ଥିଲେ ।

ଅଭିମନ୍ୟୁ ଆସି ସାମନା ସୋଫା ଉପରେ ବସିଲା । ଗତ ରାତ୍ରିର ରିପୋର୍ଟଟା ଦେବାକୁ ସମୟ ମିଳି ନ ଥିଲା । ସତ୍ୟବ୍ରତ କେତେ ରାତିରେ ଫେରିଥିଲେ ଅଭିମନ୍ୟୁ ଜାଣି ପାରି ନଥିଲା । ଅଭିମନ୍ୟୁର ଉପସ୍ଥିତି ଅନୁଭବ କରି ସେହି ଅବସ୍ଥାରେ ସତ୍ୟବ୍ରତ ପଚାରିଲେ  କାଲି ଷ୍ଟାର କ୍ଲବକୁ ଯାଇଥିଲ?

ହଁ । କିନ୍ତୁ ଲାଇଲାର ଯେପରି ସ୍ୱତନ୍ତ୍ର ରୂପ ମୁଁ ଦେଖିବାକୁ ପାଇଲି ।

ମାନେ ?

ସତ୍ୟବ୍ରତ ଚମକିଲା ପରି ଉଠି ବସିଲେ ଏବଂ ସମ୍ବାଦପତ୍ରଟାକୁ ଟେବୁଲ ଉପରେ ରଖିଦେଇ ଅଭିମନ୍ୟୁ ଆଡେ ଚାହିଁଲେ ।

ଆପଣଙ୍କ ଅନୁମାନ ସତ୍ୟ, ଅଭିମନ୍ୟୁ କହିଲା । ଲାଇଲାକୁ ମୁଁ ଯାହା ଭାବିଥିଲି ସେ ତାହା ନୁହେଁ । ଲଇଲା ପ୍ରଚୁର ମଦ ପିଏ ଆଉ ମାତାଲ ବି ହୁଏ ।

ହୁଁ, ଘଟଣାଟା ବିସ୍ତାରିତ ଭାବରେ କୁହ ।

: ମୁଁ କାଲି ପ୍ରାୟ ସନ୍ଧ୍ୟା ସାତଟା ଭିତରେ ଷ୍ଟାର କ୍ଲବରେ ପହଞ୍ଚିଲି । ସେତେବେଳକୁ ଗହଳି ବେଶୀ ଆରମ୍ଭ ହୋଇ ନ ଥିଲା । ଲାଇଲା ମଧ୍ୟ ଆସି ନଥିଲା । ପ୍ରାୟ ସାଢେ ସାତଟା ହେବ ଲଇଲା ଆସିଲା ଏବଂ ଆଠଟା ଭିତରେ ଷ୍ଟାର କ୍ଲବ ସରଗରମ ହୋଇ ଉଠିଲା । ତା'ପରେ ନିତ୍ୟ ନୈମିତ୍ତିକ ଧାରାରେ କାର୍ଯ୍ୟ ଆରମ୍ଭ ହୋଇଗଲା । ଖିଆପିଆ, ଧୁମ୍ ଧଡ଼ାକ୍, ମଉଜ ମଜଲିସ୍ ଆଉ ମାତଲାମି ଭିତରେ ଷ୍ଟାର କ୍ଲବ ଯେପରି ରଙ୍ଗିନ୍ ହୋଇ ଉଠିଲା । ଲାଇଲା ତା' କାର୍ଯ୍ୟ ଆରମ୍ଭ କରିଦେଲା । ଜଣକ ପରେ ଜଣେ, କେବିନ ପରେ କେବିନ୍, ପ୍ରଜାପତି ପରି ସେ ଉଡ଼ିବୁଲିଲା ।

ସମୟ ଆଗେଇ ଚାଲିଲା । ପ୍ରାୟ ଦୁଇଘଣ୍ଟା ପରେ ଦେଖିଲି ଲାଇଲା ଚାଲି ଯାଇଚି । ତା'ର କାର୍ଯ୍ୟ ଶେଷ ହୋଇଚି । ସେଠାରେ ଗୋଟିଏ ବୟକୁ ପଚାରି ବୁଝିଲି-ଲାଇଲା ରେଷ୍ଟ ରୁମ୍‌ରେ ଯାଇ କିଛି ସମୟ ବିଶ୍ରାମ କରିବ, ତା' ପରେ ଟା' କପେ ଖାଇ ନିଜ ଘରକୁ ଫେରିଯିବ ।

ମୁଁ କିନ୍ତୁ ସବୁ ଦିନ ପରି କାଲି ଉଠିଲି ନାହିଁ, ମୋର କାହିଁକି ଇଚ୍ଛା ହେଲା, ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ବସି ରହିବି ଏବଂ ଲାଇଲା ବାହାରିଗଲେ ମୁଁ ତାକୁ ଫଲୋ କରିବି । ଏହି କ୍ଲବ ଡିଉଟି ପରେ ଆଉ ସେ କେଉଁଠାକୁ ଯାଏ କି ନାହିଁ, ସେଇଆ ଜାଣିବା ପାଇଁ ମୁଁ ବସିରହିଲି ।

ଆହୁରି ଏକ ଘଣ୍ଟା କଟିଗଲା । ଜୁଆରିଆ ଷ୍ଟାର କ୍ଲବ ବକ୍ଷରେ ଭଟ୍ଟା ପଡ଼ି ଆସିଲା । କେବଳ ଟେବୁଲ ଚେଆର ଛଡ଼ା କୌଣସି ମଣିଷ ସେଠାରେ ନ ଥିଲେ । ଶେଷରେ ମ୍ୟାନେଜରଙ୍କ ନିର୍ଦ୍ଦେଶକ୍ରମେ ଗୋଟିଏ ବୟ ଆସି ମୋତେ ଚାଲିଯିବା ପାଇଁ ଅନୁରୋଧ କଲା । ମୁଁ ବାଧ ହୋଇ ଉଠିଲି । କିନ୍ତୁ ଲାଇଲା ଗଲା କେଉଁଆଡ଼େ ?

ମୁଁ ବାହାରେ ଅପେକ୍ଷା କଲି । ଲାଇଲାର ଏହି ଏକଘଣ୍ଟାବ୍ୟାପୀ ନିର୍ଜ୍ଜନବାସ ମୋ ମନରେ ଯଥେଷ୍ଟ ସନ୍ଦେହ ଜମେଇଥିଲା ।

ଲାଇଲା ଆସିଲା । ମୁଁ ସ୍ତବ୍ଧ ହୋଇ ଦେଖିଲି । ତା'ର ଚାଲି-ଚଳଣ, ବିଳାସବ୍ୟସନ ସବୁଥିରେ ଅଦ୍ଭୁତ ପରିବର୍ତ୍ତନ ଲକ୍ଷ୍ୟ କଲି । ମୋର ମନେ ହେଲା ସେ ଏହି ସମୟ ଭିତରେ ଯଥେଷ୍ଟ ମଦ୍ୟପାନ କରିଚି । ଏପରିକି ନିଜର ସତ୍ତା ସେ ହରେଇଚି । ସଙ୍ଗରେ ଆଉ କେହି ନାହିଁ । ପାଦ ତା'ର ଏଠି ସେଠି ପଡୁଚି । ଲାଇଲାର ଏପରି ଅବସ୍ଥା ଦେଖି ମୁଁ ସ୍ତମ୍ଭିତ ହୋଇଯାଇଥିଲି । ଏହି ଅବସ୍ଥାରେ ଲାଇଲା ଘରକୁ ଯିବ କିପରି ?

କିନ୍ତୁ ସେ ଆଗେଇ ଯାଉଥିଲା । ଅପେକ୍ଷାମାଣ ଖଣ୍ଡିଏ ଟ୍ୟାକ୍‌ସିରେ ଯାଇ ଉଠିବସିଲା । ଟ୍ୟାକ୍‌ସି ଚାଳକ ପଲକପାତ ମାତ୍ରକେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା । ମୁଁ ତାକୁ ଅନୁସରଣ କରିବା ପାଇଁ ଆଉ ଖଣ୍ଡିଏ ଟ୍ୟାକ୍‌ସି ଖୋଜିଲା ବେଳକୁ...

ସତ୍ୟବ୍ରତ ମହାପାତ୍ରଙ୍କ ଟେଲିଫୋନଟା ବାଜିଉଠିଲା । ଅଭିମନ୍ୟୁର କଥା ଅସମାପ୍ତ ରହିଗଲା । ସତ୍ୟବ୍ରତ ଉଠିଯାଇ ରିସିଭରଟା କାନରେ ଦେଲେ: ହ୍ୟାଲୋ, କିଏ ରାୟ ବାହାଦୂର ! କ'ଣ କହିଲେ ? କାଲି ନୀଳନିଳୟରେ ସୁରଞ୍ଜନର ଅପଘାତରେ ମୃତ୍ୟୁ ହୋଇଛି ।

ସତ୍ୟବ୍ରତ ମହାପାତ୍ର ଆଉ କିଛି ଶୁଣି ପାରିଲେ ନାହିଁ। ତାଙ୍କ ମୁଣ୍ଡଟା ବାତ୍ୟାଚକ୍ରପରି ଘୂରିବାକୁ ଲାଗିଲା। ରିସିଭରଟା ଯଥା ସ୍ଥାନରେ ରଖି ଦେଇ ଅଭିମନ୍ୟୁ ମୁହଁକୁ ସେ କରୁଣ ଭାବରେ ଅନାଇ ରହିଲେ ।

ଠିକ୍ ସେଇ ମୁହୂର୍ତ୍ତରେ ଲାଇଲା ସେଠାରେ ଉପସ୍ଥିତ ହେଲା । ଆଖି ଆଗରେ ଲାଇଲାକୁ ଦେଖି ସଙ୍ଗେସଙ୍ଗେ ସତ୍ୟବ୍ରତଙ୍କର ସମସ୍ତ ଜଡ଼ତା କଟିଗଲା । ସେ ପ୍ରତିନମସ୍କାର ଜଣାଇ ସ୍ୱାଭାବିକ ସ୍ୱରରେ ଲାଇଲାକୁ ବସିବା ପାଇଁ ଚେଆର ଦେଖାଇ ଦେଲେ ।

ଲାଇଲା କିନ୍ତୁ ବସିଲା ନାହିଁ । ସତ୍ୟବ୍ରତ ଲକ୍ଷ୍ୟ କଲେ, ଲାଇଲାର ମୁଖଲାବଣ୍ୟ ଯେପରି ଅକାଳରେ ଝାଉଁଳି ପଡ଼ିଚି । ଲାଇଲା ଖଣ୍ଡିଏ ଶୁଷ୍କକାଷ୍ଠ ପରି ତାଙ୍କରି ଆଗରେ ଠିଆ ହୋଇଚି ।

କ'ଣ ହେଲା ଲାଇଲା ଦେବୀ ! ଆପଣ ଦିନକ ଭିତରେ ଏପରି ନିସ୍ତେଜ ହୋଇ ପଡ଼ିଚନ୍ତି କାହିଁକି ! ମୁଁ ତ ଆପଣଙ୍କୁ ପ୍ରତୀକ୍ଷା କରିଥିଲି । ତା'ପରେ ସମ୍ବାଦ କ'ଣ? କିଛି ନୂତନ ?

ଲାଇଲା ମୁହଁରୁ ଯେପରି ଭାଷା ମରିଯାଇଥିଲା ।

ସେ ବସିଲା ଏବଂ ନୀରବରେ ଭ୍ୟାନିଟି ବ୍ୟାଗଟି ଖୋଲି ଗୋଟିଏ ବୋତାମ, ଗୋଟିଏ ଗୋଲାପ ଫୁଲ ଓ କେରାଏ ବାଳ ବାହାର କରି ସତ୍ୟବ୍ରତଙ୍କ ହାତକୁ ବଢ଼ାଇଦେଲା ।

ସତ୍ୟବ୍ରତ ଦୁଇଟିଯାକ ପଦାର୍ଥ ଆଗ୍ରହରେ ନେଲେ ଏବଂ କିଛି ସମୟ ଭଲ ଭାବରେ ପରୀକ୍ଷା କରି କହିଲେ ହୁଁ, କାଲି ରାତିରେ ଏଇ ଗୁଡ଼ିକ ଆପଣଙ୍କ ଭ୍ୟାନିଟିରୁ ବାହାରିଚି । ବେଶ୍, କିନ୍ତୁ ଏଥିପାଇଁ ଆପଣ ଏପରି ବିଚଳିତ ହେଉଚନ୍ତି କାହିଁକି?

ଲାଇଲା ଏଥର ପାଟି ଫିଟେଇଲା । କହିଲା : ଏଗୁଡ଼ିକ ମୋ ଭ୍ୟାନିଟି ଭିତରେ ନଥିଲା । ମୁଁ କାଲି ଇଚ୍ଛା କରି ଭ୍ୟାନିଟ୍ କ୍ଲବକୁ ନେଇ ନ ଥିଲି । ଯେଉଁ ଓଭର କୋଟ୍‌ଟି ପିନ୍ଧି ଯାଇଥିଲି ଆଜି ସକାଳୁ ଦେଖିଲି ଏ ଗୁଡ଼ିକ ସେହି ଓଭର କୋଟ ପକେଟ୍ ଭିତରେ ରହିଚି । ପ୍ରଥମେ ମୁଁ ସ୍ତବ୍ଧ ହୋଇଗଲି । କାରଣ ଗତ କାଲି କ୍ଲବକୁ ଯିବା ପୂର୍ବରୁ ମୁଁ ଓଭର କୋଟ୍ ପକେଟରେ ହାତ ଭରି ଦେଖିଥିଲି, ସୂତାଟିଏ ବି ନଥିଲା । ଆଜି ସକାଳୁ ଏ ଗୁଡ଼ିକ ଦେଖି ମୋର ମନେ ହେଉଚି ସବୁ ଯେପରି ଭୋଜବାଜି ।

ଲାଇଲା ଦେବୀ ! ଆପଣ ଖୁବ୍ ଡରିଯାଇଚନ୍ତି । ସତ୍ୟବ୍ରତ ମହାପାତ୍ର ଗୋଲାପ ଫୁଲଟି ଉପରେ ଦୃଷ୍ଟି ନିବଦ୍ଧ କରି କହିଲେ, ମୋର ମନେ ହେଉଚି ଆପଣଙ୍କ ସହିତ କେହି ରସିକତା କରିବା ପାଇଁ, ଆପଣଙ୍କ ଅଜାଣତରେ ଏହିପରି କାର୍ଯ୍ୟ ସବୁ କରୁଚି । ଯା'ହେଉ ଆପଣ ଆଦୌ ବିଚଳିତ ହୁଅନ୍ତୁ ନାହିଁ । ମୁଁ ଏହି ରହସ୍ୟର ସମାଧାନ ଖୁବ୍ ଶୀଘ୍ର କରିଦେଉଚି ।

କିନ୍ତୁ ମୁଁ ବୁଝିପାରୁ ନାହିଁ ମିଃ ମହାପାତ୍ର, ଦିନ ପରେ ଦିନ ଏହି ସବୁ ରହସ୍ୟମୟ ଘଟଣା ଘଟୁଛି କାହିଁକି ।

ସତ୍ୟବ୍ରତଙ୍କର ଆଉ କୌଣସି କଥା ଶୁଣିବାର ଧୈର୍ଯ୍ୟ ନ ଥିଲା । ରାୟ ବାହାଦୂରଙ୍କ ଟେଲିଫୋନ ବାର୍ତ୍ତା ତାଙ୍କ ମନ ଭିତରେ ସମସ୍ୟା ସୃଷ୍ଟି କରିଥିଲା । ନୀଳନିଳୟରେ ସୁରଞ୍ଜନର ଅପମୃତ୍ୟୁ ହୋଇଛି । କି କୈଫିୟତ ସେ ଦେବେ ରାୟ ବାହାଦୂରଙ୍କୁ ? କେଇଘଣ୍ଟା ଆଗରୁ ସୁରଞ୍ଜନର ନିରାପତ୍ତା ସମ୍ବନ୍ଧରେ ସେ ନିର୍ଭର ପ୍ରତିଶ୍ରୁତି ଦେଇ ଆସିଥିଲେ । ସେ ଜାଣିଥିଲେ, ଆଉ ଯାହା ଘଟିଲେ ବି ସୁଷମା ସହିତ ଥିବା ଅବସ୍ଥାରେ ସୁରଞ୍ଜନର ଜୀବନହାନି ମୋଟେ ସମ୍ଭବ ନୁହେଁ । କିନ୍ତୁ ହଠାତ୍ ଏ କ'ଣ ଘଟିଗଲା ? ସୁରଞ୍ଜନ ବା ନୀଳନିଳୟକୁ ଗଲା କେତେବେଳେ !

ଲାଇଲା ସତ୍ୟବ୍ରତଙ୍କୁ ନୀରବରେ ଚିନ୍ତା କରୁଥିବାର ଦେଖି ପୁଣି କହିଲା : ମିଃ ମହାପାତ୍ର, ପ୍ରକୃତରେ ମୁଁ ଖୁବ୍ ଡରିଯାଇଚି । ଆପଣ ମୋତେ ସାହାଯ୍ୟ ଟିକିଏ ନ କଲେ, ହୁଏତ...

ସତ୍ୟବ୍ରତ ହଠାତ୍ ଚେଆର ଛାଡ଼ି ଉଠିଲେ । ଲାଇଲାର କଥା ଅସମାପ୍ତ ରହିଗଲା ।

ଆପଣ କିଛି ଚିନ୍ତା କରନ୍ତୁ ନାହିଁ ଲାଇଲା ଦେବୀ । ମୁଁ ଆପଣଙ୍କୁ ସମସ୍ତ ସମସ୍ୟାରୁ ରକ୍ଷା କରିବି । ତେବେ ବର୍ତ୍ତମାନ ମୋର କେତୋଟି ବିଶେଷ କାର୍ଯ୍ୟ ଅଛି । ଖୁବ୍ ଶୀଘ୍ର ସେ ଗୁଡ଼ିକୁ ସମାଧାନ କରିବାକୁ ହେବ । ଅବଶ୍ୟ ଯିବା ଆଗରୁ

କେତୋଟି କଥା ଆପଣଙ୍କଠାରୁ ଜାଣିବାର ଇଚ୍ଛା ଅଛି । ଯାହା ପଚାରିବି ସବୁ ସତ ସତ କହିବେ ତ ?

ଲାଇଲା କିଛି ସମୟ ସତ୍ୟବ୍ରତ ମହାପାତ୍ରଙ୍କ ମୁହଁକୁ ଅପଲକ ନୟନରେ ଅନାଇ ରହି କହିଲା  ଆପଣଙ୍କର ମୋତେ ବିଶ୍ୱାସ ହେଉ ନାହିଁ ? ମୁଁ ଆପଣଙ୍କ ଆଶ୍ରୟ ଲୋଡ଼ିଚି । ସମସ୍ତ ବିପଦରୁ ଆପଣ ମୋତେ ଉଦ୍ଧାର କରିବେ, ଭରସା ରଖିଚି । ତେଣୁ ମିଛ କହିବି କାହିଁକି !

ସତ୍ୟବ୍ରତ ସ୍ମିତ ହସି କହିଲେ  ଆପଣ ମିଛ କହିବେ ନାହିଁ, ସେ କଥା ମୁଁ ଜାଣେ । ତଥାପି ଅନେକ କ୍ଷେତ୍ରରେ ମଣିଷ ବାଧ ହୋଇ ମିଛ କହିଥାଏ । ସତ କହିବାର ପ୍ରବୃତ୍ତି ସେଠାରେ ଆପଣା ଛାଏଁ ନିଷ୍କ୍ରିୟ ହୋଇପଡ଼େ । ଯା'ହେଉ, ଆପଣ ହୁଏତ ସବୁ ସତକଥା କହିବେ । କାରଣ ପ୍ରୟୋଜନଟା ମୋ ଅପେକ୍ଷା ଆପଣଙ୍କର ବେଶୀ । ଯା'ହେଉ, ସେ କଥା ଛାଡ଼ନ୍ତୁ । ବର୍ତ୍ତମାନ ମୋ ପ୍ରଶ୍ନ ହେଉଚି, କାଲି ରାତିରେ, ନା ଖାଲି କାଲି ରାତିରେ କାହିଁକି ପ୍ରତିଦିନ ଆପଣ ଷ୍ଟାରକ୍ଲବର ଡିଉଟି ଶେଷ କରି କେଉଁଆଡ଼େ ଯାଆନ୍ତି?

କେବେ କିମିତି କୁଆଡ଼େ ବନ୍ଧୁବାନ୍ଧବ ଘରକୁ ଯାଏ । ଆଉ କୋଉଦିନ କୌଣସି ସାଙ୍ଗସାଥୀଙ୍କ ଘରକୁ ବୁଲି ବାହାରି ଯାଏ, ତା' ଛଡ଼ା ଅନ୍ୟାନ୍ୟ ଦିନମାନଙ୍କରେ ଷ୍ଟାର କ୍ଲବରୁ ଡିଉଟି ଶେଷ କରି ଘରକୁ ଫେରିଯାଏ । କାରଣ କାମ ଶେଷରେ ମୁଁ ଏତେ କ୍ଳାନ୍ତ ହୋଇପଡ଼ିଥାଏ ଯେ, ଅନ୍ୟ କେଉଁଆଡ଼େ ଯିବାର ପ୍ରବଳ ଇଚ୍ଛା ଥିଲେ ମଧ୍ୟ ଶାରୀରିକ ଦୃଷ୍ଟିରୁ ସମସ୍ତ ଇଚ୍ଛା ମୋତେ ଦମନ କରିବାକୁ ପଡ଼ିଥାଏ ।

: ହୁଁ, ସତ୍ୟବ୍ରତ ଲାଇଲାର ମଳିନ ମୁଖମଣ୍ଡଳ ଆଡ଼େ ଚାହିଁରହି ଅନେକ କଥା ଭାବୁଥିଲେ । ଆଚ୍ଛା, ଲାଇଲା ଦେବୀ, ଏଇ ଧରନ୍ତୁ ଗତ କାଲି ରାତିରେ ଆପଣ ନିଶ୍ଚୟ ଡିଉଟିକୁ ଯାଇଥିବେ । ଯେତେବେଳେ ଡିଉଟି ଶେଷ ହେଲା, ତା'ପରେ କ'ଣ କଲେ, କୁଆଡ଼େ ଗଲେ ? ମୋର ଏପରି ପଚାରିବା ଅର୍ଥ କାଲି ପ୍ରାୟ ରାତି ଏଗାରଟା ହେବ ମୁଁ ଆପଣଙ୍କର ଘର ବାଟ ଦେଇ ଆସୁଥିଲି, ଆପଣ ଘରେ ନ ଥିଲେ ।

ସତ୍ୟବ୍ରତ ଲକ୍ଷ୍ୟ କଲେ ଲାଇଲା ମୁହଁରେ ପରିବର୍ତ୍ତନର ଲକ୍ଷଣ ନାହିଁ ।

ସେ ସେହିପରି ବସିରହି କହିଲା  କାଲି ମୁଁ ଢେର ରାତିରେ ଘରକୁ ଫେରିଚି । ଦିନେଦିନେ ସେହିପରି ହୋଇଥାଏ । କ'ଣ ହୁଏ କେଜାଣି, ସମସ୍ତ ଅବୟବରେ ମୋର ଅବଶତା ଘାରିଯାଏ, ମୁଁ ଯେପରି ମୋର ସତ୍ତା ହରେଇ ବସେ, କଣ କିଛି ଜାଣିପାରେ ନାହିଁ । ଷ୍ଟାର କ୍ଲବର ରେଷ୍ଟ୍ ରୁମ୍‌ରେ ଚୁପ୍‌ଚାପ୍ ଶୋଇ ବିଶ୍ରାମ କରେ । ତା'ପରେ କେତେବେଳେ ଘରକୁ ଫେରିଆସେ, ନିଜେ ବି ମୁଁ ସେ କଥା ଜାଣିପାରେ ନାହିଁ ।

ସତ୍ୟବ୍ରତ ମହାପାତ୍ର ସଜାଡ଼ି ହୋଇ ବସିଲେ । ଲାଇଲାର ଏହି ଉକ୍ତି ଭିତରେ

ଯେମିତି ଅନ୍ତର୍ନିହିତ ଗୋଟାଏ ବିରାଟ ରହସ୍ୟ ଲୁଚି ରହିଚି । ଲାଇଲାର ମନପ୍ରାଣରେ ଦିନେଦିନେ ଅବଶତା ଘାରେ, ସେ ସତ୍ତା ହରାଏ । ଏହା କାହିଁକି ହୁଏ, କିପରି ହୁଏ? କୌଣସି ମାଦକ ଦ୍ରବ୍ୟର ଶକ୍ତି ହୁଏତ ଲାଇଲାର ମନପ୍ରାଣକୁ ଆଚ୍ଛନ୍ନ କରି ରଖେ । ନା, ଅନ୍ୟ କିଛି ?

ଆଚ୍ଛା ଲାଇଲା ଦେବୀ, ମୁଁ ଆପଣଙ୍କୁ ଗତକାଲିର ରାତି କଥା ପଚାରୁଛି । ଆପଣଙ୍କର ଯେତେବେଳେ ଷ୍ଟାର କ୍ଲବର ଡିଉଟି ଶେଷ ହେଲା, ସେତେବେଳେ ଆପଣ କ'ଣ କଲେ ? ଡିଉଟି ଭିତରେ କ'ଣ କୌଣସି ମାଦକ ଦ୍ରବ୍ୟ ସେବନ କରିଥିଲେ ?

ନା, କୌଣସି ମାଦକ ଦ୍ରବ୍ୟ ଏବେ ମୁଁ ସେବନ କରେ ନାହିଁ । କାଲି ମଧ କରି ନଥିଲି । ତେବେ ଡିଉଟି ଶେଷରେ ସବୁଦିନ ପରି କାଲି ମଧ ରେଷ୍ଟ ରୁମ୍‌କୁ ଯାଇଥିଲି ଏବଂ ସବୁଦିନ ପରି କପେ ଚା' ପିଇ ଟିକିଏ ବିଶ୍ରାମ କରିଥିଲି । ତା'ପରେ ଆଉ ମୋର କିଛି ମନେ ନାହିଁ । କେତେବେଳ ଯାଏ ସେଠାରେ ଶୋଇରହିଲି, କେତେବେଳେ ଘରକୁ ଫେରିଲି, ମୋର କିଛି ମନେ ପଡୁନାହିଁ ।

: ହୁଁ, ରେଷ୍ଟ ରୁମ୍‌ରେ ଆପଣ ବିଶ୍ରାମ କରୁଥିବା ବେଳେ ଆଉକେହି ସେଠାକୁ ଯାଇଥିଲା ?

ନା କେବଳ ବୟ କପେ ଚା' ଦେଇ ଯିବାର ମୋର ମନେ ଅଛି ।

ତା' ପରେ ?

: ଆଉ କିଛି ମନେ ନାହିଁ । ତା'ପରେ ମୁଁ ଭୀଷଣ କ୍ଳାନ୍ତି ଅନୁଭବ କରିଥିଲି । ହୁଏତ ତନ୍ଦ୍ରା ଘେରରେ ଘୁମେଇ ପଡ଼ିଥିଲି ।

ସତ୍ୟବ୍ରତ ମହାପାତ୍ର ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ  ଆପଣ ତା'ହେଲେ ବର୍ତ୍ତମାନ ଯାଆନ୍ତୁ । ଆଜି ସନ୍ଧ୍ୟା ବେଳକୁ ଟିକିଏ ସମୟ ହାତରେ ରଖି, ଲିଲିକୁ ସଙ୍ଗରେ ଘେନି ଆସିବେ ତାଙ୍କଠାରୁ କେତେକ କଥା ଜାଣିବାର ଅଛି । ଆପଣ ଭୟ କରନ୍ତୁ ନାହିଁ । ଧୀରେଧୀରେ ସବୁ ଠିକ୍ ହୋଇଯିବ ।

୮

ନୀଳନିଳୟର ଗେଟ୍ ଅତିକ୍ରମ କରି ସତ୍ୟବ୍ରତ ମହାପାତ୍ର ଭିତରକୁ ପଶିଲେ । ବିରାଟ ଏକ ଉଦ୍ୟାନ ମଝିରେ ଗୋଟିଏ ତିନିତାଲା କୋଠା । ସତ୍ୟବ୍ରତ ଇତିପୂର୍ବରୁ କେବେ ନୀଳନିଳୟ ଭିତରକୁ ଆସି ନ ଥିଲେ । ସବୁଆଡେ ପରିଷ୍କାର ପରିଚ୍ଛନ୍ନ । ନାନା ପ୍ରକାର ଫୁଲ ଓ ଫଳର ଉଦ୍ୟାନ ଶୋଭା ବର୍ଦ୍ଧନ କରୁଚି ।

ରାୟ ବାହାଦୂର ନିଜେ ସତ୍ୟବ୍ରତ ମହାପାତ୍ରଙ୍କ ସଙ୍ଗରେ ଆସି ନ ଥିଲେ । ତାଙ୍କର ଇଚ୍ଛା ନୁହେଁ ସେ ନିଜ ଆଖିରେ ଆଉଗୋଟିଏ ପୁଅର ମୃତଦେହ ଦେଖିବେ । ତା'ଛଡା ରାୟ ବାହାଦୂରଙ୍କ ମୁଣ୍ଡର ଅବସ୍ଥା ଏତେ ବିକୃତି ଆଡକୁ ଗତି କରୁଥିଲା ଯେ, ତାଙ୍କର ସୁରଞ୍ଜନର ମୃତଦେହ ଦେଖିବାକୁ ମୋଟେ ଇଚ୍ଛା ନ ଥିଲା ।

ସତ୍ୟବ୍ରତ ଉଦ୍ୟାନ ଅତିକ୍ରମ କରିଯାଇ ସୁରଞ୍ଜନର ମୃତଦେହ ନିକଟରେ ପହଞ୍ଚିଲେ । ମୃତଦେହଟି ଯେଉଁଠି ପଡିଥିଲା, ସେ ଉଦ୍ୟାନର ଆଉ ଏକ ଅଂଶ । ମୃତଦେହ ନିକଟରେ ଅନ୍ୟମାନଙ୍କ ସହିତ ଯାହାକୁ ସେ ଦେଖିଲେ, ସେଠାରେ ତା'ର ପ୍ରବେଶ ଆଦୌ ସେ ଆଶା କରି ନ ଥିଲେ । ସୁଷମା ଗନ୍ତାଏତ । ମୃତ ସୁରଞ୍ଜନର ମୁଣ୍ଡ ପାଖରେ ବସି ଅଶ୍ରୁ ବିସର୍ଜନ କରୁଚି । ଅନ୍ୟ ଯେଉଁମାନେ ମୃତ ଦେହକୁ ବେଷ୍ଟନ କରି ସେଠାରେ ନାନା ପ୍ରକାର ମିଥ୍ୟା ଗୁଜବର ପରିକଳ୍ପନାରେ ଲିପ୍ତ ଥିଲେ, ସତ୍ୟବ୍ରତଙ୍କୁ ଦେଖିବା ମାତ୍ରେ ଗୋଟିକ ପରେ ଗୋଟିଏ ବାଟ କାଟିଲେ ।

ସତ୍ୟବ୍ରତ ଦେଖିଲେ, ସୁରଞ୍ଜନ ଶୋଇଚି । ଗୋଟିଏ ସଫାଚଦର ତା'ଗୋଡଠାରୁ ବେକଯାଏ ଘୋଡେଇ ଦିଆହୋଇଚି । କେବଳ ମୁହଁଟି ପଦାକୁ ଦିଶୁଚି । ସୁଷମା ଗନ୍ତାଏତ ସେହି ମୁହଁଟି ଆଡେ ଏକଲୟରେ ଅନାଇ ବସି ରହିଚି । ଏପରିକି ସତ୍ୟବ୍ରତଙ୍କ ଉପସ୍ଥିତି ସେ ଅନୁଭବ କରିପାରୁନାହିଁ ।

ସତ୍ୟବ୍ରତ ସୁରଞ୍ଜନର ମୃତଦେହ ନିକଟରେ ଠିଆ ହୋଇ କେତୋଟି ମୁହୂର୍ତ୍ତ ସ୍ଥିରଦୃଷ୍ଟିରେ ଚାହିଁଲେ । ହୁଏତ ସେଇ ମୁହୂର୍ତ୍ତରେ ସୁଷମା ଗନ୍ତାଏତଙ୍କ ଆଖିରେ ପଡିଲା ସତ୍ୟବ୍ରତଙ୍କ ପାଦଦୁଇଟା, ତା'ପରେ ଧୀରେଧୀରେ ସେ ଉପରକୁ ଚାହିଁ ଦେଖିଲା ସତ୍ୟବ୍ରତ ମହାପାତ୍ରଙ୍କୁ । ହଠାତ୍ ଉଠିପଡି ଭୋଭୋ ହୋଇ କାନ୍ଦି ଉଠିଲା । ଯେପରି ସେ ସେଇ ମୁହୂର୍ତ୍ତରେ ସତ୍ୟବ୍ରତଙ୍କ ପାଦଯୋଡିକ ଧରି ଭୂଇଁରେ ଲୋଟିଯିବ ।

ସତ୍ୟବ୍ରତ ମହାପାତ୍ର କିନ୍ତୁ ନିର୍ବିକାର ଚିତ୍ତରେ ସୁରଞ୍ଜନ ଦେହରୁ ଚଦରଟି କାଢିଦେଲେ । ପାଖରେ ଠିଆ ହୋଇଥିଲେ ଜଣେ ବୟସ୍କ ଲୋକ । ସତ୍ୟବ୍ରତ ପଚାରି ବୁଝିଲେ, ସେ ନୀଳନିଳୟର ସବୁଠାରୁ ପୁରୁଣା ଭୃତ୍ୟ । ତା' ନାଁ ସାରଙ୍ଗ ।

ସେ କହିଲା  ରାୟ ବାହାଦୂରଙ୍କ ନିର୍ଦ୍ଦେଶ ଅନୁସାରେ, ପିଲାମାନେ କାଲି ଚାରିଟା ବେଳଠାରୁ ନୀଳନିଳୟକୁ ଚାଲିଆସିଥିଲେ । ସୁରଂଜନ କିନ୍ତୁ ଆସିଲା ରାତି ନଅଟା ପରେ । ସାଙ୍ଗରେ ଥିଲା ଏହି ସୁଷମା ଗନ୍ତାଏତ । ସାରଙ୍ଗ ପ୍ରଥମେ ସୁଷମାକୁ ନୀଳନିଳୟରେ ପ୍ରବେଶ ଅଧିକାର ଦେଉ ନ ଥିଲା । କିନ୍ତୁ ସୁରଂଜନକୁ ସାରଙ୍ଗ ସବୁଠାରୁ ବେଶୀ ଭଲପାଏ । ଶେଷରେ ସୁରଂଜନର ବିନୀତ ଅନୁରୋଧ ସାରଙ୍ଗଙ୍କୁ ରଖିବାକୁ ହେଲା ।

ତା'ପରେ କ'ଣ ଘଟିଲା ସାରଙ୍ଗକୁ କିଛି ଜଣା ନାହିଁ । କିନ୍ତୁ ସାରଙ୍ଗ ଆଜି ସକାଳୁ ଉଠି ଯେତେବେଳେ ବଗିଚାକୁ ଆସିଲା, ଦେଖିଲା ସୁରଂଜନ ଏଇଠି, ଠିକ୍ ଏହିପରି ଶୋଇରହିଚି । ତା'ପରେ ସେ ଦେଖିଲା ସୁରଂଜନ ଦେହରେ ପ୍ରାଣ ନାହିଁ !

ସତ୍ୟବ୍ରତ ମହାପାତ୍ର ଦେଖିଲେ-ସୁରଂଜନ ଦାମୀ ପ୍ୟାଣ୍ଟ,କୋଟ ଓ ବୁଟ୍ ପିନ୍ଧି ଘାସ ଉପରେ ଶୋଇଚି । ଅର୍ଥାତ୍ ସୁରଂଜନ ନୀଳନିଳୟକୁ ଆସିବା ପରେ ପୋଷାକପତ୍ର ବଦଳେଇ ନାହିଁ, ଅଥବା ପୋଷାକପତ୍ର ପିନ୍ଧି କେଉଁଠାକୁ ବାହାରିବା ସମୟରେ ମୃତ୍ୟୁର ନାଗାଫାଶ ତାକୁ ଆଲିଙ୍ଗନ କରିଚି । ହଠାତ୍ ସତ୍ୟବ୍ରତଙ୍କ ଆଖି ପଡିଲା

କୋଟ୍‌ର ଦୁଇଟି ବୋତାମ ଭିତରୁ ଗୋଟିଏ ନାହିଁ । ମୁହୂର୍ତ୍ତକ ପାଇଁ ସେ ସ୍ତବ୍ଧ ହୋଇଗଲେ । ତା'ପରେ ପୁଣି ସେ ତାଙ୍କର ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରିଦେଲେ । ସୁରଂଜନର ଅଙ୍ଗପ୍ରତ୍ୟଙ୍ଗ ସବୁ ଗୁଡିକ ଖୁବ୍ ଭଲ ଭାବରେ ପରୀକ୍ଷା କଲେ । ତା'ପରେ ଉଦ୍ୟାନର ବିଭିନ୍ନ ସ୍ଥାନରେ କ'ଣ ସେ ଯେପରି ଅନୁସନ୍ଧାନ କରିବାକୁ ଲାଗିଲେ । କେତେ ପାହୁଣ୍ଡ ଆଗେଇ ଯାଇ ଗୋଟିଏ କୁଂଜଲତା ତଳେ ସିମେଣ୍ଟ ବେଞ୍ଚ ଉପରେ ବସି ଆଗକୁ ଚାହିଁଲେ, ପଛକୁ ଚାହିଁଲେ । ଫେରିଆସି ପୁଣି ସୁରଂଜନ ପାଖରେ ଠିଆ ହେଲେ । ସେଠାରେ ସୁଷମା ଗନ୍ତାଏତଙ୍କ ଉପସ୍ଥିତି ସେ ଯେପରି ମୋଟେ ସହ୍ୟ କରିପାରୁ ନାହାନ୍ତି, ସେହିପରି ଭାବ ଦେଖାଇ ସେ ସାରଙ୍ଗ ଆଡେ ଚାହିଁ ପଚାରିଲେ  କାଲି ସୁରଂଜନ ଆସିଲା ପରେ, ତମେ ତାକୁ କେତେବେଳ ଯାଏ ଚେଇଁଥିବାର ଦେଖିଥିଲ ?

ନା ଆଜ୍ଞା, ସୁରଂଜନ ବାବୁ ନୀଳନିଳୟରେ ପ୍ରବେଶ କରିବା ପରେ ମୁଁ ଆଉ ମୋଟେ ତାଙ୍କୁ ଦେଖି ନ ଥିଲି ।

: କାହିଁକି ? ସୁରଂଜନ ଆସିବା ପରେ ତୁମେ କ'ଣ ଏଠାରୁ ଚାଲି ଯାଇଥିଲ ?

ପ୍ରଥମେ ସାରଙ୍ଗ କିଛି କହିଲା ନାହିଁ । ତା'ର ମୁହଁକୁ ଚାହିଁ ମନେ ହେଉଥିଲା, ସେ ଯେପରି ଗୋଟାଏ ମସ୍ତବଡ ଅପରାଧ କରିବସିଛି । କିଛି ସମୟ ପରେ ଧୀରେଧୀରେ କହିଲା  ମୁଁ କାଲି ଟିକିଏ ବାହାରକୁ ଚାଲି ଯାଇଥିଲି । ମୋର ଆପଣାର ଲୋକ ଜଣେ ଅସୁସ୍ଥ ହୋଇଥିଲା । ସେଇଆକୁ ଦେଖିବାକୁ ଯାଇ ଫେରୁ ଫେରୁ ଅନେକ ରାତି ହୋଇଯାଇଥିଲା ।

ସତ୍ୟବ୍ରତ ଏଥର ସୁରଂଜନର ବାଁ ହାତଟା ପରୀକ୍ଷା କରୁଥିଲେ । ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ସୁରଂଜନର ବାଁ ହାତର ପାପୁଲି ତଳକୁ ବୁନ୍ଦାଏ ହେବ ରକ୍ତ ବାହାରି ଶୁଖି ଯାଇଛି । ଠିକ୍ ଯେପରି ନିରଂଜନ ହାତରେ ସେ ଦେଖିଥିଲେ !

ତା'ହେଲେ ? ନିରଂଜନ ଆଉ ସୁରଂଜନର ହତ୍ୟାକାରୀ କଣ ଜଣେ? ହତ୍ୟାର ପ୍ରଣାଳୀ ମଧ ଗୋଟିଏ । ସେ ସାରଙ୍ଗ ଆଡେ ଚାହିଁଲେ, ଆଉ ସୁଷମା ଏକଲୟରେ ସୁରଂଜନର ନିସ୍ତେଜ ମୁଖମଣ୍ଡଳ ଆଡେ ଚାହିଁରହି, ଅଶ୍ରୁ ବିସର୍ଜନ କରୁଚି ।

ସତ୍ୟବ୍ରତ ପୁଣି ଉଠି ଠିଆ ହେଲେ । ଆଉଥରେ ଯେପରି ସୁରଂଜନର ଚତୁଃପାର୍ଶ୍ୱରୁ କ'ଣ ଖୋଜିବାକୁ ଲାଗିଲେ । ଧୀରେଧୀରେ ସେ କୁଂଜଲତା ଆଡକୁ ଆଗେଇ ଗଲେ । କୁଂଜଲତା ତଳର ସିମେଣ୍ଟ ବେଞ୍ଚଟାର ଚାରିପାଖରେ କ'ଣ ଯେପରି ଖୋଜୁଥିଲେ । ନା, କିଛି ନାହିଁ । ସେ ଫେରିଆସିଲେ । ସାରଙ୍ଗକୁ କହିଲେ  ଏଥର ଲୋକ ଡାକି ସୁରଂଜନର ମୃତଦେହଟାକୁ ଏଠାରୁ ଉଠେଇ ନିଅ । ମୋର ଅନୁସନ୍ଧାନ କାର୍ଯ୍ୟ ଶେଷ ହୋଇଚି ।

ସାରଙ୍ଗ ଲୋକ ଡାକିବାକୁ ଚାଲିଗଲା । ସତ୍ୟବ୍ରତ ସୁଷମାଆଡେ କଠିନ ଚାହାଣିରେ ଅନାଇ ରହିଲେ । ସୁଷମା ଆଖିରୁ ଅଶ୍ରୁଧାର ଶୁଖି ନଥିଲା ।

ସୁଷମା ଦେବୀ ! ସତ୍ୟବ୍ରତ ମହାପାତ୍ରଙ୍କ ସ୍ୱର ଏପରି କଠିନ ଶୁଣାଗଲା ଯେ, ସୁଷମା ଚମକି ଉଠିଲା !

ଆପଣ ମୋ ସହିତ ଆସନ୍ତୁ । ସତ୍ୟବ୍ରତ କହିଲେ ।

ସୁଷମା ବାଧ୍ୟଛାତ୍ରୀଟି ପରି ସତ୍ୟବ୍ରତଙ୍କ ପଛେ ପଛେ ଆଗେଇଲା । ସତ୍ୟବ୍ରତ ପୁଣି ସେହି କୁଂଜଲତା ତଳକୁ ଗଲେ । ନିଜେ ସିମେଣ୍ଟ ବେଞ୍ଚଟି ଉପରେ ବସି, ସୁଷମାକୁ ବସିବାକୁ ଇଙ୍ଗିତ କଲେ ।

ସୁଷମା ଯନ୍ତ୍ରଚାଳିତ ପରି ସିମେଣ୍ଟ ବେଞ୍ଚଟି ଉପରେ ବସିଲା ।

ସାରଙ୍ଗ କହୁଚି, ସୁରଂଜନକୁ ଆପଣ ହତ୍ୟା କରିଛନ୍ତି । ସେଇଟା କ'ଣ ସତ କଥା ? ସତ୍ୟବ୍ରତ ପଚାରିଲେ ।

ସେ ଭୋ ଭୋ ହୋଇ କାନ୍ଦିଲା । ତା'ର କଥା କହିବାର ଶକ୍ତି ହଜି ଯାଇଥିଲା । ସତ୍ୟବ୍ରତ ଚୁପ୍ ରହିଗଲେ । ସୁଷମା କାନ୍ଦୁଥିଲା । ସେହିପରି କିଛି ସମୟ ଅତିବାହିତ ହେବା ପରେ ସତ୍ୟବ୍ରତ କହିଲେ  ସାରଙ୍ଗ କଥା ଉପରେ କିନ୍ତୁ ମୋର କୌଣସି ଆସ୍ଥା ନାହିଁ । ଆପଣ ସୁରଂଜନକୁ ହତ୍ୟା କରି ନାହାନ୍ତି, ଏହା ମୁଁ ଜାଣେ ।

ସୁଷମା କାନ୍ଦୁଥିଲା ।

ସତ୍ୟବ୍ରତ ଭାବିଥିଲେ, ସୁଷମା ତାଙ୍କଠାରୁ ଏପରି କଥା ଶୁଣିଲେ ହଠାତ୍ ସଚେତନ ହୋଇଉଠିବ । କାନ୍ଦଣା ବନ୍ଦ ହୋଇଯିବାର କିନ୍ତୁ ସୁଷମାଠାରେ ସେପରି କୌଣସି ଲକ୍ଷଣ ଦେଖା ଗଲା ନାହିଁ ।

ଦେଖନ୍ତୁ ସୁଷମା ଦେବୀ, ଆପଣ କେବଳ ଏହିପରି ଅଶ୍ରୁ ବୁହାଇ ଚାଲିଥିଲେ, କାହାରି କୌଣସି ଲାଭ ହେବ ନାହିଁ, କିମ୍ବା ସେଇ ଅଶ୍ରୁଧାର ବହି ଯାଇ ସୁରଂଜନ ହତ୍ୟାକାରୀର ସନ୍ଧାନ ଦେବ ନାହିଁ । ବରଂ ମୋତେ ଆପଣ କେତୋଟି ପ୍ରଶ୍ନର ଉତ୍ତର ଦିଅନ୍ତୁ, ଯାହା ଦ୍ୱାରା ମୁଁ ସୁରଂଜନର ହତ୍ୟାକାରୀକୁ ଖୋଜି ବାହାର କରି ପାରିବି । ଆଚ୍ଛା କହିଲେ, ଆପଣମାନେ କାଲି ଠିକ୍ କେତେଟା ବେଳେ ନୀଳନିଳୟରେ ପ୍ରବେଶ କରିଥିଲେ ?

ରାତି ନଅଟାରେ । ସୁଷମା କଇଁ କଇଁ ହୋଇ କାନ୍ଦୁଥିଲା ।

: ବେଶ୍ ତା'ପରେ ? ମାନେ ସୁରଂଜନ ଆଉ ଆପଣ ନୀଳନିଳୟକୁ ଆସିବା ପରେ, ଏଇ କୁଂଜଲତା ତଳକୁ କେତେବେଳେ ଆସିଥିଲେ ?

ଏଥର କିନ୍ତୁ ସୁଷମାର କାନ୍ଦଣା ଉପରେ କିଏ ଯେପରି ଗୋଟାଏ ପଥର ଚାପିଦେଲା । ସେ ଚୁପ୍ ହୋଇ ଯାଇ କେବଳ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲା ।

: ଆପଣ ଆଉ ସୁରଞ୍ଜନ । ଏଇ କୁଞ୍ଜଲତା ତଳେ, ଆମେ ଏଇକ୍ଷଣି ଯେଉଁଠି ବସିଚନ୍ତି, ସେଇଠି ବସି ରହି କେତେ ରାତି ଯାଏ କଥାବାର୍ତ୍ତା ହେଉଥିଲେ ? କୁହନ୍ତୁ ସୁଷମା ଦେବୀ । କୌଣସି କଥା ଗୋପନ ନ କରି, ମୋତେ ସବୁ କଥା କୁହନ୍ତୁ ।

ସୁଷମା ଧୀରେଧୀରେ ଅବଶ ସ୍ୱରରେ କହିଲା  ଅନେକ ରାତିଯାଏ । କେତେଟା ହେବ ମୋର ମନେ ନାହିଁ ।

ତା'ପରେ ?

ତା'ପରେ ଆମେ ଫେରିଯାଇଥିଲୁ ଏବଂ ନୀଳନିଳୟର ଏକ ନିର୍ଦ୍ଦିଷ୍ଟ କୋଠରିରେ ରାତ୍ରୀଯାପନ ପାଇଁ ପ୍ରବେଶ କରିଥିଲୁ ।

ବୁଝିଲି । କିନ୍ତୁ ତା'ପରର ଘଟଣା ସମ୍ବନ୍ଧରେ ମୁଁ କିଛି ଭାବିପାରୁ ନାହିଁ । ସୁରଞ୍ଜନ ପୁଣି କେତେବେଳେ ଓ କାହିଁକି ଉଦ୍ୟାନକୁ ଯାଇଥିଲା?

ମୋର ଆଉ କିଛି ମନେ ନାହିଁ । ଉଦ୍ୟାନରୁ ଫେରିବା ପରେ ପରେ ମୋତେ ଏତେ ନିଦ ମାଡିଲା ଯେ, ମୁଁ ସଙ୍ଗେସଙ୍ଗେ ଶୋଇ ପଡିଥିଲି । ଅବଶ୍ୟ ସୁରଞ୍ଜନ ଟେବୁଲ ପାଖରେ ବସି ରହି କ'ଣ ଲେଖୁଥିଲେ ।

ଆପଣଙ୍କ ସହିତ ସୁରଂଜନ ଉଦ୍ୟାନକୁ ଯାଇଥିବା ବେଳେ କଣ ଏଇ ପୋଷାକ ପିନ୍ଧି ଯାଇଥିଲା, ଯାହା ବର୍ତ୍ତମାନେ ସେ ପିନ୍ଧିଛି ?

ହଁ ।

: ଆପଣ ତା'କୋଟ କଲରରେ ଗୋଟିଏ ଗୋଲପ ଫୁଲ ପିନ୍ଧାଇ ଦେଇଥିଲେ?

ହଁ ।

ଧନ୍ୟବାଦ । ଆପଣଙ୍କ ନିକଟରେ ମୋର ଆଉ ବିଶେଷ କିଛି କାର୍ଯ୍ୟ ନାହିଁ । ସାରଙ୍ଗଙ୍କୁ କହି ମୁଁ ଆପଣଙ୍କୁ ଏଠାରୁ ମୁକ୍ତି ଦେଇପାରେ । ଆପଣ ଏହାପରେ ଘରକୁ ଫେରି ଯାଇ ପାରନ୍ତି । କିନ୍ତୁ ସୁଷମାଦେବୀ, ମୁଁ ଗୋଟାଏ କଥା ଆପଣଙ୍କ ସମ୍ବନ୍ଧରେ ବୁଝିପାରୁ ନାହିଁ । ପ୍ରକୃତରେ ଆପଣ କାହାକୁ ଭଲ ପାଉଥିଲେ, ସୁରଞ୍ଜନକୁ ନା ନିରଞ୍ଜନକୁ ? ଦୁହିଁଙ୍କ ସହିତ ଆପଣଙ୍କର ସମ୍ପର୍କ ସମ୍ବନ୍ଧରେ ଚିନ୍ତା କରି ମୁଁ ଅବାକ ହେଉଚି । ଯା'ହେଉ ସେ ସବୁ ଆପଣଙ୍କର ଏକାନ୍ତ ବ୍ୟକ୍ତିଗତ କଥା । ସେଥିପାଇଁ ସେ ସମ୍ବନ୍ଧରେ ଜାଣିବାକୁ ବିଶେଷ ଜୋର ଦେଉ ନାହିଁ, ଯଦି ଉଚିତ ମଣନ୍ତି ମୋତେ କହିବେ । ହୁଏତ ତାହା ମୋତେ ସାମାନ୍ୟ ସାହାଯ୍ୟ କରିବ । ତା'ହେଲେ ଆପଣ ବର୍ତ୍ତମାନ ଯାଇ ପାରନ୍ତି । ଆପଣଙ୍କ ପାଇଁ ଦୀନନାଥ ବାବୁ ଖୁବ୍ ଚିନ୍ତିତ ହୋଇପଡିଛନ୍ତି ।

ସୁଷମା ନୀରବରେ ବସି ସତ୍ୟବ୍ରତଙ୍କ କଥାଗୁଡିକ ଶୁଣୁଥିଲା ।

ସତ୍ୟବ୍ରତ ଉଠିଲେ । ସୁଷମାର ସେଠାରୁ ଉଠିବାର କୌଣସି ଲକ୍ଷଣ ନ ଦେଖି କହିଲେ ଉଠନ୍ତୁ । ଏଠାରେ କେବଳ ନୀରବରେ ବସିରହିଲେ କିଛି ଲାଭ ହେବ ନାହିଁ । ବର୍ତ୍ତମାନ ମୋର ଆପଣଙ୍କଠାରୁ ସମସ୍ତ କାର୍ଯ୍ୟ ଶେଷ ହୋଇଛି । ଆପଣ ଫେରିଯାଆନ୍ତୁ । ସାରଙ୍ଗ ଆଉ ବାଧା ଦେବ ନାହିଁ ।

ସୁଷମାର ନିଜ ଦେହଭାର ବହନ କରିବାକୁ ଯେପରି ଶକ୍ତି ନ ଥିଲା । ଅତି କଷ୍ଟରେ ସେ କୁଞ୍ଜଲତା ତଳୁ ଉଠି ଧୀରେଧୀରେ ଆଗେଇଲା ।

ସତ୍ୟବ୍ରତ କୁଞ୍ଜଲତା ତଳୁ ଉଠିଲେ ।

ମୁଣ୍ଡଟା ତାଙ୍କର ଭାରି ହୋଇ ଯାଇଥିଲା । ନିରଞ୍ଜନ ଆଉ ସୁରଞ୍ଜନ । ଦୁଇ ଦୁଇଟି ଉଜ୍ଜ୍ୱଳ ରତ୍ନ । ଅଥଚ ଏପରି ଅକାଳ ମୃତ୍ୟୁ ବରଣ କଲେ ତାଙ୍କରି ଆଗରେ ।

ସତ୍ୟବ୍ରତ ସେମାନଙ୍କୁ ବଞ୍ଚାଇ ପାରିଲେ ନାହିଁ । କେତେ ହତଭାଗ୍ୟ ପିତା ରାୟବାହାଦୂର ଶରତ୍ ଚନ୍ଦ୍ର ଦାଶ ମହାପାତ୍ର ! ସତରେ କ'ଣ ଦୈବ ଅଭିଶାପ ବଳରୁ ଏମାନଙ୍କର ଏପରି ଅକାଳ ମୃତ୍ୟୁ ହେଲା !

ନା ନା, ଅସମ୍ଭବ । ଏ ବିଂଶଶତାବ୍ଦୀରେ ଏପରି ଚିନ୍ତା କରିବାହିଁ ନିର୍ବୋଧତା । ନିରଞ୍ଜନ ଆଉ ସୁରଞ୍ଜନ ଦୁଇଜଣଯାକ କାହାର ଚକ୍ରାନ୍ତର ଶିକାର ହୋଇଛନ୍ତି ? କିଏ ସେହି ଚକ୍ରାନ୍ତକାରୀ ?

ସତ୍ୟବ୍ରତ ଆନମନା ହୋଇ ଚାଲି ଚାଲି ଯାଇ ନୀଳନିଳୟ ଭିତରେ ପ୍ରବେଶ କରି ସାରିଥିଲେ । ସାରଙ୍ଗ ଅପରାଧୀଟି ଭଳି ଦୁଆର ମୁହଁରେ ଠିଆ ହୋଇଥିଲା ।

ଆଚ୍ଛା ସାରଙ୍ଗ ! ସତ୍ୟବ୍ରତଙ୍କ ସ୍ୱର ଅତ୍ୟନ୍ତ ଶାନ୍ତ ଆଉ ଧୀର।

: ହଜୁର !

ତମେ କେତେଜଣ ଏହି ନୀଳନିଳୟ ଭିତରେ ବାସ କର ?

ଆଜ୍ଞା ମୁଁ ଆଉ ମୋର ପିଲାମାନେ ।

ଅନ୍ୟ କେହି ରହନ୍ତି ନାହିଁ ?

ହଁ ରହୁଥିଲେ, ତେବେ ଆଜିକାଲି ଅନ୍ୟ କାହାରି ରହିବାର ଅନୁମତି ଏଠାରେ ନାହିଁ ।

ହୁଁ, ତମର ପିଲାପିଲି କେତୋଟି ?

ଗୋଟିଏ ମାତ୍ର ଝିଅ ଆଜ୍ଞା ।

କ'ଣ କହିଲ ? ଗୋଟିଏ ଝିଅ ?

ହଁ ଆଜ୍ଞା, ଭଗବାନ ସେଇ ଗୋଟିଏ ଦେଇଥିଲେ ଯେ, ସେ ପୁଣି କଥା କହି ପାରେ ନାହିଁ । ମୁଁ ମୋ ସ୍ତ୍ରୀ ଆଉ ସେଇ ଝିଅଟି ମିଶି ଆମେ ତିନିଜଣ ଏଇଠି ରହୁ ।

ତମ ଝିଅର ବୟସ କେତେ ହେବ ?

କୋଡ଼ିଏ ଏକୋଇଶ ହେବ ଆଜ୍ଞା । ହେଇତ ଯାଉଚି ସେ ଆଡେ । ମାଳିନୀ, ଏ ମାଳିନୀ ?

ସାରଙ୍ଗ ଡାକରେ ମାଳିନୀ ବୁଲି ଅନେଇଲା । ଆଗେଇ ଆସିଲା ।

ସତ୍ୟବ୍ରତ ମାଳିନୀକୁ ଦେଖିଲେ । ଚେହେରାଟି ମିଠା । ଆଖିର ଚାହାଣି ଅତି ତୀକ୍ଷ୍ଣ । ମୁହଁ ହଲେଇ କ'ଣ ଯେପରି ସେ କହିଲା ।

ହଜୁର, ମାଳିନୀ ପଚାରୁଚି ତାକୁ କାହିଁକି ଡାକିଲେ ?

ସତ୍ୟବ୍ରତ ଝିଅଟି ଆଡେ ଏକଲୟରେ ଚାହିଁଥିଲେ । ସାରଙ୍ଗ ପାଟି ଶୁଣି ତାଙ୍କର ଯେପରି ଧ୍ୟାନଭଙ୍ଗ ହେଲା । କହିଲେ   ମାଳିନୀ ତା'ହେଲେ କଥା କହିପାରେ ନାହିଁ ?

ନା ହଜୁର ।

କୁଆଡେ ଯାଉଛୁ ମାଳିନୀ ?

ମାଳିନୀର ମୁହଁଟି କିପରି ମଳିନ ହୋଇଆସିଲା । ହାତ ବଢ଼ାଇଲା କୁଞ୍ଜଲତା ଆଡକୁ । ସତ୍ୟବ୍ରତ ଦେଖିଲେ ତା'ହାତରେ ମୁଠାଏ ଅନାବନା ଫୁଲ । ଇଙ୍ଗିତରେ କ'ଣ କହିଲା ।

ସାରଙ୍ଗ କହିଲା ମାଳିନୀ ଯାଉଛି ସାଆନ୍ତଙ୍କ ଶବରେ ଫୁଲ ଦେବା ପାଇଁ । ସାନ ସାଆନ୍ତ ମାଳିନୀକୁ ଖୁବ୍ ଭଲ ପାଉଥିଲେ ।

ହୁଁ, ତୁ ଯା ମାଳିନୀ ।

ହାତ ହଲେଇ ସତ୍ୟବ୍ରତ ମାଳିନୀକୁ ଯିବାକୁ କହିଲେ।

ମାଳିନୀ ଚାଲିଗଲା ।

ସତ୍ୟବ୍ରତ ତା'ଆଡୁ ଆଖି ଫେରାଇ ଆଣି କହିଲେ: ସୁରଞ୍ଜନ କାଲି ରାତିରେ ଯେଉଁ ଘରେ ରହିଥିଲା, ସେ ଘରଟା ଟିକେ ଦେଖିବା ଚାଲିଲୁ ।

ସାରଙ୍ଗ ସତ୍ୟବ୍ରତଙ୍କୁ ଉପରକୁ ନେଇଗଲା । ଇଙ୍ଗିତରେ ଘରଟା ଦେଖାଇ ଦେଲା । ସତ୍ୟବ୍ରତ ଦରଜା ଠେଲି ଭିତରକୁ ପଶିଲେ ।

କିନ୍ତୁ ଖଟ ଉପରେ କିଏ ମୁଣ୍ଡମାଡି ବସି କଇଁକଇଁ ହୋଇ କାନ୍ଦୁଚି ?

ଦରଜା ଖୋଲିବା ଶବ୍ଦଶୁଣି ସେ ବୁଲି ଅନେଇଲା ।

ଆରେ ସୁଷମା ଦେବୀ । ଆପଣ ଏତେବେଳଯାଏ ଯାଇ ନାହାନ୍ତି? ସତ୍ୟବ୍ରତ ପଚାରିଲେ ।

ସୁଷମା ଯେପରି ଆତ୍ମସମ୍ବରଣ କରି ପାରିଲା ନାହିଁ । ଭୋ ଭୋ ହୋଇ କାନ୍ଦି ଉଠିଲା ।

ସତ୍ୟବ୍ରତ କିନ୍ତୁ ସେ ଆଡେ କାନ ଦେଲେ ନାହିଁ । ସେ ଘରଟାକୁ ଭଲ କରି ଥରେ ବୁଲି ଦେଖିଲେ । ଆଧୁନିକ ସୁସଜ୍ଜିତ ଘର । ସୁଷମା ଆଡେ ଚାହିଁ କହିଲେ କାଲି ରାତିରେ ସୁରଞ୍ଜନ ଆଉ ଆପଣ ଏଇ ଘରେ କଟାଇଥିଲେ?

ସୁଷମା କେବଳ ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ତୁଣ୍ଡ ଖୋଲି କିଛି କହି ପାରିଲା ନାହିଁ ।

ସତ୍ୟବ୍ରତ ବୁଝିପାରିଥିଲେ ସୁଷମାଠାରୁ ବର୍ତ୍ତମାନ ସେ କିଛି କଥା ଆଦାୟ କରି ପାରିବେ ନାହିଁ । ଯଦି ସୁଷମା ପ୍ରକୃତରେ ସୁରଞ୍ଜନକୁ ଭଲ ପାଉଥାଏ, ତା'ହେଲେ ଶୋକରେ ସେ ମୁହ୍ୟମାନ ହୋଇ ପଡିଛି ଆଉ ଯଦି ଛଳନା କରୁଥାଏ, ତା'ହେଲେ ତା ମୁହଁ ଖୋଲିବାର ନୁହେଁ । କିନ୍ତୁ ସତ୍ୟବ୍ରତ ଆଶା ରଖିଥିଲେ ଆଜି ହେଉ, କାଲି ହେଉ ସୁଷମା ମୁହଁ ଖୋଲିବ । ଖୋଲିବାକୁ ବାଧ ହେବ । ହୁଏତ ସୁଷମାହିଁ ହେବ ତାଙ୍କର ଏ ରହସ୍ୟ ସମାଧାନର ଏକମାତ୍ର ଚାବିକାଠି ।

ଆଉ ଥରେ ଘରର ଚାରିଆଡକୁ ଭଲ କରି ଚାହିଁଲେ ସତ୍ୟବ୍ରତ । କହିଲେ: ଚାଲନ୍ତୁ ସୁଷମା ଦେବୀ, ଯାହାତ ଘଟିବାର ଘଟି ଗଲାଣି, ଚାଲନ୍ତୁ ମୁଁ ଆପଣଙ୍କୁ ଘରେ ପହୁଞ୍ଚାଇ ଦେଇଯିବି ।

ସୁଷମା କରୁଣ ଆଖିରେ ସତ୍ୟବ୍ରତଙ୍କ ଆଡେ ଚାହିଁଥିଲା । ସେ ଯେପରି ପାଷାଣ ପାଲଟି ଯାଇଚି ।

ସତ୍ୟବ୍ରତ ତା' ହାତ ଧରି ଟାଣି ଉଠାଇଲେ । ସୁଷମା ହିଁ ତାଙ୍କର ଏକମାତ୍ର ସୂତ୍ର । ତାକୁ ହରାଇଲେ ଚଳିବ ନାହିଁ ।

ସୁଷମା ଖଟରୁ ତଳକୁ ଓହ୍ଲାଇଲା । ସତ୍ୟବ୍ରତଙ୍କ ଉପରେ ଦେହଭାର ନଦି ଘରୁ ବାହାରକୁ ବାହାରିଲା ।

ସତ୍ୟବ୍ରତ ଦେଖିଲେ, ମାଳିନୀ ଦୁଆର ମୁହଁରେ ଠିଆ ହୋଇ ଏକଲୟରେ ଘରେ ଭିତରକୁ ଚାହିଁରହିଛି । ଆଖି ଲୁହରେ ଢଳଢଳ ହେଉଚି ।

ସତ୍ୟବ୍ରତ ମହାପାତ୍ରଙ୍କ ମଟର ବାଇକଟା ଯେତେବେଳେ ଦୀନନାଥ ଗନ୍ତାଏତଙ୍କ ଦୁଆର ମୁହଁରେ ଭିଡିଲା, ସେତେବେଳେ ଡକ୍ଟର ଦୀନନାଥ ଗନ୍ତାଏତ ତାଙ୍କ ଡ୍ରଇଂ ରୁମରେ ବସି ଖଣ୍ଡିଏ ପୁସ୍ତକ ମନଯୋଗ ସହକାରେ ପାଠ କରୁଥିଲେ । ମଟର ବାଇକ୍‌ର ଶବ୍ଦ ସେ ଶୁଣିଲେ । ପଲକେ ମାତ୍ର ବାହାରକୁ ଚାହିଁ ହୁଏତ ସେ ସତ୍ୟବ୍ରତ ଓ ସୁଷମାକୁ ଦେଖିଲେ, କିନ୍ତୁ ପରମୁହୂର୍ତ୍ତରେ ପୁଣି ପୁସ୍ତକ ଉପରେ ଦୃଷ୍ଟି ନିବଦ୍ଧ କଲେ । ଯେପରି ଏମାନଙ୍କ ଆଗମନରେ ସେ ତିଳେ ମାତ୍ର ଉତ୍ସାହ ପ୍ରକାଶ କରି ନାହାନ୍ତି ।

ସତ୍ୟବ୍ରତ ଯଦିଓ ଘଟଣାକୁ ଲକ୍ଷ୍ୟ କଲେ, ତଥାପି ସେ କିଛି ନ ଦେଖିଲା ପରି ଦୀନନାଥ ଗନ୍ତାଏତଙ୍କ ଡ୍ରଇଂରୁମ୍ ଆଡେ ଆଗେଇ ଗଲେ, ପଛେପଛେ ସୁଷମା । ସୁଷମା ଭିତରକୁ ଚାଲିଗଲା । ସତ୍ୟବ୍ରତ ନମସ୍କାର ଜଣାଇ ଠିଆ ହେଲେ ।

ଡକ୍ଟର ଗନ୍ତାଏତ ପ୍ରତିନମସ୍କାର ଜଣାଇ ସତ୍ୟବ୍ରତଙ୍କୁ ବସିବାକୁ କହିଲେ । ତା'ପରେ ସୁଷମାକୁ ଡାକି କହିଲେ, ଦୁଇକପ୍ ଚା'କରି ଆଣିବା ପାଇଁ ।

ସତ୍ୟବ୍ରତ ଆଶ୍ଚର୍ଯ୍ୟ ହେଲେ ନାହିଁ, କିନ୍ତୁ ଭାବିପାରିଲେ ନାହିଁ ଡକ୍ଟର ଗନ୍ତାଏତଙ୍କର ଏପରି ନିର୍ଲିପ୍ତଭାବ କାହିଁକି । ସୁଷମା ସମ୍ବନ୍ଧରେ ଦିନକ ଆଗରୁ ତାଙ୍କ ସହିତ ସେ ବହୁତ କଥାବାର୍ତ୍ତା ହୋଇଥିଲେ, ଅଥଚ ଆଜି ସୁଷମା ଫେରି ଆସିବା ପରେ ତାକୁ ଗୋଟିଏ ହେଲେ ପ୍ରଶ୍ନ କଲେ ନାହିଁ । ଯେପରି କିଛି ଘଟି ନାହିଁ । କୌଣସି ଅସ୍ୱାଭାବିକତା ନାହିଁ । ସବୁ ସହଜ ଓ ସରଳ । ଡକ୍ଟର ଗନ୍ତାଏତଙ୍କର ସୁଷମାକୁ ଏତେ ସ୍ୱାଧୀନତା ଦେବା କ'ଣ ଉଚିତ ହେଉଚି !

: ତା'ପରେ ମିଃ ମହାପାତ୍ର ! ଡ଼କ୍ଟର ଗନ୍ତାଏତ ପୁସ୍ତକଟିରେ ଦୁଇ ତିନୋଟି ଅଣ୍ଡର ଲାଇନ ପକାଇ ସାରି ସତ୍ୟବ୍ରତଙ୍କ ଆଡେ ଚାହିଁ କହିଲେ  ଆଉ ସବୁ ଖବର କ'ଣ ?

ଭଲ । ମୁଁ ସୁଷମାକୁ ଛାଡିବାକୁ ଆସିଥିଲି ।

ବେଶ୍ ଭଲ କରିଚ । ମୋର ଢେର ଉପକାର କରିଚ । ସୁଷମାକୁ ମୁଁ ଘଣ୍ଟାଏ ଛାଡିଲେ ଚଳି ପାରେ ନାହିଁ । କିନ୍ତୁ ସୁଷମା ସେଇ କଥାଟା ବୁଝେ ନାହିଁ ।

ତା'ବୋଲି ତାର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବାକୁ ମୁଁ ଚାହେଁ ନାହିଁ । ତା'ର ତ ପୁଣି ଗୋଟାଏ ସ୍ୱତନ୍ତ୍ର ସତ୍ତା ଅଛି ।

ସୁଷମା ଆସିଲା । ସତ୍ୟବ୍ରତ ବସି ସାରିଥିଲେ । ମୁହଁରେ ସରସତା ଆଣିବାକୁ ଚେଷ୍ଟା କରି ଡକ୍ଟର ଦୀନନାଥ ଗନ୍ତାଏତଙ୍କ ସାମ୍ନା ଚେଆରରେ ବସିଲା ତମେ ଖୁବ୍ କଷ୍ଟ ପାଇଥିବ । ମୁଁ କ'ଣ କରିବି କୁହ, ଆସି ପାରିଲି ନାହିଁ । ଯେତେ ଚେଷ୍ଟା କରି ମଧ ଫେରି ହେଲା ନାହିଁ ।

ଡକ୍ଟର ଗନ୍ତାଏତ ପୁଣି ପୁସ୍ତକ ପାଠରେ ମନୋନିବେଶ କରିଥିଲେ । ସୁଷମା କଥା ସେ ଶୁଣୁଥିଲେ । ଅଭିମାନର ଛାୟା ଦେହମୁହଁରେ ତାଙ୍କର ଫୁଟି ଉଠୁଥିଲା । କିନ୍ତୁ ନୀରବରେ ବସି ସେ ପୁସ୍ତକର ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଯାଉଥିଲେ ।

ସୁଷମା ପୁଣି ଉଠିଗଲା । ଡକ୍ଟର ଗନ୍ତାଏତ ତା'ଯିବା ବାଟକୁ ଅନାଇ ରହି କହିଲେ ଦେଖିଲେ, ଦେଖିଲେ ମିଃ ମହାପାତ୍ର । ବୁଢା ବାପା ଆଗରେ ଏଇ ତା'ର କୈଫିୟତ । କ'ଣ ଆଉ ମୁଁ କହିବି କୁହ । ମା'ହରା ସନ୍ତାନ । ଅତି ସାନଟି ଦିନରୁ ସ୍ନେହସୋହାଗ କିଛି ସେ ପାଇନାହିଁ । ପଦେ ଟାଣ କଥା କହିଲେ, ମନରେ ତା'ର ଆଞ୍ଚ ଲାଗିବ । କିନ୍ତୁ ମିଃ ମହାପାତ୍ର, ତଥାପି ମୋତେ କହିଁକି ସୁଷମାର ଗିତିବିଧି ଟିକିଏ ବେଖାପ ଲାଗୁଚି । ମୁଁ ତା'ର ସାଇକଲୋଜି ଷ୍ଟଡି କରିବାକୁ ଅନେକ ଚେଷ୍ଟା କରୁଚି, କିନ୍ତୁ ପାରୁଚି କାହିଁ । ମୁଁ ତା'ର ବାପ କିନା, ସେଇଥିପାଇଁ ହୁଏତ ତା'ଗତିବିଧି ଉପରେ ଠିକ୍ ଭାବରେ ନଜର ଦେବା ସମ୍ଭବ ହେଉନାହିଁ । ତମକୁ ସୁଷମାକୁ ଷ୍ଟଡି କରିବାର ଦାୟିତ୍ୱ ମୁଁ ଦେଇଥିଲି, କିଛି ଲକ୍ଷ୍ୟ କରି ପାରିଚ ?

ସୁଷମା ଦୁଇକପ୍ ଚା' ଧରି ଡ୍ରଇଂ ରୁମ୍‌ରେ ପ୍ରବେଶ କଲା । ସତ୍ୟବ୍ରତ କ'ଣ କହିବାକୁ ଯାଇ ଅଟକିଗଲେ । ସୁଷମା ନିଜକୁ ଅପେକ୍ଷାକୃତ ପ୍ରଫୁଲ୍ଲ ରଖିବା ପାଇଁ ଚେଷ୍ଟା କରୁଥିଲା । କିନ୍ତୁ ସତ୍ୟବ୍ରତଙ୍କ ଆଖିରେ ଧରା ପଡିଯାଉଥିଲା ।

ଡକ୍ଟର ଗନ୍ତାଏତ ଚା'କପ୍ ମୁହଁରେ ଲଗାଇ କହିଲେ : ବୁଝିଲେ ମିଃ ମହାପାତ୍ର, ସୁଷମା ମୋର ବହୁ ସାଧନାର ଫଳ । ସେଥିପାଇଁ ପୃଥିବୀର ଯେ କୌଣସି ମୂଲ୍ୟବାନ ବସ୍ତୁଠାରୁ ସୁଷମାକୁ ମୁଁ ଅଧିକ ମୂଲ୍ୟ ଦେଇଥାଏ । ତାକୁ ମୁହୂର୍ତ୍ତେ ଆଖି ଆଗରେ ନ ଦେଖିଲେ, ମୋତେ କିଛି ଭଲ ଲାଗେ ନାହିଁ । କାହିଁକି ଜାଣନ୍ତି ? ସେ ତା'ର ମା'ର ପ୍ରତୀକ । ଠିକ୍ ସେଇ ଆଖି, ସେଇ ନାକ, ସେଇ ମୁହଁ, ସେଇ ଅମଳିନ ହସ । ଦିନ ପରେ ଦିନ, ରାତି ପରେ ରାତି ମୁଁ ସେଇ ମୁହଁ ଆଡେ ଅନେଇ ବସି ରହିବାକୁ କ୍ଳାନ୍ତି ବୋଧ କରେ ନାହିଁ । ଏବେ ବି ମୋର ରହି ରହି ମନେ ପଡିଯାଏ ସେଇ ପ୍ରଥମ ଦିନଟିରେ କଥା, ଯେତେବେଳେ ତା' ସହିତ ଆସାମରେ ଚା' ବଗିଚା ଭିତରେ ମୋର ଭେଟ ହୋଇଥିଲା ।

ବାବା !

ସୁଷମା କଥା ମଝିରେ ହଠାତ୍ ଚିତ୍କାର କରି ଉଠିଲା । ଡକ୍ଟର ଗନ୍ତାଏତ ସଚେତନ ହୋଇଉଠିଲେ । ସତ୍ୟବ୍ରତଙ୍କ ମୁହଁକୁ ଚାହିଁ ସେ ଯେପରି ଆମ୍ବଷ୍ଠ ହେଲେ ।

ଆସାମର ଚା'ବଗିଚା ।

ସତ୍ୟବ୍ରତଙ୍କ ପ୍ରାଣରେ ଯେପରି ଡକ୍ଟର ଗନ୍ତାଏତଙ୍କର ଏହି କଥା ପଦକ ଧ୍ୱନିତ ହୋଇ ଉଠିଲା ! ଆଉ ଦିନେ ଡକ୍ଟର ଗନ୍ତାଏତ ଆସାମର ସେହି ଚା' ବଗିଚା କଥା ଉଠାଇ ପୁଣି ନିଜକୁ ସମ୍ବରଣ କରି ନେଇଥିଲେ । ଆଜି ପୁଣି ସୁଷମା ତାଙ୍କୁ ସଚେତନ କରାଇଦେଲା । କ'ଣ ଏପରି ଗୂଢତତ୍ତ୍ୱ ? ଡକ୍ଟର ଗନ୍ତାଏତଙ୍କ ବିବାହ ରହସ୍ୟ କ'ଣ ଖୁବ୍ ରହସ୍ୟାବୃତ ?

ଡକ୍ଟର ଗନ୍ତାଏତ ଚୁପ୍ ହୋଇ ଯାଇଥିଲେ । ଆଖି ଯୋଡାକ ତାଙ୍କର ସୁଷମା ଉପରେ ନିବଦ୍ଧ ଥିଲା । ସେ ଯେପରି ବାହାର ଜଗତଠାରୁ ସମସ୍ତ ସମ୍ପର୍କ ତୁଟେଇ ଦେଇ ସୁଷମାଠାରେ ଲୀନ ହୋଇଯାଇଚନ୍ତି, ସେହିପରି ମନେ ହେଉଥିଲା ।

ସତ୍ୟବ୍ରତ ଚା'ପିଆଲାକ ଶେଷ କରିସାରିଥିଲେ । ଆଉ ଅଧିକ ସମୟ ବସି ରହି ତାଙ୍କର ମୂଲ୍ୟବାନ ସମୟ ଗୁଡିକ ନଷ୍ଟ କରିବାର ଇଚ୍ଛା ନ ଥିଲା । ଡକ୍ଟର ଗନ୍ତାଏତଙ୍କ ବୟସ ବୃଦ୍ଧି ସଙ୍ଗେସଙ୍ଗେ ତାଙ୍କର ମତିଭ୍ରମ ଘଟିଚି । କ'ଣ ସେ କହୁଚନ୍ତି ହୁଏତ ନିଜେ ସେ ତା'ର ଅର୍ଥ ଖୋଜିଲେ ପାଇବେ ନାହିଁ । ତେଣୁ ଏପରି ଗୋଟିଏ ଲୋକ ପାଖରେ ଅନର୍ଥକ ସମୟ ନଷ୍ଟ କରିବା ଉଚିତ ନୁହେଁ ଭାବି ସତ୍ୟବ୍ରତ ଉଠିଲେ ।

ସୁଷମାଆଡେ ଚାହିଁ କହିଲେ : ଆଜି ମୁଁ ଆସୁଚି ସୁଷମା ଦେବୀ  ଆପଣଙ୍କ ସହିତ ମୋର ପ୍ରୟୋଜନ ଯେକୌଣସି ମୁହୂର୍ତ୍ତରେ ହୋଇପାରେ । ଆପଣ ଯେପରି ମୋତେ ସବୁବେଳେ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଥିବେ ।

ସୁଷମା ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ସତ୍ୟବ୍ରତ ଡକ୍ଟର ଗନ୍ତାଏତଙ୍କୁ ନମସ୍କାର କରି ସେଠାରୁ ବାହାରି ଆସିଲେ ।

ଏହାପରେ କ'ଣ ତାଙ୍କର କର୍ତ୍ତବ୍ୟ !

ସେ କିଛି ସ୍ଥିର କରି ପାରୁ ନ ଥିଲେ । ରାୟ ବାହାଦୂର ତେଣେ ହୁଏତ ତାଙ୍କରି ପଥ ଚାହିଁ ବସିଥିବେ । ତାଙ୍କୁ କି କୈଫିୟତ ଦେବେ ? ଆଉ ଲାଇଲା, ପ୍ରକୃତରେ କ'ଣ ଲାଇଲା ଅପରାଧୀ ! ସେଇ କ'ଣ ଜଣକ ପରେ ଜଣକୁ ହତ୍ୟା କରି ଚାଲିଚି ? ତା'ନ ହୋଇଥିଲେ, ଲାଇଲା ପାଖରୁ ସୁରଞ୍ଜନ କୋଟର ବୋତାମ, ଗୋଲାପ ଫୁଲ ଆଉ ମୁଣ୍ଡବାଳ ଆସି ଥାଆନ୍ତା କିପରି ! ଯଦିବା ସେ ଅପରାଧୀ ହୋଇ ଥାଆନ୍ତା, ତା'ହେଲେ ବଳେବଳେ ଆସି ସତ୍ୟବ୍ରତଙ୍କ ନିକଟରେ ଧରା ଦିଅନ୍ତା କାହିଁକି ?

ସତ୍ୟବ୍ରତ କିଛି ଗୋଟାଏ ଭାବି ସ୍ଥିର କରି ପାରୁ ନ ଥିଲେ । ମଟର ବାଇକ୍‌ର ଗତି ପରି ତାଙ୍କ ମନ ଗତି କରୁଥିଲା । ଏକ  ସମୟରେ ସେ ତାଙ୍କର ସଂପୂର୍ଣ୍ଣ ଅଜାଣତରେ ଆସି ଲାଇଲା ଘରେ ପହଞ୍ଚି ଯାଇଥିଲେ ।

ଲାଇଲା ଦୁଆର ଖୋଲି ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲା । ଲିଲି ଓ ଲାଇଲା ଦୁହେଁ ବସି ତାସ୍ ଖେଳୁଥିଲେ । ଲିଲି ଆସି ନମସ୍କାର ଜଣାଇଲା । ସତ୍ୟବ୍ରତ ଭିତରକୁ

ଯାଇ ବସିଲେ । ସେ ରହି ରହି କେବଳ ଲାଇଲାର ମୁହଁକୁ ଚାହୁଁଥିଲେ । ତାଙ୍କର ମନେ ହେଉଥିଲା ଏଇ କ'ଣ ତାଙ୍କ କଳ୍ପିତ ସେଇ ରହସ୍ୟମୟୀ ଲାଇଲା! ଯାହାର ଅଭିନୟ ଚାତୁରୀ ଅତି ଉନ୍ନତ ଧରଣର । ଯହିଁରେ ସାଧାରଣ ଲୋକ ତ ଦୂରର କଥା, ନିଜେ ସତ୍ୟବ୍ରତ ମହାପାତ୍ର ମଧ ଏତେଦିନ ଯାଏ ଅଭିଭୂତ ହୋଇ ରହିଚନ୍ତି !!

ଲିଲି ଦେବୀ ! ସତ୍ୟବ୍ରତ ମହାପାତ୍ର ଲିଲି ମୁହଁକୁ ଅନାଇ କହିଲେ, ମୁଁ ଆଶା କରି ନଥିଲି ଆପଣ ଏଠାରେ ସଶରୀରେ ଉପସ୍ଥିତ ଥିବେ । ମୁଁ ଲାଇଲା ଦେବୀଙ୍କ ପାଖକୁ ଆସିଥିଲି ତାଙ୍କୁ ସଙ୍ଗରେ ଧରି ଆପଣଙ୍କ ନିକଟକୁ ଯାଇ ଥାଆନ୍ତି, ଅବଶ୍ୟ ଯିବା ମୂଳରେ ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ । ଆପଣଙ୍କର ମନେ ଥିବ, ସେଦିନ ଆପଣ ଏଇ ହତ୍ୟା ରହସ୍ୟ ସମ୍ବନ୍ଧରେ ଆପଣଙ୍କ ଧାରଣା କଥା କହିବେ ବୋଲି କହୁଥିଲେ, କିନ୍ତୁ କହିବାର ଅବକାଶ ଆଉ ପାଇ ନ ଥିଲେ । ଆଜି କେବଳ ମୁଁ ସେଇଥିପାଇଁ ଆସିଚି । ଆପଣଙ୍କର ଏହି ହତ୍ୟା ସମ୍ବନ୍ଧରେ ଧାରଣା କ'ଣ ମୋତେ ଶୁଣାଇଲେ, ମୁଁ ହୁଏତ ଉପକୃତ ହେବି ।

ଲିଲି ହାତରେ ଧରିଥିବା ତାସ୍ ଚାରିପଟ ବିଛଣା ଉପରେ ଚିତ୍ କରି ପକାଇ ଟିକିଏ ସତ୍ୟବ୍ରତ ମହାପାତ୍ରଙ୍କ ମୁହଁକୁ ଅନାଇଲା । ତା' ପରେ ଥରେ ଲାଇଲା ଆଡେ ଚାହିଁ ବିଛଣା ଉପରେ ଚିତ୍ ହୋଇ ପଡିଥିବା ତାସ୍ ଉପରେ ଦୃଷ୍ଟି ନିବଦ୍ଧ କରି କହିଲା

ସେଦିନ ମୁଁ ଯାହା କହିବି ବୋଲି ଭାବିଥିଲି, ଆଜି କହିବାର ଆଗ୍ରହ ଆଉ ନାହିଁ, କାରଣ ଏ କେତୋଟି ଦିନର ବ୍ୟବଧାନରେ ମନଟା ମୋର ଯଥେଷ୍ଟ କୋହଳ ହେଇଯାଇଚି । ତା'ଛଡା ମୋ କଥାଗୁଡ଼ା ଏତେ ଅବିଶ୍ୱାସ୍ୟ ମନେ ହେବ ଯେ, ଆପଣ ମୋଟେ ପସନ୍ଦ କରି ପାରିବେ ନାହିଁ ।

ଲିଲି ଚୁପ୍ ରହିଲା ।

ଦେଖନ୍ତୁ ଲିଲି ଦେବୀ ! ଆପଣ ସେ ସବୁ କିଛି ଭାବନ୍ତୁ ନାହିଁ । ଆପଣଙ୍କ କାହାଣୀ ଯଦି ଆରବୀୟ କାହାଣୀଠାରୁ ଆହୁରି ଅବିଶ୍ୱାସ୍ୟକର ହୁଏ, ତଥାପି ମୁଁ ଶୁଣିବି । କାରଣ ମୋ ହାତରେ ବର୍ତ୍ତମାନ ପ୍ରଚୁର ଅବକାଶ ରହିଚି । ଦୁଇ ତିନି ଘଣ୍ଟା ମୁଁ ଯେଚ୍ଛାତା ଶୁଣି କଟେଇ ଦେଇପାରେ । ତେଣୁ ଆପଣ କୁଣ୍ଠାବୋଧ କରିବାର କିଛି ନାହିଁ ।

ଲିଲି ବିଛଣା ଉପରୁ ଦୁଇଟିଯାକ ତାସ୍ ସତ୍ୟବ୍ରତ ମହାପାତ୍ରଙ୍କ ହାତକୁ ଦେଇ କହିଲା ଆପଣ ଦୁଇଟିଯାକ ତାସ୍ ଲୁଚେଇ ରଖନ୍ତୁ । ରଖିବା ଅଗରୁ ତାସ ଦୁଇପଟଯାକ ଥରେ ଚିହ୍ନି ନିଅନ୍ତୁ । ତା' ପରେ ଲିଲି ଯାଇ ଲାଇଲାର ସାମନା ଚେଆରରେ ବସିଲା ଏବଂ ଏକ ଦୃଷ୍ଟିରେ କିଛି ସମୟ ଲାଇଲାର ମୁହଁକୁ ଅନାଇ ରହିଲା । ତା'ପରେ ହଠାତ୍ ଚଞ୍ଚଳ ହୋଇ ଉଠି ଲାଇଲାକୁ ପଚାରିଲା ସତ୍ୟବ୍ରତ ବାବୁଙ୍କ ହାତମୁଠାରେ କେଇପଟ ତାସ୍ ଅଛି ?

ଲାଇଲା କହିଲା ଦୁଇପଟ ।

ଲିଲି ପଚାରିଲା କ'ଣ କ'ଣ ?

ଲାଇଲା କହିଲା  ଇସ୍କାବନ ସାହେବ, ନାଲିପାନ ବିବି ।

ଲାଇଲା ଆଡ଼ କେଇପଟ ତାସ ବିଛଣା ଉପରୁ ଗୋଟେଇ ଆଣିଲା । ସେଥିରୁ ଖଣ୍ଡିଏ ଲେଖା ନିଜେ ଦେଖି ତା'ପରେ ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଉଥିଲା ଏବଂ ଲାଇଲାକୁ ପଚାରୁଥିଲା-

ଏପଟକ ?

ଚିଡ଼ିଆ ଗୋଲାମ ।

ଏଥର ସତ୍ୟବ୍ରତବାବୁଙ୍କ ହାତରେ କ'ଣ ଅଛି ?

ଠିକିରି ଟିକା ।

ଏଇଟା ?

ଇସ୍କା ତିଆ ।

ଲିଲି ଗୋଟିକ ପରେ ଗୋଟିଏ ପଚାରୁଥିଲା, ଏବଂ ଲାଇଲା ନିର୍ବିବାଦରେ ସବୁଗୁଡ଼ିକ କହି ଚାଲିଥିଲା । ସତ୍ୟବ୍ରତ ମହାପାତ୍ର ଲିଲିର କାର୍ଯ୍ୟକଳାପ ଆଡେ ଚାହିଁ ଭାବୁଥିଲେ—

ସେ କ'ଣ ଏଠାକୁ ମ୍ୟାଜିକ୍ ଦେଖିବାକୁ ଆସିଚନ୍ତି ? ତା' ଛଡା ଏଇଟା ଏପରି କୌଣସି ଆଶ୍ଚର୍ଯ୍ୟଜନକ ଖେଳ ନୁହେଁ, ଯାହା ଦେଖିଲା ଭଳି ଶିଖିଲା ଭଳି ହୋଇଚି । ହୁଏତ ଆଗରୁ ଲିଲି ସହିତ ଲାଇଲାର ବୁଝାମଣା ଥିବ, ଲିଲି ନିର୍ଦ୍ଦିଷ୍ଟ ତାସଗୁଡ଼ିକ ବାହାର କରି ସତ୍ୟବ୍ରତଙ୍କ ହାତକୁ ଦେଉଥିବ ଏବଂ ଲାଇଲା ମୁଖସ୍ତ କରିଥିବା ତାସଗୁଡ଼ିକର ନାମ ଗୋଟିକ ପରେ ଗୋଟିଏ କହି ଯାଉଥିବ ।

ସେ ଏହିପରି ଭାବୁଥିବା ବେଳେ ଲିଲି ହଠାତ୍ ଉଠିପଡ଼ି ସତ୍ୟବ୍ରତଙ୍କ ହାତରୁ ସେଇ ମୁହୂର୍ତ୍ତରେ ସେଗୁଡ଼ିକ ଛଡ଼େଇ ଆଣିବାକୁ ଯିବାବେଳକୁ ଶୁଣିଲେ, ଲାଇଲା କହୁଚି

ମାନ୍ୟବର ରାୟବାହାଦୂର ଶରତ୍ ଚନ୍ଦ୍ର ଦାଶ ମହାପାତ୍ର

ମହୋଦୟ ସମୀପେଷୁ—

ମହାଶୟ,

ଏ ଚିଠି ପ୍ରାପ୍ତି ପରେ ଓ ପଠନ ଉତ୍ତାରୁ ଜାଣେନା ଆପଣଙ୍କ ମନର ଅବସ୍ଥା କିପରି ହେବ । ହୁଏତ ଆପଣଙ୍କ ବଂଶ ଇତିହାସ ଆପଣଙ୍କୁ ସମସ୍ତ ଅବଗତ ନ ଥିବ । ଦିନେ ଆପଣଙ୍କ ପୂର୍ବ ବଂଶଧର ଦେଶର ଯଥେଷ୍ଟ ପ୍ରଭାବଶାଳୀ ଥିଲେ ।

ସତ୍ୟବ୍ରତ ଚାହିଁଲେ ଲିଲି ଚିଠିଟିଆଡେ ନିଜେ ଅନାଇ ରହିଚି ଏବଂ ଲାଇଲା ଚିଠିଟି ପଢ଼ିବାରେ ଲାଗିଚି । ସତ୍ୟବ୍ରତ ଆଶ୍ଚର୍ଯ୍ୟ ହୋଇ ଲିଲି ଓ ଲାଇଲାଆଡେ ଚାହିଁ ରହିଥିଲେ ।

ତାଙ୍କ ପକେଟରୁ ନେଇଥିବା ଚିଠିଟିର ସମସ୍ତ ଅଂଶ ଲାଇଲା ପାଠ କରି ସାରିବା

ପରେ ଲିଲି ପୁଣି ସେଇଟିକୁ ସତ୍ୟବ୍ରତଙ୍କ ହାତକୁ ଫେରାଇ ଦେଲା ଏବଂ ପରେ ନିଜେ ଯାଇ ପୂର୍ବର ଅଧିକୃତ ଆସନରେ ବସି ଲାଇଲାର ଅବଶ ଆଖି ଆଡେ ଚାହିଁ କହିଲା

ଟିକିଏ ଅପେକ୍ଷା କରନ୍ତୁ । ଲାଇଲାର ଟିକେ ତନ୍ଦ୍ରା କଟିଯାଉ, ତାକୁ ପଚାରିବେ ସେ କ'ଣ କରୁଥିଲା ଓ କ'ଣ କହୁଥିଲା । ଦେଖିବେ କିଛି ତା'ର ମନେ ନ ଥିବ ।

କିନ୍ତୁ... ସତ୍ୟବ୍ରତ ଯେପରି କ'ଣ କହିବାକୁ ଯାଇ ଅଟକି ଗଲେ । ମୁହୂର୍ତ୍ତେ ନୀରବ ରହି କହିଲେ—କିନ୍ତୁ ଆପଣଙ୍କ ଧାରଣା କଥା ତ କିଛି କହିଲେ ନାହିଁ । ଆପଣଙ୍କର ଏହି ମ୍ୟାଜିକ ବେଶ୍ ଚମକପ୍ରଦ ହୋଇଚି ।

ଲିଲିର ହସିହସି ଗଡିଯିବାକୁ ଇଚ୍ଛା ହେଉଥିଲା । କିନ୍ତୁ ସତ୍ୟବ୍ରତ ମହାପାତ୍ରଙ୍କ ପରି ଜଣେ ସମ୍ମାନୀୟ ବ୍ୟକ୍ତିଙ୍କ ନିକଟରେ ସେ ନିଜକୁ ଯଥା ସମ୍ଭବ ସଂଯତ କରି ନେଇ କହିଲା

ମୋ ଧାରଣା କଥା ତ ଆପଣଙ୍କୁ ଦେଖାଇଲି, ଏଥର କ'ଣ କହୁଚି ଶୁଣନ୍ତୁ ।

ଲିଲି କହିଲା   ଆପଣ ହିପ୍‌ନଟିଜିମ୍ ବିଶ୍ୱାସ କରନ୍ତି ?

ହିପ୍‌ନଟିଜମ୍ !

ସତ୍ୟବ୍ରତ ମହାପାତ୍ର ଯେପରି ସଂପୂର୍ଣ୍ଣ ଏକ ଭିନ୍ନ ପଥର ସନ୍ଧାନ ପାଇଲେ । ସେ ମୁହୂର୍ତ୍ତେ ଲିଲି ମୁହଁକୁ ଚାହିଁ କହିଲେ ମ୍ୟାସମାରିଜମ୍, ହିପ୍‌ନଟିଜିମ- ଏ ସମ୍ବନ୍ଧରେ ମୁଁ ଅନେକ ଶୁଣିଚି, କିନ୍ତୁ କେବେ ସେପରି କୌଣସି ପରିସ୍ଥିତି ଭିତରେ ପଡିନାହିଁ, ଯେତେବେଳେ କି ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ଉଠିପାରେ । କିନ୍ତୁ ସେ କଥା ହଠାତ୍ ଆପଣଙ୍କର କାହିଁକି ମନେ ପଡିଲା କହିଲେ?

ଲିଲି ଲାଇଲା ଆଡେ ଚାହିଁଥିଲା ।

ଲାଇଲା ଧୀରେ ଧୀରେ ପ୍ରକୃତିସ୍ଥ ହୋଇ ଉଠୁଥିଲା । ସତ୍ୟବ୍ରତ ମହାପାତ୍ରଙ୍କ କଥାର ଉତ୍ତର ଦେବାକୁ ଯାଇ ଲିଲି କହିଲା : ମୋର କାହିଁକି ମନେ ପଡିଲା କହିଲେ ?

ମାନେ ।

ସତ୍ୟବ୍ରତ ମହାପାତ୍ର ଯେପରି ସଜାଗ ହୋଇ ଉଠିଲେ । ସେ ଏକ ସମ୍ପୂର୍ଣ୍ଣ ଭିନ୍ନ ପଥର ସନ୍ଧାନ ପାଇଚନ୍ତି । ଯେଉଁକଥା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ। ତେଣୁ ଆଗ୍ରହ ଓ ଉତ୍କଣ୍ଠା ତାଙ୍କର ଦେହମୁହଁରେ ଫୁଟି ଉଠିଥିଲା ।

ଲିଲି କହିଲା : ଲାଇଲାର ଅବସ୍ଥା ଦେଖି, ମାନେ ସକାଳୁ ତା'ଭ୍ୟାନିଟି ବ୍ୟାଗରେ ନାନା ପ୍ରକାର ଅବାଞ୍ଛିତ ଜିନି ପତ୍ର ଦେଖି, ମଝିରେ ମଝିରେ ତା'ର କ୍ଳାନ୍ତ ଶରୀର ଦେଖି ମୋର ମନେ ହେଉଚି, କେହି ଲାଇଲାକୁ ହିପ୍‌ନଟାଇଜ କରି ତା'ର ଉଦ୍ଦେଶ୍ୟ ସାଧନ ପାଇଁ ପଠେଇ ଦେଉଚି ଆଉ ଲାଇଲା ସେଠାରୁ ଫେରିଲା ପରେ, ଯେତେବେଳେ ସେ ସଚେତନ ହୋଇ ଉଠୁଚି, ଦେଖୁଚି ତା' ସାଧାରଣ ଜୀବନଯାତ୍ରାରେ ଯେପରି ବ୍ୟତିକ୍ରମ ଘଟିଚି । ହୁଏତ ସେ ତା' ଭ୍ୟାନିଟିରୁ ଅବାଞ୍ଛିତ ପଦାର୍ଥ ଦେଖି ଶିହରି ଉଠୁଚି । ଯା'ହେଉ, ଲାଇଲା ପ୍ରତି ମୋର  କାହିଁକି ଏହିପରି ସନ୍ଦେହ ହେଉଚି । ଜାଣେନା ମୋର ଦୃଢ଼ ଧାରଣା ଜନ୍ମିଚି ଯେ, ଲାଇଲାକୁ କେହି ହିପ୍‌ନଟାଇଜ୍ କରୁଚି ।

ସତ୍ୟବ୍ରତ ମହାପାତ୍ର ଅତ୍ୟନ୍ତ ଆଗ୍ରହ ସହକାରେ, ଲିଲିର ସମସ୍ତ କଥା ଶୁଣୁଥିଲେ । ତାଙ୍କ ମନରେ ବିଶ୍ୱାସ ଅବିଶ୍ୱାସର ତୁମୁଳ ଝଡ ବହୁଥିଲା । ତଥାପି ସେ ପଚାରିଲେ ଆପଣ କ'ଣ ହିପ୍‌ଟିଜିମ୍ ଜାଣନ୍ତି ?

ଲିଲି ହସିଲା ।

କହିଲା ଜାଣିଥିଲି, ଯେତେବେଳେ ମଣିପୁରରେ ଥିଲି । ସେ ପ୍ରାୟ ୭/୮ ବର୍ଷ ତଳର କଥା । ଏବେ ତା'ର କୌଣସି ଚର୍ଚ୍ଚା ନାହିଁ । ତେଣୁ କାହାରିକୁ ହିପ୍‌ନଟାଇଜ୍ କରିବା ମୋ ପକ୍ଷରେ ସମ୍ଭବ ହେବ ନାହିଁ । କେବଳ କୌଣସି ଦୁର୍ବଳଚିତ୍ତ ବ୍ୟକ୍ତି ବା ଶିଶୁମାନଙ୍କ ଛଡା କାହାରିକୁ ମୁଁ ହିପ୍‌ନଟାଇଜ୍ କରିପାରିବି ନାହିଁ ।

ତା' ହେଲେ ଲାଇଲା...

ହଁ ଲାଇଲା ଖୁବ୍ ଦୁର୍ବଳ । ତା'ର ମନୋବଳର ଏତେ ଅଭାବ ଯେ, ସେ ଯେ କୌଣସି ଲୋକର କଥାରେ, ଯେ କୌଣସି ମୁହୂର୍ତ୍ତରେ ପରିଚାଳିତ ହୋଇପାରେ । ମୁଁ ସେ କଥା ଭଲ ଭାବରେ ଜାଣିଚି ।

ହୁଁ, ସତ୍ୟବ୍ରତ ମହାପାତ୍ର କିଛି ସମୟ ନୀରବରେ ଚିନ୍ତା କରି କହିଲେ— ଆପଣ ତା'ହେଲେ ମଣିପୁର ଅଞ୍ଚଳରେ ବହୁତ ଦିନ ଥିଲେ, କିନ୍ତୁ କାହିଁକି ?

ଲିଲି ଏଥର ବହୁ କଷ୍ଟରେ ଟିକିଏ ହସିଲା ।

କହିଲା ଆପଣ ଆମ ଭଳି ଅଭିଶପ୍ତ ଜୀବନର କଥା ଶୁଣିଲେ କିଛି ଲାଭ ହେବ ନାହିଁ । ବରଂ ସମବେଦନା ଜଣାଇବାକୁ ଯାଇ କଷ୍ଟ ପାଇବେ । ପ୍ରକୃତରେ ମୋର ଜନ୍ମ ଆସାମର ଚା' ବଗିଚା ଭିତରେ । ସେ ଅନେକ କଥା । ଅବସ୍ଥାଚକ୍ରରେ ମୋତେ ଆସାମର ନାନା ଅଞ୍ଚଳ ଘୂରିବାକୁ ହେଇଛି । ସେହି ସମୟରେ ମୁଁ ଏହିସବୁ ବିଦ୍ୟା କିଛି ଶିକ୍ଷା କରିଥିଲି । ସେଠା ପାର୍ବତ୍ୟ ଅଞ୍ଚଳରେ ଗୋଟାଏ ସ୍ୱତନ୍ତ୍ର ଜାତି ଅଛନ୍ତି, ଯେଉଁମାନେକି କେବଳ ଗୁଣିଗାରେଡି ଉପରେ ଆସ୍ଥା ରଖି ଜୀବନ ନିର୍ବାହ କରନ୍ତି । ଅବଶ୍ୟ ତା' ଭିତରେ ଅନେକ କଥା ଅଛି, ଯେଉଁ ଗୁଡାକ ଫମ୍ପା । ଯାହାର କି କୌଣସି ଅର୍ଥ ହୁଏ ନାହିଁ, କିନ୍ତୁ ଆଉ କେତେ ଗୁଡିଏ ଜିନିଷ ଅଛି ଯାହାର ପ୍ରମାଣ ହାତେ ହାତେ ଆପଣ ପାଇବେ । ଯା'ହେଉ, ସେ ସମ୍ବନ୍ଧରେ ବର୍ତ୍ତମାନ ଆଲୋଚନା କରି ଆମର ବିଶେଷ ଲାଭ ନାହିଁ । କେବଳ ଲାଇଲା କଥା ମୁଁ କହୁଥିଲି । ସେ କୌଣସି ଲୋକର ଚକ୍ରାନ୍ତରେ ପଡିଯାଇଚି ।

ସତ୍ୟବ୍ରତ ଭାବୁଥିଲେ ଲିଲି କଥା । ଆସାମର କୌଣସି ଚା' ବଗିଚାରେ ତାର ଜନ୍ମ । ହୁଏତ ଲିଲିର ପିତାମାତା ସମ୍ପର୍କରେ ପ୍ରଶ୍ନ ଉଠିଲେ ସେ ତା'ର କୌଣସି ଉତ୍ତର ଦେଇ ପାରିବ ନାହିଁ । ଅଥବା ଏପରି ଏକ ପରିଚିତି ମିଳିବ ଯେ ତା'ର ବାପ ମା ଥିଲେ ଚା' ବଗିଚାର କୁଲି । ଆଉ ଲିଲି ଦୈବକ୍ରମେ ସେଠାରୁ ମୁକ୍ତି ପାଇ ଆସି ଆଜି ନାଇଟ୍ କ୍ଲବର ନର୍ତ୍ତକୀ । ମଣିଷର ଭାଗ୍ୟଚକ୍ର କେତେବେଳେ, କେଉଁପରି

ଭାବରେ ଯେ ଘୂରିଯାଏ, ତାହା  ଜାଣିବା ଆଦୌ ସମ୍ଭବ ହୁଏ ନାହିଁ, ଏଇ ଡକ୍ଟର ଦୀନନାଥ ଗନ୍ତାଏତ, ସେ ତ ପୂଣି ଦିନେ ଆସାମର ଚା' ବଗିଚାର ସାମାନ୍ୟ ଜଣେ...

ସତ୍ୟବ୍ରତ ମହାପାତ୍ର ସଚେତନ ହୋଇଉଠିଲେ । ଡକ୍ଟର ଗନ୍ତାଏତ ! ସେ କେତେଥର ତାଙ୍କ ଆସାମର ଜୀବନଯାତ୍ରା ସମ୍ବନ୍ଧରେ କହିବାକୁ ଯାଇ ଚୁପ୍ ହୋଇ ଯାଇଚନ୍ତି । କାହିଁକି ?

ଲିଲି ଲାଇଲା ଆଡେ ଚାହିଁଥିଲା । ଲାଇଲା ଲିଲି ଓ ସତ୍ୟବ୍ରତଙ୍କ ଭିତରେ ହେଉଥିବା କଥାବାର୍ତ୍ତା ଶୁଣି କିପରି ଅବିଶ୍ୱାସ୍ୟ ଦୃଷ୍ଟିରେ ଲିଲିକୁ ଚାହିଁଥିଲା । ସତ୍ୟବ୍ରତ ପୁଣି ଲିଲିକୁ ପଚାରିଲେ  ଆଚ୍ଛା, ଜଣେ ଜଣକୁ ହିପ୍‌ନଟାଇଜ୍ କରିବା ପରେ, ଆସାମୀ, ମାନେ ମିଡିଆ, ସେ କ'ଣ ତା'ର ସମସ୍ତ ସତ୍ତା ହରେଇ ବସେ?

ହିଁ ତା'ର ନିଜର କୌଣସି ଜ୍ଞାନ ରୁହେ ନାହିଁ । ସେ ତା' ମାଲିକର ଇଚ୍ଛା ଶକ୍ତି ଅନୁସାରେ ପରିଚାଳିତ ହୁଏ । ଦେଖିଲେ ନାହିଁ, ମୁଁ ତ ଆପଣଙ୍କୁ କିଛି ସମୟ ଆଗରୁ ସେଇଆ ଦେଖେଇଥିଲି । ଲାଇଲା ଭିତରେ ମୁଁ ମୋ ଇଚ୍ଛାଶକ୍ତିକୁ ପ୍ରବେଶ କରାଇ ଥିଲି, ଯା'ଫଳରେ ମୋ ଇଚ୍ଛାକୁ ସେ ପ୍ରକାଶ କରୁଥିଲା । ଦେଖିଲେ ତ, ତାସ୍ କଥା ଛାଡିଦେଲେ ବି ଆପଣଙ୍କ ଚିଠି କଥା ଧରାଯାଉ । ମୁଁ ସେଇଟିକୁ ଆପଣଙ୍କ ପକେଟରୁ ଝିଙ୍କିନେଇ ନିଜେ ପଢିଲି, ମୁଁ ଯାହା ମନେମନେ ପଢିଲି, ମିଡିଆ ତାହା ବାହାରେ ପ୍ରକାଶ କଲା, ମାନେ ତା'ର ସମସ୍ତ ନିଜସ୍ୱ ସତ୍ତା ହଜି ଯାଇଥିଲା ଏବଂ ମୋର ସମସ୍ତ ଇଚ୍ଛାଶକ୍ତି ତା' ଭିତରେ କାର୍ଯ୍ୟ କରୁଥିଲା ।

ସତ୍ୟବ୍ରତ ମହାପାତ୍ର ଲିଲି ମୁହଁରୁ ସମସ୍ତ କଥା ଶୁଣୁଥିବା ବେଳେ ଏ ସମ୍ବନ୍ଧରେ ତାଙ୍କର ଅଜ୍ଞତା କଥା ଚିନ୍ତା କରି ମନେମନେ ଲଜ୍ଜିତ ହେଉଥିଲେ । ପୃଥିବୀରେ କେତେ କଥା ଯେ ଜାଣିବାର ଅଛି, ତା'ର ହୁଏତ ସବୁ କଳନା କରା ଯାଇ ପାରିବ ନାହିଁ । ଜଣେ ଲୋକ ପକ୍ଷରେ ସବୁ କଥା ଜାଣିବା ମଧ୍ୟ ସମ୍ଭବ ନୁହେଁ । ତଥାପି ସତ୍ୟବ୍ରତ ମହାପାତ୍ର ଲିଲି ପାଖରେ ନିଜେ କିପରି ଛୋଟ ହୋଇ ଯାଇଥିଲେ । ଆଉ ଗୋଟାଏ ପ୍ରଶ୍ନ ମଧ୍ୟ ତାଙ୍କ ମନରେ ସମସ୍ୟା ସୃଷ୍ଟି କରିଥିଲା, ସେ ଭାବୁଥିଲେ ଲିଲିର ଏହି କଥା ବିଶ୍ୱାସ କରିବେ କି ନାହିଁ । ହିପ୍‌ନଟିଜିମ୍ ସମ୍ବନ୍ଧରେ ତାଙ୍କର ଟିକିଏ ଧାରଣା ଅଛି । ତା'ବୋଲି ସେ କିପରି ଧରିନେବେ ଯେ, ଲାଇଲା ସବୁ ଘଟଣାର ମୂଳ ।

କିନ୍ତୁ ଲାଇଲାର ଓଭର କୋଟ ପକେଟରୁ ସୁରଞ୍ଜନ କୋଟ୍‌ର ବୋତାମ ମିଳିଚି, ସୁରଞ୍ଜନ କୋଟ୍‌ରେ ଲଗାଇଥିବା ଗୋଲାପ ଫୁଲ ମିଳଚି, କିନ୍ତୁ ସେଇ ବାଳ କେରାକ ! ସେ ଯେପରି ସବୁ ସମସ୍ୟା ସୃଷ୍ଟି କରିଚି । ମନେ ହେଉଚି ସେ ଯେପରି କୌଣସି ନାରୀମୁଣ୍ଡର ବାଳ । କାରଣ ଏତେ ଲମ୍ୱା ଲମ୍ୱା ବାଳ ସୁରଞ୍ଜନର ନୁହେଁ । ତା'ହେଲେ ? ବୋତାମ ଆଉ ଗୋଲାପ ଫୁଲ ଯଦି ସୁରଞ୍ଜନ କୋଟ୍‌ର ହୁଏ, ତେବେ ବାଳ କେରାକ କାହାର ?

ସତ୍ୟବ୍ରତ ଲାଇଲା ମୁହିଁକୁ ଚାହିଁଲେ । ଯେପରି ଧୀରେଧୀରେ କିପରି ବିହ୍ୱଳତାର ଭାବ ସେଠାରେ ଫୁଟି ଉଠୁଚି । ସେ ଭାବି ପାରିଲେ ନାହିଁ, ଲାଇଲା କୌଣସି ଅଦୃଶ୍ୟ ଶକ୍ତି ଦ୍ୱାରା ପରିଚାଳିତ ହୋଇ ଗୋଟିକ ପରେ ଗୋଟିଏ ଦୁର୍ଘଟଣା ଘଟେଇ ଚାଲିଚି ! କିନ୍ତୁ ସେଦିନ ନାଇଟ୍ କ୍ଲବରେ ଯାହା ସହିତ ତାଙ୍କର ଭେଟ ହୋଇଥିଲା, ଯିଏ ତାଙ୍କୁ ଲିଲି ନାମରେ ପରିଚୟ ଦେଇ ତାଙ୍କ ସହିତ ନୃତ୍ୟ କରିଥିଲା, ସେ କିଏ ? ଲାଇଲା ସହିତ ସେହି ମହିଳାଟିର ଅବିକଳ ସାମଞ୍ଜସ୍ୟ ଥିଲେ ବି, ଅଥବା ସେ ଲାଇଲା ହୋଇଥିଲେ ବି ସତ୍ୟବ୍ରତ ଏ ପର୍ଯ୍ୟନ୍ତ ତାର ଅନ୍ତର୍ନିହିତ ତଥ୍ୟ ଆବିଷ୍କାର କରିପାରି ନାହାନ୍ତି । ଏପରି କ୍ଷେତ୍ରରେ ଲିଲିର ଯୁକ୍ତି ସଙ୍ଗତ ମନେ ହେଉଥିଲେ ମଧ୍ୟ ଅତ୍ୟନ୍ତ ଅବିଶ୍ୱାସ୍ୟକର । ସତ୍ୟବ୍ରତ କୌଣସି ପ୍ରକାର ଲିଲିର ଯୁକ୍ତିକୁ ସମର୍ଥନ କରି ପାରୁ ନ ଥିଲେ । କିନ୍ତୁ ଫାଙ୍କି ଉଡେଇ ଦେବା ମଧ୍ୟ ସହଜ ହେଉ ନ ଥିଲା ।

ସେ ଏପରି ଏକ ଦ୍ୱନ୍ଦସମାସ ମଝିରେ ପଡି ଯାଇଥିଲେ, ଯାହାର ସମାଧାନ କରିବା ଆଜି ତାଙ୍କ ପକ୍ଷରେ ଏକ ସମସ୍ୟା ହୋଇଉଠିଥିଲା । ଲିଲି ତାଙ୍କୁ ଏକ ନୂତନ ପଥର ସନ୍ଧାନ ଦେଇଚି । କିନ୍ତୁ ସେ ପଥଟା ଏତେ ବନ୍ଧୁର ଯେ, ଆସାମର ପାର୍ବତ୍ୟ ଅଞ୍ଚଳଠାରୁ ଆହୁରି କଣ୍ଟକିତ, ଆହୁରି ଦୁର୍ଭେଦ୍ୟ ।

କିନ୍ତୁ ଡକ୍ଟର ଗନ୍ତାଏତ ! ସେ ତାଙ୍କର ଜୀବନ ଗଠନ କରିଥିଲେ ଆସାମର ସେହି ପାର୍ବତ୍ୟ ଅଞ୍ଚଳରେ । ଅଥଚ ସେ ସେହି କଥା ବାରମ୍ବାର କହିବାକୁ ଯାଇ କହିପାରି ନାହାନ୍ତି । କାହିଁକି ?

*

ପ୍ରଫେସର ଅଧିରାଜ ମୋହନ ପଟ୍ଟନାୟକ କହିଲେ   ମିଃ ମହାପାତ୍ର, ହିପ୍‌ନଟିଜିମ୍ ସମ୍ବନ୍ଧରେ ଆପଣ ଯାହା ଜାଣିବାକୁ ଆସିଛନ୍ତି, ମୁଁ ଆପଣଙ୍କୁ ସେ ସମ୍ବନ୍ଧରେ ସାମାନ୍ୟ ଟିକିଏ ଧାରଣା ଦେଇ ପାରିବି ଆଶା କରୁଚି । କାରଣ ସେ ଏପରି ଏକ ବିଦ୍ୟା, ତାହା ହାସଲ କରିବା ପାଇଁ ଯଥେଷ୍ଟ ଧୈର୍ଯ୍ୟର ପ୍ରୟୋଜନ । ମାସ ମାସ ବର୍ଷ ବର୍ଷ ଧରି ଆପଣଙ୍କୁ ସାଧନା କରିଯିବାକୁ ପଡିବ । ତା'ପରେ ହୁଏତ ଆପଣ ସିଦ୍ଧି ଲାଭ କରିବେ । ତା'ଛଡା ଆଜିର ଏଇ ବିଜ୍ଞାନ ଯୁଗରେ ଏପରି ଏକ ପଦାର୍ଥ ଉପରେ କାହାରି ଆସ୍ଥା ନାହିଁ । କିନ୍ତୁ ଏହି ହିପ୍‌ନଟିଜିମ୍ ଖୁବ୍ ମଜାର ଜିନିଷ । ଅନେକ ସମୟରେ ଏଥିରୁ ଏତେ ଆନନ୍ଦ ମିଳେ, ଯାହାର ତୁଳନା ହୁଏନାହିଁ ।

ପ୍ରଫେସର ପଟ୍ଟନାୟକ ମୁହୂର୍ତ୍ତକ ପାଇଁ ସେଠାରୁ ଅଦୃଶ୍ୟ ହୋଇ ଯାଇ ପୁଣି ଫେରିଆସିଲେ । କିଛି କ୍ଷଣ ସେ ସତ୍ୟବ୍ରତଙ୍କ ମୁହଁକୁ ଏକ ଜ୍ୱଳନ୍ତ ଦୃଷ୍ଟିରେ ଚାହିଁ କହିଲେ   ଆପଣଙ୍କ ଡାହାଣ ହାତର ବୃଦ୍ଧାଙ୍ଗୁଷ୍ଠି ଉପରେ ଦୃଷ୍ଟି ନିବଦ୍ଧ କରନ୍ତୁ । ମୁଁ ତିରିଶି ଗଣିବା ଯାଏ ଆପଣ ଏକଦୃଷ୍ଟିରେ ଚାହିଁଥିବେ ।

ପ୍ରଫେସର ପଟ୍ଟନାୟକ ଏକ, ଦୁଇ, ତିନ୍ କରି ଗଣନା ଆରମ୍ଭ କରି ଦେଲେ। ଯେତେବେଳେ ସେ ତିରିଶି ଗଣିଲେ ସତ୍ୟବ୍ରତ ମହାପାତ୍ର ଏକପ୍ରକାର ଚିତ୍କାର କରିଉଠିଲେ । ସେ ଯେପରି ଅନୁଭବ କରୁଥିଲେ, ପ୍ରଫେସର ପଟ୍ଟନାୟକଙ୍କ ଗଣନା ସଙ୍ଗେସଙ୍ଗେ ତାଙ୍କ ବୃଦ୍ଧାଙ୍ଗୁଷ୍ଠିଟି କ୍ରମଶଃ କ୍ଷୟ ହୋଇଯାଉଚି ଏବଂ ସେ ଯେତେବେଳେ ତିରିଶ ଗଣିଲେ, ସେତେବେଳକୁ ବୃଦ୍ଧାଙ୍ଗୁଷ୍ଠିର ଆଉ କୌଣସି ଅସ୍ତିତ୍ୱ ସେ ଅନୁଭବ କଲେ ନାହିଁ ।

ପ୍ରଫେସର ପଟ୍ଟନାୟକ ହସି ଉଠିଲେ ।

ସତ୍ୟବ୍ରତଙ୍କ ଧ୍ୟାନ ଭଙ୍ଗ ହେଲା । ସେ ଦେଖିଲେ ତାଙ୍କ ବୃଦ୍ଧାଙ୍ଗୁଷ୍ଠିର ସାମାନ୍ୟ ଟିକିଏ ବି କ୍ଷୟକ୍ଷତି ହୋଇନାହିଁ । ସେ ପ୍ରଫେସର ପଟ୍ଟନାୟକଙ୍କ ମୁହଁକୁ ବିସ୍ମୟ ବିସ୍ଫାରିତ ନେତ୍ରରେ ଅନାଇ ରହିଲେ ।

ନା ଖାଲି ସେତିକି ନୁହେଁ, ଆପଣଙ୍କୁ ଆହୁରି ଦୁଇ ତିନୋଟି ଘଟଣା ଦେଖେଇ ପାରିଲେ ହିପ୍‌ନଟିଜମ୍ ସମ୍ବନ୍ଧରେ ଆପଣଙ୍କର ସମ୍ୟକ ଧାରଣା ହେବ ଏବଂ ତା'ପରେ ମୋ କଥା ଆପଣ ସହଜରେ ବୁଝିପାରିବେ ।

ପ୍ରଫେସର ପଟ୍ଟନାୟକ ସ୍ମିତ ହସି କହିଲେ । ଏଥର ଆପଣ କାନ୍ଥର ଏହି ଅଂଶଟା ଆଡେ ଚାହଁନ୍ତୁ ; ପ୍ରଫେସର ପଟ୍ଟନାୟକ ଆଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଲେ । ସତ୍ୟବ୍ରତ ସେହି ଆଡକୁ ଅନାଇଲେ । ପ୍ରଫେସର ପଟ୍ଟନାୟକ ତାଙ୍କ ସେଲ୍‌ଫରୁ ଖଣ୍ଡିଏ ବହି ଆଣି ଦୁଇ ଚାରିପୃଷ୍ଠା ଖେଳେଇ ଗଲେ । ତା'ପରେ ହଠାତ୍ ଅଟକି ଯାଇ ସତ୍ୟବ୍ରତଙ୍କ ମୁହଁକୁ ନିର୍ନିମେଷ ନୟନରେ ଅନାଇ ରହିଲେ ।

ଅଳ୍ପ ସମୟ ପରେ ।

ସତ୍ୟବ୍ରତଙ୍କର ମନେ ହେଲା ଯେପରି ଘରଟା ପ୍ରବଳ ଅନ୍ଧକାରରେ ପୂରି ରହିଥିଲା । କେହି ଜଣେ ଗୋଟିଏ ଡିଆସିଲି କାଠି ମାରି ମହମ ବତି ଜଳାଇଲା । ପରେ ପରେ ସେଇ ବିରାଟ ହଲ୍ ଘରରେ ଝାଡବତି ସବୁ ଜଳି ଉଠିଲା । ଏପରି ଏକ ସୁନ୍ଦର ଓ ମନୋରମ ଘର ଭିତରେ ସେ ବସିଥିଲେ ଯେ, ଇତି ପୂର୍ବରୁ ଆଉ କେବେ ସେପରି ଘର ସେ ଦେଖିଥିଲା ପରି ମନେ ହେଉ ନ ଥିଲା ।

ତା'ପରେ... ପୁଣି

ଧୀରେଧୀରେ ଯେପରି ଆଲୋକମାଳା ନିର୍ବାପିତ ହୋଇ ଆସିଲା । ମାତ୍ର ସାମାନ୍ୟ ଟିକିଏ କ୍ଷୀଣଶିଖା । ସତ୍ୟବ୍ରତ ଅନୁଭବ କଲେ, ସେଇ ଶିଖା ରୂପ ପରିଗ୍ରହ କଲା ଏକ ନାରୀମୂର୍ତ୍ତିରେ । ବେଦନା ଜର୍ଜରିତ, ଅତି କରୁଣ ସେଇ ନାରୀଟିର ମୁଖଛବି । ଯେପରି ପୃଥିବୀର ସମସ୍ତ ଦୁଃଖ, ସମସ୍ତ ଯାତନା ତା'ରି ମୁଣ୍ଡ ଉପର ଦେଇ ବହି ଯାଇଚି । ସବୁକୁ ସେ ନିର୍ବିବାଦରେ ମୁଣ୍ଡ ପାତି ସହି ନେଇଚି । ସେହି ନାରୀମୂର୍ତ୍ତିଟି ଉଠି ଠିଆ ହେଲା । କେଶବାସର ଯତ୍ନ ନାହିଁ । ଯେପରି ସେ ଏଇ ପୃଥିବୀକୁ ଆସିଚି କେବଳ ଦୟାର ପାତ୍ରୀ ହୋଇ । ହୃଦୟ କରୁଣାରେ ବିଗଳିତ ହୋଇ ପଡିଲା । ନାରୀଟି ଏଥର ସତ୍ୟବ୍ରତଙ୍କ ଆଡେ

କରୁଣ ଦୃଷ୍ଟିରେ ଚାହିଁ ଅଭିମାନିନୀଙ୍କ ପରି ଚାଲିଯାଉଥିଲା । ସେ ଚାହାଣିର ଅର୍ଥ-ମୋର ସାହା ରାହା କେହି ନାହିଁ, କିଛି ନାହିଁ । ତମର ସହାନୁଭୂତି ମୋର କୌଣସି ଉପକାରରେ ଲାଗିବ ନାହିଁ । ମୁଁ ଗୋଟିଏ ଅଭିଶପ୍ତା । ପୃଥିବୀକୁ ଆସିଚି ମୁଁ କେବଳ ସହିବା ପାଇଁ । ତେଣୁ ତମେ ମୋର କୌଣସି ଉପକାର କରି ପାରିବ ନାହିଁ ।

ନାରୀଟି ଆଉଥରେ ସତ୍ୟବ୍ରତଙ୍କ ଆଡେ କରୁଣ ନୟନରେ ଚାହିଁଲା । ତା'ପରେ ଧୀରେଧୀରେ ସେ ଆଗେଇଗଲା । କ୍ରମେ ସତ୍ୟବ୍ରତଙ୍କ ଆଗରେ ଆଉଥରେ ସେହି କ୍ଷୀଣ ଆଲୋକଶିଖାଟି ଭାସିଉଠିଲା । ଆଗପରି ପୁଣି ଶତସହସ୍ର ଆଲୋକ ବର୍ତ୍ତିକା ଜଳି ଉଠିଲା । ସେହି ବିରାଟ ହଲ୍ ଘର । ବିଳାସର ପ୍ରାଚୁର୍ଯ୍ୟ । ସବୁ ଧୀରେଧୀରେ ମିଳେଇ ଗଲା । ସତ୍ୟବ୍ରତ ରୁମାଲରେ ଆଖି ପୋଛି ଚାହିଁଲେ ପ୍ରଫେସର ପଟ୍ଟନାୟକ ବାଁ ହାତରେ ଖଣ୍ଡିଏ ବହି ଧରି ସତ୍ୟବ୍ରତଙ୍କ ଆଡେ ଚାହିଁ ହସୁଚନ୍ତି ।

ସତ୍ୟବ୍ରତ ନିଜକୁ ଟିକିଏ କିପରି ଲଜ୍ଜିତ ମନେ କରି ଗୋଟାଏ ଆବେଗରେ କହି ଉଠିଲେ ବେଶ୍ ମଜାର ଜିନିଷ ତ !

ପ୍ରଫେସର ପଟ୍ଟନାୟକ ହାତରେ ଧରିଥିବା ବହି ଖଣ୍ଡିକ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଖୋଲା କରି ସତ୍ୟବ୍ରତଙ୍କ ହାତକୁ ବଢାଇ ଦେଲେ । ଖଣ୍ଡିଏ ଛବି । ସେ ସ୍ତବ୍ଧ ହୋଇ ଦେଖିଲେ କ୍ଷଣକ ଆଗରୁ କେଉଁ ନାରୀପ୍ରତିମାଟିର ମୁଖଛବି ସେ ଦେଖିଲେ ସେ ହେଉଛି ବହିରେ ଥିବା ଏହି ଛବି ଖଣ୍ଡିକ । ଠିକ୍ ସେହିପରି ଦୁଃଖ, ଯନ୍ତ୍ରଣା ଓ ବେଦନାର ଛାପ ନାରୀଟିର ମୁଖଦର୍ପଣରେ ପ୍ରତିଫଳିତ ହୋଇ ଉଠିଚି । ସତ୍ୟବ୍ରତ ଅବାକ ହୋଇ ପ୍ରଫେସର ପଟ୍ଟନାୟକଙ୍କର ମୁହଁକୁ ଅନାଇ ରହିଲେ ।

: ଦେଖିଲେ ମିଃ ମହାପାତ୍ର । ହିପ୍‌ନଟିଜମ୍ କୌଣସି ମ୍ୟାଜିକ୍ ନୁହେଁ । କିମ୍ୱା କୌଣସି ଭୌତିକ କାଣ୍ଡ ନୁହେଁ । ହିପ୍‌ନଟିଜିମ୍‌ର ଅର୍ଥ ଅତି ସହଜ ଓ ସଂକ୍ଷିପ୍ତ ଭାବରେ କହିବାକୁ ଗଲେ, ମିଡିଆ । ମାନେ ଯାହାକୁ ଆପଣ ହିପ୍‌ନଟାଇଜ୍ କରିବେ, ତା'ର ସମସ୍ତ ଇଚ୍ଛାଶକ୍ତିକୁ ପଙ୍ଗୁକରି ଆପଣଙ୍କ ଇଚ୍ଛାଶକ୍ତିକୁ ତା'ଠାରେ ସଜାଗ କରାଇବା ଅର୍ଥ ହିପ୍‌ନଟିଜିମ୍ । ଆଶା କରୁଚି ହିପ୍‌ନଟିଜିମ୍ ସମ୍ୱନ୍ଧରେ ଏଥିରୁ ସାମାନ୍ୟ ଧାରଣା ଆପଣଙ୍କ ମନରେ ଜଗେଇ ପାରିଚି ।

ତା'ହେଲେ, ସତ୍ୟବ୍ରତ କ'ଣ କହିବାକୁ ଯାଇ ଟିକିଏ ଅଟକି ଗଲେ ଏବଂ କିଛି ସମୟ ଚିନ୍ତା କରି କହିଲେ—ଅନ୍ୟର ଇଚ୍ଛାଶକ୍ତିକୁ ପଙ୍ଗୁ କରି ନିଜର ଇଚ୍ଛା ଶକ୍ତିକୁ ଅନ୍ୟଠାରେ ସଜାଗ କରାଇବା ଅର୍ଥ ହିପ୍‌ନଟାଇଜ୍ କରିବା । ତା'ଯଦି ହୁଏ ତା'ହେଲେ ଏପରିତ ହୋଇପାରେ ପ୍ରଫେସର ପଟ୍ଟନାୟକ, ଏଇ ଧରନ୍ତୁ ମୁଁ ମୋର ମିଡିଆ ମାଧ୍ୟମରେ, ମାନେ ମିଡିଆର ସମସ୍ତ ଚେତନାଶକ୍ତିକୁ ଅପହରଣ କରିସାରି ତା'ଠାରେ ମୋର ଇଚ୍ଛାଶକ୍ତିକୁ ପ୍ରବେଶ କରାଇ ମୋର ଉଦ୍ଦେଶ୍ୟ ସାଧନ ପାଇଁ ତାକୁ ଯେଉଁଠାକୁ ଇଚ୍ଛା ସେଠାକୁ ପଠାଇ ପାରିବି ?

: ନିଶ୍ଚୟ, ପ୍ରଫେସର ପଟ୍ଟନାୟକ ଜୋର ଗଳାରେ କହିଲେ । କ୍ଷଣକ ଆଗରୁ ଆପଣ କ'ଣ ଦେଖିଲେ, ଆପଣଙ୍କର ଆଖି ଆଗରେ ଯେଉଁ ଦୃଶ୍ୟଟି ପ୍ରତିଫଳିତ ହୋଇ ଉଠିଲା, ତା'ର ମୂଳ କେଉଁଠି ଆପଣଙ୍କୁ ଦେଖାଇଲି । ଆପଣ ସେଇ ଛବିଟି ଆଖି ଆଗରେ କିପରି

ଦେଖିଲେ, ସେତିକି କେବଳ ମୋର ବିଶେଷତ୍ୱ । ମାନେ ମୁଁ ଆପଣଙ୍କ ଇଚ୍ଛାଶକ୍ତିକୁ ଅପହରଣ କରି, ମୋ ଇଚ୍ଛାଶକ୍ତି ଦ୍ୱାରା ଆପଣଙ୍କ ମନ ଭିତରେ ଏହି ଛବିଟିକୁ ଜାଗ୍ରତ କରିବା ପାଇଁ ଇଚ୍ଛା ପ୍ରକାଶ କଲି । ଫଳରେ ଆପଣ ଆଖି ଆଗରେ ତାହାହିଁ ଦେଖିଲେ ।

ଆଚ୍ଛା ପ୍ରଫେସର ପଟ୍ଟନାୟକ, ଆଉ ଗୋଟାଏ କଥା, ଧରନ୍ତୁ ମୁଁ ଜଣକୁ ହିପ୍‌ନାଟଇଜ୍ କରି ମୋର ଉଦ୍ଦେଶ୍ୟ ସାଧନ ପାଇଁ ତାକୁ ପଠାଇବି । ସେ ସେତେବେଳେ ମୋରି ଇଚ୍ଛାଶକ୍ତି ଦ୍ୱାରା ପରିଚାଳିତ ହେଉଥିବାରୁ, ତା'ର ସମସ୍ତ ଇଚ୍ଛାଶକ୍ତି ଲୋପ ପାଇଛି । ଯେତେବେଳେ ପୁଣି ସେ ତା'ର ପ୍ରକୃତ ଅବସ୍ଥା ଫେରି ପାଇବ, ସେତେବେଳେ କ'ଣ ହିପ୍‌ନାଟଇଜ୍ ହୋଇଥିବା ଅବସ୍ଥାର କାର୍ଯ୍ୟକଳାପ କଥା ସ୍ମରଣ କରି ପାରିବ ନାହିଁ ?

ନା, ପ୍ରଫେସର ପଟ୍ଟନାୟକ କହିଲେ । ହିପ୍‌ଇଟାଇଜ୍ ଅବସ୍ଥାରେ ସେ କେବଳ ଯନ୍ତ୍ରଭଳି କାମ କରିଯିବ । କ'ଣ ସେ କଲା, କେଉଁଠାକୁ ସେ ଗଲା କିଛି ତା'ର ମନେ ରହିବ ନାହିଁ ।

ସତ୍ୟବ୍ରତ ମହାପାତ୍ରଙ୍କ ମୁହଁ ଧୀରେଧୀରେ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଯେପରି ଆଖି ଆଗରେ ଆଲୋକ ଦେଖିବାକୁ ପାଇଲେ । ନା' ହେଲେ...?

ସତ୍ୟବ୍ରତ ମହାପାତ୍ର ଉଠିଲେ । ପ୍ରଫେସର ପଟ୍ଟନାୟକଙ୍କୁ ଧନ୍ୟବାଦ ଜଣାଇ କହିଲେ ଆପଣ ମୋର ଅଶେଷ ଉପକାର କରିଛନ୍ତି । ମୁଁ ଏପରି ଗୋଟାଏ କେସ୍‌ର ତଦନ୍ତ କରୁଛି ଯେ, ଯେଉଁଥିରେ କେବଳ ଅପ୍ରାକୃତିକତା ଆଜିଯାଏଁ ଲକ୍ଷ୍ୟ କରି ଆସୁଥିଲି । ଯା'ହେଉ, ଦରକାର ହେଲେ ପୁଣି ଆପଣଙ୍କ ନିକଟକୁ ଆସିବି ।

ନିଶ୍ଚୟ, ନିଶ୍ଚୟ ! ପ୍ରଫେସର ପଟ୍ଟନାୟକ ଚେୟାରରୁ ଉଠୁ ଉଠୁ କହିଲେ । ଆପଣଙ୍କ ପାଇଁ ମୋର ଦ୍ୱାର ସବୁବେଳେ ଖୋଲା ରହିଚି । ତେବେ କ'ଣ ଜାଣନ୍ତି ମିଃ ମହାପାତ୍ର ! ଏଇସବୁ ବିଦ୍ୟାକୁ ଆଜିକାଲି ସହଜରେ କେହି ବିଶ୍ୱାସ କରିବାକୁ ଚାହାନ୍ତି ନାହିଁ । ତା'ଛଡା ଏହା ହାସଲ କରିବା ପାଇଁ ବହୁ ସାଧନାର ପ୍ରୟୋଜନ ହୋଇଥାଏ ।

ସତ୍ୟବ୍ରତଙ୍କ ଆଖି ଆଗରେ ଯେପରି ବିଜୟର ଦୀପ୍ତି ଜଳଜଳ ହୋଇ ଜଳିଉଠିଲା । ସେ ପ୍ରଫେସର ପଟ୍ଟନାୟକଙ୍କ ଆଲୋଚନାରେ ଆଉ ଅଂଶ ଗ୍ରହଣ କରିବା ଅବସ୍ଥାରେ ନଥିଲେ । ଆଉ ଥରେ ସେ ପ୍ରଫେସର ପଟ୍ଟନାୟକଙ୍କୁ ଅଭିବାଦନ ଜଣାଇ ବାହାରି ଆସିଲେ ।

ଷ୍ଟାର କ୍ଲବ । ସତ୍ୟବ୍ରତ ମହାପାତ୍ରଙ୍କର ଆଶାତୀତ ଭାବରେ ଡକ୍ଟର ଗନ୍ତାଏତଙ୍କ ସହିତ ଭେଟ ହୋଇଗଲା । ଲାଇଲା ସେତେବେଳେ 'ରେଷ୍ଟରୁମ୍'ରେ ବିଶ୍ରାମ କରୁଥିଲା । ସତ୍ୟବ୍ରତ ମହାପାତ୍ର ନିଜେ ଆସି ସନ୍ଧ୍ୟା ୭ଟା ଠାରୁ ଏତେବେଳଯାଏ ଲାଇଲାର ଗତିବିଧି ଲକ୍ଷ୍ୟ କରୁଥିଲେ । ଅବଶ୍ୟ ନିଜକୁ ସେ ଛଦ୍ମବେଶରେ ସଜ୍ଜିତ କରି ଷ୍ଟାର୍ କ୍ଲବରେ ପ୍ରବେଶ କରିଥିଲେ ।

ଲାଇଲା କାର୍ଯ୍ୟ ଶେଷରେ ପ୍ରତିଦିନ କାହିଁକି 'ରେଷ୍ଟ ରୁମ୍' କୁ ଯାଏ ଏବଂ ସେଠାରେ ସେ କ'ଣ କରେ ସେଇ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ସତ୍ୟବ୍ରତ ମହାପାତ୍ର ପ୍ରସ୍ତୁତ ହୋଇ ଯାଇଥିଲେ । ସେଥିପାଇଁ ତାଙ୍କୁ ବିଶେଷ କଷ୍ଟ ସ୍ୱୀକାର କରିବାକୁ ପଡି ନଥିଲା ।

ମାତ୍ର ପଚାଶଟି ଟଙ୍କା ବିନିମୟରେ ସତ୍ୟବ୍ରତ ମହାପାତ୍ର ଷ୍ଟାର କ୍ଲବର ଗୋଟିଏ ବୟ ଠାରୁ ସମସ୍ତ ତଥ୍ୟ ସଂଗ୍ରହ କରି ପାରିଥିଲେ । ସେହି ବୟଟି ପ୍ରତିଦିନ ଲାଇଲାକୁ ରେଷ୍ଟରୁମ୍‌ରେ ଚା' ଦିଏ । ତା' ମୁହଁରୁ ସତ୍ୟବ୍ରତ ଶୁଣିଲେ ଠିକ୍ ରାତି ଦଶଟା ବାଜୁ ନ ବାଜୁଣୁ ଲାଇଲା ନିଶ୍ଚୟ ରେଷ୍ଟ ରୁମ୍ ପହଞ୍ଚିବ ଏବଂ ତା'ହାତରୁ କପେ ଚା'ନ ଖାଇବା ପର୍ଯ୍ୟନ୍ତ ସେ ପ୍ରକୃତିସ୍ଥ ହୋଇ ପାରିବ ନାହିଁ ।

ସତ୍ୟବ୍ରତ ଲକ୍ଷ୍ୟ କରିଥିଲେ, ବୟଟି ଏହି କଥା କହିବା ବେଳେ ଯେପରି ଗର୍ବରେ ଭାଙ୍ଗି ପଡୁଥିଲା । ବୟଟି କହି ଚାଲିଥିଲା ଦିନେ ଆଜ୍ଞା, ମୁଁ ଆସି ନ ଥିଲି, ସେଦିନ ଲଇଲାକୁ ଗଫୁର ନେଇ ଚା'ଦେଲା । ସେ ଖାଇଲେ ନାହିଁ ଢୋକେ ପିଇ ସବୁ ଚା'ଯାକ ଗଫୁର ଉପରକୁ ଫିଙ୍ଗିଦେଲେ । ସେଇଦିନ ଠାରୁ ମୋର ଯେତେ ଅସୁବିଧା ଥିଲେ ବି ରାତି ୧୦ଟା ବେଳକୁ ଥରେ ଆସି ଲାଇଲାକୁ କପେ ଚା' ଦେଇ ଯାଏ ।

ହୁଁ ବୁଝିଲି । ଲାଇଲା ତା'ହେଲେ ତମକୁ ଖୁବ ଭଲ ପାଏ । ସତ୍ୟବ୍ରତ କହିଲେ ।

ପାଇବ ନାହିଁ ଆଜ୍ଞା ! ବୟଟି ଯେପରି ଆନନ୍ଦରେ ଫୁଲି ଉଠିଲା । ମାଇକିନିଆମାନଙ୍କୁ କିପରି ବଶ କରିବାକୁ ହୁଏ ସେ ବିଦ୍ୟା ମୋତେ ବେଶ୍ ଜଣା ଅଛି । ତା'ଛଡା ଚା'ରେ ମୁଁ ଯେଉଁ... ହଠାତ୍ ବୟଟି କ'ଣ କହିବାକୁ ଯାଇ ଯେପରି ସଚେତନ ହୋଇଉଠିଲା ।

ସତ୍ୟବ୍ରତ ମହାପାତ୍ର ହସିଲେ । କହିଲେ : ମୋତେ ବି କିଛି ଜଣା ଅଛି। ତମେ ଲାଇଲାକୁ ନିତି ଚା'ସହିତ କୋକେନ ମିଶାଇ ଖାଇବାକୁ ଦିଅ ନା ?

ବୟଟିର ମୁହଁ ଉପରେ ଯେପରି କଳାଛାଇ ଘୋଟିଗଲା । ସେ ମୁହୂର୍ତ୍ତେ ସ୍ତବ୍ଧ ହୋଇ ସତ୍ୟବ୍ରତଙ୍କ ମୁହଁକୁ ଅନେଇ ରହିଲା । ପାଟିରୁ ପଦେହେଲେ କଥା ବାହାରିଲା ନାହିଁ ।

ସତ୍ୟବ୍ରତ ସେହିପରି ହସିହସି କହିଲେ : ମୁଁ ପୋଲିସ୍‌ର ଲୋକ ସତ, କିନ୍ତୁ ତମର କୌଣସି ଅନିଷ୍ଟ କରିବି ନାହିଁ । ତଥାପି ଆଇନ୍ ଆଖିରେ ତମେ ଦୋଷୀ । ମୁଁ ଇଚ୍ଛା କଲେ ଏଇ ମୁହୂର୍ତ୍ତରେ ତମକୁ ଥାନାକୁ ପଠାଇ ପାରେ ।

ବୟଟି କାନ୍ଦକାନ୍ଦ ହୋଇପଡିଲା । ନଇଁପଡି ସତ୍ୟବ୍ରତଙ୍କ ଗୋଡ ଧରି ପକାଇ କହିଲା : ମୋର କିଛି ଦୋଷ ନାହିଁ ଆଜ୍ଞା । ମାଲିକଙ୍କର ସେହିପରି ହୁକୁମ୍ ଥିଲା । ପେଟପାଇଁ ଚାକିରି କରିଚି ଯେତେବେଳେ ମାଲିକର ହୁକୁମ୍ ନ ମାନିଲେ, ଦାନା ମିଳିବ ନାହିଁ ।

ସତ୍ୟବ୍ରତ ମହାପାତ୍ରଙ୍କ ମୁହଁରେ କୌଣସି ପରିବର୍ତ୍ତନର ଲକ୍ଷଣ ଦେଖା ଗଲା ନାହିଁ ।

ସେ ଯେପରି ସହଜ ଓ ଶାନ୍ତ ସ୍ୱରରେ କହିଲେ, ମୁଁ ତମର କୌଣସି ଅନିଷ୍ଟ କରିବି ନାହିଁ । କିନ୍ତୁ ତମ ମାଲିକଙ୍କ ସହିତ ମୋତେ ଥରେ ଭେଟ କରାଇ ଦେବାକୁ ହେବ ।

ବୟଟି ଗଦ୍ ଗଦ୍ ସ୍ୱରରେ କହିଲା ଆମ ମାଲିକ ଏଠାରେ ଥିବା ବେଳେ କେହି ତାଙ୍କୁ ଦେଖା କରିବାକୁ ଯିବା ମନା । ତଥାପି ମୁଁ ଆପଣଙ୍କୁ ତାଙ୍କ ସହିତ ଭେଟ କରାଇ ଦେବି ।

ଠିକ୍ ସେତିକି ବେଳେ ଅଳ୍ପ ଦୂରରେ କାହାର ପାଦଶବ୍ଦ ଶୁଣାଗଲା । ବୟଟି ଚଞ୍ଚଳ ହୋଇଉଠି କହିଲା ଆପଣ ଲୁଚି ପଡନ୍ତୁ । ଏଇ କେବିନ୍ ଭିତରକୁ ପଶି ଯାଆନ୍ତୁ । ଏ ବେଳରେ ଏଠାରେ କେହି ରହିବା ନିଷେଧ । ଶୀଘ୍ର ଆପଣ ଲୁଚି ଯାଆନ୍ତୁ ।

ସତ୍ୟବ୍ରତ ମହାପାତ୍ର ହଠାତ୍ ବୟର ଏପରି ବିଚଳିତ ଭାବ ଦେଖି ଗୋଟାଏ କେବିନ ଭିତରକୁ ପଶିଗଲେ । ପାଦଶବ୍ଦ ପାଖେଇ ଆସୁଥିଲା । ବୟଟି ଟ୍ରେ'ଟା ସିଧା କରି ଧରି ସଳଖହୋଇ ଠିଆହୋଇ ରହିଲା । ପାଦଶବ୍ଦ ଆହୁରି ପାଖେଇ ଆସିଲା । ବୟ ଅଭିବାଦନ ଜଣାଇଲା । ସତ୍ୟବ୍ରତ ମହାପାତ୍ର କେବିନ୍‌ର ପରଦା ଫାଙ୍କରୁ ଦେଖିଲେ ଆଗନ୍ତୁକଟି ଡକ୍ଟର ଦୀନନାଥ ଗନ୍ତାଏତ ! ସେ ଟିକଏ ଅଟିକି ଗଲେ । ଗମ୍ଭୀର ସ୍ୱରରେ ପଚାରିଲେ ଲାଇଲା ?

ରେଷ୍ଟ ରୁମ୍‌ରେ, ବୟଟି ବିନୀତ ସ୍ୱରରେ କହିଲା ।

ଚା' ।

: ଦେଇସାରିଛି ।

ଦୀନନାଥ ଗନ୍ତାଏତ ପୁଣି ଆଗେଇଗଲେ । ବୟଟି ତାଙ୍କରି ଆଡକୁ କିଛି ସମୟ ଅନାଇ ରହିଲା । ପାଦଶବ୍ଦ ମିଳେଇ ଯିବାଯାଏ ସତ୍ୟବ୍ରତ କେବିନ୍ ଭିତରେ ଅପେକ୍ଷା କରିଥିଲେ । ବୟଟି ମଧ୍ୟ ସେଇଠି ସେହିପରି ତାଙ୍କ ଯିବା ପଥକୁ ଚାହିଁ ଠିଆ ହୋଇଥିଲା । ସତ୍ୟବ୍ରତ ମହାପାତ୍ରଙ୍କ ସ୍ପର୍ଶରେ ଯେପରି ତା'ର ଚେତନା ଆସିଲା ।

ଓଃ ! ଆପଣ

ହଁ, ମୁଁ, ସତ୍ୟବ୍ରତ କହିଲେ । ଯିଏ ଏଇବାଟ ଦେଇ ଗଲା ସେ କିଏ?

ସେଇତ ନିଜେ ମାଲିକ । ବୟଟି ବିନୀତ ସ୍ୱରରେ କହିଲା ।

ଏଥର କିନ୍ତୁ ସତ୍ୟବ୍ରତ ମହାପାତ୍ରଙ୍କ ଆଖିଯୋଡାକରେ ବିସ୍ମୟ ଫୁଟି ଉଠିଲା । ସେ ଅସ୍ପଷ୍ଟ ସ୍ୱରରେ କହିଲେ : ଡକ୍ଟର ଗନ୍ତାଏତ ଷ୍ଟାର କ୍ଲବର ମାଲିକ? ତା'ହେଲେ ? ସେ ବୟଟି ଆଡେ ଆଉ ଖଣ୍ଡିଏ ଶହେଟଙ୍କାର ନୋଟ ବଢାଇ ଦେଇ କହିଲେ : ଯାଅ, ତୁମେ ତୁମ କାମ କରିବ ଯାଅ ।

: କିନ୍ତୁ... ବୟଟି ନୋଟ ଖଣ୍ଡିକ ନେବାକୁ ଅନିଚ୍ଛା ପ୍ରକାଶ କରୁଥିବାର ଦେଖି ସତ୍ୟବ୍ରତ ନୋଟ୍‌ଟି ତା'ଚପକନ ପକେଟରେ ନିଜ ହାତରେ ଭରିଦେଇ କହିଲେ— ଏଇଟା ବକ୍‌ଶିଶ୍ । ଭୟର କୌଣସି କାରଣ ନାହିଁ ।

ବୟଟି ସଲାମ କରି ସେଠାରୁ ଚାଲିଗଲା ।

ସତ୍ୟବ୍ରତ ମହାପାତ୍ର ଅତି ସନ୍ତର୍ପଣରେ 'ରେଷ୍ଟ ରୁମ୍' ଆଡେ ଆଗେଇ ଗଲେ । ଦୁଆର ମୁହଁରେ ନାଲି ମଖମଲି କନାର ଏକ ପର୍ଦ୍ଦା ଝୁଲୁଥିଲା । ସତ୍ୟବ୍ରତ ମହାପାତ୍ର ଧୀରେ ପର୍ଦ୍ଦାଟି ଆଡେଇ ଭିତରକୁ ଚାହିଁଲେ । ତାଙ୍କରି ଠିକ୍ ସାମନାକୁ ଲାଇଲା ଗୋଟିଏ ଚେୟାର ଉପରେ ବସିଚି । ଦୀନନାଥ ଗନ୍ତାଏତ ଦୁଆର ଆଡକୁ ପିଠିକରି ଲାଇଲା ସାମ୍ନାରେ ଠିଆ

ହୋଇଚନ୍ତି । ସେହିପରି କିଛି ସମୟ ଅତିବାହିତ ହୋଇଗଲା । ସତ୍ୟବ୍ରତ ମହାପାତ୍ର ଲକ୍ଷ୍ୟକଲେ, ଲାଇଲାର ଦେହମୁହଁରେ ଯେପରି ଧୀରେଧୀରେ ପରିବର୍ତ୍ତନ ଘଟୁଛି ।

ଆଉ କିଛି ସମୟ ପରେ ।

ଲାଇଲା ଧୀରେଧୀରେ ଚେଆରରୁ ଉଠିଲା । ମନେ ହେଉଥିଲା ଯେପରି ସେ ମନ୍ତ୍ରମୁଗ୍ଧ । ପାଦେ ପାଦେ କରି ଆଗେଇଲା । ଡକ୍ଟର ଦୀନନାଥ ଗନ୍ତାଏତ ଯମଦୂତ ପରି ଠିଆ ହୋଇଥିଲେ । ସତ୍ୟବ୍ରତ ମହାପାତ୍ର ଆଉ କାଳ ବିଳମ୍ବ ନ କରି ସେଠାରୁ ବାହାରି ଆସୁଥିଲେ । ତାଙ୍କ କାନରେ ଯେପରି ଡକ୍ଟର ଗନ୍ତାଏତଙ୍କର ବଜ୍ରନିର୍ଘୋଷ କଣ୍ଠର ସ୍ୱର ଶୁଣାଗଲା   ନୀଳନିଳୟ, ବୀରଞ୍ଜନ ।

ତାଙ୍କର ଆଉ ଅପେକ୍ଷା କରି ସବୁକଥା ଶୁଣିବାକୁ ଅବକାଶ ନ ଥିଲା । ସେ ସେଇ ମୁହୂର୍ତ୍ତରେ ତଳକୁ ଓହ୍ଲେଇଗଲେ । ତାଙ୍କର ଧାରଣା ହେଉଥିଲା, ଡକ୍ଟର ଗନ୍ତାଏତ ଲାଇଲାକୁ ହିପ୍‌ନଟାଇଜ କରି ଆଜି ପୁଣି ନୀଳ ନିଳୟକୁ ପଠାଉଚନ୍ତି, ବୀରଞ୍ଜନକୁ ହତ୍ୟା କରିବା ପାଇଁ ! ଆଜି କିନ୍ତୁ ବୀରଞ୍ଜନକୁ ବଞ୍ଚାଇବାକୁ ହେବ । ସେ ସେଇ ମୁହୂର୍ତ୍ତରେ ତଳକୁ ଓହ୍ଲେଇଗଲେ ଏବଂ ଗୋଟିଏ ଟ୍ୟାକ୍‌ସି ଧରି ନୀଳନିଳୟ ଅଭିମୁଖରେ ଯାତ୍ରା ଆରମ୍ଭ କରିଦେଲେ ।

ସତ୍ୟବ୍ରତ ମହାପାତ୍ର ନୀଳନିଳୟଠାରୁ ଅଳ୍ପ ଦୂରତ୍ୱ ବଜାୟ ରଖି ଟ୍ୟାକ୍‌ସିରୁ ଓହ୍ଲେଇ ପଡିଲେ । ତା'ପରେ ପଦ ଯାତ୍ରା ଆରମ୍ଭ କରି ଦେଲେ । କିନ୍ତୁ ଆଶ୍ଚର୍ଯ୍ୟ, ନୀଳନିଳୟର ଦ୍ୱାର ମୁହଁରେ ଯାଇ ଦେଖିଲେ, ଲୁହାକବାଟଟା ଦରମୁକୁଳା, ଡିଉଟିରେ କେହି ନାହାନ୍ତି । ସାରଙ୍ଗ ଗଲା କେଉଁଆଡେ ? ଆଜି ମଧ୍ୟ କ'ଣ ସେ ନିଜର ଆତ୍ମୀୟ ଲୋକଙ୍କ ଅସୁସ୍ଥ ବାର୍ତ୍ତା ପାଇ ଚାଲିଯାଇଚି?

ଯା'ହେଉ, ସେକଥା ପରେ ବିଚାର କରାଯିବ । ସତ୍ୟବ୍ରତ ମହାପାତ୍ର ନୀଳନିଳୟ ଭିତରେ ପ୍ରବେଶ କଲେ । କେହି ନାହିଁ । କାହାରିକୁ ସେ କୌଣସିଠାରେ ଦେଖିଲେ ନାହିଁ । ଉଦ୍ୟାନର ପ୍ରତିଟି ବୃକ୍ଷଲତା ତଳେ ତଳେ ସତ୍ୟବ୍ରତ ମହାପାତ୍ର ଯେପରି କାହାକୁ ଖୋଜୁଥିଲେ । ଧୀରେଧୀରେ ସେ ଉଦ୍ୟାନର କୁଞ୍ଜଲତା ଆଡକୁ ଆଗେଇଗଲେ । କାହାରି ଅସ୍ପଷ୍ଟ କଥାବାର୍ତ୍ତା ତାଙ୍କ କାନରେ ବାଜିଲା । କିଏ?

ବୀରଞ୍ଜନ ଆଉ ସୁଷମା !

କୁଞ୍ଜଲତା ତଳର ସିମେଣ୍ଟ ବେଞ୍ଚ ଉପରେ ବୀରଞ୍ଜନ ସୁଷମା କୋଳରେ ମୁଣ୍ଡ ରଖି ଶୋଇଚି । ଯେପରି ବୀରଞ୍ଜନ ଖୁବ୍ ଶ୍ରାନ୍ତ ! ଗଳାର ସ୍ୱର ତା'ର ରହି ରହି ଥରିଉଠୁଚି । ସୁଷମା ବୀରଞ୍ଜନ ମସ୍ତକରେ ହସ୍ତ ସଞ୍ଚାଳନ କରି କହୁଚି : ମୁଁ ଖୁବ୍ ଦୁଃଖିତ ବୀରଞ୍ଜନ, ମୋର ସବୁ ଆଶାଭରସା ହଜିଯାଇଚି । ମୁଁ ଏକାନ୍ତ ନିଃସ୍ୱ, ଅସହାୟ, ତମେ ମୋତେ ଆଶ୍ରୟ ନ ଦେଲେ, ମୁଁ ମୁଣ୍ଡ ଗୁଞ୍ଜିବାକୁ ଠାଇଁ ପାଇବି ନାହିଁ ।

ସତ୍ୟବ୍ରତ ଅନୁଭବ କଲେ ଯେପରି ନୀଳନିଳୟ ଦୁଆର ମୁହଁରେ ଗୋଟାଏ ମଟର ଅଟକିବାର ଶବ୍ଦ ହେଲା । ସେ ଟିକିଏ ବିଚଳିତ ହୋଇ ଉଠିଲେ । ଗେଟ ଆଡେ ଆଗେଇ ଯାଇ ଦେଖିଲେ, ତାଙ୍କ ଅନୁମାନ ସତ୍ୟ । ଲାଇଲା ନୀଳନିଳୟ

ଭିତରକୁ ପଶୁଚି । ମନେ ହେଉଚି, ଯେପରି ସେ ମନ୍ତ୍ରମୁଗ୍ଧ ! ତା'ର ସମସ୍ତ ହିତାହିତ ଜ୍ଞାନ ଲୋପ ପାଇଚି ।

ଲାଇଲା ଆଗେଇ ଚାଲିଥିଲା ।

ସତ୍ୟବ୍ରତ ମହାପାତ୍ର ଲାଇଲାଠାରୁ ସାମାନ୍ୟ ଦୂରତ୍ୱ ବଜାୟ ରଖି, ଲାଇଲାକୁ ଅନୁସରଣ କରୁଥିଲେ । ଲାଇଲା ସିଧା କୁଞ୍ଜଲତା ତଳକୁ ଆଗେଇ ଯାଉଥିଲା । ସତ୍ୟବ୍ରତ ମହାପାତ୍ର ଦେଖିଲେ, କୁଞ୍ଜଲତା ତଳେ ଏକା ବୀରଞ୍ଜନ ଶୋଇଚି । ସୁଷମା ନାହିଁ । ସେ ଟିକିଏ ବିଚଳିତ ହୋଇ ପଡିଲେ । ତା'ହେଲେ ସୁଷମା ଗଲା କେଉଁଆଡେ ? ସୁଷମାକୁ ଖୋଜି ବାହାର କରିବାର ଆଉ ଅବକାଶ ନ ଥିଲା ।

ସତ୍ୟବ୍ରତ ମହାପାତ୍ର ଲକ୍ଷ୍ୟ କଲେ, ଲାଇଲା ଯାଇ କୁଞ୍ଜଲତା ତଳର ସିମେଣ୍ଟ ବେଞ୍ଚଟା ପାଖରେ ବୀରଞ୍ଜନର ମୁଣ୍ଡ ପାଖରେ ଠିଆ ହୋଇଚି । ବୀରଞ୍ଜନ ଯେପରି ଲାଇଲାର ଉପସ୍ଥିତ ଅନୁଭବ କରି ପାରିନାହିଁ !

ମୁହୂର୍ତ୍ତେ, ତା'ପରେ ଲାଇଲା ତା' ଜୁତାରେ ହାତ ମାରିଲା । କ'ଣ ଗୋଟାଏ ବାହାର କରି ସେ ବୀରଞ୍ଜନର ମୁଣ୍ଡ ପାଖରେ ବସିଲା । ବୀରଞ୍ଜନ କର ଲେଉଟାଇ ଡାହାଣ ହାତକୁ ପ୍ରସାରିତ କରିବାକ୍ଷଣି ଲାଇଲା ବୀରଞ୍ଜନର ହାତଟାକୁ ନିଜର କୋଳ ଉପରକୁ ଟାଣି ଆଣିଚି କି ନାହିଁ, ସେ ଭୀଷଣ ଭାବରେ ଆର୍ତ୍ତ ଚିତ୍କାର କରିଉଠିଲା ।

ସତ୍ୟବ୍ରତ ମହାପାତ୍ର ଠିକ୍ ତା ପାଦକୁ ଲକ୍ଷ୍ୟ କରି ଗୁଳି ଚଳାଇ ଥିଲେ । ସେଇ ଶବ୍ଦରେ ହଠାତ୍ ବୀରଞ୍ଜନ ଉଠି ବସିଲା । ସିମେଣ୍ଟ ବେଞ୍ଚ ତଳେ ବେଦନା ଜର୍ଜରିତ ଲାଇଲା ଛଟପଟ ହେଉଥିବାର ଦେଖି ବୀରଞ୍ଜନ ଉଠିପଡି ଧରିବାକୁ ଆଗେଇ ଯିବ, ସେତିକିବେଳେ ସତ୍ୟବ୍ରତ ମହାପାତ୍ର ସେଠାରେ ଉପସ୍ଥିତ ହୋଇ କହିଲେ  ସୁଷମା, ସୁଷମା କାହିଁ ?

ବୀରଞ୍ଜନ କିଛି ବୁଝି ପାରୁ ନ ଥିଲା ।

ତା'ର ମନେ ହେଉଥିଲା, ସୁଷମା କେଉଁ ଅଜ୍ଞାତ ଆତତାୟୀ ଦ୍ୱାରା ଗୁଳିବିଦ୍ଧ ହୋଇ ସିମେଣ୍ଟ ବେଞ୍ଚତଳେ ବେଦନା ଜର୍ଜରିତ କଣ୍ଠରେ ବିଳାପ କରୁଚି ।

ସତ୍ୟବ୍ରତ ମହାପାତ୍ର ବୀରଞ୍ଜନ ଆଡେ ବିଶେଷ ଧ୍ୟାନ ନ ଦେଇ, ସିମେଣ୍ଟ ବେଞ୍ଚ ଉପରେ କ'ଣ ଯେପରି ଖୋଜୁଥିଲେ । ପାଇଲେ ମଧ, ଗୋଟିଏ ମୁଣ୍ଡକଣ୍ଟା । ଯେଉଁଭଳି କଣ୍ଟାଟିଏ ନିରଞ୍ଜନର ହତ୍ୟା ସମୟରେ ଉଦ୍ଧାର କରିଥିଲେ ।

ତା'ହେଲେ ? ଏହାରି ଭିତରେ ମୃତ୍ୟୁଗରଳ ଭରି ରହିଚି ? ସତ୍ୟବ୍ରତଙ୍କ ଆଉ ବିଶ୍ଳେଷଣ କରିବାକୁ ସମୟ ନ ଥିଲା । ସେ ଖୁବ୍ ସାବଧାନରେ ସେଇ ମୁଣ୍ଡକଣ୍ଟାଟିକୁ ରୁମାଲରେ ଉଠାଇ ଖଣ୍ଡେ କାଗଜରେ ଗୁଡେଇ ପକେଟରେ ରଖିଲେ । ବୀରଞ୍ଜନ କିଛି ବୁଝିପାରୁ ନ ଥିଲା, ସତ୍ୟବ୍ରତ ମହାପାତ୍ର ଛଦ୍ମବେଶରେ ଥିବାରୁ ସେ ମଧ ତାଙ୍କୁ ଚିହ୍ନି ପାରି ନ ଥିଲା ।

ସତ୍ୟବ୍ରତ ମହାପାନ୍ତ ସୁଷମାକୁ ଖୋଜୁଥିଲେ । ସୁଷମା ଗଲା କେଉଁଆଡେ ?

ସତ୍ୟବ୍ରତ ମହାପାତ୍ର ନିଜର ପରିଚୟ ଦେଇ ସେଇ ମୁହୂର୍ତ୍ତରେ ବୀରଞ୍ଜନକୁ ନୀଳନିଳୟ ଫେରି ଯିବାକୁ କହି, ନିଜେ ସେ ଗେଟ୍ ଆଡକୁ ଆଗେଇ ଗଲେ । ତାଙ୍କ ଅନୁମାନ ସତ୍ୟ ।

ଲାଇଲା ଯେଉଁ ଗାଡିରେ ଆସିଥିଲା, ସେଇ ଗାଡିଟା ଷ୍ଟାର୍ଟ ହେଉଚି । ସତ୍ୟବ୍ରତ ମୁହୂର୍ତ୍ତେ ବିଳମ୍ବ କଲେ ନାହିଁ । ତାଙ୍କ ହାତରେ ରିଭଲଭର୍‌ଟା ଗର୍ଜି ଉଠିଲା । ମଟରର ଆରୋହୀ ଷ୍ଟାର୍ଟ କରିବା ବଦଳରେ ତଳକୁ ଓହ୍ଲେଇ ଅନ୍ୟ ଆଡେ ଧାଇଁ ପଳାଉଥିଲା । ସତ୍ୟବ୍ରତ ମହାପାତ୍ର କିନ୍ତୁ ଆଜି ଯେପରି ଜ୍ଞାନ ହରେଇଥିଲେ । ତାଙ୍କ ରିଭଲଭର୍‌ଟା ଆଉ ଥରେ ଗର୍ଜି ଉଠିଲା । ପଳାୟନକାରୀ ଗୋଟାଏ କରୁଣ ଚିତ୍କାର କରି ରାଜପଥ ଉପରେ ଟଳି ପଡିଲା । ସତ୍ୟବ୍ରତ ସେଇ ମୁହୂର୍ତ୍ତରେ ଧାଇଁ ଯାଇ ଦେଖିଲେ, ସେ ସୁଷମା । ତାଙ୍କ ଲକ୍ଷ୍ୟ ଅବ୍ୟର୍ଥ ହୋଇଚି । ଠିକ୍ ସୁଷମାର ପାଦରେ ଗୁଳି ଭେଦିଚି । ସେ ଯନ୍ତ୍ରଣାରେ କାତର ହୋଇ ସତ୍ୟବ୍ରତଙ୍କୁ ଆଗରେ ଦେଖି ତାଙ୍କର ପାଦଦୁଇଟାକୁ ଜାବୁଡି ଧରିଲା ।

ସତ୍ୟବ୍ରତ ମହାପାତ୍ରଙ୍କ ରିଭଲଭର୍‌ଟା ସୁଷମାର ଛାତିରୁ ରକ୍ତ ନିଗାଡିବା ପାଇଁ ଯେପରି ତୃଷିତ ନୟନରେ ଚାହିଁ ରହିଥିଲା । ସୁଷମା ପ୍ରାଣବିକଳରେ କହି ଉଠିଲା

ମୋତେ ରକ୍ଷା କରନ୍ତୁ । ମୁଁ ସବୁକଥା ଆପଣଙ୍କୁ କହିଦେବି !

ସତ୍ୟବ୍ରତ ମହାପାତ୍ରଙ୍କ ମୁହଁରେ ବିଜୟର ଦୀପ୍ତି ଫୁଟିଉଠିଲା । ସେ ରିଭଲଭର୍‌ଟାକୁ ପକେଟରେ ରଖି ସୁଷମାକୁ ତଳୁ ଉଠାଇନେଇ ଗାଡିରେ ବସାଇଲେ । ପାଦରୁ ରକ୍ତ ଝରୁଥିଲା ।

ସତ୍ୟବ୍ରତ ମହାପାତ୍ର ସୁଷମାକୁ ଗାଡିରେ ବସାଇ ଲାଇଲା ପାଖକୁ ଗଲେ। ଲାଇଲା ସେଇଠି ଘାସ ଉପରେ ଶୋଇରହି ଯନ୍ତ୍ରଣାରେ ଛଟପଟ ହେଉଥିଲା । ନୀଳନିଳୟରେ କେତେଜଣ ଭୃତ୍ୟ ସେଠାରେ ରୁଣ୍ଡ ହେଇ ଲାଇଲାର ଯନ୍ତ୍ରଣାକାତର ମୁଖମଣ୍ଡଳ ଆଡେ ଅନାଇ ରହିଥିଲେ । ସତ୍ୟବ୍ରତ ମହାପାତ୍ର ମୁହୂର୍ତ୍ତେ ଲାଇଲା ଆଡେ ଚାହିଁଲେ । ଲାଇଲାର ଆଖି ସହିତ ତାଙ୍କ ଆଖି ମିଶିବାକ୍ଷଣି ଲାଇଲା ହାତଠାରି ମୁନ୍ଦାଏ ପାଣି ପିଇବାକୁ ମାଗିଲା । ସତ୍ୟବ୍ରତ ମହାପାତ୍ର ଗୋଟିଏ ଭୃତ୍ୟକୁ ପାଣି ଆଣିବାକୁ ନିର୍ଦ୍ଦେଶ ଦେଇ ନୀଳନିଳୟରେ ପ୍ରବେଶ କଲେ ।

ଟେଲିଫୋନରେ ସେ ରାୟବାହାଦୂରଙ୍କୁ ଶୀଘ୍ର ନୀଳନିଳୟରେ ଉପସ୍ଥିତ ହେବାକୁ ଅନୁରୋଧ ଜଣାଇଲେ । ତା'ପରେ ଥାନା ସହିତ ଟେଲିଫୋନ ସଂଯୋଗ କରି ଥାନାର ଭାରପ୍ରାପ୍ତ ଅଫିସରଙ୍କୁ ନିଜର ପରିଚୟ ଦେଇ କହିଲେ : ଡକ୍ଟର ଦୀନନାଥ ଗନ୍ତାଏତଙ୍କୁ ଶୀଘ୍ର ଯେପରି ଆରେଷ୍ଟ କରାହୁଏ । ଯେ କୌଣସି ବିଶେଷ କ୍ଷମତା ବଳରେ ତାଙ୍କୁ ଆରେଷ୍ଟ କରି ନ ପାରିଲେ ହୁଏତ ଜୀବନରେ କେବେ ତାଙ୍କ ସନ୍ଧାନ ମିଳିବା ସହଜ ହେବନାହିଁ । ଦୁଇଟିଯାକ ଜରୁରୀ କାର୍ଯ୍ୟ ଶେଷ କରି ସତ୍ୟବ୍ରତ ମହାପାତ୍ର ବାହାରକୁ ଆସିଲେ । ସେ ଏତେବେଳ ପରେ ଯେପରି ତାଙ୍କ ଦେହରେ ଶୀତଳ ପବନର ସ୍ପର୍ଶ ଅନୁଭବ କଲେ ।

ଆକାଶକୁ ଚାହିଁ ଦେଖିଲେ, ପୂର୍ଣ୍ଣିମାର ଚାନ୍ଦ ସ୍ୱଚ୍ଛ, ନିର୍ମଳ ।

ରାୟ ବାହାଦୁର ଶରତ୍‌ଚନ୍ଦ୍ର ଦାଶ ମହାପାତ୍ରଙ୍କ ବୈଠକଖାନା ।

ଏସ୍.ପି. ସାହେବ ସତ୍ୟବ୍ରତ ମହାପାତ୍ର ଓ ଆଉ କେତେଜଣ ପୋଲିସ ଅଫିସର ବସି ସତ୍ୟବ୍ରତଙ୍କ ମୁହଁରୁ ଡକ୍ଟର ଦୀନନାଥ ଗନ୍ତାଏତଙ୍କ ରହସ୍ୟମୟ

କାହାଣୀ ଶୁଣିବାକୁ ଅପେକ୍ଷା କରିଥିଲେ । ରାୟବାହାଦୂର ଯଦିଓ ସେମାନଙ୍କ ସହିତ ଯୋଗ ଦେଇଥିଲେ, କିନ୍ତୁ ତାଙ୍କ ମନରେ ଟିକିଏ ହେଲେ ଉତ୍ସାହ ନ ଥିଲା ।

ତା'ପର୍ବ ପରେ ସତ୍ୟବ୍ରତ ମହାପାତ୍ର ଆରମ୍ଭ କଲେ ଡକ୍ଟର ଦୀନନାଥ ଗନ୍ତାଏତ । ତାଙ୍କ ସହିତ ମୋର ଯେତେବେଳେ ପ୍ରଥମ ଭେଟ ହୁଏ, ମୋର ଧାରଣା ହୋଇଥିଲା, ସେ ଜଣେ ଖୁବ୍ ଜ୍ଞାନୀ ଓ ଗୁଣୀ ଲୋକ । ଅବଶ୍ୟ ଗୋଟିଏ ଦୃଷ୍ଟିରୁ ତାଙ୍କ ଜ୍ଞାନର ଗଭୀରତା ଖୁବ୍ ବେଶୀ । କାରଣ ଆସାମର ପାର୍ବତ୍ୟ ଅଞ୍ଚଳରେ ତାଙ୍କ ଜୀବନର ଅଧିକାଂଶ ସମୟ ଅତିବାହିତ କରି ଏପରି ସମସ୍ତ ବିଦ୍ୟା ହାସଲ କରିଛନ୍ତି, ଯାହାକି ଅଲୌକିକ କହିଲେ ଚଳିବ ।

ଯା'ହେଉ, ସେ କଥାର ଅବତାରଣା କରି ଆଜି ଆଉ କୌଣସି ଲାଭ ନାହିଁ ସବୁଠୁ ମୋର ବେଶୀ ଦୁଃଖ ରହିଗଲା ରାୟବାହାଦୂରଙ୍କର ଦୁଇପୁତ୍ରଙ୍କୁ ମୁଁ ବଞ୍ଚାଇ ପାରିଲି ନାହିଁ । ଘଟଣା ଗୁଡିକ ଏପରି ଭାବରେ ଘଟିଲା ଯାହାର କଳନା କରିବା ମୋ ପକ୍ଷରେ ଏକାନ୍ତ ଦୁରୂହ ହୋଇପଡିଲା ।

ସୁଷମା ଗନ୍ତାଏତ । ଯିଏ ଡକ୍ଟର ଦୀନନାଥ ଗନ୍ତାଏତଙ୍କର ଏକମାତ୍ର କନ୍ୟା ବୋଲି ସମସ୍ତେ ଜାଣନ୍ତି, ମାତ୍ର ପ୍ରକୃତରେ ସୁଷମା ଦୀନନାଥ ଗନ୍ତାଏତଙ୍କର କନ୍ୟା ନୁହେଁ । ଏ କଥା କାଲି ସୁଷମା ଗୁଳିବିଦ୍ଧ ହେବା ପରେ ନିଜ ମୁହଁରେ ସ୍ୱୀକାର କଲା । ତା'ଛଡା ତା ମୁହଁରୁ ମୁଁ ଯାହା ଶୁଣିଲି ଡକ୍ଟର ଗନ୍ତାଏତ ରାୟବାହାଦୂରଙ୍କଠାରୁ ଭୀଷଣ ପ୍ରତିଶୋଧ ନେବାପାଇଁ ସବୁ ପ୍ରକାର ଚକ୍ରାନ୍ତ କରି ଲାଗି ପଡିଥିଲେ । ସେ କାହିଁକି ରାୟବାହାଦୂରଙ୍କଠାରୁ ଚରମ ପ୍ରତିଶୋଧ ନେବାକୁ ପ୍ରସ୍ତୁତ ହେଇଥିଲେ ତା'ର ପୁଣି ଇତିହାସ ଅଛି । ରାୟବାହାଦୂରଙ୍କ ବଂଶର ପୂରୁଷଙ୍କ ମଧ୍ୟରୁ କେହି ଡକ୍ଟର ଗନ୍ତାଏତଙ୍କ ପୂର୍ବବଂଶଧରଙ୍କୁ ଏକ ସମୟରେ ସର୍ବସ୍ୱାନ୍ତ କରିଥିଲେ । ଏପରିକି ସେମାନଙ୍କ ଉପରେ ଚରମ ଅତ୍ୟାଚାର କରି, ତାଙ୍କୁ ଧରିନେଇ ଖାଇବାକୁ ନ ଦେଇ ଶୁଖେଇ ଶୁଖେଇ ମାରିଥିଲେ । ଡକ୍ଟର ଗନ୍ତାଏତଙ୍କ ପିତା ରାୟ ବାହାଦୂରଙ୍କ ବଂଶ ଉପରେ ଚରମ ପ୍ରତିଶୋଧ ନେବା ପାଇଁ ଡକ୍ଟର ଗନ୍ତାଏତଙ୍କୁ ମୃତ୍ୟୁଶଯ୍ୟାରେ ନିୟମ କରାଇ ଯାଇଥିଲେ । ତା'ରି ପ୍ରତିକ୍ରିୟା ରାୟ ବାହାଦୂରଙ୍କ ବଂଶ ଉପରେ ସୃଷ୍ଟି ହୋଇଥିଲା । ଯା'ହେଉ ବର୍ତ୍ତମାନ ସବୁ ଘଟଣା ପ୍ରକାଶ ହୋଇ ଯିବାରୁ ରାୟବାହାଦୂରଙ୍କ ବଂଶ ରକ୍ଷା ହୋଇଯାଇଚି ।

ବର୍ତ୍ତମାନ ମୁଁ ଆପଣମାନଙ୍କ ଆଗରେ ଡକ୍ଟର ଦୀନନାଥ ଗନ୍ତାଏତଙ୍କ ରହସ୍ୟମୟ ଜୀବନଯାତ୍ରା କଥା ସଂକ୍ଷେପରେ କହି ଏହି ନୂତନ ଉପାୟରେ ହତ୍ୟାକାଣ୍ଡ ସହିତ ଆପଣମାନଙ୍କୁ ପରିଚିତ କରାଇବି । ଏହି ଦେଖନ୍ତୁ, ଏ ହେଉଛି ମୃତ୍ୟୁର ଅମୋଘ ଅସ୍ତ୍ର । ଏହାରି ସାହାଯ୍ୟରେ ନିରଞ୍ଜନ ଓ ସୁରଞ୍ଜନ ଦୁଇଜଣଙ୍କୁ ହତ୍ୟା କରାହୋଇଛି । ସତ୍ୟବ୍ରତ ମହାପାତ୍ର ମୁଣ୍ଡକଣ୍ଟା ସଦୃଶ ସେହି ପଦାର୍ଥଟି ସମସ୍ତଙ୍କୁ ଦେଖାଇଲେ । ଏହା ଦେଖିବାକୁ ଅନେକଟା ସ୍ତ୍ରୀଲୋକମାନଙ୍କ ମୁଣ୍ଡକଣ୍ଟା ପରି ଦିଶିଲେ ମଧ୍ୟ ପ୍ରକୃତରେ ଏହା ଗୋଟିଏ ସିରିଞ୍ଜ । ଏହା ଭିତରେ ଏକ ପ୍ରକାର ତୀବ୍ର ବିଷରୁ ଦୁଇ ତିନି ବିନ୍ଦୁ ଭରା ହୁଏ । ଗୋଟିଏ ମନୁଷ୍ୟ ହତ୍ୟା କରିବା ପାଇଁ ଏହି ବିଷରୁ ବିନ୍ଦୁଏ ଯଥେଷ୍ଟ । ସେତକ ଖାଲି ମଣିଷର ରକ୍ତ ସହିତ ମିଶି ପାରିଲେ ହେଲା ।

ଏହି ହତ୍ୟାକାଣ୍ଡ ଗୁଡିକ ସଂଘଟିତ କରିବା ପାଇଁ ଡକ୍ଟର ଗନ୍ତାଏତ ଏକ ନୂତନ ଉପାୟ ଉଦ୍ଭାବନ କରିଥିଲେ । ଯାହାକି କାହାରି ପକ୍ଷରେ ଧରିବା ସହଜ ନ ଥିଲା ଏବଂ ହତ୍ୟାକାରୀ ନିଜେ ହତ୍ୟା ସମ୍ବନ୍ଧରେ କିଛି ଜାଣି ପାରୁ ନ ଥିଲା । ହୁଏତ ଆପଣମାନେ ଜାଣି ନଥିବେ, ଡକ୍ଟର ଗନ୍ତାଏତ 'ଷ୍ଟାର କ୍ଲବ'ର ସବୁଠାରୁ ବେଶୀ ଅଂଶ ତାଙ୍କରି । ସେହି 'ଷ୍ଟାର କ୍ଲବ'ର ନର୍ତ୍ତକୀ ଲାଇଲା । ଡକ୍ଟର ଗନ୍ତାଏତ ଲାଇଲାକୁ ହିପ୍ନଟାଇଜ୍ କରି ଏ ଦୁଇଟି ଯାକ ହତ୍ୟାକାଣ୍ଡ ସଂଘଟିତ କରାଇଛନ୍ତି । ଲାଇଲା ଯେ ଗୋଟିକ ପରେ ଗୋଟିଏ ହତ୍ୟା କରି ଚାଲିଚି ସେ ସମ୍ବନ୍ଧରେ ସେ ନିଜେ କିଛି ଜାଣି ପାରି ନାହିଁ । କିନ୍ତୁ ଡକ୍ଟର ଗନ୍ତାଏତ ଯେତେବେଳେ ଜାଣି ପାରିଛନ୍ତି ଯେ ରାୟ ବାହାଦୂରଙ୍କ କେସ୍ ତଦନ୍ତ ଭାର ମୁଁ ଗ୍ରହଣ କରିଚି, ସେତେବେଳେ ସେ ମୋତେ ଲାଇଲାକୁ ସନ୍ଦେହ କରିବା ପାଇଁ ସୁଯୋଗ ଦେଇଚନ୍ତି । ଦିନେ ଲାଇଲାକୁ ହିପ୍ନଟାଇଜ୍ କରି ଲିଲି ନାମରେ ନାମିତ କରି ମୋ ପାଖକୁ ପଠାଇଚନ୍ତି । ତା'ପରେ ଲାଇଲା ଯେତେବେଳେ ନିଜ ନାମରେ ପରିଚୟ ଦେଇ ମୋ ପାଖକୁ ଆସିଚି, ସେତେବେଳେ ମୁଁ ଭୀଷଣ ସମସ୍ୟାରେ ପଡି ଯାଇଚି । ଅବଶ୍ୟ ସେ କ୍ଷେତ୍ରରେ ଯଦିଓ ଡକ୍ଟର ଗନ୍ତାଏତଙ୍କ ଚକ୍ରାନ୍ତ ସାର୍ଥକ ହେଇଚି, କିନ୍ତୁ ସୁରଞ୍ଜନଙ୍କୁ ହତ୍ୟା କଲା ପରେ, ଲାଇଲା ପାଖରୁ ସୁରଞ୍ଜନର କୋଟ୍‌ର ବୋତାମ ଓ ଗୋଲାପ ଫୁଲ ପାଇ ମୁଁ ଠିକ୍ ଲାଇଲାକୁ ହତ୍ୟାକାରୀ ରୂପେ ଚିହ୍ନି ପାରିଚି ।

ସବୁଠୁ ମଜାର କଥା ହେଉଚି, ଡକ୍ଟର ଗନ୍ତାଏତ ସୁଷମାକୁ ନିଯୁକ୍ତି କରାଇଥିଲେ ଆଉ ଏକ ନୂତନ ଉପାୟରେ । ସୁଷମାର ରାୟବାହାଦୂରଙ୍କର ତିନୋଟି ସନ୍ତାନଙ୍କ ସହିତ ସମାନ ସମ୍ପର୍କ ଥିଲା । ହୁଏତ ସେ ସମ୍ପର୍କ ସ୍ଥାପନ ସବୁ ଅଭିନୟ ହୋଇପାରେ, ମାତ୍ର ଡକ୍ଟର ଗନ୍ତାଏତଙ୍କର ନିର୍ଦ୍ଦେଶରେ ସୁଷମାକୁ ଏହି କାର୍ଯ୍ୟଭାର ଗ୍ରହଣ କରିବାକୁ ପଡିଥିଲା । ଏପରି ସମ୍ପର୍କ ସ୍ଥାପନ ମୂଳରେ କି ଉଦ୍ଦେଶ୍ୟ ନିହିତ ଥିଲା କେଜାଣି, ମୋର ଧାରଣା ହେଉଚି ସୁଷମା କେବଳ ସେମାନଙ୍କୁ ମୃତ୍ୟୁମୁଖକୁ ଟାଣି ଆଣିବା ପାଇଁ ନିଯୁକ୍ତି ହୋଇଥିଲା ଆଉ ପରବର୍ତ୍ତୀ କାର୍ଯ୍ୟ ଥିଲା ଲାଇଲାର ।

ଡକ୍ଟର ଗନ୍ତାଏତଙ୍କ ଚକ୍ରାନ୍ତ ବେଶ୍ ସାର୍ଥକ ରୂପ ଲାଭ କରି ପାରି ଥାଆନ୍ତା, କିନ୍ତୁ ଶେଷଯାଏ ସେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଏହି ନୂତନ ଚକ୍ରାନ୍ତ ଉପରେ ଆଲୋକପାତ କରିବା ପାଇଁ ଯିଏ ପ୍ରଥମେ ମୋ ଆଖି ଖୋଲି ଦେଇଚି ସେ ହେଉଚି ଲାଇଲାର ବନ୍ଧୁ ଲିଲି, ସେ ମଧ୍ୟ ଜଣେ ନର୍ତ୍ତକୀ । ତା'ପରେ ପ୍ରଫେସର ପଟ୍ଟନାୟକ ମୋତେ ହିପ୍ନଟିଜମ୍ ସମ୍ବନ୍ଧରେ ସମସ୍ତ ତଥ୍ୟ ବୁଝାଇ ଦେଇ ରାୟବାହାଦୂରଙ୍କର ଏହି କେଶ୍‌ଟିର ସମାଧାନ ଦିଗରେ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ବର୍ତ୍ତମାନ ଡକ୍ଟର ଗନ୍ତାଏତଙ୍କର କଳଙ୍କିତ ଜୀବନର ସମସ୍ତ ତଥ୍ୟ ଆବିଷ୍କାର କରି, ତାଙ୍କୁ ଉପଯୁକ୍ତ ଶାସ୍ତି ବିଧାନ କରିବା ଆପଣଙ୍କର ଦାୟିତ୍ୱ ।

ସତ୍ୟବ୍ରତ ମହାପାତ୍ର ଏସ୍.ପି. ସାହେବଙ୍କ ଆଡେ ଚାହିଁ ନୀରବ ରହିଲେ ।

• • •

କାହାଣୀ ପ୍ରକାଶିତ

ଏଇ ଲେଖକଙ୍କର ଅନ୍ୟାନ୍ୟ  ଏକତ୍ରିକା:

ଶ୍ରେଷ୍ଠ ରହସ୍ୟ ଉପନ୍ୟାସ

୫ ରୋମାଞ୍ଚ

ଲାଲଚକ୍ର

ଏବଂ ଚକ୍ରବ୍ୟୂହ

ଗୁଂଜନ

କୁହେଳି

ରାତି କଥା କୁହେ

ଭଉଁରୀ

ଗୋଲକଧନ୍ଦା

ମାଟିର କଥା : ମନର କଥା



# କଣ୍ଡୁରିଚରଣ ଦାସ

ପ୍ରବେଶ : ୨୫ ଡିସେଂବର ୧୯୨୯  ପ୍ରସ୍ଥାନ : ୨୬ ମେ ୨୦୧୪

................................................................................

'ସ୍ପନ୍ଦନ'ରେ ଅଛି ସ୍ପଂଦନ-ସାହିତ୍ୟକାର ଶ୍ରୀ କଣ୍ଡୁରିଚରଣ ଦାସଙ୍କ ସୃଜନସତ୍ତାର ପଂଚସ୍ପର୍ଶ : 'ରକ୍ତତାଣ୍ଡବ' - 'ଅମୁହାଁ ଦେଉଳ' - 'ଦୁଇଟି କଳା ଆଖି' - 'ନିହତ ନାୟିକା' - 'ନୀଳ ନିଳୟ' ।

ଏସବୁ ଉପନ୍ୟାସୋପମ ଅପୂର୍ବ କୃତି ଅନେକ ଆଗରୁ ହାସଲ କରିସାରିଛି ଅଜସ୍ର ସଂସ୍କରଣର ଈର୍ଷଣୀୟ ଭାଗ୍ୟ ! ଓଡ଼ିଶା ବାହାରେ ରହିଆସିଥିବା ଏହି ଅଜାତଶତ୍ରୁ ମଣିଷ ସବୁ ବର୍ଗର ଓଡ଼ିଆ ପାଠକଙ୍କ ପ୍ରିୟଲେଖକ - କାହିଁ କେଉଁକାଳୁ - ୧୯୫୦ ମସିହାରୁ ଏଯାବତ ।

ଅଭିଜାତ ଓଡ଼ିଆ ରହସ୍ୟ ସାହିତ୍ୟର ରାଜ୍ୟାଂତରୀ ରାଜଚକ୍ରବର୍ତ୍ତୀ ତଥା ପ୍ରବାହ-ପ୍ରବଣ ପ୍ରବାଦ-ପୁରୁଷ ଶ୍ରୀ କଣ୍ଡୁରିଚରଣ ଦାସ। ଭଲ ଲାଗେ ତାଂକ ଭାଷାର ଭଂଗିମା, ବିଷୟର ବିନ୍ୟାସ ।

ବାଲିଗଂଜରେ ବିତିଯାଇଛି ଜୀବନ ଓ ସୃଜନର ସଂଜବେଳ । ବୃହତ୍ତର ପାଠକ ସମାଜର ଗୃହବାଟିକାରେ ଏବେ ବି ଶବ୍ଦମୟ ତାଂକ ସାରସ୍ୱତ ସର୍ଜନାର ସ୍ୱଚ୍ଛଂଦ ସ୍ୱକୀୟ ସ୍ୱର ।




ISBN 978-93-81756-62-1
9 789381 756621